**SAKALA SANTANA**
*by Kishori Charan Das*
*Published by Vidyapuri, Cuttack 753002*

ISBN 81-7411-151-4

ପ୍ରଥମ ପ୍ରକାଶ ଡିସେମ୍ବର ୧୯୯୫

ପ୍ରକାଶକ

ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପି ସଂଯୋଜନ

ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୁଦ୍ରଣ

ରୟାଲ ହାଫ୍‌ଟୋନ୍
କଟକ

ମୂଲ୍ୟ ଟ ୭୦.୦୦

# ପ୍ରଥମ ଭାଗ

# ଦିବ୍ୟଜ୍ୟୋତି

## ଏକ

ଶୈଳର ମନେହେଲା ମୌସୁମୀ ନିଶ୍ଚୟ ଆସି ଛୁଇଁଲାଣି ତା'ର ପୃଥିବୀକୁ । ଛୁଇଁଲାଣି, ମାନେ ତା'ର ତାପିତ ତୃଷିତ ଦେହଟାକୁ ଚୁମା ଦେଉଛି ମନଇଚ୍ଛା । ତାକୁ ଉଚ୍ଛନ୍ନ କରିଦେଉଛି । ହଁ ମ, ମୁଁ ତା'କୁ ବେଶ୍ ଦେଖିପାରୁଛି ମୋଟା କାଚ ଭିତରଦେଇ । ମୁଁ ତା'ର ଟୁପ୍‌ଟୁପ୍‌କୁ ଶୁଣିପାରୁଛି ଟ୍ରେନ୍‌ର ଘର୍ଘରକୁ କାଟିଦେଇ । ମୁଁ ତା'କୁ ଅନୁଭବ କରିପାରୁଛି, ମୁଁ ସତ କହୁଛି ! ମୋ ଦେହଟା ବି' କେମିତି ଉଲୁସି ଉଠୁଛି, ଦେଖୁନ' ?...

ଶୈଳଜା ପଣ୍ଡାକୁ ମୌସୁମୀ ଠକେଇ ଆସିଛି ପିଲାଟିଦିନୁଁ । ଏଇ ମୋର ପହିଲି ମେଘ, ମୋର ମନମୌସୁମୀ, ମୋର, ମୋର, ମୋର ବୋଲି କହି ସେ କେତେଥର ନାଚି ଉଠିଛି । ତାଳି ମାରିଛି । ଧାଇଁ ଯାଇଛି ଛାତ ଉପରକୁ, ଆଉ ତା'ର ଟୁପୁଟୁପୁକୁ ବୋଲି ହୋଇଛି ଦେହଯାକ । କିନ୍ତୁ ବାରମ୍ବାର ପ୍ରମାଣିତ ହୋଇଛି ଯେ ସିଏ ମୌସୁମୀ ନ ଥିଲା । ତା'ର କେଉଁ ଅନୁଚର, ଅଗ୍ରଦୂତ ବା ସେଇଭଳି କିଛି । ଆହୁରି ଦୁଃଖର ବିଷୟ ଯେ ଅନେକଥର ମୌସୁମୀ ଆସିଛି, ହେଲେ ନ ଆସିଲାପରି । ତା'କୁ ଠିକଣା ଭାବରେ ଧରି ହୋଇନାହିଁ । ଏହି ରିହର୍ସାଲ୍ ମାଧ୍ୟମରେ ସେ କେତେବେଳେ ଆସି ଚାଲିଯାଇଛି ସତସତିକା ! ଶୈଳକୁ ରାଗ ଲାଗେ, ମଜା ଲାଗେ ମଧ୍ୟ ବେଳେବେଳେ । ଜୀବନଯାକ ଏମିତି ଗୋଟାଏ ଲୁଚକାଳି ଖେଳ ଚାଲିଛି ଆମ ଦିହିଁଙ୍କ ଭିତରେ, ଏଇ ଭାବଟିକୁ ଉପଭୋଗ କରି ।

ଉପଭୋଗର ମାତ୍ରା ବଢ଼ିବାରେ ଲାଗିଛି, ଯେବେଠୁଁ ସେ କବିତା ଲେଖିଲାଣି । କବିତା ଛପା ହେଲାଣି ବିଶିଷ୍ଟ ପତ୍ରପତ୍ରିକାରେ, ଲୋକେ ତା'କୁ କବି ବୋଲି ଜାଣିଲେଣି ଏବଂ ତାକୁ ନିମନ୍ତ୍ରଣ କରାଗଲାଣି ବିଭିନ୍ନ କବିତାପାଠ ଉତ୍ସବରେ ଯୋଗ ଦେବାପାଇଁ । ସତେକି ଏଇ ହନ୍ତସନ୍ତିଆ ଉପଭୋଗଟି ତେଜିଉଠୁଛି କେଉଁ

ସହଅନୁଭବୀର ଚେତନାରେ ନିଆଁ ଧରେଇଦେଲାରୁ, କବିତା ପାଠୋତ୍ସବର ଗହଳିରେ । ଭାବେ ଯେ ସେଇ ଅନ୍ୟ ଜଣକ ଅବଶ୍ୟ ବୁଝୁଥିବ ତା'ର କବିପ୍ରାଣଟିକୁ । ଯାହାର ସାରତତ୍ତ୍ୱ ହେଲା ଏଇ ଯେ ପ୍ରତ୍ୟେକ କବି ଗୋଟିଏ ବିରହୀ ଯକ୍ଷ, ତା'ର ପ୍ରେମ ଦେହୀ ହେଉ ବା ଅଦେହୀ, କାରଣ ସେ ସଦାବେଳେ ଖୋଜୁଥାଏ ତା'ର ପ୍ରେମିକାକୁ, ପ୍ରେମିକକୁ, ଦିନ ପରେ ଦିନ ଚିରଦିନ, ମୌସୁମୀର ମୌସୁମୀକୁ, ଜନ୍ମରୁ ଜନ୍ମାନ୍ତରଯାଏଁ ।

ଆଃ ! କି ମଧୁର ସେଇ ଯନ୍ତ୍ରଣା ।

କିନ୍ତୁ ହାୟ, ଶୈଳ କୌଣସିମତେ ତା'କୁ ବ୍ୟକ୍ତ କରିପାରିବ ନାହିଁ ଏଇ ନିଆଁଲଗା ଟ୍ରେନ୍‌ରେ । ମୁହଁରେ ନ ହେଲା ନାହିଁ, ଦେହଟା କେମିତି ଉଲୁସି ଉଠୁଛି ସେତିକି ମଧ ହାତରୁ କାନି ଟେକି ଦେଖିପାରିବ ନାହିଁ । ଝରକାଯାଏଁ ବି' ଯାଇପାରିବ ନାହିଁ ମୌସୁମୀକୁ ଆଉ ଟିକିଏ ପାଖରୁ ଦେଖିବାଲାଗି, ହେଉ ପଛେ ବନ୍ଦ ଝରକାବାଟେ । କାରଣ ସେ ଅକଳିଆରେ ପଡ଼ିଯାଇଛି । ରାଜଧାନୀ ଏକ୍ସପ୍ରେସ୍‌ର ବାତାନୁକୂଳିତ ଶୟନଯାନର ଦରଜା ପଛପଟେ ଯେଉଁ ଖଣ୍ଡିଏ ଜାଗା ଥାଏ, ଯେଉଁଠୁ ଲୋକମାନେ ପ୍ଲାଟ୍‌ଫର୍ମକୁ ଓହ୍ଲେଇଯାଆନ୍ତି ଷ୍ଟେସନ୍‌ରେ ଏବଂ ଯାହା ବାତାନୁକୂଳିତ ହୋଇ ନ ଥିବାରୁ ଧୂମପାନ ପାଇଁ ନିର୍ଦ୍ଦିଷ୍ଟ ବୋଲି କହିଲେ ଚଳେ, ସେ ସେଇଠିକି ଆସି ଲାଖିଯାଇଛି । ଠେଲିହୋଇ ଝରକା ପାଖକୁ ଯାଇ ହେବ ନାହିଁ କିମ୍ବା ଚଟ୍‌କିନି ଫେରି ଯାଇହେବ ନାହିଁ ଆପଣା ସିଟ୍‌କୁ । ସେମାନେ ଖରାପ ଭାବିବେ । ଯେହେତୁ ଧୂମ୍ରକୁଣ୍ଡଳୀର ଏଇ ସ୍ୱର୍ଗରେ ଖାଲି ଯେ ପୁରୁଷମାନେ ଠୁଳ ହୋଇଛନ୍ତି, ତା' ନୁହେଁ । ସେମାନେ ମଧ ଜଣେ ଜଣେ କବି, ଗାଳ୍ପିକ, ଔପନ୍ୟାସିକ, ପ୍ରାବନ୍ଧିକ; ଦେଶର ବିଭିନ୍ନ ପ୍ରାନ୍ତରୁ ଆସିଥିବା ଏବଂ ଅଳ୍ପବହୁତ ନାଆଁ କମେଇଥିବା ସାହିତ୍ୟିକମାନେ । ଏବଂ ସେହିମାନେ ହିଁ ତା'କୁ ସନିର୍ବନ୍ଧ ଅନୁରୋଧ କରି ଡାକି ଆଣିଛନ୍ତି ଏଠିକି । ଯେମିତି ଜାଣିଲେ ଯେ ସେ ବି' ତାଙ୍କରି ଭିତରୁ ଜଣେ । ଉତ୍କଳ ପ୍ରଦେଶର ଜଣେ ଉଦୀୟମାନ ନାରୀକବି ।

... କିନ୍ତୁ କ'ଣ କାହାରି ମୁହଁରୁ ଥରେ ହେଲେ ବାହାରିବାକୁ ନାହିଁ ଯେ କେଡ଼େ ସୁନ୍ଦର ବର୍ଷା ହେଲାଣି ଦେଖ ? ପୁଣି ସିଜିନ୍‌ର ପହିଲି ବର୍ଷା, ପ୍ରଚଣ୍ଡ ଗ୍ରୀଷ୍ମର ଶେଷରେ ଏଇ ପହିଲି ବର୍ଷା, ତା'କୁ ମୌସୁମୀ କୁହ ବା ନ କୁହ । ହେଲା ଏବେ ଆପଣମାନେ ପୁରୁଷ । ମୋଟା ଚମଡ଼ା ଅଥବା ବୌଦ୍ଧିକତାରେ ବଳୀୟାନ୍ । ରୋମାଣ୍ଟିକ୍ ଭାବର ଆଗ୍ରହୀ ନୁହଁନ୍ତି । ତେଣୁ ଆପଣଙ୍କ ଦେହ ଉଲୁସି ଉଠିବାର ପ୍ରଶ୍ନ ଉଠୁ ନାହିଁ । କିନ୍ତୁ ଜିନିଷଟାକୁ ଦେଖିଲାରୁ ଖୁସି ଲାଗୁ ନାହିଁ ଆପଣଙ୍କୁ ? ମୁଁ ଆଶା କରୁଥିଲି ଯେ ସେଇ ଆନନ୍ଦଟିକ ଯାହା ଇତର

ସାଧାରଣ ଲୋକଙ୍କଠାରୁ ଅଧିକ ହେବା ଉଚିତ ଆପଣଙ୍କର, ତା'ର ସାମାନ୍ୟତମ ଆଭାସ, ସାମାନ୍ୟତମ ସ୍ଫୁରଣ (ଏଇ ଆଖିମିଟିକା ମାରୁଥିବା ବିଜୁଳିପରି) ଅନ୍ତତଃ ତା'ରି ପରିଚୟ ପାଇବି ବୋଲି । ପାଇଥିଲେ ହୁଏତ ମୁଁ କିଛି କହିପାରିଥାଆନ୍ତି...ଶୈଳ ଯେତିକି ଖୁସି ହେଉଥାଏ ମୌସୁମୀର ପ୍ରଥମ ଦର୍ଶନରେ, ସେତିକି ମଧ୍ୟ ବ୍ୟଥିତ ହେଉଥାଏ ଯେ ସେ ତା'ର ଉଲ୍ଲାସକୁ ବ୍ୟକ୍ତ କରିପାରୁ ନାହିଁ ଏହିପ୍ରକାର ପରିସ୍ଥିତି ଏବଂ ପରିବେଶ ହେତୁ ।

...ଅଥଚ ଆମେ ସମସ୍ତେ ଗୋଟିଏ ବିରାଦରି, ଗୋଟିଏ ପରିବାରର ଲୋକ । ଆମେ ସମସ୍ତେ ସେଇ ସରସ୍ୱତୀଙ୍କ ସନ୍ତାନ ! ଏଇ ପହିଲି ବର୍ଷା ଆମର ବେଶି ନିଜର ହେବା ଉଚିତ ଅନ୍ୟମାନଙ୍କଠାରୁ, ଅନୁଭବରେ ହେଉ କି ଚିନ୍ତାରେ, କିନ୍ତୁ ଯେତେହେଲେ ଆନନ୍ଦରେ, ଯେତେହେଲେ ବିସ୍ମୟରେ ।

ଆଲୋ ଶୈଳ, ଦେଖୁନୁ' ସେମାନେ କେତେ ଖୁସି ହେଉଛନ୍ତି ? ଆଉ କେମିତିକା ଆନନ୍ଦ ଆଶା କରୁଥିଲୁ ତାଙ୍କଠାରୁ ?

ହଁ, ଖୁସି ହେଉଛନ୍ତି । କାରଣ ସେମାନେ କେବଳ ସ୍ୱଚ୍ଛନ୍ଦରେ ଧୂଆଁ ଟାଣୁ ନାହାନ୍ତି, ନିଷେଧ ଅନୁଶାସନରୁ ମୁକୁଳିଯାଇ । ଅଧିକାଂଶଙ୍କ ହାତରେ ଗିଲାସଟିଏ ଧରା ହୋଇଛି । ସ୍କଚ୍ ହୁଇସ୍କି, ଯାହାକି ଦଳରେ ଥିବା ଗାଳ୍ପିକ ଦୀପଙ୍କର ଗାଙ୍ଗୁଲିଙ୍କ ଅବଦାନ ବୋଲି ଘୋଷିତ ହୋଇଛି । କିନ୍ତୁ ମୌସୁମୀ ? ତା'ର ଅନୁଭବ କିଛି ଅଛି ନା ନାହିଁ ? ନା ମୋର ବୁଝିବା ଉଚିତ ଯେ ଅନୁଭବ ଜିନିଷଟା ଅଛି, ହେଲେ ମିଶିଯାଇଛି ଏଇ ଅଧିକ ମଧୁର ଅମୃତରେ ?...

କିନ୍ତୁ ଲକ୍ଷ୍ୟ କରିବା କଥା ଯେ ସହଯାତ୍ରୀମାନଙ୍କ ଆଚରଣକୁ ନେଇ ଏଭଳି ଦୁଃଖ କରିବା ସତ୍ତ୍ୱେ ଶୈଳକାର ଓଠରେ ଗୋଟିଏ ସ୍ମିତହାସର ରେଖା ବସା ବାନ୍ଧିଥାଏ । ସତେକି ଏଇ ଦୃଶ୍ୟ ତା'ର ପସନ୍ଦ ହେଉ ବା ନ ହେଉ, ଏହାହିଁ କରିବା ବିଧେୟ । ସେମାନେ ବଡ଼ । କେବଳ ବୟସରେ ନୁହେଁ, ସାହିତ୍ୟିକ ଅଭିଜ୍ଞତା ତଥା ପ୍ରତିଷ୍ଠାରେ ମଧ୍ୟ । ସେମାନେ ତା'କୁ ନେଇଆସିଛନ୍ତି ଏଠିକି, ତାଙ୍କରି ଭିତରୁ ଜଣେ ବୋଲି ମନେକରି । ସେହେତୁ ଶୈଳର ସଶ୍ରଦ୍ଧ ସମ୍ମାନ ଦେଖାଇବା ଉଚିତ, ତାଙ୍କର ନାନାଦି ସାହିତ୍ୟିକ ଚର୍ଚ୍ଚା, ମୁକ୍ତ ଉଚ୍ଚ ହସ, ମୁକ୍ତ ମଦ୍ୟପାନର ଆନନ୍ଦ ପ୍ରତି । ଏହି ଅଲିଭା ସ୍ମିତହାସ ଦ୍ୱାରା । ଏବଂ ଯା'କୁହିଁ କହନ୍ତି ସଂସ୍କାର । ଭାରତୀୟ ସଂସ୍କାର—ବିନୟ, ସୌଜନ୍ୟ ତଥା ନାରୀତ୍ୱର ।

କଥାରେ ଅଛି ଯେ ଯେକୌଣସି ସସ୍ମିତା ଅଳ୍ପବହୁତ ସୁନ୍ଦରୀ ହେବାକୁ ବାଧ, ସେତିକିବେଳେ, ଚେହେରାର ନାନା ଗୁଣ ଅବିଗୁଣକୁ ଅତିକ୍ରମ କରି । ସେହି ଦୃଷ୍ଟିରୁ ଶୈଳ ସୁନ୍ଦର ଦିଶୁଥିଲା ବୋଲି କହିଲେ ସତ୍ୟର ଅପଳାପ ହେବ

ନାହିଁ । ଯଦିଓ ଖୁଣ୍ଟି ନାଣ୍ଟି ଦେଖିଲେ ମନେହେବ ଯେ ଝିଅଟା ଏତେ ଗେଡ଼ୀ ହୋଇ ନ ଥିଲେ ଭଲ ହୋଇଥାଆନ୍ତା ପରା ! ତା'ଛଡ଼ା ତା' ନାକର ଉଠାଣି ଆଉ ଟିକିଏ ନମନୀୟ, ତା' ପାଟିର ଚଉଡ଼ା ଆଉ ଟିକିଏ କମ୍, ତା' ଗହଳା କେଶ ଆଉ ଟିକିଏ ଅଳ୍ପ ଗହଳା ଓ କୁଞ୍ଚୁକୁଞ୍ଚିଆ ହୋଇଥିଲେ ତା' ସୁନ୍ଦରପଣ ଆହୁରି ଭଲଭାବରେ ଫୁଟି ଉଠିଥାଆନ୍ତା ବୋଧହୁଏ । ତା'ଛଡ଼ା ଶ୍ୟାମଳୀର ବର୍ଣ୍ଣ ଏତେ ଅଧିକ ଶ୍ୟାମ ହୋଇ ନ ଥିଲେ ଚଳି ନ ଥାଆନ୍ତା ? କିନ୍ତୁ ପ୍ରତ୍ୟେକ ଦେଖଣାହାରୀର ଦୃଷ୍ଟି ପଡ଼ିବ (ଅନ୍ତତଃ ପଡ଼ିବା ଉଚିତ) ତା' ଚେହେରାର ଗୋଟିଏ ଚମକପ୍ରଦ ବୈଶିଷ୍ଟ୍ୟ ଉପରେ । ଯାହାକୁ ଏକ ଅନନ୍ୟ ସୌନ୍ଦର୍ଯ୍ୟ ବୋଲି କୁହାଯାଇପାରେ ।

ହଁ, ଶୈଳଜା କାଳୀଟିଏ, ପୂରାପୂରି କାଳୀ । କିନ୍ତୁ ଏତେ ତୋଫା ତା'ର ଚାହାଣି ଏବଂ ଏତେ ମୁକୁଳା ସରାଗ ସେଥିରେ ଯେତେବେଳେ ସେ ତା'କୁ ତୋଳି ଧରିଥାଏ, ଏଇକ୍ଷଣି କରିଛି ଯେମିତି, ଯେ ଜଣେ ଜଣେ ହୃଦୟବାନ୍ ବ୍ୟକ୍ତି ଅସ୍ଥିର ହୋଇଉଠନ୍ତି । କେମିତି ଭଲା ଏଇ ଅପୂର୍ବ ଉପଯାଚିକାକୁ ସନ୍ତୁଷ୍ଟ କରିହେବ, ଏଇଆ ଭାବି । ସତେକି ତା' ଦୃଷ୍ଟିପଥରୁ ଓହରିଯିବାର ଅର୍ଥ ହାର୍ ମାନିନେବା । ଲଜ୍ଜାର ବିଷୟ ।

ହେଲେ ସେଇ ବିଶିଷ୍ଟ ଚାହାଣିର ଫୋକସ୍ ବ୍ୟତିବ୍ୟସ୍ତ କରୁ ନ ଥିଲା ଉପସ୍ଥିତ ହାସ୍ୟବନ୍ତ ଏବଂ ମଦ୍ୟପାନରତ ସାହିତ୍ୟିକମାନଙ୍କୁ । ତେବେ ସେଥିପାଇଁ ବୋଧହୁଏ ଏଇ ଅସ୍ୱାଭାବିକ ପରିସ୍ଥିତିକୁ ଦୋଷୀ କରିହେବ, ସେମାନଙ୍କ ହୃଦୟ ପ୍ରତି ଆକ୍ଷେପ ନ କରି ।

କିନ୍ତୁ କିଛିଦିନ ତଳେ ସ୍ୱଦେଶରେ ଅନ୍ୟ ଏକ ସାହିତ୍ୟିକ ସେଥିରେ ବିଚଳିତ ହୋଇପଡ଼ିଥିଲେ । କବି ରାମହରି ଦାସ । ଯେତେବେଳେ ଶୈଳ ସିଧାସଳଖ ତାଙ୍କ ପାଖରେ ପହୁଞ୍ଚିଗଲା ସୁବିଧା ଦେଖି, ଗୋଟିଏ ସାହିତ୍ୟ ସଭାର ଫାଙ୍କରେ । ଏବଂ ଏକୁଟିଆ ସେ ସଦନର ଗୋଟିଏ ଖୁମ୍ବକୁ ଆଉଜି ଚିନ୍ତିତ ବୋଲି ମନେ ହେଉଥିବା କବିଙ୍କୁ ଆକ୍ରମଣ କଲା ।

"ନମସ୍କାର, ମୋ ନାଆଁ ଶୈଳଜା ପଣ୍ଡା । ମୁଁ କବିତା ଲେଖେ । ମୋ କବିତା ପଢ଼ିଥିବେ ବୋଧହୁଏ..."

"ହଁ, ହଁ, ... ଏବେ ଆପଣଙ୍କୁ ଗୋଟାଏ ପୁରସ୍କାର ମିଳିଥିଲା ନା କଅଣ ?"

"ଆଜ୍ଞା ହଁ, ଅରୁନ୍ଧତୀ ବାଣୀପୀଠ ତରଫରୁ । କିନ୍ତୁ ପୁରସ୍କାର ମୋର ଲୋଡ଼ା ନାହିଁ । ମୁଁ କେବଳ ଚାହେଁ ଆପଣମାନଙ୍କ ପରି କବି ଓ କାବ୍ୟଜଗତର

ସାନ୍ନିଧ । ସେତିକିରେ ମୁଁ ନିଜକୁ ଧନ୍ୟ ମନେକରେ । ମୁଁ ଜାଣେ ନାହିଁ ମୁଁ ନିଜକୁ ଠିକ୍ ଭାବରେ ବୁଝେଇପାରୁଛି କି ନାହିଁ, କିନ୍ତୁ ମୋର ଲୋଡ଼ା ସେଇ ବାତାବରଣ । ଏବଂ ସେଥିରେ ଆବିଷ୍ଟ ହୋଇଥିବା ମଣିଷମାନଙ୍କ ଅନନ୍ୟ ଆବେଗ, ଆତ୍ମୀୟତା...ଆଇ ଆମ୍ ସରି...''

''ଦୁଃଖିତ ହେବାର କିଛି ନାହିଁ । କୁହନ୍ତୁ—ପ୍ଲିଜ୍—''

''ମୁଁ ଶୁଣିଲି ଆପଣ ଦିଲ୍ଲୀ ଯାଉଛନ୍ତି ଆସନ୍ତା ଜୁଲାଇ ମାସରେ । ଆପଣଙ୍କୁ ନିମନ୍ତ୍ରଣ କରାଯାଇଛି ଗୋଟାଏ ଆନ୍ତର୍ଜାତିକ କବିତାପାଠ ଉତ୍ସବରେ ଯୋଗଦେବାପାଇଁ । କାଲିଫର୍ଣିଆରେ ରହୁଥିବା ପ୍ରସିଦ୍ଧ କବି ଆର୍ଥର୍ ଆଶ୍‌ଲିଙ୍କୁ ଡକାହୋଇଛି ମୁଖ୍ୟ ଅତିଥି ହିସାବରେ ଏବଂ ଆପଣ ହେବେ ଆମ ଅଞ୍ଚଳର ପ୍ରତିନିଧି...''

ରାମହରି ହସିଦେଲେ ତାଙ୍କର ଦୁର୍ଲ୍ଲଭ ମାର୍କାମରା ହସଟିଏ ଏବଂ କହିଲେ,

''ନା, ନା, ସେମିତି କିଛି ନୁହେଁ । କଥା ହେଉଛି, ମୋର ଗୋଟିଏ କବିତା ଆଶ୍‌ଲିଙ୍କ ଆଖିରେ ପଡ଼ିଥିଲା, ମାନେ ତା'ର ଇଂରେଜୀ ଅନୁବାଦ, ସେଇଲାଗି ସେ ମୋ ନାଆଁ ଜଣେଇଦେଲେ ଦିଲ୍ଲୀର 'ଇଣ୍ଟରନ୍ୟାସନାଲ୍ ହାଉସ୍ ଅଫ୍ ଆର୍ଟସ୍‌କୁ, ଯେଉଁମାନେ ଏଇ ଉତ୍ସବର ଆୟୋଜନ କରୁଛନ୍ତି...''

ନାରୀକବି ଜଣକ ନୀରବ । କିନ୍ତୁ ତା' ଚାହାଣିର ଫୋକସ୍ ଟିକିଏ ହେଲେ ଧିମେଇଯାଇ ନାହିଁ । ବରଂ ଅଧିକରୁ ଅଧିକ ଝଳି ଉଠୁଛି । ଆଶ୍ଚର୍ଯ୍ୟ, ଯାହା ଏତେ କୋମଳ, ତା'ର ଏତେ ତେଜ ଆସୁଛି କେଉଁଠୁ ? ଯାହାହେଉ, ତା'କୁ ସହିହେଉ ନାହିଁ । ରାମହରିବାବୁ ତା'କୁ ଅନେଇଲେ, ଅନେଇଲେ, ଦୃଷ୍ଟି ତଳକୁ କରି ପୁଣି ଅନେଇଲେ ଏବଂ କହି ପକେଇଲେ—

''ଆପଣ କ'ଣ ଯିବାକୁ ଚାହାଁନ୍ତି ସେଠିକି ?''

ସେଇଠୁଁ କିଭଳି ଆନନ୍ଦର ପ୍ରସାଦ ଫୁଟିଉଠିଲା ଶ୍ୟାମଳୀର ସମୁଜ୍ଜ୍ୱଳ ଚାହାଣି ଓ ସ୍ମିତହାସରେ, ଯେଉଁଥିରେ ରାମହରିବାବୁ କୃତକୃତ୍ୟ ହୋଇ ଉଠିଲେ, ତା'ର ବିଶ୍ଳେଷଣ କରିବା ଅସମ୍ଭବ । 'ହଉ' ମୁଁ ଦେଖିବି' କହିବା ଛଡ଼ା ତାଙ୍କର ଅନ୍ୟ ଗତି ନ ଥିଲା ।

ସେଇ ପ୍ରାପ୍ତି ଓ ପ୍ରତିଶ୍ରୁତି ଫଳରେ ଆଜି ଏଇ ସୌଭାଗ୍ୟ ଶୈଳଜାର ଯେ, ସେ ସହଯାତ୍ରୀ ହୋଇପାରିଛି ଏଇ କେତେଜଣ ପ୍ରତିଷ୍ଠିତ ସର୍ବଭାରତୀୟ ସାହିତ୍ୟିକମାନଙ୍କର । କାରଣ ସେମାନଙ୍କୁ ମଧ ଡକା ହୋଇଛି ଦିଲ୍ଲୀର ଉକ୍ତ

ଆନ୍ତର୍ଜାତିକ କବିତା ଉତ୍ସବକୁ ଏବଂ ସଂଯୋଗବଶତଃ ସେମାନେ ଏକାଠି ହୋଇଛନ୍ତି ଦିଲ୍ଲୀ ଅଭିମୁଖେ ରାଜଧାନୀ ଏକ୍ସପ୍ରେସ୍‌ର ଚାଖଣ୍ଡେ ବୋଲି ଜାଗାରେ । ଯେଉଁଠି ବଡ଼ମାନେ ବଡ଼ପାଟିରେ ହସୁଛନ୍ତି, କଥା କହୁଛନ୍ତି, ଏବଂ ଧୂମ୍ରପାନ ତଥା ମଦ୍ୟପାନ କରୁଛନ୍ତି ।

ସାନ ଶୈଳ ଆଉ କ'ଣ କରିପାରିଥାଆନ୍ତା ଏଇକ୍ଷଣି ତାଙ୍କ ସାନ୍ନିଧ୍ୟରେ ଥାଇ, ତା'ର ସ୍ଥିର ହସଟିକୁ ତୋଳି ଧରିବା ଛଡ଼ା ? ହେଲେ ତା'ରି ଭିତରେ ସେ ବନ୍ଦ ଝରକା ଆଡ଼କୁ ଅନେଇ ପାରୁଛି ମଝିରେ ମଝିରେ ଏବଂ ଆତୁର ହୋଇଉଠୁଛି ମୌସୁମୀକୁ ଆହୁରି ପାଖରେ ଅନୁଭବ କରିବାଲାଗି, ଏହାହିଁ ଖୁସିର କଥା । ମନେହେବ ଯେ ସେ ତା'ର ଅନ୍ତର୍ନିହିତ କବିତ୍ୱକୁ କେବେହେଲେ ଛୁଟି ଦେଇପାରିବ ନାହିଁ ।

କିନ୍ତୁ ଶୈଳଜାକୁ ଜଣା ନ ଥିଲା ଯେ ସେହି ବରିଷ୍ଠ ସାହିତ୍ୟିକମାନଙ୍କ ଛଡ଼ା ଆଉ ଜଣେ ମଧ୍ୟ ଥିଲେ ସେଇ ଛୋଟିଆ କରିଡର୍ ଭିତରେ, ଯେ ନୀରବରେ ଝରକାକୁ ଲାଗିକରି ଠିଆ ହୋଇ ସିଗାରେଟ୍ ଫୁଙ୍କୁଥିଲେ । ସେ ଏମାନଙ୍କ ଦଳର ନୁହଁନ୍ତି, କି ତାଙ୍କୁ ଏମାନେ ଚିହ୍ନନ୍ତି ନାହିଁ । ସେ ପୂର୍ବରୁ ଆସିଥିଲେ ଏଠିକି, ଅନୁମୋଦିତ ଧୂମ୍ରପାନପାଇଁ । ତା'ପରେ ଆସିଲେ ଅନ୍ୟମାନେ ଜଣେ ଦି'ଜଣ ହୋଇ, ଶୈଳଜାସମେତ ଉପରୋକ୍ତ ସାହିତ୍ୟିକବର୍ଗ ।

ବେଶଭୂଷାରେ ମଧ୍ୟ ସେ ବାରି ହୋଇଯାଉଥିଲେ ଅନ୍ୟମାନଙ୍କଠାରୁ । ଏମାନେ ଅଧିକାଂଶରେ ଧୋତିକୁର୍ତ୍ତା ଏବଂ ପାଇଜାମା କୁର୍ତ୍ତା ପିନ୍ଧିଥିଲାବେଳେ (କେବଳ ଦୀପଙ୍କର ଗାଙ୍ଗୁଲିଙ୍କ ଜିନ୍‌ସ ଓ ଟି-ସାର୍ଟକୁ ବାଦ୍ ଦେଇ), ଏଇ ଜଣକ ପିନ୍ଧିଥିଲେ ନିଖୁଣ ଇସ୍ତ୍ରୀକରା ପୂରାହାତି ସାର୍ଟ୍ ଓ ପ୍ୟାଣ୍ଟ୍ । ଏବଂ ସେ ସାହିତ୍ୟିକମାନଙ୍କଠାରୁ ବେଶ୍ କିଛି ସାନ ବୋଲି ମନେ ହେଉଥିଲେ । ଖାଲି ଶୈଳଜାଠାରୁ ଅଳ୍ପ କେତୋଟି ବର୍ଷ ବଡ଼ ହୋଇଥିବେ ପରା । ତା'ଛଡ଼ା ସେ କେବଳ ଏମାନଙ୍କଠାରୁ ଦୂରେଇ ରହିଥିଲେ, ତା'ନୁହେଁ । ସେ ଯେପରି ଭାବରେ ଅନାଉଥିଲେ ଏମାନଙ୍କ ଆଡ଼କୁ ମଝିରେ ମଝିରେ, ସେଥିରୁ ମନେ ହେଉଥିଲା ଯେ ୟାଙ୍କର ହାବଭାବ, ସୁରା ଓ ସାହିତ୍ୟଜନିତ ଆନନ୍ଦ କୋଳାହଳ, ତାଙ୍କ ବିଦ୍ରୂପର ବସ୍ତୁ । ଯାହାର ସୂଚନା ଦେଉଥିଲା ତାଙ୍କର ଚିକ୍କଣ ମାଖୁନା ଗୋରା ମୁହଁରେ ଫୁଟିଉଠୁଥିବା ଈଷତ୍ ହସ । ବଳିଷ୍ଠ ଓଠର ହସ, ଯେଉଁଥିରେ ଉପର ଓଠ ଅଧିକ ପ୍ରଭାବଶାଳୀ ବୋଲି ଜଣାପଡୁଥିଲା । ଯଦିଓ ତା'ର ଆଂଶିକ କାରଣ ହେଉଛି ଯେ ତାଙ୍କ ଛାମୁଦାନ୍ତ ଦିଓଟି ଯତ୍‌ସାମାନ୍ୟ ଆଗକୁ ବାହାରି ଆସିଥିଲା ଏବଂ ତା'କୁ ଘୋଡ଼େଇ ରଖିବା ଦରକାର ପଡୁଥିଲା ।

ମୋଟ ଉପରେ ତାଙ୍କ ଚେହେରାରେ ଗୋଟିଏ ଦାମ୍ଭିକତା ଥିଲା, ଯାହା ତାଙ୍କ ବିଦ୍ରୂପାତ୍ମକ ଚାହାଣି ଓ ଚପାହସ ସାଙ୍ଗରେ ଖାପ୍ ଖାଇ ଯାଉଥିଲା । ଭଦ୍ରଲୋକଙ୍କ ନାଆଁ ହେଉଛି କେ.ବି. ଅର୍ଥାତ୍ କୁଳଭୂଷଣ କର । ଆଇ.ଏ.ଏସ୍. । ଦିଲ୍ଲୀର କେନ୍ଦ୍ର ସଚିବାଳୟରେ ନିଯୁକ୍ତ ଅନ୍ୟତମ ଯୁଗ୍ମସଚିବ ।

କିନ୍ତୁ ଏଇ ବିଦ୍ରୂପର କାରଣ କ'ଣ ? ଏଲିଟ୍ ବ୍ୟୁରୋକ୍ରାଟ୍‌ର ତାଚ୍ଛିଲ୍ୟ ଭାବ ଇତର ସାଧାରଣ କବିଫବିଙ୍କ ପାଇଁ ? ବିଶେଷତଃ ତାଙ୍କର ଅଶାଳୀନ ଉପଭୋଗକୁ ଲକ୍ଷ୍ୟ କରି ? ନା, ତା' ନୁହେଁ । ମାନେ ଠିକ୍ ତା' ନୁହେଁ । କାରଣ ସେ ଦୁଃଖର ସହିତ ଭାବୁଥିଲେ ଯେ ଏମାନେ ମଧ ଏଲିଟ୍, ହେଲେ ସେହି ମର୍ଯ୍ୟାଦାର ଯୋଗ୍ୟ ନୁହଁନ୍ତି । ଏମାନେ ମଧ ଏଷ୍ଟାବ୍ଲିଶ୍‌ମେଣ୍ଟ, ଏଇ ସାହିତ୍ୟିକଙ୍କ ଦଳ । ଏମାନଙ୍କୁ କିଛି କମ୍ ସମ୍ମାନ ଦିଆଯାଏ ନାହିଁ ଆମ ସଭାସମିତିରେ । ସତେକି ସମସ୍ତେ ମାଆ ସରସ୍ୱତୀଙ୍କ ସନ୍ତାନ ଏବଂ ଖାଣ୍ଟି ସ୍ୱଦେଶୀ ସନ୍ତାନ, ତେଣୁ ସେମାନେ ଆମର ନମସ୍ୟ ।

...କିନ୍ତୁ କ'ଣ ଲେଖନ୍ତି ଏମାନେ ? କାହାର କ'ଣ ଉପକାର ହୁଏ ସେଥିରେ ? କବିତା ବୁଝି ହୁଏ ନାହିଁ, ଗପର ମୁଣ୍ଡଗଣ୍ଡି ନ ଥାଏ, ଆଉ ପ୍ରବନ୍ଧଗୁଡ଼ାକ ଦାନ୍ତଭଙ୍ଗା ଗୋଡ଼ି ଚୋବେଇଲାପରି ମନେହୁଏ । ତଥାପି କୌଣସିମତେ ଗୋଟାଏ ଉଚ୍ଚ ଆସନ ହାସଲ କରିନେଇଛନ୍ତି ଏମାନେ । ପରସ୍ପର ସାହାଯ୍ୟକୃତ ସନ୍ଧି ଅନୁଯାୟୀ ତଥା ଆମ ସରସ୍ୱତୀଭକ୍ତିର ଫାଇଦା ନେଇ । ଭକ୍ତି—ଭକ୍ତି—ଭକ୍ତି ! ଏଇ ଭକ୍ତିପରାୟଣତାହିଁ ନଷ୍ଟ କରିସାରିଲାଣି ଆମ ଦେଶଟାକୁ !

ନା, ମୁଁ ସାହିତ୍ୟର ବିରୋଧୀ ନୁହେଁ—ଭଦ୍ରଲୋକ କହିହେଲେ ନିଜକୁ । କିଓ, ମୁଁ ସାହିତ୍ୟ ସଂସ୍କୃତିକୁ ନେଇ ଘର କରିଛି ପରା ! ମୁଁ ସରସ୍ୱତୀଙ୍କୁ ମଧ ନମସ୍କାର କରେ । କାରଣ ସେ ଜଣେ ଦେବୀ, ଶ୍ୱେତପଦ୍ମାସୀନା ସୁନ୍ଦରୀ । କିନ୍ତୁ ସୌନ୍ଦର୍ଯ୍ୟର (ମୁଁ ଖାଲି ଚେହେରାର ସୌନ୍ଦର୍ଯ୍ୟ କଥା କହୁ ନାହିଁ, ସାରା ବ୍ୟକ୍ତିତ୍ୱର ରୂପଗୁଣ କଥା କହୁଛି) ଧାର ଧାରନ୍ତି ଏମାନେ ?

ଯାଙ୍କ ଭିତରୁ ଅନ୍ତତଃ ତିନିଟାଙ୍କୁ ମୁଁ ଜାଣେ । ବୃଦ୍ଧ ଜଗଦୀଶ ତିୱାରୀ । ସେ କୁଆଡ଼େ ଗୋଟାଏ ବିରାଟ କବି । ହମହମ ହୁଏ ପ୍ରତ୍ୟେକ 'ପ୍ରଗତିମୂଳକ' ଆନ୍ଦୋଳନର ଅନ୍ୟତମ ନେତା ବୋଲି ନିଜକୁ ଜଣାଇବାପାଇଁ । ମାନେ ସରକାର ଯାହାକୁ ପ୍ରଗତି ବୋଲି କୁହନ୍ତି । ସେହେତୁ ସେ ତା' ଦସ୍ତଖତ ଯୋଗାଇଥିଲା ଅଯୋଧ୍ୟାକାଣ୍ଡକୁ ନିନ୍ଦାକରି, ଅଥଚ ତା'ର ସାହସ ହେଲା ନାହିଁ ତଙ୍କେଲକୁ ଛୁଇଁବାପାଇଁ । ବିଚରା ଗିଲାସଟାକୁ ଧରିପାରୁ ନାହିଁ ଠିକ୍‌ଭାବରେ । ସେଥିରୁ ଅଧେ ଢାଳି ହୋଇଗଲାଣି ତା'ର ଜବାହର ଜ୍ୟାକେଟ୍ ଉପରେ । ତକ୍କର ଭି.କେ.ନାଥନ୍ ।

ତା'କୁ ବି' ବୁଢ଼ା କହିବ । ହାଲୁକା ବାମପନ୍ଥୀ ଜର୍ଣ୍ଣାଲିଷ୍ଟ, ଯେ ହାଲୁକାରେ ଅନ୍ୟ ଦିଗକୁ ମଧ୍ୟ ଢଳିପାରିବ, କେହି ନ ଜାଣିଲାପରି । ସେ ବି କୁଆଡ଼େ ଗୋଟାଏ ପ୍ରଚଣ୍ଡ ସାହିତ୍ୟିକ, କାରଣ ସେ ଅରବିନ୍ଦଙ୍କ ସାହିତ୍ୟ ଉପରେ ଡକ୍ଟରେଟ୍ କରିଥିଲା, ଯେଉଁଥିରେ ସେ ମାର୍କ୍ସଙ୍କ ବୈଷୟିକ ଆଦର୍ଶକୁ ମିଶେଇ ଦେଇଥିଲା ଅରବିନ୍ଦଙ୍କ ଆଧ୍ୟାତ୍ମିକ ଆଦର୍ଶ ସାଙ୍ଗରେ । ହୋମ୍‌ର ଗୋପାଲ୍ ଖାଣ୍ଡେକର୍ ମୋତେ କହୁଥିଲା ତା'ର ଏଇ ଅପୂର୍ବ ମିଶିବା-ମିଶେଇବାର କୁଶଳତା ବିଷୟରେ, ଯେଉଁଥିପାଇଁ ସେ ରାଜଦରବାରର ଏତେ ପାଖକୁ ଆସିପାରିଛି । ଆଉ ସେଇ ବଙ୍ଗାଳୀ ପେଟୁଆ ଜଣକ ଗପ ଲେଖେ । କାଗଜରେ ବାହାରିଥିଲା ତା' ବିଷୟରେ ସେ ଯେତେବେଳେ 'ଗଂଗୋତ୍ରୀ' ପୁରସ୍କାର ପାଇଲା । ସେ କୁଆଡ଼େ ସେକ୍ସକୁ କେଉଁ ଅପୂର୍ବ ଅଚେତନର ମହିମା ଆଣିଦେଇଛି । ରକ୍ଷା କର !

କିନ୍ତୁ ଏଇ ଟୋକୀ ଜଣକ, ଇଏ ବି' କ'ଣ ଅଛି ଯାଙ୍କ ଗହଣରେ ? ମନେ ହେଉଛି ସେଇଆ, ଯେମିତି ଭାବରେ ସେ ମୁହଁ ଟେକି ଅନେଇଛି ଏମାନଙ୍କ ଆଡ଼କୁ, ଆଉ ତାଙ୍କ କଥାମୃତକୁ ପିଇଯାଉଛି । ଖାଲି ପିଉ ନାହିଁ, ପିଇକରି ଗଦ୍‌ଗଦ ହେଲାପରି ମନେ ହେଉଛି, ହସଖଣ୍ଡକ ଲିଭୁ ନାହିଁ ତା' ମୁହଁରୁ । ଏତିକି ନୁହେଁ, ମୋତେ ଆହୁରି ଦିଅ, ମୁଁ ମୋଟେ ବୋର୍ ହେବି ନାହିଁ, ଥକିଯିବି ନାହିଁ—ଏଇ ଭାବରେ । ହେଲେ ନିଜେ ପଦୁଟିଏ କଥା କହୁ ନାହିଁ ଏବଂ ତା' ହାତରେ ଗିଲାସଟିଏ ନାହିଁ, କି ସେ ଧୂଆଁ ଟାଣିବାପାଇଁ ଆସି ନାହିଁ ଏଠିକି ।

କୋଉଠୁଁ ଏଇ ଟୋକୀ ଭକ୍ତଟିଏ ଜୁଟିଗଲା ତମକୁ ? ନା ତମେ ତା'କୁ ଯୋଗାଡ଼ କରି ଆଣିଛ ତମ ସୁରାନନ୍ଦର ସାଥୀ କି ସାକୀ ହେବାପାଇଁ ?...

କେ.ବି.କେ. (ପତ୍ନୀ ନୀଲମ୍‌ଙ୍କ ଛଡ଼ା ପ୍ରାୟ ସମସ୍ତେ ତାଙ୍କୁ ଏଇ ନାଆଁରେ ଡାକନ୍ତି) ତାଙ୍କ ଅଧାହସକୁ ଆହୁରି ବଙ୍କେଇଦେଲେ ସେହି ସାହିତ୍ୟିକଦଳଙ୍କ ଉଦ୍ଦେଶ୍ୟରେ । ସତେକି ସେମାନେ କେବଳ ଇଉସ୍‌ଲେସ୍ ନୁହଁନ୍ତି, ଭ୍ରଷ୍ଟ, ମଧ୍ୟ ନାରୀ ଭୋଗବିଳାସୀ । ଏବଂ ମୁହଁ ଫେରାଇନେଲେ ବାହାରକୁ । ବୃଷ୍ଟିପାତର ଦେଖା-ଅଦେଖା ଦୃଶ୍ୟଆଡ଼କୁ । ତା'କୁ ସେ ଦେଖିଲେଣି କେତେବେଳୁଁ, ହେଲେ କୌଣସି ବିଶେଷ ମର୍ଯ୍ୟାଦା ଦେଇପାରି ନାହାନ୍ତି । କେବଳ ଟିକିଏ ଖୁସି ହୋଇଛନ୍ତି ଯେ ଦିଲ୍ଲୀକୁ ବି' ମନ୍‌ସୁନ୍ ଆସିଯିବ ଏଥର କିଛିଦିନ ପରେ—ଗୁଡ୍ !

କିନ୍ତୁ କେ.ବି.କେ. ବେଶି ସମୟଯାଏଁ ଓହରି ଯାଇପାରିଲେ ନାହିଁ ପାର୍ଶ୍ୱବର୍ତ୍ତୀ ଦୃଶ୍ୟରୁ । ବର୍ଷାର ଆଗମନୀ ଦେଖିବାକୁ ଭଲଲାଗୁଛି ନିଶ୍ଚୟ । କିନ୍ତୁ ଯେଉଁ ସନ୍ନିକଟ ଦୃଶ୍ୟଠାରୁ ସେ ମୁହଁ ଫେରାଇ ଆଣିଛନ୍ତି ଏବଂ ତା'ର ଆନନ୍ଦ-ଉତ୍ସବ

ତଥାପି ତାଙ୍କ କାନରେ ପଡୁଛି ଓ ତାଙ୍କୁ ବିରକ୍ତ କରୁଛି, ତା'ର ଗୋଟିଏ ଅଂଶ, ମାତ୍ର ଗୋଟିଏ ଅଂଶ, କହିବାକୁ ଗଲେ ମାତ୍ର ଗୋଟିଏ ମୁହଁର ଚେହେରା, ଚୋଙ୍ଗୀଟିଏ, କାଳୀଟିଏ, ଆପାତତଃ ସାହିତ୍ୟ ଫାହିତ୍ୟର ଭକ୍ତଟିଏ ତାଙ୍କୁ ଉସ୍କେଇଲା ତା' ବିଷୟରେ ଭାବିବାପାଇଁ । ... କିଏ ସେ ଝିଅଟା ?

କୌଣସିମତେ ବୁଝା ପଡ଼ିଯାଉଛି ସେମାନଙ୍କର ବଡ଼ପାଟିଆ ହୋ-ହଲ୍ଲା ଭିତରୁ ଯେ ସେମାନେ ଦିଲ୍ଲୀକୁ ଯାଉଛନ୍ତି ଏକ ଆନ୍ତର୍ଜାତିକ କବିତାପାଠ ଉତ୍ସବରେ ଯୋଗଦେବାପାଇଁ । ଆମନ୍ତ୍ରିତ ଅତିଥି ହିସାବରେ । ଏବଂ ଅତିଥିମାନେ ସ୍ୱଦେଶୀ ସାହିତ୍ୟ ଏଷ୍ଟାବ୍ଲିଶ୍‌ମେଣ୍ଟର ଅନ୍ୟତମ ମହାରଥୀବିଶେଷ, ଯେଉଁମାନେ ଉତ୍ସବଟାକୁ ନଗଣ୍ୟ ବୋଲି ମଣୁଛନ୍ତି ଏବଂ ତା'ର ଉଦ୍ୟୋକ୍ତାମାନଙ୍କୁ ନେଇ ନାନା ଗସିପ୍ କରୁଛନ୍ତି (ଯଥା: ଅମୁକ ଆସିଥିଲା ମୋ ପାଖକୁ ତା' ନୂଆ କବିତା ବହିର ମୁଖବନ୍ଧ ଲେଖିବାପାଇଁ । ଲେଖିଦେଲି ସିନା, କିନ୍ତୁ ତା'ପରେ ବାଧ ହେଲି ନିରୋଳା ଦି'ପେଗ୍ ପିଇବାପାଇଁ । କାହିଁକିନା ସିଏ ଯଦି କବି ହୁଏ, ତା'ହେଲେ ମୁଁ ହେଉଛି ଅମିତାଭ୍ ବଚ୍ଚନ୍ !... ସମୁକ ଯେଉଁ ଉପନ୍ୟାସ ଲେଖିଛି ଚନ୍ଦ୍ରଗୁପ୍ତଙ୍କ ଉପରେ, ସେ ମୌର୍ଯ୍ୟବଂଶର କି ଗୁପ୍ତବଂଶର, ବୁଝିପାରୁଛନ୍ତି ଆପଣମାନେ ? ... ହଁ, ସମୁକ ଆଶ୍ଲିଙ୍କ ପ୍ରେମରେ ପଡ଼ିଛି ସତ, କିନ୍ତୁ ତାଙ୍କ କବିତାକୁ ନେଇ ନୁହେଁ । ଉକ୍ତ ପ୍ରେମ ଆଉ ପ୍ରକାରେ, କବିତାଠୁଁ ଆହୁରି ସଜୀବ, ସାକାର । ହୋ-ହୋ-ହୋ ! ଇତ୍ୟାଦି), ଯାହା ତାଙ୍କ ସୁରାନନ୍ଦ ସାଙ୍ଗରେ ଖାପ୍ ଖାଇଯାଉଛି । କିନ୍ତୁ ଏ ଝିଅଟା

ଆରେ, କୋଉଠିକାର ଝିଅକୁ ନେଇ ତମର ମୁଣ୍ଡ ବଥଉଛି କାହିଁକି କେ.ବି.କେ. ସାହେବ ? ସେ କ'ଣ କବି କି ଗାଳ୍ପିକ କି ସେମିତି କିଛି ହେବାର ଯୋଗ୍ୟ ନୁହେଁ ? ନା କୋଉ ଇଣ୍ଟରନ୍ୟାସନାଲ୍ ସାହିତ୍ୟ ମେଳାପାଇଁ କାର୍ଡ଼ ଖଣ୍ଡେ ଯୋଗାଡ଼ କରିପାରିବ ନାହିଁ ? ସେ କ'ଣ ଏତେ ସାନ ନା ଅର୍ବାଚୀନ ଦିଶୁଛି ତମ ଆଖିକୁ ?

ଉହୁଁ, ତା' ନୁହେଁ । ମୁଁ ସେ କଥା କହୁ ନାହିଁ । ତା'କୁ ତିରିଶ ପଇଁତ୍ରିଶ ବର୍ଷରୁ କମ୍ ହୋଇ ନ ଥିବ । ଲେଖାଲେଖି କରୁଥିବ ହୁଏତ, ଅନ୍ତତଃ ସେ ଦିଗରେ ତା'ର ସ୍ପୃହା ଥାଇପାରେ, ଆଉ ନିମନ୍ତ୍ରଣପତ୍ର ବି' ମିଳିଥାଇପାରେ କୋଉ ସାହିତ୍ୟିକ ମଉସାଙ୍କଠାରୁ । ସବୁ ସମ୍ଭବ ଆମ ଭାରତରେ । କିନ୍ତୁ...

କେ.ବି.କେ. ବୁଝିପାରିଲେ ନାହିଁ କାହିଁକି ଝିଅଟାର ଇମେଜ୍ ତାଙ୍କ ପଛରେ ଗୋଡ଼େଇଛି ଏମିତି । ସତେକି ସେ କେବଳ ମୁହଁ ତୋଳି ଅନେଇ ନାହିଁ ସେହି ସାହିତ୍ୟରଥୀମାନଙ୍କ ଆଡ଼କୁ । ଅନେଇଛି ତାଙ୍କ ଆଡ଼କୁ, ତାଙ୍କୁ ଚ୍ୟାଲେଞ୍ଜ୍ କଲାପରି । ଗୋଟାଏ ନଛୋଡ଼ବନ୍ଧା ଜିଜ୍ଞାସା କି ଯାଚନା ପରି ।

ସେଇଠୁ ତାଙ୍କ କାନରେ ବାଜିଲା—

''ଆଇୟେ ଶୟଲାଜୀ, ହମ୍‌କୋ ନିରାଶ୍ ମତ୍ କୀଜିୟେ !''

ଏଁ ? କଅଣ ଚାହୁଁଛନ୍ତି ଏମାନେ ଏ ଝିଅଟାଠାରୁ ? କେ-ବି-କେ ଫେରି ଆସିଲେ ଭିତରର ଦୃଶ୍ୟ ଆଡ଼କୁ । ଅଳ୍ପ ବହୁତ ସଚକିତ ଏବଂ ସନ୍ଦିଗ୍ଧ ଦୃଷ୍ଟିପାତ ସହ ।

''ଆପ୍ ହେ ଉତ୍କଲ୍‌କୀ ଔର୍ ଉତ୍କଲ୍‌କେ ସନ୍ତାନ୍ ହର୍ ପ୍ରକାର୍‌କେ କଲାକାର୍ ହୋତେ ହେଁ । କବିଲୋକ୍ ଭୀ ନାଚ୍ ସକ୍‌ତେ ହେଁ, ଗା ସକ୍‌ତେ ହେଁ, ଆଚ୍ଛା ଖାନା ପକା ସକ୍‌ତେ ହେଁ— (ଜଣେ ସହଯାତ୍ରୀଙ୍କ ଆଡ଼କୁ ଅନେଇ) କ୍ୟୋଁ ଜୀ ?''

ସେଇଠୁଁ ଆରଜଣକ କହୁଛି, ''ଇସିଲିୟେ ତୋ ପ୍ରଦେଶ୍‌କା ନାମ୍ ଉତ୍କଲ୍ ହେ !'' ଦାନ୍ତନିକିଡ଼ା ହସ ।

କେ-ବି-କେ ଅନେଇଲେ ଝିଅ ଆଡ଼କୁ । ଓଡ଼ିଆ ଝିଅ । ଶୟଲା, ମାନେ ଶୈଳ ହୋଇଥିବ ନିଶ୍ଚୟ । ଏମାନେ ଥଟ୍ଟା କରୁଛନ୍ତି ତା'କୁ ଆଉ ତା ଉତ୍କଲ୍‌କୁ । ଅବଶ୍ୟ ଇଏ ମଦପିଆ ଥଟ୍ଟା, ଯା'କୁ ଧରିବାର ନୁହେଁ । କିନ୍ତୁ ଏମିତି ଫାଇଦା ଉଠେଇବା ଉଚିତ ନୁହେଁ, ତା' ତାରୁଣ୍ୟର କି ଭଲ୍ଲିଭାବର । ଅତି ଅଭଦ୍ର, ନିଷ୍ଠୁର ଏଇ ଲୋକଗୁଡ଼ାକ । କିନ୍ତୁ ଏମାନେ କ'ଣ ଚାହୁଁଛନ୍ତି ତା'ଠୁଁ ?

ଝିଅଟା ଅପ୍ରତିଭ ହୋଇ ଉଠିଲାଣି, ଏଥିରେ ସନ୍ଦେହ ନାହିଁ । ଲାଜଉଛି, 'ନା-ନା' କହୁଛି, ଦି'ହାତରେ ମୁହଁ ଲୁଚଉଛି । ଖାଲି ଓଡ଼ିଆ ଝିଅ ନୁହେଁ, ମଫସଲୀ ବୋଲି ମନେ ହେଉଛି ମଧ୍ୟ । ଝାଳ ବହିଲା ପରି ଲାଗୁଛି ତା' ଦେହରୁ । ଏକାନ୍ତ ଅସହାୟ ଭାବ । କେ-ବି-କେଙ୍କର ଇଚ୍ଛା ହେଉଥିଲା କହିବେ—ଷ୍ଟପ୍ ଇଟ୍ ! ହଇରାଣ କର ନାହିଁ ବିଚାରୀକୁ । କିନ୍ତୁ ସେ ଆଶ୍ଚର୍ଯ୍ୟ ହେଲେ ଯେ ମ୍ରିୟମାଣ ହେବାର ସମସ୍ତ ଲକ୍ଷଣ ଦେଖାଇବା ସତ୍ତ୍ୱେ ସେ କହୁଛି, ''ହଉ, ମୁଁ ଗାଉଛି ଶୁଣନ୍ତୁ । ଏଇ ଗୋଟିଏ ଗୀତ ମୁଁ ଜାଣିଛି । କେବଳ ଏଇଥିପାଇଁ ଯେ ଏଇ ଗୀତ ବୋଲାହୁଏ ପ୍ରାୟ ପ୍ରତ୍ୟେକ ସଭାସମିତିରେ । ମୁଖସ୍ଥ ହୋଇଯାଇଛି । (ନର୍ଭସ୍ ହିଁ-ହିଁ ହସ) ଶୁଣନ୍ତୁ ତା'ହେଲେ—

''ତୁହି ମା ଜନମଭୂମି
ପବିତ୍ର ଭାରତ ଭୂମି
ତୋହରି ସନ୍ତାନ ଆମ୍ଭେ ଅଟୁ ସରବେ...''

କଅଁଳ କଣ୍ଠ ! ସୁଲଳିତ । ସ୍ୱର କି ଛନ୍ଦ କେଉଁଥିରେ ଅଟକିଯାଉ ନାହିଁ । ନର୍ଭସ୍ ହେଉ ପଛେ, ଗାଇ ଚାଲିଛି । ବାଃ ! ହେଲେ କଳା କୋଇଲିଠାରୁ

ଆଉ କ'ଣ ଆଶା କରାଯାଏ ? କେ-ବି-କେ ମନେ ମନେ ଛିଗୁଲେଇଲେ ତା'କୁ ।

କିନ୍ତୁ କେ-ବି-କେଙ୍କୁ ରାଗ ଲାଗିଲା ଯେ ଅଭଦ୍ର ସାହିତ୍ୟିକ ଦଳଟା ତା'କୁ ଉପଭୋଗ କରୁଛନ୍ତି । ଉଚିତରୁ ଅଧିକ । ଏକେ ଟ୍ରେନ୍‌ଟା ଭୀଷଣ ଜୋର୍‌ରେ ହଲୁଛି ଏଇକ୍ଷଣି, ତଦୁପରି ନିଶା ଚଢ଼ିଲାଣି ତାଙ୍କ ମୁଣ୍ଡକୁ, ଆଉ ସେମାନେ ନାଚିବାକୁ ଚେଷ୍ଟା କରୁଛନ୍ତି, ଗୀତ ସାଙ୍ଗରେ ତାଳ ଦେବାପାଇଁ ଅସ୍ଥିର ହୋଇଉଠୁଛନ୍ତି । ଫଳରେ ହୁଇସ୍କି ଇଡ଼ି ହୋଇଯାଉଛି ଯେଉଁଠି ପାରେ ସେଇଠି; ଏବଂ କେବଳ ପାନପାତ୍ରରୁ ନୁହେଁ, ମଧ ନେସେଡ଼ି ହୋଇଯାଇଥିବା ଓଠରୁ । ଅଥଚ କୃତ୍ରିମ ଆନନ୍ଦର ପରାକାଷ୍ଠା ଦେଖାଇ ଝିଅ ହସିଦେଉଛି ମଝିରେ ମଝିରେ ଏବଂ ଗାଇ ଚାଲିଛି—

"ତୋହରି ସନ୍ତାନ ଆମ୍ଭେ ଅଟୁ ସରବେ..."

ସତେକି ଏହି ଶୟଲା, ଆମ ଓଡ଼ିଆଣୀ ଝିଅ ଶୈଳ ହେଉଛି ଗୋଟାଏ ବାଇଜୀ, ଆଉ ଏଇ ନବାବ୍‌ମାନେ ତା' ମଜ୍‌ରାକୁ ଉପଭୋଗ କରୁଛନ୍ତି । ଯାହାକି ତାଙ୍କର ପାଉଣା ଏବଂ ଶୈଳର କର୍ତ୍ତବ୍ୟ ତାଙ୍କୁ ଖୁସ୍ କରିବା ।

କିନ୍ତୁ କାହିଁକି, ଝିଅଟା ଏମିତି ଛୋଟ କରିଦେଉଛି ନିଜକୁ ? କବି ବୋଲାଉଛି, ହୁଏତ ସେ ବି' ଯାଉଛି ଦିଲ୍ଲୀକୁ ସେଇ ଇଣ୍ଟର୍‌ନ୍ୟାସ୍‌ନାଲ୍ ତାମ୍‌ସାରେ ଯୋଗଦେବାପାଇଁ, ପାଠଶାଠ ପଢ଼ିଛି ନିଶ୍ଚୟ, ଅଥଚ ସେ ପ୍ରତିରୋଧ କରିପାରିଲା ନାହିଁ ସାହିତ୍ୟର ଏଇ ଶାଗୁଣାମାନଙ୍କୁ ? କାହିଁକି ?? ବିଶେଷତଃ କଳା ମୁହଁରେ ତା'ର ସେଇ ଚାହାଣି ଖଣ୍ଡକ (ଏତେବେଳକେ କେ-ବି-କେ ସଚେତନ ହେଲେ ସେ ବିଷୟରେ) କେବଳ ସୁନ୍ଦର ନୁହେଁ, ସେଥିରେ ରାଶି ରାଶି ବୁଦ୍ଧି ଥିଲାପରି ଲାଗୁଛି ଏବଂ କେଉଁ ଏକ ଅଦମ୍ୟ ଅଭିଳାଷ । ହେଲେ ମନେ ହେଉଛି ସେ ଜାଣିଶୁଣି ସେଥିର ବିଜୁଳିକୁ ବାନ୍ଧିଦେଇଛି ତା'କୁ ଉପହାରଯୋଗ୍ୟ ତଥା ଉପଭୋଗ୍ୟ କରିବାଲାଗି । କହୁଛି—ଏଇ ଦେଖ, ମୋର ଦେୟଟିକୁ ବଢ଼େଇଦେଲି ତୁମ ହାତକୁ । ହେଲା ? ଏବେ ବୁଝିପାରିବ ମୁଁ କ'ଣ ଚାହେଁ ତୁମମାନଙ୍କଠାରୁ । ମାନେ ବାଗ୍‌ଦେବୀଙ୍କଠାରୁ, ତୁମେ ସବୁ ଯାହାଙ୍କ ପାଖଲୋକ ହୋଇଗଲଣି । ତାଙ୍କ ଅଙ୍ଗରକ୍ଷୀର ସମ୍ମାନ ପାଇଲଣି କହିଲେ ଚଳେ ।

କେ-ବି-କେ ଆଉ ସହିପାରିଲେ ନାହିଁ ସେହି ଜଘନ୍ୟ ଦୃଶ୍ୟ । ହେଲେ କିଛି କରିବାର ଉପାୟ ନାହିଁ । ସେମାନେ କିଛି ଖରାପ ବ୍ୟବହାର କରି ନାହାନ୍ତି ତା'ପ୍ରତି, ଯେ ସେ ତାଙ୍କ ପ୍ରଶାସକପଣ ଜାହିର୍ କରିବେ । ନା ଉତ୍କଳକୁ କିମ୍ବା ଉତ୍କଳୀୟମାନଙ୍କୁ ପ୍ରତ୍ୟକ୍ଷ ଭାବରେ ନିନ୍ଦା ଦେଇ ନାହାନ୍ତି, ଅପମାନ ଦେଇ ଚାହାନ୍ତି, ଯେଉଁଥିରେ ତାଙ୍କର କିଛି କରିବା ଉଚିତ ଓଡ଼ିଆ ହିସାବରେ । ଅପରନ୍ତୁ

ହସ୍ତକ୍ଷେପ କଲେ ସେମାନେ ତାଙ୍କୁହିଁ ଅପମାନ ଦେଇପାରନ୍ତି, ତାଙ୍କ ଅଶ୍ଳୀଳ ହସରସକୁ ଆହୁରି ଉଚ୍ଛୁଳେଇଦେଇ । ଯେ ହାୟ, ନୌକରଶାହୀ ମୂର୍ଖ, ତମେ ଆମ ସାହିତ୍ୟିକ ପରିହାସକୁ ବୁଝିପାରିଲ ନାହିଁ !

ସେହେତୁ କେ-ବି-କେ ଆଉ ରହିପାରିଲେ ନାହିଁ ସେଠି । ଫେରିଆସିଲେ ଶୀତତାପନିୟନ୍ତ୍ରିତ କମ୍ପାର୍ଟମେଣ୍ଟ୍ ଭିତରକୁ । କମ୍ପାର୍ଟମେଣ୍ଟର ପ୍ରାୟ ଶେଷମୁଣ୍ଡରେ ଥିବା ତାଙ୍କ ସ୍ୱସ୍ଥାନକୁ । କିନ୍ତୁ ତାଙ୍କ ରାଗ ସହଜେ ଥଣ୍ଡା ପଡ଼ିଲା ନାହିଁ ଏବଂ ସେ ସ୍ଥିର କଲେ ଯେ ଦିଲ୍ଲୀରେ ପହୁଞ୍ଚିଲା ପରେ ଯଥାଶୀଘ୍ର, ସେ ସେଇ ଶୟଲା କି ଶୈଳ ଝିଅଟାକୁ ଶୁଣେଇବେ ଦି'ପଦ । ଛାଡ଼ିବେ ନାହିଁ । ମନେ ମନେ ଭାବୁଛି ସେ କେବଳ ଗୋଟାଏ ବଡ଼ କବି ନୁହେଁ, ଗୋଟାଏ ନୁର୍‌ଜାହାନ୍ କି ଲତା ମଙ୍ଗେସ୍କର୍ ମଧ୍ୟ !

ଅଗତ୍ୟା କେ-ବି-କେ ଜାଣିପାରିଲେ ନାହିଁ ଯେ ଶୈଳର ଅସ୍ୱସ୍ତି କେବଳ ତା' ଗୀତବୋଲାରେ ସରିଲା ନାହିଁ । ପରେ ଯାହା ଘଟିଲା, ସେଥିରେ ସେ କେବଳ ଅସ୍ୱସ୍ତି ବୋଧ କଲା ନାହିଁ । ସେ ମର୍ମାହତ ହେଲା ।

କ'ଣ ହେଲା କି, ଗାୟନ ପର୍ବ ପରେ ସେମାନେ ପୁଣି ସୁରୁ କରିଦେଲେ ତାଙ୍କ ସାହିତ୍ୟିକ ପରିଚର୍ଯ୍ୟା ଅଥବା ଗସିପ୍ । ଆଗାମୀ କବିତାପାଠ ଉତ୍ସବରେ ଯେଉଁମାନଙ୍କୁ ମଞ୍ଚରେ ସ୍ଥାନ ଦିଆଯିବ ବିଶିଷ୍ଟ ଅତିଥି ହିସାବରେ, ଯେହେତୁ ଆଖ୍ଲିଙ୍କ ପରେ ପରେ ସେଇମାନଙ୍କୁ ଆମନ୍ତ୍ରଣ କରାଯାଇଛି ନିଜ ନିଜ କବିତା ଓ ତା'ର ଇଂରେଜୀ ଅନୁବାଦ ଶୁଣାଇବା ପାଇଁ, ଏଥର ସେଇମାନେ ହେଲେ ତାଙ୍କର ଶିକାର । ପ୍ରଥମେ କାହିଁକି ଏଇ ପାଞ୍ଚଜଣଙ୍କୁ ବଛା ହୋଇଛି, କେଉଁ ହିସାବରେ, କେଉଁ ମାପକାଠିରେ ଏବଂ କେଉଁ ବିଦ୍ୱାନ୍‌ମାନଙ୍କ ସୁପାରିଶ ଅନୁଯାୟୀ ତା'ରି ଆଲୋଚନା ।

ସେହି ପରିପ୍ରେକ୍ଷୀରେ ଦୀପାଙ୍କର ଗାଙ୍ଗୁଲି ଗୋଟାଏ ମନ୍ତବ୍ୟ କଲେ, ବୋତଲର ଅବଶିଷ୍ଟାଂଶକୁ ବିଭିନ୍ନ ପାନପାତ୍ରରେ ଢାଳି ଦେଉଁ ଦେଉଁ । କହିଲେ—"କହିବି, କହିବି କେଉଁଥିପାଇଁ ସେମାନଙ୍କୁ ଏଇ ଅଗ୍ରାଧିକାର ଦିଆଯାଇଛି ? କହିବି ?"

ହେଲେ ତାଙ୍କୁ ଅନେକ ସମୟ ଲାଗିଲା କହିବାପାଇଁ । ଫଳରେ ଅନ୍ୟମାନେ ଅଥୟ ହୋଇ ଉଠିଲେ । ବିଶେଷତଃ ବୃଦ୍ଧ ତିୱାରୀଜୀ ।' କହିଲେ, "କୁହ, ଆଉଟ୍ ଉଇଥ୍ ଇଟ୍, ଫର୍ ଗଡ଼୍‌ସ୍ ସେକ୍ !"

ସେଇଠୁଁ ଦୀପାଙ୍କର କହିଲେ, ଆହୁରି କିଛି ସମୟ ନେଇ ଏବଂ ମୁରୁକିହସା ଦେଇ । ଗୋଟାଏ ବିରାଟ ରହସ୍ୟର ଉନ୍ମୋଚନ କଲାପରି—

"ମୁଁ ଜାଣିଛି ସେଇ ପାଞ୍ଚଜଣଙ୍କୁ ଏବଂ ତାଙ୍କ ମୁଖଶ୍ରୀ ବି' ବେଶ୍ ମନେ ପଡ଼ିଯାଉଛି ମୋର... (ପାନୀୟରୁ ଢୋକେ, ବିରାମ)... ସେମାନେ ମୋଟାମୋଟି ଏକାଭଳି ଦେଖିବାକୁ ।"

"ହ୍ୱାଟ୍ ଡୁ ୟୁ ମିନ୍ ?" ନାଥନ୍‌ଜୀ ପ୍ରଶ୍ନ କଲେ ତାଙ୍କ ମୁଣ୍ଡକୁ ବଙ୍କେଇଦେଇ । ସାମ୍ବାଦିକ ସୁଲଭ ପ୍ରତୀକ୍ଷା ତଥା ପରୀକ୍ଷାର ଠାଣିରେ ।

"ସେମାନେ ପ୍ରତ୍ୟେକେ ବୋକାଙ୍କ ପରି ଦିଶନ୍ତି । ବୁଝୁଛନ୍ତି ନା ମୁଁ କ'ଣ କହୁଛି ? ଏବଂ ତଳେଇ କରି ଦେଖିଲେ ମନେହେବ୍ ଯେ ସେମାନେ ମୂଳରୁ ବୋକା ଥିଲେ, ମଝିରେ ବୋକା ଥିଲେ, ଏବେ ମଧ୍ୟ ଅଛନ୍ତି । ହେଲେ ବର୍ତ୍ତମାନ ସେମାନେ ନିଜକୁ ଆଦୌ ନିର୍ବୋଧ ବୋଲି ଭାବୁନାହାନ୍ତି । ଅପରନ୍ତୁ ଗୋଟିଏ ଗୋଟିଏ ବୁଦ୍ଧ, ଯିଶୁଖ୍ରୀଷ୍ଟ, କି ରାମକୃଷ୍ଣ ପରମହଂସଙ୍କ ବୋଲି ମନେ କରୁଛନ୍ତି । ପରମ ସରଳତା, ପରମ କାରୁଣ୍ୟର ପ୍ରତିମୂର୍ତ୍ତି । ଆଧ୍ୟାତ୍ମିକତାର ପାଖାପାଖି । ଯେମିତିକି କେହି ତାଙ୍କ କବିତାକୁ ପିଲାଳିଆ ବୋଲି ଭାବିବ ନାହିଁ...

ଶ୍ରୋତାମଣ୍ଡଳୀ ସ୍ତବ୍ଧ । ହାସ୍ୟରସ ପୁଣି ଫୁଟିଉଠିବା ପୂର୍ବରୁ ଏକ ଗଭୀର ଅବବୋଧ, ଗାଳ୍ପିକ ଗାଙ୍ଗୁଲିଙ୍କର ନିପୁଣ ମନସ୍ତାତ୍ତ୍ୱିକ ଅନ୍ତର୍ଦୃଷ୍ଟିକୁ ନେଇ । ସେଇଠୁଁ କହିଲେ,

"ଅବଶ୍ୟ କିଏ ବେଶି ନିର୍ବୋଧ ଦେଖାଯାଏ ଏବଂ କିଏ କମ୍, ସେ କଥା ଭିନ୍ନ । ଯଥା ମୋ ପଡ଼ୋଶୀ ପ୍ରଦେଶର କବି, ଶ୍ରୀଯୁକ୍ତ ରାମହରି ଦାସ, ସେ ସବୁଠାରୁ ବେଶି ନିର୍ବୋଧ ଦେଖାଯାଆନ୍ତି... (ଶୈଳଜା ଉପରେ ଆଖି ପଡ଼ିଲାରୁ) ଆଇ ଆମ୍ ସରି... କିନ୍ତୁ ମୁଁ ତାଙ୍କୁ ନିନ୍ଦା କରି କହୁ ନାହିଁ ଏ କଥା । କହିବାକୁ ଗଲେ ମୁଁ ଯେଉଁ ସନ୍ଥ ମହାତ୍ମାମାନଙ୍କ କଥା କହିଲି, ସେମାନେ କ'ଣ ଆମର ଇତର ସାଧାରଣ ଦୃଷ୍ଟିରେ ବୋକାଙ୍କ ପରି ଦେଖାଯାଆନ୍ତି ନାହିଁ ଅଳ୍ପବହୁତ ?..."

କିନ୍ତୁ ସେତେବେଳକୁ ଶୈଳଜା ତାଙ୍କର ଏଇ ସଫେଇକୁ ଶୁଣିବାର ଅବସ୍ଥାରେ ନ ଥାଏ, ତା'ର ତାତ୍ପର୍ଯ୍ୟକୁ ବୁଝିବାପାଇଁ ଚେଷ୍ଟା କରିବା ଦୂରର କଥା । ଅପମାନବୋଧର ନିଆଁ ଜଳି ଉଠୁଥାଏ ଦପ୍‌ଦପ୍ ହୋଇ । ପାଟି ନ ଫିଟିଲେ ବି' ମୁହଁର ଥମ୍‌ଥମ୍ ଭାବ କହି ଚାଲିଥାଏ—

କଅଣ ହେଲା ?? ଆମ ରାମହରିବାବୁ ନିର୍ବୋଧ ? ପୁଣି ସବୁଠାରୁ ବେଶି ନିର୍ବୋଧ ? ଏଭଳି ଜଣେ ମିଷ୍ଟିକ୍ କବି, ବିଶ୍ୱବେଦନାରେ ଆପ୍ଲୁତ, ଯାହା ତାଙ୍କ ମୁହଁର ଚେହେରାରେ ମାଖି ହୋଇଥାଏ, ତାଙ୍କୁ ଚିହ୍ନିପାରିଲ ନାହିଁ ତମେମାନେ ? ତାଙ୍କ କାବ୍ୟମାନସର ଚେନାଏ କି ଚିରୁଡ଼ାଏ ଦୃଶ୍ୟ ହେଲା ନାହିଁ ତମକୁ ?

କବି ରାମହରି ଦାସ ନିର୍ବୋଧ ? ଆମ ରାମହରିବାବୁ ନିର୍ବୋଧ ? ଏଇ ଦି'ପଦ କଥାର କ୍ରୋଧ ଓ ବିସ୍ମୟ ଦୋହରେଇ ହେଉଥାଏ ଶୈଳଜାର ମନରେ, ଟ୍ରେନ୍‌ର ଛକ୍-ଛକାଛକ୍ ଶବ୍ଦ ସାଙ୍ଗରେ ତାଳ ଦେଲାପରି ଏବଂ ଏଭଳି ତୀବ୍ର ବେଦନାର ଅନୁଭବ ଥିଲା ତା' ଭିତରେ ଯେ ଅନେକେ ଭୁଲ୍ ବୁଝିବେ ସେଥିର ଏଇ ପରିଭାଷାଟିକୁ — କ'ଣ କହିଲେ ? ମୋର ଦିଅଁ, ମୋର କାବ୍ୟପୁରୁଷ ଜଣକ ନିର୍ବୋଧ ? ସତେ ?

## ଦୁଇ

ଦୀପାଙ୍କର ଗାଙ୍ଗୁଲି ଅଥବା ଶୈଳଜା ପଣ୍ଡାଙ୍କ ମତାମତକୁ ସ୍ୱାର୍ଥ ପ୍ରଣୋଦିତ ବୋଲି ନ କହିଲେ ମଧ ନିର୍ଭୁଲ୍ ବୋଲି ଦାବୀ କରିହେବ ନାହିଁ । ଯେତେହେଲେ ସେମାନେ ବାହାର ଲୋକ । କିନ୍ତୁ କବି ରାମହରିଙ୍କ ସବୁଠାରୁ ଅନ୍ତରଙ୍ଗ, ଯାହାଙ୍କ ଗର୍ଭରୁ ସେ ଜନ୍ମ ହୋଇଛନ୍ତି, ଯାହାଙ୍କ ସ୍ତନରୁ ସେ କ୍ଷୀର ଖାଇଛନ୍ତି (ଉଚିତରୁ ଅଧିକ), ଏବଂ ଯାହାଙ୍କ କୋଳରେ ସେ ଗେହ୍ଲେଇ ହୋଇଛନ୍ତି ବହୁ ବର୍ଷଯାଏଁ, ସେଇ ପରମ ଆଦରଣୀୟା ବୋଉ ହାରାମଣି ଦେବୀ କହିଥିଲେ ଦିନେ ପ୍ରକାଶ୍ୟରେ ଏବଂ ପୁଅର ବାପା ପାଖରେ ଥିଲାବେଳେ—

"କୋଉଠି ଥିଲା ଏଇ ବୋକା ଛୁଆଟା, ମୋରି କପାଳକୁ !"

ସ୍ନେହର ପରିହାସରେ କହି ନ ଥିଲେ । ଯମକୁ ଭୂତେଇବାପାଇଁ କହି ନ ଥିଲେ । ହୃଦୟର ବେଦନାକୁ ବ୍ୟକ୍ତ କରିପକେଇଲେ, ନିଜକୁ ଓ ଭଗବାନଙ୍କୁ ଶୁଣେଇବାପାଇଁ । ପୁଅର ବାପା ବନମାଳୀବାବୁ ଠାକୁରଘରକୁ ଯାଉଥିଲେ ସେତେବେଳେ, ଏବଂ ତାଙ୍କୁ ମଧ ସେଇ ପଦକ ଶୁଣିବାକୁ ପଡ଼ିଲା, ସେକଥା ଭିନ୍ନ । ତେବେ ସେ ବି' ତା'ର ପ୍ରତିବାଦ କରି ନ ଥିଲେ । ଈଷତ୍ ଏବଂ ଅନିର୍ଦ୍ଦିଷ୍ଟ ହସଟିଏ ହସି ଦେଇଥିଲେ, ତା'ର ଅର୍ଥ ଯାହା ହେଉ ପଛେ । ହୁଏତ କିଛି ଗୋଟାଏ କହିଥାଆନ୍ତେ, କିନ୍ତୁ ତାଙ୍କର ଡେରି ହୋଇଯାଉଥିଲା ଚକାଡୋଳାଙ୍କ ସାଙ୍ଗରେ କଥାଭାଷା ହେବାପାଇଁ ।

ପୃଥୁଳ ଅଢ଼େଇ ବର୍ଷର ଶିଶୁ ମାଦଳଙ୍କ ପରି ବସି ରହିଥାଏ ଭୂଇଁ ଉପରେ । ଏମିତି ଭାବରେ ବସି ରହିଥାଏ ଯେ ମନେହେବ ସେ ଗୋଟିଏ ଭୂଇଁଲଗା ଜୀବ ଏବଂ ତା'ର ଉଚ୍ଚ ସେତିକି । ହୁଏତ ଠିଆହୁଏ ବେଳେବେଳେ । କିନ୍ତୁ ତତ୍କ୍ଷଣାତ୍ ବସିପଡ଼େ ନାଥୁକିନି । ସତେକି ସେ ଗୋଟାଏ ସର୍କସ ଦେଖାଇଲା ତମକୁ ।

ସେଇଠୁଁ ସେ ଚାହେଁ ତମ ଆଡ଼କୁ ଏବଂ ହସିଦିଏ । ସେତେବେଳକୁ ତା' ହସଖଣ୍ଡକ ତା' ବାପା ପରି କି ମାଆ ପରି ଜାଣି ହେଉ ନ ଥିଲା । ତେବେ

ଦେଖଣାହାରୀ ଭାବିବାକୁ ବାଧ୍ୟ ହୁଏ ଯେ ଏଇଆକୁ କୁହନ୍ତି ନିର୍ବୋଧ ହସ । କାରଣ ସବୁ ଶିଶୁମାନେ କ'ଣ ଏମିତି ହସନ୍ତି ? ନାଇଁ ତ ? ସାଧାରଣତଃ ତାଙ୍କ ହସ ସାଙ୍ଗକୁ ନାନାଦି ପାଟିତୁଣ୍ଡ, ଦୁଷ୍ଟାମି ଏବଂ ସ୍ୱାଧିକାର ଜଣେଇବାର ତତ୍ପରତା ଉତୁରିଆସେ । କିନ୍ତୁ ରାମୁର ହସ କେବଳ ହସ ହୋଇ ରହିଯାଏ । ଆଉ କିଛି ନାହିଁ ତା'ପରେ । ନା କଥା ନା ବାର୍ତ୍ତା ନା ଆଉ କଅଣ । ସକ୍ରିୟତାର କ୍ଷୀଣତମ ଉନ୍ମେଷ ଦେଖାଯାଏ ନାହିଁ ତା'ର ସେଇ ଚେପ୍ଟା ନାକ ଗାଲଓହଳା ମୁହଁରେ । ଚାହାଣିକୁ ହୁଏତ କିଏ ଭବିଷ୍ୟତରେ ଗହୀର ବୋଲି କହିବ, କିନ୍ତୁ ଏଇକ୍ଷଣି ତା'କୁ ମାନ୍ଦା ଛଡ଼ା ଆଉ କିଛି କହିବାର ଉପାୟ ନାହିଁ । ସେହେତୁ ତା' ନିଜ ମାଆ ତା'କୁ ବୋକାଛୁଆ ବୋଲି କହିଲେ, ତାଙ୍କ ଦୁଃଖବୋଧକୁ ସମ୍ଭାଳି ନ ପାରି, ଏଥିରେ ତାଙ୍କୁ ଦୋଷ ଦେବାର କିଛି ଅଛି କି ?

ମାଆକୁ ପାଖରେ ଦେଖିଲେ ତା'ର କେବଳ ଗୋଟିଏ ଭାବାନ୍ତର ପରିଲକ୍ଷିତ ହୁଏ, ମାଆ ଯଦି ତା'କୁ ଅନେଇ ରହେ ଏମିତି, ଆପଣା ଦୁଃଖକୁ ଚାକୁଲେଇବା ପାଇଁ ବା ଯେ କୌଣସି କାରଣରୁ । ରାମୁକୁ ପୁଣି ଭୋକ କରେ ଏବଂ ସେ ମାଆ ଆଡ଼କୁ ହାତ ବଢ଼ାଏ, ଗୋଟାଏ ଦୁର୍ବୋଧ ଶବ୍ଦ କରି । ଯାହାର ଅର୍ଥ କେବଳ ତା' ମାଆ ବୁଝିପାରିବ—ଦୁ' ଦୁ' ଦେ !

ସେଇଠୁଁ ମାଆ ହାରାମଣି ତାଙ୍କ ବୋକାଛୁଆକୁ ଉଠେଇ ଆଣନ୍ତି ଉପରକୁ ଓ ତା' ମୁହଁକୁ ମାଡ଼ିଦିଅନ୍ତି ତାଙ୍କ ବିଧ୍ୱସ୍ତ ଛାତିରେ, ନିଜର କୁହା-ଅକୁହା ଭର୍ତ୍ସନାପାଇଁ କ୍ଷମା ମାଗିଲାପରି ।

ଯାହାହେଉ ଏଇ ଶିଶୁ ଦିନେ ଚାଲିବାକୁ ଲାଗିଲା, କଥା କହିଲା ଏବଂ ଦୁ' ଦୁ' ଖିଆ ଛାଡ଼ିଦେଲା । ହେଲେ ତା' ମୁହଁର ଚେହେରା ଓ ସେଥିରେ ପରିପ୍ରକାଶର ଏଭଳି କିଛି ପରିବର୍ତ୍ତନ ଦେଖାଗଲା ନାହିଁ, ଯେଉଁଥିରେ ହାରାମଣି ନିଜକୁ ବୋଧ ଦେଇପାରିଥାଆନ୍ତେ — ରୂପ ଯାହାହେଉ ପଛେ, ମୋ ପୁଅଟା କ'ଣ କମ୍ ବୁଦ୍ଧିଆ ହେବ ବୋଲି ଭାବିଛ ? କେବଳ ଏତିକି ତାଙ୍କ ମନରେ ଆସିଲା ଯେ ତାଙ୍କ ପୁଅଟା ଶାନ୍ତ ହେବ ଅନ୍ତତଃ । କାହାରି କିଛି ଅନିଷ୍ଟ କରିବ ନାହିଁ । କିନ୍ତୁ ବିଚରା କଷ୍ଟ ପାଇବ ସେଥିପାଇଁ, ଆମର ଏଇ ଯେଉଁ ଫିସାଦିଆ ଦୁନିଆଁ— ।

ରାମୁକୁ ପାଞ୍ଚବର୍ଷ ପୂରା ହୋଇସାରିଥାଏ, ଯେତେବେଳେ ବନମାଳୀବାବୁ ହଠାତ୍ ଦିନେ ଘୋଷଣା କଲେ ତାଙ୍କ ପତ୍ନୀଙ୍କ ଆଗରେ ଯେ ତାଙ୍କ ପୁଅ ଗୋଟାଏ କବି ହେବ ।

"କଅଣ ହେବ ?" ହାରାମଣି ପଚାରିଲେ, ଆଖି ଦି'ଟାକୁ ଫାଡ଼ିଦେଇ ।

"କବି ହେବ, କବି ! ବୁଝିପାରୁନା' ତା'ମାନେ ?" କହି ହୋ' ହୋ' ହୋଇ ହସିଲେ, ସର୍ବଜ୍ଞାନ୍ତା ସ୍ୱାମୀମାନେ ଯେମିତି ହସନ୍ତି ତାଙ୍କ ଦରପାଠୁଆ ସ୍ତ୍ରୀମାନଙ୍କ ଆଗରେ ।

"ତମ ମୁଣ୍ଡ ହେବ !"

ହାରାମଣିଙ୍କର ଏହି ପ୍ରକାର ମାଇପିସୁଲଭ ପ୍ରତିକ୍ରିୟା ହେତୁ ବନମାଳୀବାବୁ ଆହୁରି ଥୋଡ଼ାଏ ହସିଲେ ସିନା, ସେ ତାଙ୍କ ଘୋଷଣାର କାରଣ ଦର୍ଶାଇବାର ଦାୟିତ୍ୱରୁ ରକ୍ଷା ପାଇଗଲେ । କିନ୍ତୁ ତାଙ୍କୁ ପଚରା ହୋଇଥିଲେ ସେ ଗୋଲିଆ ଗୋଲିଆ କରି ଅନେକ କିଛି କହିପାରିଥାଆନ୍ତେ । ଯଥା — ତମର ଲକ୍ଷ୍ୟ କରିବା ଉଚିତ ଯେ କଥା କହି ଶିଖିଲା ପରେ ମଧ ସେ ଚିଟ୍‌କରି କିଛି କହୁ ନାହିଁ ରୋକ୍‌ଠୋକ୍ ଦାବୀ କଲାପରି କିମ୍ବା ଆଦେଶ ଦେଲାପରି । ତା' ବକ୍ତବ୍ୟକୁ ଲମ୍ବେଇ କରି କହୁଛି — ଦେ-ଏ-ଏ, ମତେ ଖାଇବାକୁ ଦେ-ଏ-ଏ... ତମକୁ ମା-ଆ-ଆ-ରି-ବି-ଇ-ଇ... ଇତ୍ୟାଦି ଏବଂ ପ୍ରତ୍ୟେକରେ ଗୋଟାଏ ସ୍ୱର । ଖାଲି କଥାକୁହା ଢଙ୍ଗ ନୁହେଁ, ତା'ର ସମସ୍ତ ଚାଲିଚଳଣରେ ଗୋଟାଏ ନରମ ଭାବ ନାହିଁକି ? କାନ୍ଦିଲେ ବି' ସେ କ'ଣ କେବେହେଲେ ଆଁଟାଏ କରି କାନ୍ଦିଛି, ରାକ୍ଷସଙ୍କ ପରି, ପଡ଼ୋଶୀଘର ମୁନ୍‌ନା ଯେମିତି କାନ୍ଦେ ? କେବଳ ସୁଁ ସୁଁ ହୋଇଛି କିମ୍ବା ବଡ଼ମଣିଷଙ୍କ ପରି ନୀରବରେ ଲୁହ ଗଡ଼େଇଛି । ସତେକି କିଛି ଲାଭ ନାହିଁ ପାଟିତୁଣ୍ଡ କରି, କାରଣ ଦୁନିଆଁ ତାକୁ ବୁଝିବାପାଇଁ ଅକ୍ଷମ ।

ତମେ ଦେଖିଥିବ ସେ କେମିତି ଘଣ୍ଟା ଘଣ୍ଟା ଧରି ଏକୁଟିଆ ରହୁଛି, ନିଜକୁ ନିଜେ । ମନକୁ ମନ ଖେଳୁଛି । ଆଗେ ଖେଳୁଥିଲା କଣ୍ଢେଇ ସାଙ୍ଗରେ । ବଡ଼ ହେଲାରୁ ଯେ କୌଣସି ବସ୍ତୁ ସାଙ୍ଗରେ । ଏପରିକି ତା' ବହି ସିଲଟ୍ ସାଙ୍ଗରେ, ମୋ ପୋଥିପତ୍ର ଆଉ ତମ ଆଳିମାଳିକା ସାଙ୍ଗରେ । ହେଲେ ସେ ଆଉ ଆମର କେଇଟା ଜିନିଷ ଭାଙ୍ଗିଛି, ଛିଣ୍ଡେଇଛି, କି ହଜେଇଦେଇଛି କହିଲ ?

ସାବଲୀଳ ସ୍ୱରବିନ୍ୟାସଠାରୁ ଆରମ୍ଭ କରି ଏଇ ସବୁ ବଛା ବଛା ଭାବଗୁଣ—କାରୁଣ୍ୟ, କୋମଳତା, ଅଚଞ୍ଚଳ ଆତ୍ମନିବେଶ, ଆତ୍ମଭୋଳାପଣ ଇତ୍ୟାଦି କ'ଣ ଯଥେଷ୍ଟ ଲକ୍ଷଣ ଯୋଗାଉ ନାହିଁ ଯେ ଆମ ପୁଅ କବିଟିଏ ହେବାପାଇଁ ଜନ୍ମ ହୋଇଛି ?

କିନ୍ତୁ ମୁଁ ଖାଲି କହୁ ନାହିଁ ତା'ର କବିପ୍ରାଣ କଥା, ଯାହାକୁ ହୁଏତ ତମେ ଚିହ୍ନିପାରିଲ ନାହିଁ ଆଜିଯାଏଁ । ତା'ର ପ୍ରମାଣ ମଧ ଅଛି ମୋ ହାତରେ, ତା'ର ଗଜୁରି ଉଠୁଥିବା କବିମାନସର । ଦେଖିଛ ସେ କେମିତି ସହଜରେ ମନେ

ରଖି ନେଉଛି, ମୁଁ ଯେଉଁ ଭଜନ ବୋଲୁଛି ଠାକୁର ଘରେ ? କେତେବେଳେ 'କୃପା ଚନ୍ଦ୍ର ବଦନ' ତ କେତେବେଳେ 'ତକା ମନ ଚାଲ ଯିବା', ପୁଣି କେତେବେଳେ 'ମନିମା ସୁନିମା ହଉ' । କେଇଟା ପିଲାଙ୍କର ଆଗ୍ରହ ଅଛି ଗୀତଟାକୁ ଏମିତି ମନେ ରଖି ଗାଇବାପାଇଁ ? ପୁଣି ଇଏ କୋଉ ସିନେମା ଗୀତ ନୁହେଁ, ଯାହାକୁ ସେ ଶୁଣୁଥିବ ରେଡ଼ିଓରେ କି ଦୋକାନ ବଜାରର ଲାଉଡ୍‌ସ୍ପିକର୍ ଦେଇ ? ଇଏ ତା' ବାପା ବୋଲୁଥିବା ଭଜନ, ଆମ ପୁରୁଣା କବିମାନଙ୍କ ଗୀତ, ଯାହାକୁ ଭୁଲିଗଲେଣି ଆଜିକାଲିକା ପିଲା । ତା'ମାନେ ସେ କେବଳ ସଙ୍ଗୀତପ୍ରିୟ ନୁହେଁ, ସେ ପସନ୍ଦ କରେ କବିଙ୍କ ସଙ୍ଗୀତ । ବୁଝୁଛ ଇଏ କେତେ ବଡ଼ ଗୁଣ ଆମର ଏଇ ଘୋର କଳିକାଳରେ ?

ହେଲେ କେବଳ ଏତିକିରେ ମୁଁ ଛାତି ଫୁଲେଇ କହିପାରି ନ ଥାଆନ୍ତି ଯେ ମୋ ପୁଅ କବି ହେବ । କବିମାନଙ୍କ କଳା ମୋତେ ବେଶ୍ ମାଲୁମ୍ ଅଛି । ତମକୁ କହିଛି କେତେଥର, କିନ୍ତୁ ତମେ ସେଥିରେ କାନ ଦେଇ ନାହଁ, ଯେ ମୁଁ ବି' ଦିନେ କବିତା ଲେଖୁଥିଲି । ଅଭ୍ୟାସଟାକୁ ବଢ଼େଇପାରିଲି ନାହିଁ, କାହିଁକିନା ସରସ୍ୱତୀ କି ଲକ୍ଷ୍ମୀ କେହି କୃପା କଲେ ନାହିଁ ମୋ ଉପରେ, ଯେଉଁଥିପାଇଁ ମୁଁ ଖୋଦ୍ ଜଗନ୍ନାଥଙ୍କୁ ଧରିଲି । ଛାଡ଼ ସେ କଥା... କିନ୍ତୁ ମୋତେ ଜଣା ଯେ ଏଇ କବିତାଲେଖାର ଗୋଟାଏ ବଡ଼ ଉପାଦାନ ହେଉଛି ଉପମା । ଯିଏ ଯେତେ ନୂଆ ନୂଆ ଉପମା ତିଆରି କରିପାରିବ, ସୁନ୍ଦରୀର ମୁହଁକୁ କେବଳ ଚନ୍ଦ୍ର ସାଙ୍ଗରେ ତୁଳନା ନ କରି ଠିକ୍ ଠଅପରି ଗୋଲ୍ ବୋଲି କହିପାରିବ, ସେହି ସେତେ ବଡ଼ କବି ହୋଇପାରିବ । ମାନେ ଯେଉଁଭଳି ଉପମାରେ ଲୋକେ ଚମକି ଉଠିବେ, ଆଉ କହିବେ—ଆରେ ସତେତ ! ଅଦ୍ଭୁତ, ହେଲେ ସତ ନୁହେଁ କି ? ଆଉ ଜାଣିବାକୁ ଚାହଁ କ'ଣ କହିଲା ତମ ପୁଅ, ଏଇ ଏବେ, ଦି'ଦି'ଟା ଦୃଶ୍ୟ ଦେଖି ? ଶୁଣ—

ମୁଁ ତା'କୁ କୋଳରେ ବସେଇ ସୂର୍ଯ୍ୟାସ୍ତ ଦେଖଉଥିଲି । ତମେ ତ ଜାଣିଛ ସେ କେମିତି କୋଳରେ ବସିବାକୁ ଭଲପାଏ । ବସିଥାଏ ତ ବସିଥାଏ । ଅନ୍ୟ ପିଲାଙ୍କ ପରି ଉଠି ପଳେଇଯାଏ ନାହିଁ ଫୁଲଟାଏ ଛିଣ୍ଡେଇବ କି ପ୍ରଜାପତି ପଛରେ ଗୋଡ଼େଇବ ବୋଲି । ଶାନ୍ତିରେ ବସିଥାଏ ମୋ କୋଳରେ, ଆଉ ମୁଁ ତା'କୁ କହୁଥାଏ ଦେଖେ କେଡ଼େ ସୁନ୍ଦର ଦିଶୁଛି ଏଇ ଦୃଶ୍ୟ । ସୂର୍ଯ୍ୟଙ୍କ ଗୋଲେଇ ଦିଶୁ ନାହିଁ । ସେ ଅଛନ୍ତି ଖଣ୍ଡି ଖଣ୍ଡି ଧଳା ମେଘ ତଳକୁ, କିନ୍ତୁ ମେଘସବୁ କେମିତି ନାଲି ପଡ଼ିଯାଇଛି, ପୂରାପୂରି ନାଲି ନୁହେଁ, ଖାଲି କଡ଼ଗୁଡ଼ାକ...

ସେଇଠୁଁ ସେ ହଠାତ୍ କହିଉଠିଲା ମୋତେ ଚମକେଇଦେଇ—''ଛେନା ତାଡ଼ିଆ'' !

ଏଁ ? କ'ଣ କହିଲୁ ? ହେଲେ ସେ ଆଉ କିଛି କହିଲା ନାହିଁ । ତା' ଅଭିନବ ଉପମାର ବ୍ୟାଖ୍ୟା କଲା ନାହିଁ । କିନ୍ତୁ ମୁଁ ବୁଝିଲି । ଖଣ୍ଡି ଖଣ୍ଡି ଦରପାଚିଲା ଛେନା ଶୋଭା ପାଉଛି କଡ଼େଇ ଭିତରେ । ତା' ବୋଉ କେତେଥର କରିଛି ଆମ ଘରେ, ବିଶେଷତଃ ପର୍ବପର୍ବାଣିରେ । ଆଉ ଆମ ପୁଅ ଦେଖିଛି ତା'କୁ, ମୁଗ୍ଧ ହୋଇଛି । ଯେମିତି ସେ ମୁଗ୍ଧ ହେଉଛି ଏଇ ସୂର୍ଯ୍ୟାସ୍ତକୁ ଦେଖି ଏବଂ ଦୁଇଟିର ରୂପଶ୍ରୀ ଏକାଭଳି ମନେହେଉଛି ତା'କୁ । ଆଉ କିଏ ଏମିତି ଭାବିପାରିବ, ଆମର କୁନି କବି ଛଡ଼ା ? ମୁଁ ତା' ମୁହଁକୁ ଅନେଇଲି, ପରମ ଶ୍ରଦ୍ଧାରେ ମାଖିଦେଲି ତା'କୁ । ଟୋକା ମୁରକି ମୁରକି ହସୁଥାଏ ମୋ ଆଡ଼କୁ ଚାହିଁ, ତା' ଛେନା ତାଡ଼ିଆକୁ ଦିବ୍ୟ ଉପଭୋଗ କଲାପରି ।

ଦ୍ୱିତୀୟ ଉପମାଟି ଆହୁରି ଚମକପ୍ରଦ । ତା'କୁ ଦୃଶ୍ୟ ବୋଲି ହୁଏତ କୁହାଯିବ ନାହିଁ । ପ୍ରକୃତି ସାଙ୍ଗରେ କିଛି ସମ୍ପର୍କ ନାହିଁ ତା'ର । ଘରକରଣାର ଗୋଟିଏ ମାମୁଲି ବସ୍ତୁ । କାଠ ଚଉକିଟାଏ ଏବଂ ତା'ର ଗୋଟାଏ ଗୋଡ଼ ଭୂଇଁରେ ଲାଗୁ ନାହିଁ ଭଲ ଭାବରେ । ନ ଲାଗିଲା ନାହିଁ, କ'ଣ ଭାସିଯାଉଛି ସେଥିରେ ? କିନ୍ତୁ ଆମ ପୁଅର କବିତ୍ୱ ତା'କୁ ଉସ୍‌କେଇଲା । ଆଉ ସେ ମୋତେ ଡାକି କ'ଣ କହୁଛି ଜାଣିଛ ? କହିଲା— ବାପା, ଦେଖ ... ଚଉକି ଗୋଡ଼ ଟେକିଛି... ତା'କୁ ପିମ୍ପୁଡ଼ି କାମୁଡୁଛି । ମୁଁ ପ୍ରଥମେ ବୁଝିପାରିଲି ନାହିଁ ସେ କ'ଣ କହୁଛି । ହେଲେ ବୁଝିଲାରୁ ଆକାଶରୁ ଖସିଲି । କେଉଁ ପାଞ୍ଚବର୍ଷିଆ ପିଲା ଏତେ ଜୀବନ୍ତ କରି ଥୋଇବ ଭଙ୍ଗା ଚଉକିଟାକୁ ? କ'ଣ ନା ବିଚରାକୁ ପିମ୍ପୁଡ଼ି କାମୁଡୁଛି, ସେଇଲାଗି ସେ ଗୋଡ଼ ଟେକିଛି ।

ଅବଶ୍ୟ ବନମାଳୀବାବୁ ଏତେଗୁଡ଼ାଏ କଥା କହିପାରି ନ ଥାଆନ୍ତେ ହାରାମଣିକୁ । ତାଙ୍କର ଅଭ୍ୟାସ୍ ନୁହେଁ କୌଣସି ବିଷୟର ବ୍ୟାଖ୍ୟା ବିନ୍ୟାସ କରିବା ପତ୍ନୀଙ୍କ ଆଗରେ ବିଶେଷତଃ ତାହା ଯଦି ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । ଠିକେ ଠିକେ କିଛି କହିବାକୁ ବାଧ ହୋଇଥାଆନ୍ତେ, ହୁଏତ, ଯଦି ହାର କଥାଟାକୁ ଏମିତି ଉଡ଼େଇ ଦେଇ ନ ଥାଆନ୍ତା, ତା' ମାଇପି ଢଙ୍ଗର ବାହାଦୁରି ଦେଖାଇଲା ପରି । ଯାହାହେଉ ସେ ବର୍ତ୍ତିଗଲେ ସେହି ପ୍ରକାର ଦାୟିତ୍ୱରୁ । କିନ୍ତୁ ସେ କୃତନିଶ୍ଚୟ ହେଲେ ଯେ ସେ ପୁଅକୁ ପାରୁପର୍ଯ୍ୟନ୍ତ ପ୍ରୋତ୍ସାହିତ କରିବେ, ରୀତିମତ କବିଟିଏ ହେବାପାଇଁ । କହିଲେ, ରାମୁ ହେଉଛି ତା' ବାପର ପୁଅ । ଲକ୍ଷ୍ମୀ ସରସ୍ୱତୀ ମୋ ଉପରେ ଦାଉ ସାଧିଲେ ବୋଲି ମୁଁ ସିନା ଆଗେଇପାରିଲି ନାହିଁ, ମୋ ପୁଅର ହେବ ନାହିଁ ସେଇ ଦଶା । ତା' ବାପ ଏତେ ଗରିବ ନୁହେଁ ମୋ ବାପାଙ୍କ ପରି । ମୁଁ ମୋ ପୁଅକୁ ପାଠ ପଢ଼େଇବି, ତା'କୁ ଉଚ୍ଚଶିକ୍ଷା ଦେବି ଏବଂ ତା'କୁ

ସବୁମତେ ଉସ୍‌କେଇବି କବିତା ଲେଖିବାପାଇଁ । ସେ ଜଜ୍, ମାଜିଷ୍ଟ୍ରେଟ୍ ହେଉ, କି ବ୍ୟବସାୟୀ, କି ଆଉ ଯାହା, ସେ ଗୋଟାଏ କବି ହେବ । ଅଲବତ୍ ହେବ ।

ବୀଜ ବପନରେ ଉଣା କଲେ ନାହିଁ ବନମାଳୀବାବୁ । ରାମୁକୁ କେତେ ଭଜନଗୀତ ଶିଖେଇଲେ, ଏକାଠି ଗୀତ ବୋଲିଲେ ତା' ସାଙ୍ଗରେ ଏବଂ ଭକ୍ତ କବିମାନଙ୍କଠାରୁ ଆରମ୍ଭ କରି ରାଧାନାଥ, ମଧୁସୂଦନଙ୍କ ବିଭିନ୍ନ କାବ୍ୟ କବିତା ପଢ଼େଇଲେ ଓ ବୁଝେଇଲେ (ତା'ଆଗକୁ ସେ ବିଶେଷ କିଛି ବୁଝନ୍ତି ନାହଁ) ଏବଂ ତା'କୁ ବର୍ଷାଋତୁ, ସମୁଦ୍ରକୂଳ, ଚିଲିକା ଆଦି ଦେଖିଥିବା ପ୍ରାକୃତିକ ଦୃଶ୍ୟ ଉପରେ ରଚନା ଲେଖିବାକୁ କହିଲେ । ରସମୟ ଗଦ୍ୟ ଲେଖୁଁ ଲେଖୁଁ ପଦ୍ୟ ଆପେ ଆପେ ଆସିଯିବ, ଏଇ ଆଶାରେ ଏବଂ ସେ ସାହିତ୍ୟରେ ଭଲ ମାର୍କ ରଖିଲାରୁ ତା'କୁ ବାରମ୍ବାର କୁଣ୍ଢେଇ ପକେଇଲେ । କିନ୍ତୁ ଦୁଃଖର ବିଷୟ, ଯଦିଓ ସେ ତା'ର ଆଭାସ ପାଇଲେ ନାହିଁ, ରାମୁର ପ୍ରଥମ ଉଦ୍ଦେଶ୍ୟ ହେଲା, ତା'କୁ ଦଶବାର ବର୍ଷ ହେଲାବେଳକୁ, ଯେ ସେ ତା' ବାପାଙ୍କ ଇଚ୍ଛାକୁ ସ୍ୱୀକାର କରିବ ନାହିଁ ।

କାହିଁକିନା ସାଙ୍ଗ ପିଲାମାନେ ତା'କୁ ଚିଡ଼ଉଛନ୍ତି ଯେ ସେ ମାଇଚିଆଟା । କୋଳପଶା । କାରଣ ସେ ସେମାନଙ୍କ ସାଙ୍ଗରେ ଦଉଡ଼ଧାପଡ଼ କରିପାରେ ନାହିଁ । ମୋଟ ଉପରେ ତା'ର ଇଚ୍ଛା ହୁଏ ନାହିଁ ତାଙ୍କ ସାଙ୍ଗରେ ହେଁ ହେଁ ଫେଁ ଫେଁ ହୋଇ ତୁଚ୍ଛାଟାରେ ଝଡ଼େଇ ହେବାକୁ । ହେଲେ ଯେତେବେଳେ ମିଶେ ତାଙ୍କ ସାଙ୍ଗରେ ଏବଂ ଅଗତ୍ୟା ତା'କୁ ଲଢ଼ିବାକୁ ପଡ଼େ ମଝିରେ ମଝିରେ । ତା'କୁ ଶୋଚନୀୟ ଭାବରେ ହାର୍ ମାନିବାକୁ ହୁଏ । ସେଇଠୁଁ ସେ ତା' ବାପା ଉପରେ ରାଗିବ ନାହିଁ ତ ଆଉ କ'ଣଟା କରିବ ?

କୁହେ ତମରି ଯୋଗୁଁ ମୁଁ ଏମିତି ହେଲି । ତମେ ମୋତେ ବାନ୍ଧିରଖିଛ ତମ ପାଖରେ । ଗୀତ ଶିଖଉଛ, ଗୀତ ବୋଲଉଛ, ଆଉ କହୁଛ କ'ଣ ନା ମୁଁ ଗୋଟାଏ କବି ହେବି । କବି ନା ଛେନାଗୁଡ଼ ପାଚିଲା କଦଳୀ !

ରାମୁ ଜାଣିବାକୁ ଚାହେଁ ନାହିଁ, ଜାଣିଲେ ମଧ୍ୟ ମାନିବାକୁ ଚାହେଁ ନାହିଁ ଯେ ଇଏ ତା' ବାପାଙ୍କର ଦୋଷ ନୁହେଁ, ତା' ନିଜ ଦୋଷ । ସେ ତା' ମାଆଠାରୁ ଦୁ'ଦୁ' ଖାଉଥିଲା ଅଢ଼େଇବର୍ଷଯାଏଁ । ଏବଂ ସେହିପ୍ରକାର ମାନସିକତା ନେଇ ସେ ଚାଲିଆସିଲା ତା' ବାପାଙ୍କ ପାଖକୁ, ଟିକିଏ ବଡ଼ ହେଲାରୁ । ଏ କଥା ମଧ୍ୟ ସତ ଯେ, ତା'କୁ ତା' ବାପାଙ୍କ ସାହଚର୍ଯ୍ୟ ଭଲ ଲାଗେ ତଥା ଗୀତ ବୋଲିବାକୁ ଭଲ ଲାଗେ ଏବଂ ପାଠପଢ଼ାରେ ସାହିତ୍ୟ ବେଶି ସୁହାଏ ତା'କୁ ଅଙ୍କଫଙ୍କ ଠାରୁ ।

କିନ୍ତୁ ହାୟ ! ଏକଥା ମଧ୍ୟ ସତ ଯେ ବାରବର୍ଷ ବେଳକୁ ତା' ମୋଟାପଣ ଯଥେଷ୍ଟ କମି ଆସିଥିଲେ ମଧ୍ୟ ସେ ତଥାପି ଅଦ୍ଭୁତ ନିର୍ବୋଧଙ୍କ ପରି ଦେଖାଯାଏ, ତା'ର ଚେହେରାକୁ ନେଇ । ଗୋଲେଇ ମୁହଁ, ଚେପ୍‌ଟା ନାକ ଓ ମଳିଚିଆ ଆଖିଡୋଳାର ସ୍ତିମିତ ଚାହାଣି ହେତୁ । ଯଦିଓ ବନମାଳୀବାବୁ ତା' ଗଭୀର ଚାହାଣିକୁ ଚିହ୍ନିପାରିଲେଣି ଏବଂ କୁହନ୍ତି ଯେ ଏଇ ଚାହାଣି ଓ ଏଇ ପ୍ରଶସ୍ତ କପାଳ ଖାପ୍ ଖାଇଯାଉଛି ତା'ର ସମସ୍ତ ହାବଭାବ ଓ କ୍ରିୟାକଳାପ ସାଙ୍ଗରେ । ଦୁନିଆଁକୁ ଚିହ୍ନେଇଦେଉଛି ଯେ ମୋ ପୁଅ ଗୋଟାଏ ଭାବୁକ । କିଓ, ଭାବୁକ ନ ହେଲେ ସତସତିକା କବି ହେବ କେମିତି ?

ବାପା ଯେତିକି କହୁଥାଆନ୍ତି ଏହି ପ୍ରକାର କଥା ତା' ବୋଉକୁ ଚ୍ୟାଲେଞ୍ଜ୍ କଲାପରି, ଅଥବା ବାହାର ଲୋକଙ୍କ ଆଗରେ ପୁଅର ବଡ଼େଇ କରିବାପାଇଁ, ରାମୁ ସେତିକି ରାଗୁଥାଏ ତାଙ୍କ ଉପରେ । ... ଓଃ ! କ'ଣ ମିଳିବ ମୋତେ ଏଥିରୁ ? ସାହସ ଅଛି ଯଦି କହୁନାହାଁନ୍ତି ଗୌର, ସୀତାକାନ୍ତ, ପହଲି, ଉପେନ୍ଦ୍ର ଆଦି ମୋ ସାଙ୍ଗମାନଙ୍କ ଆଗରେ ? ଆଉ ଆମ କ୍ଲାସ୍‌ର ସୁନ୍ଦରୀତରା ଛନ୍ଦା ଆଗରେ, ଯାହାକୁ ନେଇ ସେମାନେ ଚିଡ଼ାନ୍ତି ମୋତେ, କୁହନ୍ତି ଯେ ସେ ଠିକ୍ କରିଛି ଯେ ମୋରି ଗଳାରେ ବରଣମାଳା ଦେବ କାହିଁକିନା ଏଭଳି ସୁନ୍ଦର ବର ତା'କୁ ମିଳିବେ ନାହିଁ ପୃଥିବୀରେ ? ହଁ, ମୁଁ ଅସୁନ୍ଦର ଏବଂ ଅସୁନ୍ଦର ବୋଲି ବୋକା, କାହିଁକିନା ଜ୍ୟୋତି ନାହିଁ ମୋ ଚାହାଣିରେ, ହସରେ, କି ଆଉ କୋଉଥିରେ । ବୁଦ୍ଧି ଚମକୁ ନାହିଁ ମୋ ଚେହେରାରେ । ମୁଁ ସାହିତ୍ୟରେ ଫାଷ୍ଟ୍ ହେଲେ କେତେ କି ବାପାଙ୍କ କବି !

ମୋ ଦେହରେ ଗଳିଯାଏ ବୋଉ ଯେତେବେଳେ ସଫେଇ ଦେଲାପରି କୁହେ ଯେ ମୋ ପୁଅର ମୁହଁ 'ବାବୁ' ପରି । ବାବୁର ଅର୍ଥ ଫୁଲୁକା ଗାଲ, ଗୋଲ୍‌ଗାଲ୍ କଣ୍ଢେଇ ମୁହଁ । ମୋର ଇଚ୍ଛା ହୁଏ କହିବି ଯେ ତୁ ମିଛ କହୁଛୁ, ତୋ ପୁଅର ମାନ ବଞ୍ଚେଇବାପାଇଁ ଅନ୍ୟମାନଙ୍କ ଆଗରେ । କାହିଁକିନା ରାଗିଲାବେଳେ ତୁଇ ମୋତେ ଜାଗୁଲେଇମୁହାଁ ବୋଲି କହିଛୁ । କୁଆଡ଼େ ଜାଗୁଲେଇ ଠାକୁରାଣୀଙ୍କ ମୁହଁ ମୋ ପରି । ଅନ୍ତତଃ ନାକ ନାହିଁ ତାଙ୍କର ସିନ୍ଦୂରବୋଳା ମୁହଁରେ, ଆଉ ଯାହା ଥାଉ ନ ଥାଉ ।...

ତଥାପି ରାମହରି ଭଲ ପଢ଼ିଲା । କେବଳ ଇଂରାଜୀ ଓ ଓଡ଼ିଆରେ ଫାଷ୍ଟ ହେଲା ନୁହେଁ, ଲେଖାରେ ଶବ୍ଦଯୋଜନା ଓ ଶୈଳୀର ଉତ୍କର୍ଷ ହେତୁ ଇତିହାସ, ଭୂଗୋଳ, ସମାଜବିଜ୍ଞାନ ଆଦି ବିଷୟରେ ମଧ୍ୟ ବେଶ୍ ଟାଣୁଆ ମାର୍କ୍ ରଖିଲା । ଅଙ୍କରେ ମଧ୍ୟ ପାସ୍ କରିଗଲା । ସେହେତୁ କ୍ଲାସ୍‌ରେ ପୋଜିସନ୍ ରଖିଲା ।

ପ୍ରାୟଶଃ ଧ୍ରୁବ ଫାଷ୍ଟ, ଆଉ ଇଏ ସେକେଣ୍ଡ । ପୁରସ୍କାର ବିତରଣବେଳେ ଯା'ପାଇଁ ମଧ୍ୟ ତାଳି ବାଜିଲା ଏବଂ ବାପାବୋଉ ତା'କୁ ତୁହାକୁ ତୁହା ଗେହ୍ଲା କଲେ ଓ ଯେତେକ ମନରଖା କଥା କହିଲେ । କିନ୍ତୁ ରାମୁ ଭାବେ ଧ୍ରୁବ ଚୌଧୁରୀର ପୋଜିସନ୍ କାହିଁ କେତେ ଉଚ୍ଚରେ, ଆଉ ସେ କେତେ ତଳେ ! ଯେମିତି ଚେହେରା ଖଣ୍ଡେ ପାଇଛି, ବିଦ୍ୟାବୁଦ୍ଧି ବି ସେମିତି । ଜଳୁଛି ପଡ଼ି ! ହେବ ନାହିଁ ? ଯେତେହେଲେ ଶଙ୍ଖମାହାଲ ରଜାଘର ପୁଅ । ହେଲା ଏବେ ଏଇକ୍ଷଣି ରାଜ୍ୟ ନାହିଁ କି ଜମିଦାରୀ ନାହିଁ । କିନ୍ତୁ ଚେହେରାଖଣ୍ଡକ ଯିବ କୁଆଡ଼େ ? ସେଇଠୁଁ ରାମୁ ତା' ବାପାବୋଉଙ୍କ ଉପରେ ରାଗେ ଆଉ ଗୋଟାଏ କାରଣରୁ । ତାକୁ କାହିଁକି ଏଇ ଦି'ଜଣଙ୍କଠାରୁ ଜନ୍ମ ହେବାକୁ ଥିଲା ? ଭଜନଗାୟକ କମ୍ପାଉଣ୍ଡର୍ ବାପା ଓ କୋଉ ମଫସଲିଆଣୀ ବୋଉଠାରୁ ? ସହଜେ କେହି ଦେଖିବାକୁ ଭଲ ନୁହଁନ୍ତି । ଆଉ ମୁଁ ହେଲି ରୀତିମତ ଅସୁନ୍ଦର !

କିନ୍ତୁ ଇଏ ଭୁଲ୍, ପୂରାପୂରି ଭୁଲ୍ ! ଭୁଲ୍ ଏବଂ ଅନ୍ୟାୟ । ରାମହରିର ଏହି ଧାରଣା ବଳବତ୍ତର ହେଲା, ସେ ସାହିତ୍ୟ କ୍ଷେତ୍ରରେ ଆହୁରି ଆଗେଇଲାରୁ । ଟେକ୍ସ୍ଟବୁକ୍ ଛଡ଼ା ବିଭିନ୍ନ ଓଡ଼ିଆ ଏବଂ ଇଂରେଜୀ ବହି ପଢ଼ିଲାରୁ । ଭାବିଲା—

ଗଛପତର, ଆକାଶ ପୃଥିବୀ, ନଈ ପୋଖରୀ ଓଗେର ସବୁ ରୂପରେ ସୁନ୍ଦର । ଥୁଣ୍ଟା ଗଛରେ ବି' ଶୋଭା ଅଛି ତଥା ଅନାବନା ଗଛ ବୁରୁଛର । କାଦୁଅଘେରା ଟୁବିଗଡ଼ିଆର । ମେଞ୍ଚିମେଞ୍ଚିକା ଧଳାବଉଦର ତଥା କଳାହାଣ୍ଡିଆ ମେଘର, ଝିପିଝିପି ବର୍ଷା ତଥା ଧାରାଶ୍ରାବଣର, କୁଜା ପାହାଡ଼ର ତଥା ତୀଖ ପର୍ବତର । ଇଏ ସୁନ୍ଦର, ସିଏ ବି ସୁନ୍ଦର ତମ ଆଖିରେ, ଯଦି କବି କି ଶିଳ୍ପୀ ତାକୁ କଳାର ପୋଷାକ ପିନ୍ଧେଇପାରିଲା ତା' ସାହିତ୍ୟରେ, ଚିତ୍ରରେ, ଶବ୍ଦରେ, ରେଖା ଆଉ ରଙ୍ଗରେ । କିନ୍ତୁ ଯେଉଁଠି ମଣିଷର ପ୍ରଶ୍ନ ଆସୁଛି, ରକ୍ତମାଂସଧାରୀ ବାସ୍ତବ ମଣିଷ, ସେଠି ତମେ ତା'କୁ ବାଛିବାରେ ଲାଗିପଡ଼ । କୁହ ଯା'ର ନାକଟା ଏମିତିକା, ଅତଏବ ସେ ସୁନ୍ଦର, ତା'ର ଆଖିଟା ସେମିତିକା, ଅତଏବ ସେ ଅସୁନ୍ଦର । ଏଇଟା କ'ଣ ଠିକ୍ କଥା ?

ଠିକ୍ ନୁହେଁ । କିନ୍ତୁ ଏଇ ଅନ୍ୟାୟର ପ୍ରତିକାର ନାହିଁ । ଅଛି କି ? ରାମହରି ଦାସ କେମିତି ଭଲା ତା' ଜନ୍ମିତ ଚେହେରାକୁ ବଦଳେଇ ଦେଇପାରିବ ?

କିନ୍ତୁ ବେଳେବେଳେ ଗୋଟାଏ ପ୍ରଗଳ୍‌ଭ ଏବଂ ଅଦ୍ଭୁତ ଧାରଣା ତା'ର ମନକୁ ଆସେ । ଯେ ହୁଏତ ସେ ନିଜକୁ ବଦଳେଇପାରିବ । ଯଦି ସେ କେବଳ ଜଣେ ମଣିଷ ହୋଇ ନ ରହେ । ଗୋଟାଏ ଭାବମୂର୍ତ୍ତି ହୋଇଯାଏ । ଯେ କୌଣସି ମହଦ୍‌ଭାବର ପ୍ରତିମୂର୍ତ୍ତି ଯେମିତି ଋଷି କି ମହାତ୍ମାମାନଙ୍କର ଥାଏ ।

ବଡ଼ ବଡ଼ ନେତାଙ୍କର ଥାଏ । ହଁ, ଥାଏ ମଧ୍ୟ ମହାକବି ଓ ଦାର୍ଶନିକମାନଙ୍କର । ସେତେବେଳେ ନାକ, ଆଖି, ଗାଲ, ଓଠ, କପାଳ, ଚିବୁକ, କୋଉଥିର ଗୁଣ ଅବିଗୁଣ କିଛି ଧରାପଡ଼େ ନାହିଁ । ମାନେ ତା'ର କୌଣସି ମୂଲ୍ୟ ରହେ ନାହିଁ । ଜ୍ୟୋତି ନ ଥିଲେ ମଧ୍ୟ ଥାଏ ଜ୍ୟୋତିର ଧାରଣା, ତା'ର ଅନୁମାନ । ଆଉ ଅସୁନ୍ଦର ଛାଏଁ ଛାଏଁ ସୁନ୍ଦର ହୋଇଯାଏ । କହିବାକୁ ଗଲେ ମଣିଷ ନିଜେ ହୋଇଯାଏ ଗୋଟାଏ କଳାତ୍ମକ ସର୍ଜନା । ତା'ର ଚେହେରାକୁ ଦେଖିଲେ ତମକୁ ଗ୍ରାସ କରେ ତା'ର ଉଜ୍ଜ୍ୱଳ ଭାବମୂର୍ତ୍ତି । ନାନା ମହତ୍ ଭାବ ଅଥବା ମହାନ୍ କୃତିତ୍ୱର ପ୍ରତିମୂର୍ତ୍ତି, କେଉଁ ଏକ ଚମତ୍କାର ଆଦର୍ଶ କି ଆଇଡିଆର ସାରଥି : ଦ୍ୟାଟସ୍ ରାଇଟ୍ ! ବାପା, ତମେ କ'ଣ ସେଇଥିପାଇଁ ଉସ୍କେଇଉଛ ମୋତେ କବି ହେବାପାଇଁ ? ମାନେ ତମେ ଜାଣ ମୁଁ ଅସୁନ୍ଦର, ହେଲେ ତମେ ଏଇ ବାଟ ଦେଇ ମୋତେ 'ସୁନ୍ଦର' କରିବାକୁ ଚାହଁ ।

ରାମହରି ମନେ ମନେ ହସେ ତା'ର ଏଇ ମହାଧୃଷ୍ଟ କଳ୍ପନାରେ । କଳ୍ପନାରେ ଏବଂ ତା' ବାପାଙ୍କ ମହାବିଚକ୍ଷଣ ବୁଦ୍ଧିକୁ ମଧ୍ୟ ସାବାସ ଦିଏ । ସତେକି ଏହିପ୍ରକାର କଳ୍ପନା ଅଥବା ବୁଦ୍ଧିର ବିହାର ଅବଶ୍ୟ ପ୍ରଶଂସନୀୟ, କିନ୍ତୁ ବାସ୍ତବକ୍ଷେତ୍ରରେ ଅର୍ଥାତ୍ ରାମହରି ଦାସର ପରିପ୍ରେକ୍ଷୀରେ ତା'କୁ ଅସମ୍ଭବ ଛଡ଼ା ଆଉ କିଛି କୁହାଯିବ ନାହିଁ । ହେଲେ ଏମିତି ଭାବିଲାବେଳେ ମଧ୍ୟ ଗୋଟାଏ କ୍ଷୀଣରୁ କ୍ଷୀଣତର ସମ୍ଭାବନା ତା' ମନକୁ ଆସେ ଓ ଖୁମ୍ପିଦେଇ ଚାଲିଯାଏ ।

ରାମହରି ଦାସ କ'ଣ ପ୍ରକୃତରେ ଗୋଟାଏ କବି ହୋଇପାରିବ ନାହିଁ ? କବି ପରି ଲବିଟିଏ, ଯେମିତିକି ତା' ଚେହେରା ପାଲଟିଯିବ ଗୋଟାଏ ଭାବମୂର୍ତ୍ତି ହୋଇ ? ଇଏ କ'ଣ ଏମିତି ଗୋଟାଏ ଆବ୍‌ସର୍ଡ୍ କଥା ?

ସେଇଠୁଁ ଗୋଟାଏ ଘଟଣା ଘଟିଲା, ଯାହା ରାମହରିକୁ କବି କରାଇଲା ଏବଂ ତା'ର ତଥାକଥିତ ଧୃଷ୍ଟ କଳ୍ପନାକୁ ଇନ୍ଧନ ଯୋଗାଇଲା । ସେତେବେଳକୁ ତା'କୁ ପନ୍ଦରବର୍ଷ । ଆଉ ବର୍ଷକ ପରେ ସେ ଯିବ କଲେଜ୍‌କୁ ଉଚ୍ଚ ଶିକ୍ଷାପାଇଁ ।

ପୁରୁଣା ଛୋଟିଆ ସ୍କୁଲ୍ ଘରକୁ ପରିତ୍ୟାଗ କରି ନୂଆ ଚକଚକିଆ ସ୍କୁଲ୍‌ଘରକୁ ଯିବାର ବେଳ ଆସିଗଲା । ପ୍ରଶସ୍ତ ହତା ଭିତରେ ଥିବା ଆଖିଦୃରୁଶିଆ ଲମ୍ୱାଚଉଡ଼ା ଘର, ପୂରାପୂରି ଧଳା, ସ୍କୁଲ୍‌ପିଲାଙ୍କ ୟୁନିଫର୍ମ ସାଙ୍ଗରେ ଖାପ୍ ଖାଇଲା ପରି । ଯାହାକି ସମ୍ଭବ ହୋଇଯାଇଛି ସରକାରଙ୍କ କୃପାଦୃଷ୍ଟି ଏବଂ ଦାତାମାନଙ୍କ ବଦାନ୍ୟତା ହେତୁ । କିନ୍ତୁ ପ୍ରିନ୍ସିପାଲ୍ ରାଧାବଲ୍ଲଭ ରଥ ତା'କୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଭକ୍ତିବିହ୍ୱଳ ହୋଇଉଠନ୍ତି । କୁହନ୍ତି, ବାରମ୍ବାର କୁହନ୍ତି, ଯେ ସବୁ ସେଇ ବାଗ୍‌ଦେବୀଙ୍କ ଦୟା । ଏଇ ଐତିହାସିକ ଅନୁଷ୍ଠାନର ମହତ୍ତ୍ୱ କ'ଣ ଜଣା ନାହିଁ ତାଙ୍କୁ ?

ସେହେତୁ ଚୂଡ଼ାମଣି ଉଚ୍ଚ ଇଂରାଜୀ ବିଦ୍ୟାଳୟ ଯେତେବେଳେ ନବକଳେବର ଧାରଣ କଲା ଏବଂ ରାଜ୍ୟର ସଂସ୍କୃତି ମନ୍ତ୍ରୀଙ୍କ ସମେତ ବିଭିନ୍ନ ଭି.ଆଇ.ପି.ମାନଙ୍କୁ ଆମନ୍ତ୍ରଣ କରାଗଲା ତା'ର ଉଦ୍‌ଘାଟନ ଉତ୍ସବରେ ଯୋଗ ଦେବାପାଇଁ, ପରିଚାଳନା କମିଟିରେ ସ୍ଥିର ହେଲା, ପ୍ରିନ୍ସିପାଲ ମହୋଦୟଙ୍କ ପ୍ରସ୍ତାବ ଅନୁଯାୟୀ, ଯେ ଉତ୍ସବର ଆରମ୍ଭରେ ବୋଲାହେବ ମାଆ କଲ୍ୟାଣୀଙ୍କ ବନ୍ଦନା । ଯେଉଁ ମାଆ କଲ୍ୟାଣୀ ସରସ୍ୱତୀ ରୂପେ ପୂଜା ପାଉଛନ୍ତି ଏଇ ଚନ୍ଦନପୁର ସହରରେ ଏବଂ ଯାହାଙ୍କ ପ୍ରସାଦରୁ ଅନୁଷ୍ଠାନଟି ଏଇ ନୂତନ-ସୁନ୍ଦର ବେଶରେ ମଣ୍ଡିତ ହୋଇପାରିଛି, ତାଙ୍କରି ବନ୍ଦନା । ଧରି ନିଆଗଲା ଯେ ପ୍ରାରମ୍ଭିକ ସମବେତ ସଙ୍ଗୀତର ମୁଖ୍ୟ ହେବ ଧ୍ରୁବ ଚୌଧୁରୀ । ସ୍କୁଲ୍‌ରେ ପହିଲା ନମ୍ବର ଛାତ୍ର, ପଢ଼ାରେ ଯେମିତି, ଚେହେରାରେ ସେମିତି । ଯେମିତିକି ସମାପନ ସଙ୍ଗୀତର ନେତ୍ରୀ ହେବ ରଞ୍ଜନା ମହାନ୍ତି । ଯାହା ସ୍କୁଲ୍‌ର ପ୍ରାୟ ପ୍ରତ୍ୟେକ ସମାରୋହରେ ହୋଇଆସିଛି । ପ୍ରଧାନ ସାହିତ୍ୟ ଶିକ୍ଷକ ଶଚୀନାଥ ସ୍ୱାଇଁ ପ୍ରିନ୍ସିପାଲ୍‌ଙ୍କ ନିକଟରେ ଆବେଦନ କରିବାକୁ ଚାହିଁଥିଲେ ଯେ ଏଥର ଆଉ କାହାକୁ ନିଆଯାଉ ପ୍ରାରମ୍ଭିକ ସଙ୍ଗୀତର ମୁଖ୍ୟ ହିସାବରେ, ଯାହାର କଣ୍ଠସ୍ୱର ଏକାଧାରରେ ମନ୍ଦ୍ର ଓ ମଧୁର ହୋଇଥିବ । ଯଥା ରାମହରି ଦାସ । କାରଣ ଧ୍ରୁବର କଣ୍ଠସ୍ୱର ଆଦୌ ସୁଶ୍ରାବ୍ୟ ନୁହେଁ, ମଝିରୁ ଫାଟିଯାଏ ବେଳେବେଳେ । ହେଲେ ପରମ୍ପରା ବିରୋଧୀ ପ୍ରସ୍ତାବ ଦେବାପାଇଁ ସାହସ ହେଲା ନାହିଁ ତାଙ୍କର । ତେବେ ଯେ କାର୍ଯ୍ୟକ୍ରମରେ ଗୋଟିଏ ନୂଆ ଆଇଟେମ୍ ଖଞ୍ଜିଦେଇପାରିଲେ, କର୍ତ୍ତୃପକ୍ଷଙ୍କ ଅନୁମତି ନେଇ । କବିତା ପାଠ । ପିଲାମାନେ ସ୍ୱରଚିତ କବିତାର ଆବୃତ୍ତି କରିବେ ଏବଂ ପ୍ରତ୍ୟେକ କବିତାରେ ଥିବ ମାଆ କଲ୍ୟାଣୀ ଓ ଦେବୀ ସରସ୍ୱତୀଙ୍କ ପ୍ରଶସ୍ତି । ଅବଶ୍ୟ କବିତାଗୁଡ଼ିକ ପୂର୍ବରୁ ଯୋଗ୍ୟ ବୋଲି ବିବେଚିତ ହୋଇଥିବ ଶଚୀବାବୁ ଓ ତାଙ୍କ ସହକର୍ମୀଙ୍କ ଦ୍ୱାରା ।

ଶଚୀସାର୍ ରାମହରିକୁ ଆହ୍ୱାନ କଲେ କବିତାଟିଏ ଲେଖି ତା'କୁ ପଢ଼ିବାପାଇଁ । କାରଣ ସେ ଭାବିନେଲେ ଯେ ସାହିତ୍ୟର କୃତୀ ଛାତ୍ର ଭଲ କବିତାଟିଏ ଲେଖିପାରିବା ଉଚିତ । ଆଉ ସହଜେ ସେ ତା'କୁ ସୁନ୍ଦର ଭାବରେ ଆବୃତ୍ତି କରିପାରିବ, ତା'ର ମନ୍ଦ୍ରମଧୁର କଣ୍ଠରେ ।

ରାମହରି ଅନ୍ୟମନସ୍କ ଭାବରେ ଶୁଣିଲା ସାର୍‌ଙ୍କ ଆହ୍ୱାନ । ଏବଂ ହଠାତ୍ ଚେଇଁ ଉଠିଲା । ... କାହିଁକି ଲେଖିବି ନାହିଁ ? କବିମାନେ କ'ଣ ଗଛରେ ଫଳନ୍ତି ? କ'ଣ ଏମିତି ଜନ୍ମ ହୁଅନ୍ତି ନାହିଁ ସ୍କୁଲବେଳର କେଉଁ କବିତାକୁ ଗାଇ ?

କିନ୍ତୁ ସେ ରାଗିକରି ଲେଖିଲା । ଟାଣରେ ଲେଖିଲା । ପ୍ରତି ପଦରେ ତା'ର ମନେହେଲା ଏବଂ ସେ ନିଜକୁ ଧନ୍ୟବାଦ ଦେଲା ଯେ ଏମିତି ଲେଖାଯାଏ

ନାହିଁ ସାଧାରଣତଃ । କିନ୍ତୁ ଇଏ ରାମହରି ଦାସର ଲେଖା । ତା'ର ଦୃଷ୍ଟିକୋଣ ଭିନ୍ନ । ହେବ ନାହିଁ କେମିତି ? ସେ କ'ଣ ସୁନ୍ଦରିଆ-ବୁଦ୍ଧିଆ ହୋଇଛି ସାଧାରଣ କବିଙ୍କ ପରି ?

ଯେଉଁ କବିତାଟିକୁ ସେ ପଢ଼ିଲା ସେଦିନ ସମବେତ ଗଣ୍ୟମାନ୍ୟ ଅତିଥି ଓ ଭି.ଆଇ.ପି.ମାନଙ୍କ ସମ୍ମୁଖରେ, ତା'ର ପ୍ରଥମ କେତୋଟି ଧାଡ଼ି ଥିଲା ଏହି ପ୍ରକାର:

ନାଲି ପାଖୁଡ଼ାର ହସ ଢାଳିଦେଇ
ଆସିଛ ଗୋ ସଖୀ,
ଆମ ଏଇ ଅନିର୍ଦ୍ଦିଷ୍ଟ ଅସ୍ଥିର କୁଟୀରେ
ସାଦାସିଧା ଧଳା ଘରଟିରେ
ଚମତ୍କାରୀ ରଙ୍ଗଟିକେ ମାଖିଦେବା ପାଇଁ...

ସୁଲଳିତ କଣ୍ଠସ୍ୱର । ଶୁଣୁ ଶୁଣୁ ସମସ୍ତେ ଖୁସି ହେଲେ ଏବଂ ଘନ ଘନ ତାଳି ମାରିଲେ । କିନ୍ତୁ ପରେ ପରେ ନାନାଦି ପ୍ରଶ୍ନ ଉଠିଲା ମାଷ୍ଟର୍, ପାଠୁଆ ଛାତ୍ର ତଥା କେତେକ ଭଦ୍ରବ୍ୟକ୍ତିଙ୍କ ମହଲରେ । ମଲା, ଇଏ କି କବିତା ମ ? କାହାକୁ ଆବାହନ କରାଯାଉଛି... — ସରସ୍ୱତୀଙ୍କୁ ନା କେଉଁ ସଖୀସୁନ୍ଦରୀଙ୍କୁ ? ଏବଂ ଶୁକ୍ଳବସ୍ତ୍ରାନ୍ୱିତା ଶ୍ୱେତପଦ୍ମାସୀନାଙ୍କ ହସରେ ନାଲି ପାଖୁଡ଼ା ଆସିଲା କେଉଁଠୁ ? ପୁଣି କୁଟୀରଟି ଅସ୍ଥିର ଏବଂ ଅନିର୍ଦ୍ଦିଷ୍ଟ ହେଲା କେମିତି ?

ରାମହରିକୁ ପଚାରିଲାରୁ ସେ କୌଣସି ପ୍ରଶ୍ନର ଉତ୍ତର ଦେଲା ନାହିଁ । କେବଳ ଗୋଟାଏ ରହସ୍ୟମୟ ଓଠଚିପା ସ୍ମିତହାସ ଦେଲା । ଯାହାର ଅର୍ଥ, ତମେ ବୁଝିବ ନାହିଁ । ତମକୁ ବୁଝେଇ ହେବ ନାହିଁ । ତେବେ ତା'କୁ ବାଧ୍ୟ କଲାରୁ କହିଲା କେତେକଙ୍କୁ—ସାର୍‌ଙ୍କୁ ପଚାର । ଶଚୀସାର୍, ଯେ ଯା'କୁ ପାସ୍ କରେଇଛନ୍ତି (ଏବଂ ବାହାବା କରିଛନ୍ତି, ମୋ ପିଠିକୁ ଥାପୁଡ଼େଇ କହିଛନ୍ତି ଯେ ଏଇ ହେଉଛି କବିତା, ଅସଲ ଆଧୁନିକ କବିତା) ।

ଏବଂ ଶଚୀ ସ୍ୱାଇଁ ତାଙ୍କ ଆଧୁନିକ ବିଚାରକୁ ଜାହିର୍ କଲେ । କହିଲେ ଇଏ ହେଉଛି ଆଧୁନିକ କବିତା—ବୁଝିଲ ? ଯେଉଁଥିରେ ଶାଶ୍ୱତ ଭାବକୁ ରୂପ ଦିଆଯାଏ ଦୈନନ୍ଦିନ ବାସ୍ତବ ଅନୁଭବର ମାଧ୍ୟମରେ । ତା'ଛଡ଼ା କ'ଣ କେବଳ ଢଗାକାଳିଆ ଆମର ଅନ୍ତରଙ୍ଗ ହୋଇପାରିବେ ? ଖାଲି ତାଙ୍କୁ ହିଁ କ'ଣ ଆମେ ସାଙ୍ଗ କରିପାରିବା, ଆଉ ସ୍ନେହ ସରାଗରେ ଗାଳିମନ୍ଦ କରିପାରିବା ? କଲ୍ୟାଣୀଙ୍କୁ, ସରସ୍ୱତୀଙ୍କୁ, ଆମର ସଖୀ କରିପାରିବା ନାହିଁ ? ଆଉ ଆମର ଏଇ ଧଳା ଘରର ଚାରିପାଖରେ ଯେଉଁ ଫୁଲ ପାଖୁଡ଼ା ବିଛେଇ ହୋଇ ପଡ଼ିଛି, ନାଲି

କୃଷ୍ଣଚୂଡ଼ା ଫୁଲର ଆସ୍ତରଣ, ତା' କ'ଣ ତୁମ ଆଖିରେ ପଡୁ ନାହିଁ ? ଏବଂ ଆମର ଏଇ ଯେଉଁ ଆତୁରତା, ଉଦ୍‌ବିଗ୍ନତା, ସରସ୍ୱତୀଙ୍କ ପ୍ରସାଦ ପାଇବାପାଇଁ ତା'ର ଅନ୍ୟ ନାମ କ'ଣ ଅସ୍ଥିରତା ନୁହେଁ, ଯାହାକି ଆମ କୁଟୀରକୁ ଟହଲେଇଦେଉଛି ? ଏବଂ ତାହା କ'ଣ ଅପେକ୍ଷା କରି ରହି ନାହିଁ ମାଆ କଲ୍ୟାଣୀଙ୍କର ନିର୍ଦ୍ଦେଶ ପାଇବାଲାଗି ? ହେଲା ଏବେ ସେ ନିଜେ ଶୁଭ୍ରା, ଶ୍ୱେତପଦ୍ମାସୀନା । ତା'ବୋଲି କ'ଣ ସେ ନାଲିରଙ୍ଗର ମର୍ଯ୍ୟାଦା ବୁଝନ୍ତି ନାହିଁ ? ନା ଦେବୀ ବୋଲି ମାନବିକ ଅସ୍ଥିରତା କେଉଁ ଧାତୁରେ ଗଢ଼ା, ତାଙ୍କୁ ମାଲୁମ୍ ନାହିଁ ? ଥକିଗଲା ପରି କହିଲେ ଶଚୀସାର୍—କଅଣ ବୁଝିଲେ ଏଁଥର ?

କିଏ ବୁଝିଲା ନ ବୁଝିଲା, ସେ କଥା ଭିନ୍ନ । କିନ୍ତୁ ଏଇଭାବରେ ରାମହରିକୁ କବିରୂପେ ଗଣା ହେଲା ସେଇଦିନଠୁଁ । ତଥାପି କେତେକ କହିଦେଲେ ଯେ ଏଇ ଆଧୁନିକ କବିମାନଙ୍କୁ ପ୍ରଶ୍ରୟ ଦେବା ଉଚିତ ନୁହେଁ, ସେମାନେ ବାଗ୍‌ଦେବୀଙ୍କୁ ଅବମାନନା କରିଛନ୍ତି । କିନ୍ତୁ ରାମହରି ବୁଝିଲା ଯେ ଏମିତି ବି' କବିତା ଲେଖା ଯାଇପାରେ ଏବଂ ଯା'କୁ ଆଧୁନିକ କବିତା କୁହନ୍ତି ।

ବାପା ବନମାଳୀବାବୁ ପୁଅର ପ୍ରଶଂସା ଶୁଣିଲେ ଶଚୀବାବୁ ଏବଂ ଅନ୍ୟ କେତେକ ଆଧୁନିକ କବିତାର ଗ୍ରାହକମାନଙ୍କ ଠାରୁ ଏବଂ ଅବଶ୍ୟ ଖୁସି ହେଲେ । କିନ୍ତୁ ତା' କବିତାର ଆଧୁନିକ ମହାନତାକୁ ସହଜେ ବୁଝିପାରିଲେ ନାହିଁ । ହେଲେ ତା' ପରେ ପରେ ତାଙ୍କର ମନେପଡ଼ିଲା ପାଞ୍ଚବର୍ଷିଆ ରାମୁର ଅଭିନବ ଉପମା— 'ଛେନାତାଡ଼ିଆ'ର ସୂର୍ଯ୍ୟାସ୍ତ ଏବଂ ଢେଉକିର ଗୋଡ଼ଟେକା, ତା'କୁ ପିମ୍ପୁଡ଼ି କାମୁଡୁଛି ବୋଲି । ସେଇଠୁଁ ସେ ବୁହେ ହସିଲେ ମନେ ମନେ । ହୋଇଥିବ, ହୋଇଥିବ । କେଉଁଟି ବାସ୍ତବ, ଆଉ କେଉଁଟି ଅବାସ୍ତବ, ତା'ର କୌଣସି ଅର୍ଥ ନାହିଁ । ସବୁ ସେଇ କବି-ଅନୁଭବର ଦାସ । ତା'ରି ଅନୁଯାୟୀ ରୂପ ବଦଳିଯାଏ, ରଙ୍ଗ ବଦଳିଯାଏ, କିନ୍ତୁ ଅନୁଭବର ଭାବ କି ତତ୍ତ୍ୱ ବଦଳେ ନାହିଁ । ବରଂ... ମନେପଡ଼ିଲା ଦୀନକୃଷ୍ଣଙ୍କର ଗୋଟିଏ ଧାଡ଼ି, 'ଯମୁନା ଜଳେ ଫୁଟିଲା ପଦ୍ମବନ ପ୍ରାୟେ ସେ ବିସ୍ତାର ଆଖି' । ନଇରେ ପଦ୍ମଫୁଲ ନ ଫୁଟିଲେ ଯାଏ କେତେ ଆସେ କେତେ ? ଟକାଡୋଳା ଆଖି ଦୁଇଟିର ସୌନ୍ଦର୍ଯ୍ୟ କେତେ ଚମତ୍କାର ଭାବରେ ଫୁଟିଉଠିଛି ଏଇ ଧାଡ଼ିଟିରେ ! ଆହା ! ବନମାଳୀବାବୁ ଅଚିରେ ମଗ୍ନ ହୋଇଗଲେ ଦୀନକୃଷ୍ଣଙ୍କ ଅସାମାନ୍ୟ କବିତ୍ୱ ଏବଂ ଜଗନ୍ନାଥଙ୍କ ଅଲୌକିକ ସୌନ୍ଦର୍ଯ୍ୟର କଳ୍ପନାରେ ଏବଂ ଧରିନେଲେ ଯେ ଆମ ପୁଅ ସେଇ ମହାନ୍ ସାହିତ୍ୟ ଏବଂ ଐତିହ୍ୟର ଦାୟାଦ । ଠାକୁରେ ତା'ର ମଙ୍ଗଳ କରନ୍ତୁ !

କିନ୍ତୁ ରାମହରିକୁ ଏଭଳି ବୁଦ୍ଧିବିଚାରର ଆଶ୍ରୟ ନେବାକୁ ପଡ଼ିଲା ନାହିଁ । ସେ କେବଳ ଅନୁମାନ କଲା ଯେ କ୍ରୋଧ ହେଉ ବା ଘୃଣା, ଅଥବା ଭକ୍ତି

ପ୍ରେମ ଆଦିର ଭଲପଣିଆ, ତା'କୁ ଦର୍ଶାଇବାକୁ ଯାଇ ଟିକିଏ ଦୁଃସାହସୀ ହୋଇପାରିଲେ ଲାଭ ଅଛି । ତା'ହେଲେ ଲୋକଙ୍କ ଆଖିରେ ପଡ଼ିବ । ଥୋକେ ଗାଳିମନ୍ଦ କରିବେ ସିନା, ଜଣେ ଅଧେ କ'ଣ ମୁଗ୍ଧ ହେବେ ନାହିଁ ? ଅବଶ୍ୟ ହେବେ । ତା' ସାଙ୍ଗକୁ ଯେଉଁ ଆକ୍ରୋଶ ରହିଥିଲା ତା' ମନରେ ଏଇ ସୁନ୍ଦରବାଦୀ ସମାଜ ପ୍ରତି, ତା'ର ଜବାବ୍ ଆପେ ଆପେ ଗଢ଼ି ଉଠିଲା ତା' କବିତାରେ । ଅଧିକରୁ ଅଧିକ । ଯେତେକ ତଥାକଥିତ ବିକଟ, ବିଷମ, ତୁଚ୍ଛ ଓ କୁତ୍ସିତକୁ ମର୍ଯ୍ୟାଦା ଦେଲାପରି । ଏବଂ ହିଂସାର ସଂଗୀତ ମଧ୍ୟ ଶୁଣାଗଲା ତା'ଭିତର ଦେଇ ।

ଏହିପରି ଭାବରେ ମଲାଡାଙ୍ଗ ଆଗ୍ରାହ୍ୟ କଲା ସୂର୍ଯ୍ୟଙ୍କ ଆବେଦନ, ଅକ୍ଲାନ୍ତ ପିମ୍ପୁଡ଼ିମାନେ ଧାଡ଼ି ବାନ୍ଧିଲେ ଜହ୍ନର କବନ୍ଧକୁ ଚୋଷିବାପାଇଁ, କଳା କୋଇଲିର କୁହୁକୁହୁ କାଉମାନଙ୍କୁ ମତେଇଲା ରାଉ ରାଉ ହେବାପାଇଁ ଏବଂ ସାପମାନଙ୍କ ସେକ୍ସ ସୃଷ୍ଟିର ତାଣ୍ଡବ ନୃତ୍ୟକୁ ଧରି ରଖିଲା ଏକ ସ୍ଥିର ଅଚଞ୍ଚଳ ମୁଦ୍ରାରେ । ଶଚୀସାର୍ ବେଳେବେଳେ ହସିଲେ ମନେ ମନେ ପିଲାଟିର ଦୁଃସାହସ ଦେଖି । କିନ୍ତୁ ତାଙ୍କରି ଯୋଗୁଁ ତା'ର କବିତା ସ୍କୁଲ ମ୍ୟାଗାଜିନ୍‌ରେ କେବଳ ସ୍ଥାନ ପାଇଲା ନୁହେଁ, ସେ ତା'ର ପ୍ରଶଂସା କରି ବୁଲିଲେ ଚାରିଆଡ଼େ । ଅବଶ୍ୟ ତା' ଅନ୍ୟ ଏକ କାରଣ ହେଉଛି ଯେ ତାଙ୍କର ସାହିତ୍ୟପ୍ରେମୀ ଛାତ୍ର ପରୀକ୍ଷାରେ ମଧ୍ୟ ଅଧିକ କୃତିତ୍ୱ ବର୍ଦ୍ଧନ କଲା, ଏବଂ ଶେଷକୁ ସେ ଧ୍ରୁବକୁ ଟପିଗଲା । ମାଟ୍ରିକ୍ ପରୀକ୍ଷାରେ ସେ ପ୍ରଦେଶର ପ୍ରଥମ ଦଶଜଣଙ୍କ ତାଲିକାରେ ସ୍ଥାନ ପାଇଲା ।

ଏହି ପ୍ରକାର ସୁଖ୍ୟାତିର ଅଧିକାରୀ ହୋଇ ସେ ଯେତେବେଳେ କବିତା ଲେଖିଲା କଲେଜ୍ ମ୍ୟାଗାଜିନ୍ ପାଇଁ, ତା'କୁ ସମ୍ପାଦକ ଫେରାଇଦେଲେ ନାହିଁ ଏବଂ ପ୍ରଦେଶର ପ୍ରତିଷ୍ଠିତ ପତ୍ରପତ୍ରିକା ଏଭଳି ଉଗ୍ର ଆଧୁନିକତାକୁ ଦେଖି ହସିଲେ ମଧ୍ୟ ତା'କୁ ଦେଖି ଚାହିଁ ଛପେଇଲେ, ଗୋଟିଏ ଯୋଡ଼ିଏ କରି, ତା'ର ଅଭିନବତ୍ୱ ପାଇଁ ।

ରକ୍ଷଣଶୀଳ ପାଠକମାନେ ମୁହଁ ମୋଡ଼ିଲେ, କହିଲେ ଏଥିରେ କବିତ୍ୱ ନାହିଁ, କେବଳ ଫେସନ, କେବଳ ଢଙ୍ଗ । ହେଲେ କେତେକେ ଥରକରୁ ଦୁଇଥର ପଢ଼ିଲେ ଓ ତା'ର ରୂପକଳ୍ପକୁ ଟାଣିନେଲେ ତାଙ୍କ ଅନୁଭବର ଗହୀରକୁ ଏବଂ ଜଣେ ଅଧେ ମୁଗ୍ଧ ହେଲେ   ଆଃ, କି ଅପୂର୍ବ ଅବବୋଧ ! ଉପଲବ୍ଧି ନ ହେଲେ ବି' ତା'ର ପାଖାପାଖି...

କ୍ରମଶଃ ରାମହରିବାବୁ ପ୍ରଦେଶର ଜଣେ ଉଦୀୟମାନ କବି ବୋଲାଇଲେ ।

ଏବଂ କ୍ରମଶଃ, ବିଶେଷତଃ କ୍ୟାପିଟାଲ୍‌ର ଗୋଟିଏ ପ୍ରତିଷ୍ଠିତ କଲେଜ୍‌ରେ ଇଂରେଜୀ ଅଧ୍ୟାପକ ହେଲା ପରେ ଏକ ବିଶିଷ୍ଟ ଭାବମୂର୍ତ୍ତି ଗଢ଼ିଉଠିଲା ତାଙ୍କ

କବିତ୍ୱକୁ ନେଇ । ଆଧୁନିକବାଦୀ ଆଳାପ ଆଲୋଚନା ଏବଂ ସମୀକ୍ଷା ଭରିଆରେ । ସେ ହେଲେ ଜଣେ ମିଷ୍ଟିକ୍ କବି ।

ହେଲେ ଯେତେବେଳେ କେହି ତାଙ୍କୁ ପଚାରେ ତାଙ୍କର କେଉଁ କବିତାର ଅର୍ଥ ବୁଝେଇବା ପାଇଁ, ସେ ସାମାନ୍ୟ ସ୍ମିତହାସଟିଏ ଦିଅନ୍ତି । ସେଇ ଓଠଚିପା ରହସ୍ୟମୟ ସ୍ମିତହାସ, ଯାହାକୁ ସେ ବାଢ଼ିଦେଇଥିଲେ ସ୍କୁଲ୍‌ବେଳର ଅଗୁଆଁର ସାଙ୍ଗସାଥୀମାନଙ୍କ ଆଗରେ ଯେତେବେଳେ ସେମାନେ ତାଙ୍କୁ ସଖୀ ସରସ୍ୱତୀଙ୍କ ଠିକଣା ପଚାରିଥିଲେ । ମିଷ୍ଟିକ୍‌ମାନେ ଯେମିତି ହସିବା କଥା ।

କିନ୍ତୁ ମିଷ୍ଟିକ୍‌ମାନେ ହୁଏତ ନିର୍ବୋଧ ଦିଶନ୍ତି ଘୋର ବାସ୍ତବବାଦୀ, ବୁଦ୍ଧିଜୀବୀ, ଏବଂ କହିବାକୁ ଗଲେ 'ସିନିକ୍' ଦୀପାଙ୍କର ଗାଙ୍ଗୁଲି ଜାତୀୟ ଲୋକମାନଙ୍କ ଆଖିରେ । କିଏ ଭଲା ସଦ୍‌ବୁଦ୍ଧି ଦେଇପାରିବ ସେମିତିକା ଲୋକଙ୍କୁ ?

ଯାହାହେଉ ମିଷ୍ଟିକ୍ କବି ରାମହରି ଦାସ ନିଜର ଭାବମୂର୍ତ୍ତିକୁ ଅତୁଟ ରଖିଲେ । ସେଇ ଏକାଧରଣର କବିତା ଲେଖିଲେ, ଯାହାକୁ ପଢ଼ିଲେ 'ଇଏ କି କବିତା ମ ?' ବୋଲି ଆଉ ଥରେ ପଢ଼ିବାକୁ ଇଚ୍ଛା ହୁଏ ଏବଂ ଜଣେଅଧେ ଚକିତ ଓ ମୁଗ୍ଧ ହୁଅନ୍ତି ତା'ର ଆନୁମାନିକ ଭିତିରି ତତ୍ତ୍ୱକୁ ନେଇ । ଭାବନ୍ତି ତାହା ଏକ ରହସ୍ୟମୟ ଭଗବାନଙ୍କ ଅବଦାନ । ସେମାନଙ୍କ ମଧ୍ୟରୁ ଜଣାଶୁଣା ଲେଖକ ଓ ସାହିତ୍ୟିକ ମଧ୍ୟ ବାହାରିପଡ଼ନ୍ତି ବେଳେବେଳେ ଏଇ ମିଷ୍ଟିକ୍ କବିତାର ମହତ୍ତ୍ୱ ବିଷୟରେ କିଛି କହିବାପାଇଁ । ରାମହରିବାବୁ ତାକୁ ପଢ଼ନ୍ତି, ଶୁଣନ୍ତି ଏବଂ ଆପ୍ୟାୟିତ ହୁଅନ୍ତି ।

ରାମହରିବାବୁ ଲେଖିବାକୁ ଲାଗିଲେ, ଥକିଗଲେ ନାହିଁ ଏବଂ ଇଂରେଜୀ ଭାଷା ଉପରେ ମଧ୍ୟ ଯଥେଷ୍ଟ ଦଖଲ ଥିବାରୁ, ସେ ଅନେକ କବିତାର ଇଂରାଜୀ ଅନୁବାଦ କଲେ ଅଥବା କରାଇଲେ ଏବଂ ପ୍ରଦେଶ ବାହାରେ ଥିବା ବିଭିନ୍ନ ପତ୍ରପତ୍ରିକାକୁ ପଠାଇଲେ । ବେଶ୍ କିଛି କବିତା ଫେରିଆସିଲା ତାଙ୍କ ପାଖକୁ । କିଛି କ୍ଷତି ନାହିଁ । ଯେତିକି ମନୋନୀତ ଓ ପ୍ରକାଶିତ ହେଲା, ସେ ତା'ରି ବଳ ପାଇ ଆହୁରି ଆହୁରି ଅନୂଦିତ ଲେଖା ପଠାଇଲେ ବାହାରକୁ ।

ଏବଂ ଦିନ ଆସିଲା, ଯେତେବେଳେ ମିଷ୍ଟିକ୍ କବି ରାମହରି ଦାସ ନିଜ ପ୍ରଦେଶରେ ସୁପରିଚିତ ହେବା ଛଡ଼ା ସର୍ବଭାରତୀୟ କ୍ଷେତ୍ରରେ ମଧ୍ୟ ନିଜକୁ ଉପସ୍ଥାପିତ କରିପାରିଲେ ଏବଂ ସର୍ବଭାରତୀୟ ସ୍ତରରେ ଆୟୋଜିତ ଗୋଟିଏ କବିତାପାଠ ଉତ୍ସବରେ ଯୋଗ ଦେବାର ନିମନ୍ତ୍ରଣ ପାଇଲେ । ପୁଣି ମଞ୍ଚରେ ନିର୍ବାଚିତ ପାଞ୍ଚଜଣକ ଭିତରୁ ଜଣେ ହୋଇ ବସିବାର ସୌଭାଗ୍ୟ । ଯେହେତୁ ବିଶିଷ୍ଟ ଆମେରିକାନ୍ କବି ଓ ମୁଖ୍ୟ ଅତିଥି ଆର୍ଥର୍ ଆଶ୍ଲି ତାଙ୍କର ଗୋଟିଏ

ଅନୂଦିତ କବିତା ପଢ଼ି ତାଙ୍କର ଆନନ୍ଦ ବ୍ୟକ୍ତ କରିଥିଲେ ଏବଂ କହିଥିଲେ ମୁଁ ତାଙ୍କୁ ଟିକିଏ ଦେଖିବାକୁ ଚାହେଁ ।

ସେତେବେଳକୁ ତାଙ୍କ ପାରିବାରିକ ଜୀବନ କେଉଁ ସ୍ତରରେ ପହଞ୍ଚିଲାଣି ? ପରିବାର ? ହଁ, ଯଦି ବାପା ମାଆ ଭାଇ ଭଉଣୀଙ୍କ ସଂସାରକୁ ହିଁ ପରିବାର କୁହାଯାଏ, ତା'ହେଲେ ସେଥିରେ ଅନେକ ପରିବର୍ତ୍ତନ ଘଟିଗଲାଣି ନିଶ୍ଚୟ । ବାପା ବନମାଳୀବାବୁ ତାଙ୍କର ଈପ୍ସିତ ମରଣ ଲଭିଲେଣି । ଠାକୁରଘରେ ଟଳି ପଡ଼ିଲେ ଭଜନ ବୋଲିବା ଅବସ୍ଥାରେ । ବୋଉ ହାରାମଣି ବୁଢ଼ୀ ହେଲେଣି ଏବଂ ରାମହରିଙ୍କ ପରେ ଜନ୍ମ ହୋଇଥିବା ଦୁଇପୁଅ ଏବଂ ଝିଅଙ୍କ ପିଲାଛୁଆ-ସଂସାର ଭିତରେ ନିଜକୁ ମିଶେଇଦେବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ଗୋଟିଏ ଦୁଃଖ ରହିଯାଇଛି ତାଙ୍କ ମନରେ । ବଡ଼ପୁଅକୁ ଆସି ତେୟାଳିଶ ବର୍ଷ ହେଲାଣି, ହେଲେ ସେ ବାହାସାହା ହେଲା ନାହିଁ । ଅଳି ଉପରୋଧ କିଛି ଶୁଣିବାକୁ ନାହିଁ । ଖାଲି ଫାଜିଲାମି କରୁଛି । କହୁଛି—ଓକେ, କିନ୍ତୁ ଆଗେ ଶୁଣ୍ ମୁଁ ଯେଉଁ କବିତା ଲେଖିଛି । ଏଥିରେ ଯେଉଁ ସୁନ୍ଦରୀଟି ଅଛି ନା, ସେଇ ପରା ତୋର ବୋହୂ ?

କିନ୍ତୁ କାହିଁକି ? ନାନାଦି କଳ୍ପନା ଜଳ୍ପନା କରନ୍ତି ରାମହରିଙ୍କ ସାଙ୍ଗସାଥୀମାନେ । କୁହନ୍ତି ସେ କଲେଜ୍‌ବେଳେ ଅମୁକକୁ ବାହା ହେବାକୁ ଚାହୁଁଥିଲେ, କିନ୍ତୁ ପ୍ରେମିକା ଅସଲବେଳେ କରଛଡ଼ା ଦେଲା । କେତେକେ ଅନୁଚ୍ଚ ସ୍ୱରରେ ତାଙ୍କ ଚେହେରା ପ୍ରତି ଆକ୍ଷେପ କରନ୍ତି । କୁହନ୍ତି ଯେ ଯେତେହେଲେ ଆଖି-ନାକ-ଓଠର ଗୋଟାଏ ଭୂମିକା ଅଛି ତ ! କିନ୍ତୁ ରାମହରିବାବୁ କାହାରିକୁ କୌଣସି କାରଣର ଆଭାସ ଦେଇ ନାହାନ୍ତି । ପଚାରିଲେ କେବଳ ଟିକିଏ ହସିଦିଅନ୍ତି ତାଙ୍କର ସେଇ ରହସ୍ୟମୟ ହସ । ସତେକି ମିଷ୍ଟିକ୍ କବିମାନେ ବାହା ନ ହୋଇ ରହିବା ସ୍ୱାଭାବିକ । ତମେ କେଉଁଠୁ ବୁଝିବ ତା' ଭେଦ ?

ଦିଲ୍ଲୀର କବିତାପାଠ ଉତ୍ସବରେ ରାମହରିବାବୁ ପଢ଼ି ଚାଲିଥିଲେ ନିର୍ଭୟରେ । ତାଙ୍କର ସୁବିଦିତ ମନ୍ଦ୍ରମଧୁର କଣ୍ଠରେ ଯାହା ଉପସ୍ଥିତ ଜନତାକୁ ନିଶ୍ଚୟ ଭଲ ଲାଗୁଥିବ ବୋଲି ତାଙ୍କର ବିଶ୍ୱାସ । ତେବେ ସେ ସବୁଥର ପରି ତଳମୁହାଁ ହୋଇ ପଢୁଥିଲେ । ସେ ଶ୍ରୋତାମାନଙ୍କ ଆଡ଼କୁ ଚାହାଁନ୍ତି ନାହିଁ କବିତା ପଢ଼ିଲାବେଳେ । ସତେକି କେଉଁ ଇତରସାଧାରଣ ଅଣକବିର ବିଦ୍ରୂପ ଦିଶିଯିବ ତାଙ୍କୁ ଓ ସେ ତା'କୁ ବରଦାସ୍ତ କରିପାରିବେ ନାହିଁ । ପଂକ୍ତିରୁ ପଂକ୍ତିକୁ ଗତି କଲାବେଳେ ଯେଉଁ ବିରାମ ନେବାକୁ ପଡ଼େ କ୍ଷଣକ ପାଇଁ, ସେତେବେଳେ ସେ ଅବଶ୍ୟ ମୁଣ୍ଡ ଟେକନ୍ତି । କିନ୍ତୁ ଅନାନ୍ତି କେବଳ ଏକ ବ୍ୟାପକ ସମଷ୍ଟିକୁ, କେଉଁ ବ୍ୟକ୍ତିକୁ ନୁହେଁ ।

କିନ୍ତୁ ଆଜି ତାଙ୍କ ଦୃଷ୍ଟିକୁ ଧରିରଖିଲା ଗୋଟିଏ ସାନ ପାତଳୀ କାଳୀ ଝିଅର ଅପଲକ ଚାହାଣି । ଆଗ ଧାଉଡ଼ିରେ ବସି ନାହିଁ, ହେଲେ ଏମିତି ପହୁଞ୍ଚ ତା' ଚାହାଣିର ଯେ ମନେହେବ ତାହା ଦୂରତ୍ୱକୁ ପରୁଆ ନ କରି ଧାଇଁଆସିଛି ତାଙ୍କ ପାଖକୁ, ତାଙ୍କ ଚେତନାକୁ ଖୁମ୍ପିବାପାଇଁ । ଯେମିତିକି ତାହାହିଁ ତା'ର ପାଉଣା । ସେ ଜୋର୍‌କରି ଛଡ଼େଇ ଆଣିଲେ ନିଜକୁ ଏବଂ ପରବର୍ତ୍ତୀ ପଂକ୍ତିକୁ ପଢ଼ିବାକୁ ଲାଗିଲେ । ଯେଉଁଠି ଗୋଟାଏ କାଉ ଖୁମ୍ପିବାରେ ଲାଗିଛି ଗୋଟାଏ ଖତଦିଆ ଉଜୁଡ଼ା ବଗିଚାକୁ । ସେ ତାଙ୍କ ମିଷ୍ଟିକ୍ ରୂପକଳ୍ପରେ ଜଣାଇବାକୁ ଚାହୁଁଥିଲେ ଯେ କାଉଟା ଗୋଟାଏ ଅସୁନ୍ଦର କାମ କରୁଛି ବୋଲି ଭାବ ନାହିଁ, ଗୋଟାଏ ପ୍ରାଣହୀନ ବସ୍ତୁକୁ ଧର୍ଷଣ କଲାପରି । ନା, ସେ ଅଦମ୍ୟ ଅପରାଜିତ ପ୍ରାଣୀର ପ୍ରତୀକ । ଯେ ତଥାପି ଲୋଡୁଛି ତଥାପି ମାଗୁଛି, ତମକୁ ଛାଡ଼ିବ ନାହିଁ ତା'ର ପ୍ରାପ୍ୟ ହାସଲ ନ କରିବାଯାଏଁ । ଯଦିଓ ତା'କୁ ଜଣା ନାହିଁ ତା'ର ପ୍ରାପ୍ୟଟି କଅଣ । ହେଲେ ଏଇକ୍ଷଣି ତାଙ୍କର ମନେହେଲା, ଧାଡ଼ିଗୁଡ଼ିକ ପଢୁ ପଢୁ ଯେ କବିତାକାଉର ଭାବରୂପ ଏଇ କାଳୀଝିଅପରି । ଏକ ଅସାମାନ୍ୟା ଦୁର୍ବିନୀତା ନାରୀ, ଯେ କେବଳ ବିମୁଗ୍ଧା ନୁହେଁ, ମୁଗ୍ଧ ହୋଇ ଉଠିବାର ମୂଲ୍ୟ ମଧ୍ୟ ସେ ଆଦାୟ କରିନେବାକୁ ଚାହେଁ ତମଠାରୁ ।

କେତେବେଳେ ତାଙ୍କର ମନେ ପଡ଼ିଲା । ଇଏ ସେଇ ଓଡ଼ିଆ ଝିଅ ନୁହେଁ ତ, ଯେ ତାଙ୍କ ଆଗରେ ହଠାତ୍ ଉଭା ହେଲା ଏଠିକି ଆସିବାର କିଛି ଦିନ ପୂର୍ବରୁ ଏବଂ ଗୋଟାଏ ନିମନ୍ତ୍ରଣପତ୍ର ହାସଲ କରିନେଲା ତାଙ୍କଠୁ ? ସେତେବେଳେ ବି' ସେ କିଛି ସିଧାସଳଖ ମାଗି ନ ଥିଲା ତାଙ୍କୁ, ହେଲେ ଚଢ଼ଉ କରିଥିଲା ତାଙ୍କ ଉପରେ ତା'ର ଧାଡ଼ ଫୋକସ୍‌କରା ଚାହାଣିରେ ଏବଂ ତାଙ୍କର ତର ସହିଲା ନାହିଁ ତା'ର ଚାହିଦାକୁ ପୂରା ନ କରିବାଯାଏଁ । ବିଚିତ୍ର !

## ତିନି

ନୂଆଦିଲ୍ଲୀ ଷ୍ଟେସନ୍‌ରେ ଓହ୍ଲାଉଥିଲାବେଳକୁ ସ୍ପଷ୍ଟ ଜଣାପଡ଼ିଯାଉଥିଲା ଯେ ଏଠି ମଧ୍ୟ ବର୍ଷା ହୋଇଥିଲା ଏବଂ ହେବ । ପାଣିପାଗର ସୂଚନା ଅନୁଯାୟୀ ମୌସୁମୀର ଏତେ ଶୀଘ୍ର ଆସିବାର ଥିଲା । ନା ସେ ବି' ଦିଲ୍ଲୀକୁ ପ୍ରଥମଥର ପାଇଁ ଆସିଥିବା ଜଣେ ଆଶାୟୀ ଅତିଥିକୁ ନିରାଶ କରିବାକୁ ଚାହିଁଲା ନାହିଁ ?

ଟ୍ରେନ୍‌ରୁ ଓହ୍ଲେଇ ଆସିଲା ପରେ ପରେ କେ-ବି-କେଙ୍କୁ ସୁଯୋଗ ମିଳିଲା ଶୈଳଜାକୁ ଦି'ପଦ ଶୁଣେଇବାପାଇଁ । ଝିଅଟା ଏକୁଟିଆ ଠିଆ ହୋଇଛି ପ୍ଲାଟ୍‌ଫର୍ମରେ, ତା'ର ଦୟନୀୟ ସୁଟ୍‌କେଶ୍ ଖଣ୍ଡକ ପାଖରେ ରଖି । ହଜିଗଲା ପରି ଲାଗୁଛି ।
କ'ଣ ନୂଆ ହୋଇ ଆସିଛୁ କି ? ନା ତୋର କେହି ନାହାଁନ୍ତି ତୋତେ

ପାଛୋଟି ନେବାପାଇଁ ? କେ-ବି-କେ ମିଛିମିଛିକା ସହାନୁଭୂତି ଦେଖାଇଲେ ତା' ପ୍ରତି ।

ସେଇଠୁଁ ତା'କୁ ଛିଗୁଲେଇଲେ ମନେ ମନେ । ... କିଲୋ, ତୋର ସାହିତ୍ୟିକ ବନ୍ଧୁମାନେ ଗଲେ କୁଆଡ଼େ, ଯାହାଙ୍କ ଆଗରେ ତୁ ସ୍ୱର ମେଳି ଦେଇଥିଲୁ, ତାଙ୍କ ମଦନିଶାକୁ ଆହୁରି ତେଜିବା ପାଇଁ ? କେହିହେଲେ ପଚାରିଲେ ନାହିଁ ତୋତେ, ନେଇଗଲେ ନାହିଁ ତାଙ୍କ ନହରକୁ ? ଆ-ହା ! ... ହେଲେ ସେ ତତ୍‌କ୍ଷଣାତ୍ ତା' ପାଖକୁ ଯାଇ ଯାହା କହିବାର କହିପାରିଲେ ନାହିଁ । ସାମାଜିକ ଭଦ୍ରତାର ତାଲିମ ତାଙ୍କୁ ବାଧାଦେଲା, ଖାଲି ତା' ନୁହେଁ । ବଡ଼ ସହରର ଏଇ ଅପର ଜନଗହଳି ଭିତରେ ଯେଉଁ ଝିଅଟିଏ ଏକୁଟିଆରେ ଠିଆ ହୋଇଛି, କେତେ ସାନ ଓ ଅସହାୟ ଦେଖାଯାଉଛି, ତା'କୁ ଦି'ପଦ ଶୁଣେଇହେବ ନାହିଁ । ଫର୍‌ଗେଟ୍ ଇଟ୍ ! ଲେଟ୍ ହର୍ ଗୋ ଟୁ ହେଲ୍ ! କେ-ବି-କେ ଉଦ୍ୟତ ହେଲେ ଆପଣା ରାସ୍ତା ଧରିବା ଲାଗି ।

କିନ୍ତୁ ଏଇ ସମୟରେ ଶୈଳ ମୁହଁ ଫେରାଇଲା ତାଙ୍କ ଆଡ଼କୁ ଏବଂ କେ-ବି-କେଙ୍କର ମନେହେଲା ଯେ ଏଇ ଝିଅ କେବଳ ବଡ଼ ସହରରେ ହଜିଯାଇ ନାହିଁ, ଅନ୍ଧାରରେ ହଜିଯାଇଛି । ପ୍ଲାଟ୍‌ଫର୍ମର ଆଲୁଅ ତା'ର କିଛି ସାହାଯ୍ୟ କରିପାରୁ ନାହିଁ । ସେ ଲୋଡୁଛି କେଉଁ ଦରଦୀ ମଣିଷର ସାହାଯ୍ୟ, ତା'ର ଆପଣା ରୂପରେଖକୁ ଫେରିପାଇବାପାଇଁ । ନା, ଅନ୍ୟାୟ ହେବ ତା'କୁ ଏମିତି ଛାଡ଼ିକରି ଯିବା । ଯେତେହେଲେ ଓଡ଼ିଆ ଝିଅ, ତେଣୁ ତାଙ୍କର କର୍ତ୍ତବ୍ୟ...

ଆଗେଇଯାଇ ସେ ନିଜର ପରିଚୟ ଦେଲେ, "କ୍ଷମା କରିବେ ମୋ ନାଆଁ କୁଲ୍‌ଭୂଷଣ୍ କର୍ । ମୁଁ ଏଇଠି କାମ କରେ ।"

"ଓଡ଼ିଆ ?" ହସ ହସ ମୁହଁରେ ବିସ୍ଫାରିତ ଚକ୍ଷୁ ।

"ହଁ । ଏଇଠିକାର ଜଣେ ଆଇ.ଏ.ଏସ୍. ଅଫିସର୍ । ଅର୍ଥ ବିଭାଗ ।"

ଶୈଳର ବିସ୍ମୟାନନ୍ଦକୁ ଯେକୌଣସି ଲୋକ ବୁଝି ନେଇପାରିଥାଆନ୍ତା । କେ-ବି-କେ ତ ସହଜେ ଜଣେ ବିଚକ୍ଷଣ ଅଧିକାରୀ । ସେହେତୁ ସେ କହିଚାଲିଲେ,

"ମୁଁ ଏକା କମ୍ପାର୍ଟମେଣ୍ଟରେ ଥିଲି ଏବଂ ଆପଣ ଯେତେବେଳେ କରିଡର୍‌ରେ ଥିଲେ, ଆଉ 'ତୁହି ମା ଜନମଭୂମି' ଗାଉଥିଲେ, ମୁଁ ଥିଲି ସେଠି—"

"ଓଃ— ! ଝିଅଟା ଅପ୍ରତିଭ ହୋଇଉଠୁଛି । ଲାଜଠାରୁ ବଳି ସରମ । ଛାଡ଼, ତା'କୁ ଆଉ ହଇରାଣ କରିବା ନାହିଁ । ଏଇ ମର୍ମରେ କେ-ବି-କେ ତାଙ୍କ କଥାର ମୋଡ଼ ବଦଳେଇ ପଚାରିଲେ—

"ଆପଣ କେଉଁଠିକି ଯିବେ ?"

"ମୁଁ-ମୁଁ କହିପାରୁ ନାହିଁ ଠିକ୍ ଭାବରେ । ମୋର ଜଣେ ସାଙ୍ଗ ପାଖକୁ ଚିଠି ଲେଖିଥିଲି । କିନ୍ତୁ ସେ ବୋଧହୁଏ ଆସିପାରି ନାହିଁ କୌଣସି କାରଣରୁ । ଭାବୁଛି... କାଳୀବାଡ଼ିକୁ ଯିବି, ନ ହେଲେ ଜଗନ୍ନାଥ ମନ୍ଦିରକୁ, ସେଠି କୁଆଡ଼େ ରହିବାର ବ୍ୟବସ୍ଥା ଅଛି ଅଳ୍ପ କିଛିଦିନ ପାଇଁ । ଦଶ ତାରିଖ ଦିନ ଗୋଟାଏ ସଭାକୁ ଯିବାର ଅଛି, ମୁଁ ଚାଲିଯିବି ତା' ଉତ୍ତାରୁ..."

"ହୁଁ । କବିତା ପାଠୋତ୍ସବ । ଯାହା ମନେହେଲା ଆପଣଙ୍କ ସହଯାତ୍ରୀମାନଙ୍କ କଥାବାର୍ତ୍ତାରୁ । କିନ୍ତୁ ଯେଉଁ ମନ୍ଦିରକୁ ଯିବାପାଇଁ ବାହାରିଛନ୍ତି, ସେଠି ଜାଗା ଖାଲି ଅଛିତ ଆପଣଙ୍କପାଇଁ ?"

"ମୁଁ ଜାଣେ ନାହିଁ ।"

କେ-ବି-କେ ହସିଉଠି କହିଲେ, "ଫାଷ୍ଟକ୍ଲାସ୍ । ଆପଣଙ୍କ ପରି ଦୁଃସାହସୀ ଏକୁଟିଆ ସ୍ତ୍ରୀଲୋକ, ବିଶେଷତଃ ଓଡ଼ିଆଣୀ, ମୁଁ ଦେଖି ନ ଥିଲି ଆଜିଯାଏଁ । ଶୁଣନ୍ତୁ, ମୁଁ ପ୍ରସ୍ତାବ କରୁଛି ଯେ ଆପଣ ଆମ ଘରେ ରହିବେ ଏଇ କିଛିଦିନ । କିଛି ଆପତ୍ତି ଅଛି ? ଘରେ ମୁଁ, ମୋ ସ୍ତ୍ରୀ ନୀଲିମା ଏବଂ ଯୋଡ଼ିଏ ରୁମୁରୁମିଆ ଡାର୍ଲିଂ, ଟିମ୍ ଆଉ ବିମ୍ । ଅନେକ ନିରୋଳା ଜାଗା ପାଇବେ କବିତା ଲେଖିବାପାଇଁ ଏବଂ ମୁଁ ଗ୍ୟାରେଣ୍ଟି ଦେଉଛି କେହି ଆପଣଙ୍କୁ ଡିଷ୍ଟର୍ବ କରିବେ ନାହିଁ । ଅବଶ୍ୟ ମୁଁ ଏଇ ଦି'ଟା ଡାର୍ଲିଂଙ୍କ ତରଫରୁ କହୁଛି, ଆଉ ଡାର୍ଲିଂ ପାଇଁ ନୁହେଁ (ହୋ-ହୋ ହସ)..."

କେ-ବି-କେ ଅନୁମାନ କଲେ ଯେ ଝିଅର ବିସ୍ମୟ ବଳିଗଲାଣି ତା' ଆନନ୍ଦଠାରୁ । ବିଚାରୀ ଏଭଳି ମୁକ୍ତକଣ୍ଠରେ ହାସ୍ୟବନ୍ତ ଆହ୍ୱାନକୁ ନିମନ୍ତ୍ରଣ ବୋଲି ଭାବିବ କି କଅଣ ବୁଝିପାରୁ ନାହିଁ । ତା' ପାଖରେ ଯଥାଯୋଗ୍ୟ ଭାଷାର ତାଲିମି ନାହିଁ ଯେ ଭଦ୍ରତା ଖାତିରରେ ନାହିଁ କରିବ, କାହିଁକି ଆପଣଙ୍କୁ କଷ୍ଟ ଦେବି ବୋଲି କହିବ, ଅଥଚ ଜଣାଇଦେବ ଯେ ସେ ପ୍ରକୃତରେ ସେଇଆ ଚାହେଁ । ଆତୁରତା ଉତୁରି ଉଠୁଛି ତା' ମୁହଁରେ ମୋ ଡାର୍ଲିଂମାନଙ୍କୁ ଦେଖିବାପାଇଁ ଏବଂ ଟିକିଏ ଆରାମ କରିବାଲାଗି, ଟ୍ରେନ୍‌ର ସେହି ଲଜ୍ଜାଜନକ ଅନୁଭୂତି ପରେ । ତେଣୁ ସେ ଅବିଳମ୍ବେ ତା'କୁ କହିଲେ, ଆଦେଶ କଲାପରି,

"ହଉ, ଯିବା ଚାଲନ୍ତୁ ।"

ଏବଂ ଶୈଳଜା ଚୁପ୍‌କିନି ତାଙ୍କ ପଛେ ପଛେ ଚାଲିଲା ।

ତା'ପରେ ଟ୍ୟାକ୍‌ସି ଯୋଗେ କାକାନଗରରେ ଥିବା ଗୋଟିଏ ସରକାରୀ ଦି'ମହଲା କୋଠାର ଉପରମହଲା । ଘରେ ପହଞ୍ଚୁ ନ ପହଞ୍ଚୁଣୁ କେ-ବି-କେ ଡାକ ଛାଡ଼ିଲେ, ଇଂରେଜୀରେ—

"ନୀଲ୍, ଦେଖ ଜଣେ ଅତିଥି ଆସିଛନ୍ତି ତୁମ ପାଇଁ । ଓଡ଼ିଶାରୁ ।"

ତିନୋଟିଯାକ ଡାଲିଂ ଆସି ପହୁଞ୍ଚିଗଲେ ଆଗପଛ ହୋଇ । କେ-ବି-କେ ହାଲୁକା ଚୁମାଟିଏ ଦେଲେ ଜଣକୁ ଏବଂ ଆଉ ଦି'ଜଣଙ୍କୁ କୋଳକୁ ଉଠେଇନେଲେ । ସେଇଠୁଁ ସମସ୍ତେ ଯାତ୍ରା କଲେ ଲିଭିଙ୍ଗ୍ ରୁମ୍‌ର ସୋଫାକୁ । କିନ୍ତୁ ଇତିମଧ୍ୟରେ ନୀଲିମା ହାଲୁକା ହସଟିଏ ଦେଇ ସାରିଲେଣି ଶୈଳକୁ ଈଷତ୍ ମଥା ନୂଆଇଁ, ନିମନ୍ତ୍ରଣର ଭଙ୍ଗୀରେ ।

ଶୈଳ ଦୁଇ ହାତ ଯୋଡ଼ି ନମସ୍କାର କଲା ଭଦ୍ରମହିଳାଙ୍କୁ ଏବଂ ତା'ର ମନେହେଲା ସେ ଜଣେ ପରୀଙ୍କୁ ଦେଖୁଛି । ସେ ଅତି ସୁନ୍ଦରୀ ନ ହୋଇପାରନ୍ତି, କିନ୍ତୁ ତାଙ୍କ ଚେହେରା, ବେଶଭୂଷା, ଭାବଭଙ୍ଗୀ, ସମସ୍ତ ଅଭିବ୍ୟକ୍ତି ଏତେ ସୂକ୍ଷ୍ମ ଓ ସୌଖୀନ ଯେ ତାଙ୍କୁ ପରୀ ଛଡ଼ା ଆଉ କିଛି କୁହାଯାଇ ନ ପାରେ । ସହଜେ ତାଙ୍କୁ ମିଳୁଛି ଏମିତିକା ହାଲୁକା ଚୁମା ଏବଂ ତାଙ୍କଠାରୁ ମିଳୁଛି ଏଭଳି ହାଲୁକା ହସ ହସ ନିମନ୍ତ୍ରଣର ଇସାରା ।

ବାର୍ତ୍ତାଳାପ ସୁରୁ ହେଲା ନୀଳିମାଙ୍କଠାରୁ । ଓଡ଼ିଆରେ ପଚାରିଲେ, "ଓଡ଼ିଶାର କେଉଁଠୁ ଆସିଛନ୍ତି ଆପଣ ?" କିନ୍ତୁ ତାଙ୍କ ଉଚ୍ଚାରଣରୁ ସ୍ପଷ୍ଟ ବୁଝି ହେଉଥିଲା ଯେ ସେ ଓଡ଼ିଆଣୀ ନୁହଁନ୍ତି । ହେଲେ ସେଇ ଉଚ୍ଚାରଣରେ କିଭଳି ମାଧୁର୍ଯ୍ୟ ଥିଲା କେଜାଣି, ଶୈଳର ଖିଆଲ ହେଲା ଯେ ପରୀମାନେ ପାର୍ଥିବ ଭାଷାରେ କଥା କହିଲେ ଏମିତି ଶୁଣାଯାଆନ୍ତା ବୋଧହୁଏ ।

କିଭଳି ସେ ପରୀଭାବ, କେଉଁ ଉପାଦାନରେ ଗଢ଼ା ? ଶୈଳକୁ ବାଧା ହୁଅନ୍ତା ସେହି ପ୍ରକାର ପ୍ରଶ୍ନ ପଚରାଗଲେ । କାରଣ ରୋମାଣ୍ଟିକ୍ ମନୋଭାବରେ ଯେଉଁ ଗୋଲାପୀ କୁହୁଡ଼ି ଅଛି ଓ ସେଥିର ଆବେଶ, ତା'କୁ ତମେ ସ୍ଥୂଳ ଚମହାତରେ ଚିରିଦେବାକୁ ଚାହୁଁଛ ବୋଲି ତା'ର ମନେହୁଅନ୍ତା । ସତେକି ଚିତ୍ରପ୍ରତିମା ଭିତରେ ଯେଉଁ ନାରଖାର ଅଛି, ତା'କୁଇ ତମେ ଦେଖିବା ପାଇଁ ହମହମ ହେଉଛ । ଛିଃ !

ଯାହାହେଉ କହିବା ପାଇଁ ବାଧ ହେଲେ ସେ ଯେଉଁ ଆଇଟେମ୍‌ଗୁଡ଼ିକୁ ଚିହ୍ନେଇଦିଅନ୍ତା ସେଗୁଡ଼ିକ ମୋଟାମୋଟି ଏହି ଧରଣର  ଦେଖ, ତାଙ୍କ ଚେହେରା ଲମ୍ବା, ହେଲେ ଚଉଡ଼ା ନୁହେଁ । ତନ୍ୱୀ, କିନ୍ତୁ ଶୁକୁଟୀ ନୁହନ୍ତି । ଈଷତ୍ ଦୋଳାୟମାନ ଭଙ୍ଗୀ ତାଙ୍କ ଚାଲିରେ, କିନ୍ତୁ ତା'କୁ କ୍ଲାସିକାଲ୍ ଗଜଗମନ ବୋଲି କୁହାଯିବ ନାହିଁ । ଆଧୁନିକ ଛଇଳିପଣ ମଧ୍ୟ ନାହିଁ ସେଥିରେ । କେବଳ ଗୋଟାଏ ଆରାମପ୍ରଦ ଆତ୍ମୀୟତାର ବ୍ୟଞ୍ଜନା । —ଏଇ ଜୀବନ ପାଇଁ ତଥା ଏଇ ମୁହୂର୍ତ୍ତ ଏବଂ ଅତିଥିପାଇଁ । ଧୀର ସମୀରଣରେ ଦ୍ରୁମଦଳ ଯେମିତି ଟିକିଏ ଢଳିଯାଏ, ଥିରପାଣି ଯେମିତି ଟିକିଏ ଚହଲିଯାଏ ଏବଂ ତାଙ୍କର କଥାକୁହା ବି ସେମିତି । ଧୀର,

ଶାନ୍ତ ଏବଂ ସଯତ୍ନଉଚ୍ଚାରିତ । ହେଲେ ସେଥିରେ ଟିକିଏ ସଙ୍ଗୀତ ବି' ଅଛି, ଖାସ୍ ତୁମରି ପାଇଁ । ସ୍ୱର୍ଗରୁ ଓହ୍ଲାଇ ଆସିଛନ୍ତି କେବଳ ତମକୁ ଆପ୍ୟାୟିତ କରିବାଲାଗି । ଅତିଥି ଶୈଳଜାକୁ ଆଶ୍ୱାସନା ଦେବା ଉଦ୍ଦେଶ୍ୟରେ । ବାକୀ ରହିଲା ତାଙ୍କ ନାକ, ମୁହଁ, ଓଠ ଇତ୍ୟାଦିର ଗଢ଼ଣ । କିଏ ପଚାରୁଛି ତା'କୁ ? କେତେକେ ତାଙ୍କୁ ଟାକୁଆଗାଲୀ କହିପାରନ୍ତି । ହୁଏତ କେତେକେ କହିବେ ଯେ ହାଲୁକା ଲିପ୍‌ଷ୍ଟିକ୍ ବୋଳା ସରୁ ଓଠରେ ଯେଉଁ ସ୍ୱାଗତ ହସଟିକ ଫୁଟିଉଠୁଛି, ତାହା ଏତେ ସମ୍ଭ୍ରାନ୍ତ ଯେ ସେଥିରେ ଆନ୍ତରିକତା ଥିଲାପରି ଲାଗୁ ନାହିଁ । କିନ୍ତୁ ଶୈଳର ଆଖିରେ ସେଭଳି କୌଣସି ଅବିଗୁଣ ଦୃଶ୍ୟ ହେଉ ନ ଥିଲା । ଅଧିକନ୍ତୁ ତା'ର ମନେହେଉଥିଲା ଯେ ସେ ଯେଉଁ ଆସ୍‌ମାନୀ ରଙ୍ଗର ଶାଢ଼ି ପିନ୍ଧିଛନ୍ତି, ଯେଉଁ ମୁକ୍ତାମାଳଟିଏ ଶୋଭା ପାଉଛି ତାଙ୍କ ମରାଳ କଣ୍ଠରେ, ଯେଉଁ ବୁଲ୍‌ବୁଲ୍‌ଟି ତାଳ ଦେଉଛି ତାଙ୍କ କଥା ସାଙ୍ଗରେ, ଯେଉଁ ଚୁଡ଼ି କେଇପଟ ଥାଇ ଥାଇ ଝୁଣୁ ଝୁଣୁ ହେଉଛି, ଧୀରେ, ଅତି ଧୀରେ, ସବୁ ସେଇ ସ୍ୱର୍ଗୀୟ ସୁଷମାର ଅଂଶବିଶେଷ ।

ସୁସ୍ପଷ୍ଟ, ସୁଦୃଢ଼ ଏବଂ ଆତ୍ମବିଶ୍ୱାସୀ ଆଇ.ଏ.ଏସ୍. ଅଫିସର୍‌ଙ୍କ ସାଙ୍ଗକୁ ଏଭଳି ଏକ ପତ୍ନୀ, ପ୍ରଣୟିନୀ... ପାହାଡ଼ର ନିର୍ଝରିଣୀ ପରି, ପଲ୍ଲବର ସଦ୍ୟଫୁଟା ଫୁଲଟିଏ ପରି, ମହାକାଶକୁ ଚିହ୍ନାଉଥିବା ଗୋଟିକିଆ ତାରାଟିଏ ପରି... ଉପମା ଉପରେ ଉପମା ଅଜାଡ଼ି ହୋଇପଡ଼ିଲା ଶୈଳର ମନରେ ଏବଂ ସେ ନିଜକୁ ଭାଗ୍ୟବତୀ ମନେକଲା ଯେ ବଡ଼ ସହରର ସଂଜପହରରେ ସେ କେବଳ ଠାବଟିଏ ଖୋଜି ପାଇବାର କ୍ଳେଶରୁ ରକ୍ଷା ପାଇଯାଇଛି ତା' ନୁହେଁ, ସେ ଏଭଳି ଏକ ଦମ୍ପତିଙ୍କ ଆତିଥ୍ୟ ପାଇପାରିଛି । ଧନ୍ୟବାଦ ଭଗବାନ୍, ଅନେକ ଧନ୍ୟବାଦ । ହେଲେ ସଙ୍ଗେ ସଙ୍ଗେ ତା'ର ମନେ ପଡ଼ିଲା ଟ୍ରେନ୍‌ରେ ଘଟିଥିବା ଘଟଣାବିଶେଷ ଏବଂ ତା'ର ଦୁଃଖଦ ଅନୁଭୂତି । ତା'କୁ ଚେତାଇଦେଲା ପରି ଯେ ଏଇଠି ଭଗବାନ୍ ଅନ୍ୟାୟ କରିଛନ୍ତି ତା' ପ୍ରତି । ନା ତା' ପ୍ରତି ନୁହେଁ, ସମଗ୍ର ସାହିତ୍ୟ ପ୍ରତି, ମାଆ ସରସ୍ୱତୀଙ୍କର ଜଣେ ବରପୁତ୍ର ପ୍ରତି...

ସେଇଠୁଁ ତା'ର ମନ ହେଲା କହିପକେଇବ ସେ କଥାଟା ଏମାନଙ୍କ ଆଗରେ । ଏଇ ଆତ୍ମୀୟତାର ପରିବେଶରେ ଏବଂ ନିଜକୁ ହାଲୁକା କରିଦେବ । କହିବ ସେମାନେ କେତେ ବଡ଼ ଭୁଲ୍, ଭୁଲ୍‌ରୁ ବଳି ପାପ କରିଛନ୍ତି, ରାମହରିବାବୁଙ୍କ ଭଳି କବିଙ୍କ ଉପରେ ଏଭଳି ଗୋଟାଏ ଆକ୍ଷେପ କରି । କିନ୍ତୁ ପରେ ପରେ ତା'ର ମନେପଡ଼ିଲା ଯେ ମିଷ୍ଟର୍ କର୍ ତା'କୁ ଦେଖିଛନ୍ତି ଗୀତ ବୋଲିବାର । ଆଉ ଗୀତବୋଲା ପରେ ଯାହାସବୁ କୁହାକୁହି ହେଉଥିଲେ ସେମାନେ, ସେ ତା'କୁ ବି କ'ଣ ଶୁଣି ନ ଥିବେ ? ତା'ଛଡ଼ା ସେ ଭାବିଲା ଯେ ତା' ଦୁଃଖକୁ

ଏତେ ଶୀଘ୍ର ଲଦିଦେବା ଉଚିତ ନୁହେଁ, ତା'ର ଏଇ ମହାନୁଭବ ବନ୍ଧୁମାନଙ୍କ ଉପରେ । ସେ ତାଙ୍କ ଆତିଥ୍ୟର ଫାଇଦା ନେବ ନାହିଁ ।

ତେଣୁ କେବଳ ପ୍ରାଥମିକ ଚିହ୍ନାପରିଚର ଲଘୁ ବାର୍ତ୍ତାଳାପ ଜାରୀ ରହିଲା । ନୀଲିମାଙ୍କ ପ୍ରଶ୍ନର ଉତ୍ତରରେ ଶୈଳ ଜଣାଇଦେଲା ଯେ ସେ ଓଡ଼ିଶାର ଉତ୍ତର ଅଞ୍ଚଳରୁ ଆସିଛି ଏବଂ ଏଇଥିପାଇଁ ଆସିଛି । କେ-ବି-କେଙ୍କର ଅକୁହା ପ୍ରଶ୍ନର ଉତ୍ତର ମଧ୍ୟ ମିଳିଗଲା ତାଙ୍କୁ ଯେ ସେ ବିବାହିତ । ଓ ତା'ର ପାଞ୍ଚ ଛଅ ବର୍ଷର ଝିଅଟିଏ ବି' ଅଛି ଏବଂ ସ୍ୱାମୀ ବିଜିନେସ୍ କରନ୍ତି । କିଭଳି ବିଜିନେସ୍ କରନ୍ତି, ସେ ବିଷୟରେ କେହି ପଚାରିଲେ ନାହିଁ ତା'କୁ । ସ୍ୱାମୀ କାହିଁକି ସାଙ୍ଗରେ ଆସିଲେ ନାହିଁ, ଅନ୍ତତଃ ସାନଝିଅକୁ କାହିଁକି ଆଣିଲ ନାହିଁ, ଏହି ପ୍ରକାର ମାମୁଲି ପ୍ରଶ୍ନରୁ ମଧ୍ୟ ସେ ରକ୍ଷା ପାଇଗଲା । ଶୈଳର ଧାରଣା ବଳବତ୍ତର ହେଲା ଯେ ଏମାନେ ଭିନ୍ନ, ସାଧାରଣ ଲୋକଙ୍କଠାରୁ ଯଥେଷ୍ଟ ଉଚ୍ଚରେ ଅଛନ୍ତି । କବି ନ ହୋଇପାରନ୍ତି, କିନ୍ତୁ କଲଚର୍ ଅଛି ଏମାନଙ୍କ ପାଖରେ । ଏଇମାନେ ହିଁ ଉପଯୁକ୍ତ ଗ୍ରାହକ; ଈପ୍‌ସିତ ରସିକ ଆମ କାବ୍ୟକବିତାର । ଶୈଳ ସ୍ୱତଃପ୍ରବୃତ୍ତ ହୋଇ କହିଗଲା ନୀଲିମାକୁ, ତା'ର ଘର ପରିବାର ବିଷୟରେ, ଯେତିକି କହିବା କଥା ।

କେ-ବି-କେ ଚୁପ୍‌ଚାପ୍ ବସିଥିଲେ । ନୀଲ୍‌ର ଆଉ ଗୋଟିଏ ଅତିଥି ଯେ ଅନାୟାସରେ କହିଯାଉଛି ତା'କୁ ତା'ର ଜୀବନକାହାଣୀ । କିଛି ନୂଆ ନୁହେଁ । ତେବେ ଶୁଣିବାକୁ ଭଲ ଲାଗେ ଏବଂ ପୁଣି ପ୍ରଶଂସା କରିବାକୁ ଇଚ୍ଛା ହୁଏ ତାଙ୍କର ଅସାମାନ୍ୟା ପଦ୍ଧତିଟିକୁ, ଯେ ଛାଣି ନେଉଛି ଆଉ ଜଣକର ସୁଖଦୁଃଖ, ଭଲମନ୍ଦର ଇତିହାସ । ଇସ୍, କେଡ଼େ ମନଧ୍ୟାନ ଦେଇ ଶୁଣୁଛି ଦେଖୁନ' ?

ଏଁ, କଅଣ କହିଲା ? କେ-ବି-କେ ହଠାତ୍ ଚେଇଁଉଠିଲେ ତାଙ୍କର ଉଦାର ଅନ୍ୟମନସ୍କ ଭାବରୁ । ବାଲେଶ୍ୱର ଜିଲ୍ଲାରେ ଘର । ଗାଆଁ ନାଆଁ ପାଲିଙ୍କିପୁର । ପାଲିଙ୍କିପୁର ମଜାର ନାଆଁଟିଏ । ଏମିତି କେତେ କଉତୁକିଆ ନାଆଁ ଅଛି ଆମ ଦେଶରେ । ହେଲେ ଏଇ ନାଆଁଟା କାହିଁକି ଏମିତି କୁତୁକୁତୁ କରୁଛି ମୋତେ ?

କେତେବେଳକେ ମନେପଡ଼ିଲା । ଯେତେବେଳେ ଶୈଳ ଲାଜେଇ ଲାଜେଇ ଏବଂ ଥଙ୍ଗେଇ ଥଙ୍ଗେଇ ବର୍ଣ୍ଣନା କରୁଥିଲା ତା'ର କବି ହେବାର କାହାଣୀ । ମୋର ଏଇ ତୁଚ୍ଛ ସାମାନ୍ୟ କବିତ୍ୱ କଥା କ'ଣ କହିବି ଆପଣଙ୍କ ପରି ଜଣେ ମହୀୟସୀ ନାରୀଙ୍କ ଆଗରେ—ଏଇ ଭାବରେ ।

ମନେପଡ଼ିଲା । 'ଭାଇନା କ'ଣ ଆମର ପାଲିଙ୍କି ଚଢ଼ି ଯିବେ ସେଠିକି ?' ହିଁ—ହିଁ । ଦଶବର୍ଷିଆ ସାନଭଉଣୀ ସୁଧାର ପରିହାସ । ପିଲାଳିଆ ରସିକତା ।

ହେଲେ ବୋଉ ତା'କୁ ଦବେଇଦେଲା । କହିଲା— ତୁ ଗଲୁ ଏଠୁ ? ପାଞ୍ଚରେ ପଞ୍ଚେଇ ହେବା ଦରକାର ନାହିଁ ।

କେ-ବି-କେ ଆଉ ସମ୍ଭାଳିପାରିଲେ ନାହିଁ । ଆଳାପର ରସଭଙ୍ଗ କରି ପଚାରି ବସିଲେ,

"ଆପଣଙ୍କ ବାପାଙ୍କ ନାଆଁ କ'ଣ କହିଲେ ?"

"ମୋ ବାପାଙ୍କ ନାଆଁ ? ତାଙ୍କ ନାଆଁ ବିଦ୍ୟାଧର ତ୍ରିପାଠୀ । ପାଲିଙ୍କିପୁର ପୋଷ୍ଟମାଷ୍ଟର ଥିଲେ । ପ୍ରକୃତପକ୍ଷେ ପାଲିଙ୍କିପୁର ଆମ ଆଦିନିବାସ ନୁହେଁ । କିନ୍ତୁ ବାପା ଆମର ସେଇଠି ବସବାସ କରି ରହିଗଲେ ରିଟାୟାର୍ କଲା ପରେ । ଆପଣ କ'ଣ ଜାଣିଛନ୍ତି ତାଙ୍କୁ ?"

କେ-ବି-କେ କହିଲେ, 'ହଁ, ଜାଣିଥିଲି ଅଳ୍ପବହୁତ ।"

ଶୈଳ ଆହୁରି କିଛି ପଚାରିଲା ନାହିଁ । ସତେକି ଅତୀତର ଏଇ ସବୁ ପାରିବାରିକ ସମ୍ପର୍କ ଅବାନ୍ତର, ଆଜିର ପରିପ୍ରେକ୍ଷୀରେ । ଏଇ ନବଲବ୍ଧ ସାନ୍ନିଧ୍ୟର ପରିବେଶରେ । କେ-ବି-କେ ନିଃଶ୍ୱାସ ମାରିଲେ । ... ଥ୍ୟାଙ୍କ୍ସ । ମୁଁ 'ଅଳ୍ପବହୁତ' ଜାଣିଥିଲି ତା' ବାପାଙ୍କୁ, କାରଣ ଜଗନ୍ନାଥ ମଉସା ଯେ କି ପୋଷ୍ଟାଲ୍ ଡିପାର୍ଟମେଣ୍ଟର ଅନ୍ୟତମ ପୋଷ୍ଟମାଷ୍ଟର୍ ଥିଲେ ସେ ତାଙ୍କ ସହକର୍ମୀଙ୍କ ଝିଅ ବିଷୟରେ ଗୋଟାଏ ପ୍ରସ୍ତାବ ଆଣି ପହୁଞ୍ଚେଇଥିଲେ ବୋଉ ପାଖରେ, ଯେତେବେଳେ ଗଦା ଗଦା ପ୍ରସ୍ତାବ ଅଜାଡ଼ି ହୋଇ ପଡୁଥିଲା ଆମ ଘରେ, ମୁଁ ଆଇ.ଏ.ଏସ୍. ପାଇଲା ପରେ । ଅନ୍ଦରୁ ହୁଏତ ବେଶୀ ଜାଣିଥାଆନ୍ତି, ଯଦି ମୁଁ ତାଙ୍କ କନ୍ୟାଙ୍କୁ ବାହା ହୋଇଥାଆନ୍ତି । କିନ୍ତୁ ବୋଉ ହସିଲା ଏବଂ ଉଚିତରୁ ଅଧିକ ହସିଲା ମଉସା ଫେରିଗଲା ପରେ । କହିଲା—"ଜଗୁଭାଇନାଙ୍କ ବୁଦ୍ଧିକୁ ଦେଖ ! ଯେଉଁଠି କାହିଁ କାହିଁ ବଡ଼ଲୋକମାନେ, ହାକିମ, ଡାକ୍ତର, ବିଜିନେସ୍‌ବାଲାଙ୍କଠାରୁ ପ୍ରସ୍ତାବ ଆସୁଛି ମୋ ପୁଅ ପାଇଁ, ଆମେ ଯୌତୁକର ନାଆଁ ନ ଧରିଲେ ବି' ଲକ୍ଷ ଲକ୍ଷ ଟଙ୍କାର ଧନସମ୍ପତ୍ତି ଯାଚୁଛନ୍ତି ଆମକୁ, ସେଠି ଇଏ ଆଉ କାହାକୁ ପାଇଲେ ନାହିଁ ? ଛାଡ଼୍, ଝିଅଟା ଭଲା କୋଉ ସୁନ୍ଦରୀ ହୋଇଥାଆନ୍ତା ? ନିଜେ କହୁଛନ୍ତି ଯେ ସେ କାଳୀ, କିନ୍ତୁ କୁଆଡ଼େ ଦେଖିବାକୁ ଭଲ । କିଓ, ତା' କେମିତି ହେବ ? ପୁଣି କୁଆଡ଼େ ଏମିତି ଗୁଣର ଯେ କହିଲେ ନ ସରେ । ଏତେ ବଡ଼ ପରିବାରକୁ ସେଇ ଏକା ସମ୍ଭାଳିଛି । କାହାରି ମନରେ କଷ୍ଟ ଦିଏ ନାହିଁ । ପଢ଼ାପଢ଼ି ସାଙ୍ଗକୁ ଯାବତୀୟ ଘରକାମ; ଚକ୍ରି ପରି ଘୂରୁଥାଏ, ସକାଳୁ ସଞ୍ଜଯାଏଁ । କିନ୍ତୁ ସବୁବେଳେ ହସ ହସ । ଖାଲି ତା' ମୁହଁଟା ଶୁଖିଯାଏ, ଯେତେବେଳେ ତା'ର ମନେହୁଏ ଯେ ତା'ର କେଉଁ ଭୁଲ୍ ତ୍ରୁଟି ଯୋଗୁଁ ଆଉ କାହା ମନରେ

କଷ୍ଟ ହୋଇଥିବ ପରା ! ଜଗୁଭାଇନାଙ୍କ ପାଟିରେ ବାଟୁଳି ବାଜୁ ନ ଥାଏ । ଖାସା ପାଠ ପଢ଼େଇଥିବ ତାଙ୍କୁ ସେଇ ଟୋକୀର ବାପା...'' କେ-ବି-କେଙ୍କର ମନେପଡ଼ିଗଲା ସେ ଦିନର ଦୃଶ୍ୟ । ବୋଉ କେମିତି ନକଲ କରୁଥାଏ ଜଗନ୍ନାଥ ମଉସାଙ୍କୁ, ଆଉ ହସି ହସି ଗଡୁଥାଏ ତାଙ୍କ ନିର୍ବୁଦ୍ଧିଆପଣରେ ।

ଏବଂ ତା'ର ହସ କାନ୍ଦ ପରି ମନେହେଲା, ଜଗୁଭାଇନାଙ୍କ ଚରମ ନିର୍ବୋଧତାକୁ ମନେପକାଇ, ଯେତେବେଳେ ସେ ତାଙ୍କର ଆଉ ପଦେ ଉଦ୍ଧାର କରି କହିଲା—''ଆଉ ଜାଣିଛ ଗୋଟାଏ କଥା ? ଏଡ଼ିକି ଟିକିଏ ଝିଅ, ସେ ପୁଣି କବିତା ଲେଖେ । ତା'ର ଗୋଟାଏ କବିତା ବାହାରିଥିଲା ମ୍ୟାଗାଜିନ୍‌ରେ, ମୁଁ ପଢ଼ିଛି ତା'କୁ । ଏତେ ସୁନ୍ଦର, ଆଉ କ'ଣ କହିବି ? ବଡ଼ ବଡ଼ କବିଙ୍କର ନାକ କାଟିଦେବ...''

କେ-ବି-କେ ସ୍ତବ୍ଧ ହେଲେ । ଏଇ ସେଇ ଝିଅ ! ସସ୍ମିତା, ଶ୍ୟାମଳୀ । ଏବଂ ଏଇ ସେଇ ଗୁଣବତୀ; ଯେ ସହଜେ ଦଳେ ଅଭଦ୍ର ଲୋକଙ୍କ ଆଗରେ ଗୀତ ନ ଗାଇ ରହିପାରିଲା ନାହିଁ, କାଳେ ତାଙ୍କ ମନରେ କଷ୍ଟ ହେବ ବୋଲି । ଆଉ ସେ ସତସତିକା କବିଟିଏ ହେଲାଣି । କୋଉ ପାଲିଙ୍କିପୁରରୁ ପହୁଞ୍ଚିଲାଣି ଦିଲ୍ଲୀଯାଏଁ । କେ-ବି-କେ ଶୈଳର ମୁହଁକୁ ଅନେଇଲେ ଥରେ ଭଲଭାବରେ, ସେ ଯାହା ଭାବୁ ପଛେ, ତା'ପରେ ସେଠୁଁ ଉଠି ଚାଲିଗଲେ ନିଜ ମନର ଭାବନାକୁ ସଜାଡ଼ିବାଲାଗି । ନୀଲ୍ ବୁଝୁ ତା'ର ଏଇ ନୂଆ ଅତିଥିଟିର ଖବର । କେତେ କିସମର ଅତିଥିଙ୍କୁ ସେ କିଣିନେଇଛି । ଇଏ ଆଉ ଜଣେ ମାତ୍ର, ହେଲା ଏବେ ଓଡ଼ିଶାରୁ ଆସିଛି ଏବଂ ସାଦାସିଧା ନିରୀହ ପ୍ରାଣୀଟିଏ ।

କିନ୍ତୁ ମୋ ପାଇଁ କେବଳ ସେତିକି ନୁହେଁ । କାରଣ ମୁଁ ତା'କୁ ବାହା ହୋଇପାରି ଥାଆନ୍ତି । ମୁଁ କୌଣସି ପ୍ରସ୍ତାବରେ ରାଜି ହେଲି ନାହିଁ, କାରଣ ମୁଁ ବରାଦିଆ ବାହାଘରରେ ବିଶ୍ୱାସ କରେ ନାହିଁ । ମୁଁ ନୀଲ୍‌କୁ ଲଭ୍ କରି ବାହା ହେଲି । ଏବେ ମଧ୍ୟ ଭଲ ପାଏ ତା'କୁ, ରୀତିମତ ଭଲପାଏ । କିନ୍ତୁ କଥା ହେଉଛି... ମଜା ଲାଗୁଛି ଭାବିବାକୁ ଯେ ଯା'କୁ ମୁଁ ବାହା ହୋଇପାରିଥାଆନ୍ତି । ବୋଉର ବଡ଼ଲୋକୀ ଖାନ୍‌ଦାନି ହସ ମୋତେ ମୋଟେ ଭଲ ଲାଗୁ ନ ଥିଲା । ହୁଏତ ଖାସ୍ ସେଇଥିପାଇଁ ମୁଁ କହିପକେଇଥାଆନ୍ତି— ''ନାଇଁ ବୋଉ, ଏଇ ଝିଅଟି ପସନ୍ଦ ହେଉଛି ମୋର, ମୁଁ ତା'କୁଇ ବାହା ହେବି ।'' ତା'ହେଲେ ?

ଆଚ୍ଛା ଧର, ମୁଁ ଯା'କୁ ବାହା ହୋଇଥାଆନ୍ତି, ଏଇ ଶୈଳ ଝିଅଟିକୁ, ଯା'କୁ କ'ଣ ଲଭ୍ କରି ହୋଇଥାଆନ୍ତା ?

ପ୍ରଥମ ପ୍ରଶ୍ନଟାକୁ ସେ ତତ୍‌କ୍ଷଣାତ୍ ବାତିଲ୍ କରିଦେଲେ । ହୋଇପାରେ ଯେ ସେ କଦାପି ଏତେ ସୌଖୀନ ନୁହେଁ ନୀଲ୍‌ପରି, ଆଉ ଉପର ମହଲର

ଅର୍ଥାତ୍ ଆମ ସର୍କଲ୍‌ର ରୁଚିବୋଧ, ରସବୋଧ, ଆଦବ୍‌କାଇଦା, କିଛି ଜଣା ନାହିଁ ତା'କୁ । ତା' ବୋଲି ଭାବିବା ଭୁଲ୍, ନିହାତି ଭୁଲ୍ ଯେ ସେ ନିଜକୁ ଚଳେଇପାରି ନ ଥାଆନ୍ତା ଆଇ.ଏ.ଏସ୍.ର ପତ୍ନୀ ହିସାବରେ । ନୈସର୍ଗିକ ବୁଦ୍ଧି, ମାଟିରୁ ଗଜୁରିଥିବା ବୁଦ୍ଧି ଠୁଳ ହୋଇ ରହିଛି ତା'ର ସେଇ ଉଜ୍ଜ୍ୱଳ ଆଖିରେ, ତୋଫା ଚାହାଣିରେ । ସେ ପାରିଥାଆନ୍ତା, ଅବଶ୍ୟ ପାରିଥାଆନ୍ତା ।

ଧ୍ୟାତ୍, ତା' ନୁହେଁ । ଲଭ୍ ଏ ସବୁଥିରେ ନ ଥାଏ । ତା'ର ଉପାଦାନ ଭିନ୍ନ ।

କିନ୍ତୁ କ'ଣ ତା'ର ଉପାଦାନ ? ତା'ର ସନ୍ଧାନ ପାଇଥିଲ କି ନୀଲ୍‌କୁ ଲଭ୍ କଲାବେଳେ, ନା ପାଇଗଲଣି ଯା' ଭିତରେ ? ମାଇ ଡିଅର୍ ଫେଲୋ, ତମେ କ'ଣ ସତରେ ଭାବୁଛ ଯେ ଏଇ ଝିଅଟା, କୋଉଠି ଥିଲା ଆସି ପହୁଞ୍ଚିଯାଇଛି ଏଠି, ଲଥିକିନି ବସିଛି ତମ ସୋଫା ଉପରେ, ପୋଜ୍ ବି ବଦଳେଇବାକୁ ନାହିଁ, ଅନୁଗତ ଶିଷ୍ୟଙ୍କ ପରି ପିଇଯାଉଛି ନୀଲ୍‌ର ବଚନାମୃତ, ଆଉ ଯୋଡ଼ାଏ ତୋଫା ଆଖିର ଚାହାଣି ଥାପିଦେଇଛି ତା' ଉପରେ, ଏଇ କାଳୀକାନୀ କୃଷ୍ଣା, ସ୍ୱଦେଶର ମୁଣ୍ଡାଏ ମାଟିପରି, ସେ କବିତା ଲେଖୁ, ଗୀତ ବୋଲୁ କି ଅଙ୍କ କଷୁ, ତା'କୁ ତମେ ଲଭ୍ କରିପାରିଥାଆନ୍ତ ବାହା ହୋଇଥିଲେ ? ମାନେ ନୀଲ୍‌କୁ ଯେମିତି ଲଭ୍ କରୁଥିଲ ? ତମ ମୁହଁକୁ ଲାଜ ନାହିଁ ? ମସ୍ତିଷ୍କବିକୃତି, ଘୋର ମସ୍ତିଷ୍କବିକୃତି, ବୁଝିଲ କେ-ବି-କେ ସାହେବ, ଶିଅର୍ ପରଭର୍ସନ୍...

କେ-ବି-କେ ମନେ ମନେ ହସିଲେ, ହେଲେ ନିଜକୁ ଚିଡ଼େଇଲା ପରି କହିଲେ— ହଉ ହେଲା, ମୁଁ ତା'କୁ ଲଭ୍ କରିପାରି ନ ଥାଆନ୍ତି । କିନ୍ତୁ ପ୍ରେମ ? ଖାଣ୍ଟି ସ୍ୱଦେଶୀ କାବ୍ୟିକ ପ୍ରେମ କରି ହୋଇ ନ ଥାଆନ୍ତା ମାଟିର ଏଇ ପୁତୁଳିଟା ସାଙ୍ଗରେ ?

ଦେଖାଗଲା ଯେ ଶୈଳ ଓ ନୀଳିମା ଏମିତି ଆଦରି ଯାଇଛନ୍ତି ପରସ୍ପରକୁ ଯେ କେ-ବି-କେ ଜଣେ ତୃତୀୟ ବ୍ୟକ୍ତି, ଯଦିଓ ସେ ଧନ୍ୟବାଦର ପାତ୍ର କାରଣ ସେ ଗୋଟାଏ ଠିକଣା କାମ କରିଛନ୍ତି ଶୈଳକୁ ଏଠି ପହୁଞ୍ଚେଇଦେଇ । ଶୈଳର ମନେହେଲା ଯେ ନୀଳିମାଦି' ସଂସ୍କୃତିର ଏକ ଜୀବନ୍ତ ପ୍ରତିମୂର୍ତ୍ତି । ବାଗ୍‌ଦେବୀଙ୍କ ମରଦେହୀ ସାଥୀ, ଯାହାଙ୍କ ହାତକୁ ସେ ତାଙ୍କ ସନ୍ତାନକୁ ବଢ଼େଇଦିଅନ୍ତି, ତା'ର ଭବିଷ୍ୟତ ପାଇଁ । ଅସମର୍ଥା ଦେବକୀ ହାଙ୍କ କାହ୍ନୁକୁ ଯଶୋଦାଙ୍କ ହାତକୁ ଟେକିଦେଲା ପରି । ଶୈଳ ତାଙ୍କ ପାଖ ଛାଡ଼ିଲା ନାହିଁ ସେଇ ତିନିଦିନ ଯାକ, କବିତା ପାଠୋତ୍ସବରେ ଯୋଗଦେଲା ପୂର୍ବରୁ । ତାଙ୍କୁ ଶୁଣେଇବାକୁ ଲାଗିଲା ତା'ର ଜୀବନକାହାଣୀ, ତଥା ଗୋଛା ଗୋଛା କବିତା, ଯାହାକୁ ସେ ଥର ଥର କରି

ବାହାର କରୁଥାଏ ତା' ସୁଟ୍‌କେଶ୍ ଭିତରୁ । ଲାଜେଇ ଲାଜେଇ ଓ ବିନୟରେ ମ୍ରିୟମାଣ ହୋଇ, ଦିଦିଙ୍କର ଅଳି ଉପରୋଧକୁ ଟାଳି ଦେଇ ନ ପାରି । "ମାଇ ଡିଅର୍, କ'ଣ ଏତିକିରେ ସରିଗଲା ? ଆହୁରି କ'ଣ ଥିବ ମ ? ଘାସକନ୍ୟାମାନେ ଝାଳେଇଗଲେ । ସୁରଭିତ ଝାଳରେ ଓଦା ହୋଇଗଲା ତାଙ୍କ ସବୁଜ ସ୍ନେହର ବାସ । ବେଶ୍ । କିନ୍ତୁ ତା'ପରେ କ'ଣ ହେଲା ? ଚାହୁଁ ଚାହୁଁ ଶୁଖିଗଲା ସେଇ ସଜଳ ସମ୍ଭାର ? କେହି ହେଲେ ତା'କୁ ଉପଭୋଗ କରିପାରିଲେ ନାହିଁ ? ଇଏ କୋଉଠୁ ହେଲାଣି ?" ଦିଦି ଏମିତି ପଦେ କହି ହସିଦିଅନ୍ତି ତାଙ୍କର ରୁଣୁଝୁଣୁ ହସ । ସେଇଠୁଁ ଶୈଳ ଆଉ କେତୋଟି କବିତା ବାହାରକରି ଆଣେ, ତା' ହସରେ କିଞ୍ଚିତ୍ କୁରୁଳିଖିଆ ଧ୍ୱନି ଆଣିଦେଇ । କୁହେ—"ଦିଦି, ସରି, ଘାସ କଥା ଖତମ୍ । କିନ୍ତୁ ଶୁଣିବେ ସାଁବାଳୁଆ କେମିତି ହଇରାଣ କଲା ସଜନାଗଛକୁ ? ନା ଶୁଣିବେ ବିନ୍ଦୁଟିଏ କେମିତି ଲାଖି ରହିଲା ବୁଢ଼ା କଦଳୀପତ୍ରର ଅଗରେ, ଝରିବ ଝରିବ ହୋଇ ଝରିପାରିଲା ନାହିଁ ? ସେଥିରେ କାହାକୁ ବେଶି କଷ୍ଟ ହେଲା, ବୁଢ଼ାକୁ ନା ତରଳ ସରଳ ବିନ୍ଦୁଟିକୁ, ସେକଥା ଆପଣ ବୁଝିବେ । ନା ଏଇଟିକୁ ପଢ଼ିବି, ବତକ ଯେମିତି ଧନ୍ଦାଳି ହେଉଛି ପୋଖରୀ କୂଳରେ ଚିକ୍‌କଣ-କାଦୁଆ କଣାମାନଙ୍କ ସାଙ୍ଗରେ, ହେଲେ ତା'କୁ କିଛିହେଲେ ମିଳିବାକୁ ନାହିଁ ? ନୀଳିମା ଆଗ୍ରହରେ ହାତ ବଢ଼ାନ୍ତି ସବୁତକ ନେବାପାଇଁ, ସବୁତକ ଶୁଣିବାପାଇଁ । ତା' ପରେ ଶୈଳ ପଢ଼ି ବସେ ତା' କବିତା, ଗୋଟିକ ପରେ ଗୋଟିଏ; ଏବଂ ଆପ୍ୟାୟିତ ହୁଏ ଯେ ଓଡ଼ିଆଣୀ ନ ହେଲେ ବି' ଦିଦି ସବୁ ବୁଝୁଛନ୍ତି, ତା'କୁ ପୂରାପୂରି ଗ୍ରହଣ କରୁଛନ୍ତି । ଆଖି ବୁଜିଦେଇ, ଫୁରୁଫୁରିଆ ପାତଳା କେଶକୁ ଉଡ଼ିବାକୁ ଦେଇ ଏବଂ ମଥାଟିକୁ ଈଷତ୍ ସଞ୍ଚାଳିତ କରି । ବୁଝିବେ ନାହିଁ କେମିତି ? ଇଏ ତ ପ୍ରକୃତିର ଧ୍ୱନି, ରଙ୍ଗ, ବାସ୍ନା । କୋଉ ମଣିଷର ହୋଇଛି ଯେ ଭାଷା ଅନ୍ତରାୟ ହେବ ?

କେ-ବି-କେ ଏଇ ଦୃଶ୍ୟ ଦେଖନ୍ତି । ଭାବନ୍ତି ଯେ ନୀଲ୍ ପକ୍ଷରେ ଇଏ କିଛି ନୂଆ କଥା ନୁହେଁ । ଯେ କୌଣସି କଳାତ୍ମକ କାମରେ ଆଗ୍ରହ ଦେଖାଇବା ଏବଂ ସାନମାନଙ୍କୁ ପ୍ରୋତ୍ସାହିତ କରିବା । 'ଦମ୍‌ପୁଖ୍‌ତ୍' ରନ୍ଧାଠାରୁ ଆରମ୍ଭ କରି ସଙ୍ଗୀତ ନାଟକ ଇତ୍ୟାଦିର ବାଟଦେଇ 'ଇକେବାନା' ଫୁଲସଜା ଯାଏଁ । କିନ୍ତୁ ଓଡ଼ିଆ କବିତା ଶୁଣି ଏମିତି ମଗ୍ନ ହୋଇଯିବାର ଦୃଶ୍ୟ ତାଙ୍କୁ ମଜା ଲାଗିଲା ।

ଶୈଳ-ନୀଳିମାଙ୍କ ଯୋଡ଼ିରେ ତାଙ୍କୁ ଆଉ ଗୋଟିଏ ଜିନିଷ କଉତୁକିଆ ଲାଗିଲା । ଦିହିଁଙ୍କ ଭିତରେ ଥିବା ବୈଷମ୍ୟ । ନୀଲ୍ ଗୋରୀ, ଆଉ ଆରକ କାଳୀ, ଖାଲି ତା' ନୁହେଁ । ଇଏ ଅଭିଜାତ ଆଉ ସିଏ ଅର୍ବାଚୀନ, ତା' ବି ନୁହେଁ ।

କ'ଣ ତା' ହେଲେ ? ଇଏ ସୂକ୍ଷ୍ମ, ଆଉ ସିଏ ସ୍ଥୂଳ ... ଉହୁଁ, ତା' ନୁହେଁ, ଶୈଳ ଝିଅଟା ଆଦୌ ସ୍ଥୂଳ ନୁହେଁ । ହୋଇପାରେ ମାଟିପୁତୁଳାଟିଏ, ହେଲେ ସେଥିରେ ବି' କିଛି ଗୋଟାଏ କଳା କି କାରିଗରି ଅଛି । କିନ୍ତୁ କେ-ବି-କେ ତା'କୁ ଠଉରେଇପାରିଲେ ନାହିଁ । ସେଇଠୁଁ ସେଇ ବିଚିତ୍ର-ଧାରଣା ପୁଣି ତାଙ୍କୁ କୁତୁକୁତୁ କରେ । ମୁଁ ନୀଲ୍‌କୁ ଲଭ୍ କରେ ସତ, କିନ୍ତୁ ଯା'କୁ ପ୍ରେମ କରି ପାରିଥାଆନ୍ତି । ତୃଷିତା ମାଟିକୁ, ଉପଯାଚିକାକୁ ପ୍ରେମ କଲାପରି ଏବଂ ସେ ତା'କୁ କେବଳ ଶୋଷି ନିଅନ୍ତା ନାହିଁ, ମୋତେ ତା'ର ପ୍ରତିଦାନ ଦିଅନ୍ତା । ଫୁଲଟିଏ, ଫଳଟିଏ...

କେ-ବି-କେ ଗୋଟାଏ ଅହେତୁକ ବ୍ୟଥା ଅନୁଭବ କରନ୍ତି ତାଙ୍କ ଛାତିରେ । ନୀଲ୍ ପିଲା ଚାହେଁ ନାହିଁ । ମୁଁ ମଧ ତା'କୁ କହିଆସିଛି ଯେ ମୋର ସେଇ ମତ । ଏଇ ବନ୍ଧନହୀନ ଆତ୍ମୀୟତା, ଖାଲି ତୁମେ ଓ ମୁଁ, ମୁଁ ଓ ତୁମେ, ଏହାହିଁ ବିଶୁଦ୍ଧ ପ୍ରେମର ସଂସାର । ଅବଶ୍ୟ ସେ ବିଷୟରେ କୌଣସି କଥା ପଡ଼ି ନାହିଁ ଅନେକ ବର୍ଷ ହେଲା । ନୀଲ୍‌ର ପିଲ୍ ଜାରୀ ରହିଛି, ରହିଥିବ । ତା'ବୋଲି ମୋ ମତ ବଦଳିଯାଇଛି ନା କଅଣ ? କିନ୍ତୁ... କିନ୍ତୁ ମାଟିର ଲକ୍ଷଣ ଦୋସରା । ତା'ର ଅଭ୍ୟାସ କିଛି ଗୋଟାଏ ଉପୁଜେଇବା, ସତେକି ସେଇ ହେଉଛି ଅନ୍ତରଙ୍ଗତାର ରଙ୍ଗ, ଶେଷକଥା । କେ-ବି-କେ 'ରବିସ୍ !' ବୋଲି ଗୋଟାଏ ଅର୍ଦ୍ଧସ୍ଫୁଟ ଉଚ୍ଚାରଣ ସହ ନିଜକୁ ଦୂରେଇଦିଅନ୍ତି ସେଇ ଦୃଶ୍ୟରୁ ଏବଂ ତାଙ୍କର ଅହେତୁକ ରାଗ ଆସେ ସେ ଦି'ଜଣଙ୍କ ଉପରେ । ସତେକି ତାଙ୍କରି 'ପ୍ରେମ' ହେବା ଯୋଗୁଁ, ଏଇ ଗୋଟାଏ ଅକାରଣ ଦୁଃଖ ଏତେଦିନ ପରେ !

ଥରେ ସେ ତାଙ୍କର ପ୍ରତିକ୍ରିୟା ପ୍ରକାଶ କଲେ ନୀଲିମାଙ୍କ ଆଗରେ ପରିହାସ ଛଳରେ । କହିଲେ, ''ଦିନ ନାହିଁ ରାତି ନାହିଁ, କ'ଣ ଚାଲିଛି ଏଇ କବିତା ପଢ଼ା ତମ ଦି'ଜଣଙ୍କ ଭିତରେ ? ଟୋକୀଖଣ୍ଡକ କ'ଣ ଏମିତି ଲେଖିଛି କି, ତମେ ମୋହି ହୋଇଯାଇଛ ସେଥିରେ ?''

ନୀଲିମା ପରିହାସକୁ କାଟିଦେଇ କହିଲେ ତାଙ୍କୁ ଅନୁଚ୍ଚ ଅଭିଜାତ କଣ୍ଠରେ, ଗୋଟାଏ ନବ-ଆବିଷ୍କୃତ ତଥ୍ୟ ବାଢ଼ିଦେଲା ପରି—

''ଜାଣିଛ କେମିତିକା କବିତା ଲେଖିଛି ସେ ? ଖାଲି ସୁନ୍ଦର ବୋଲି କହିଲେ ଚଳିବ ନାହିଁ । ଭିନ୍ନ । ଅସାଧାରଣ । ଇନ୍ଦ୍ରିୟଲବ୍ଧ, କିନ୍ତୁ ଇନ୍ଦ୍ରିୟାସକ୍ତ ନୁହେଁ । ସେନ୍‌ସୁଅସ୍, କିନ୍ତୁ ସେନ୍‌ସୁଆଲ୍ ନୁହେଁ । ବୁଝୁଛ ନା ମୁଁ କ'ଣ କହୁଛି ?''

କେ-ବି-କେ ମୁଣ୍ଡ ହଲେଇଲେ କିଛି ନ ବୁଝିପାରି । କିନ୍ତୁ ହସିଦେଇପାରିଲେ ନାହିଁ । କିଏ ଭଲା ହସିଦେଇପାରିବ ନୀଲ୍‌ର ଗୁରୁଗମ୍ଭୀର ତଥ୍ୟକୁ ! ହେଲେ

ତାଙ୍କର କହିବାକୁ ମନ ହେଉଥିଲା ଯେ ମୁଁ ଗୋଟାଏ ହିସାବରେ ବୁଝିଛି, ତା' କବିତାର ଧାଡ଼ିଏ ନ ପଢ଼ି, ଯେ ସେ ଅରାଏ ଅନାବାଦୀ ମାଟି । ଇନ୍ଦ୍ରିୟଗତ ଦିଆନିଆରେ ଛୁଟୁବୁଟୁ । ଯେଉଁଥିରୁ ଫୁଲ ଫୁଟେ, ଫଳ ଧରେ ...

ହେଲେ ତାଙ୍କ ବିମୂଢ଼ତାକୁ ଦୂର କରିବାପାଇଁ ନୀଲିମା ତାଙ୍କ ସ୍ୱାମୀଙ୍କୁ ଟାଣି ଟାଣି ନେଇଗଲେ ତାଙ୍କ ଶୋଇବା ଘରକୁ ଏବଂ ତାଙ୍କ ପ୍ରସାଧନ ଟେବୁଲ୍‌ର ଡ୍ରୟର୍‌ରୁ (ସମସ୍ତ ଏକାନ୍ତ ବସ୍ତୁ ଏଇ ଡ୍ରୟର୍‌ରେ ଥାଏ) ଶୈଳର କେତୋଟି କବିତାର ଫର୍ଦ୍ଦ ବଢ଼ାଇଦେଲେ ତାଙ୍କ ହାତକୁ । କହିଲେ, "ଏଇ ନିଅ, ପଢ଼ । ତମେ ଯା'କୁ ବେଶୀ ଭଲ ବୁଝିପାରିବ ମୋଠୁଁ । ମୁଁ ଯା'କୁ ରଖିଛି ହିନ୍ଦୀରେ ଅନୁବାଦ କରେଇବି ବୋଲି । ନବୀନ୍ ମିଶ୍ର କିମ୍ବା କାନ୍ତଜୀଙ୍କ ହାତରେ ।"

କେ-ବି-କେ ତାକୁ ପଢ଼ିଲେ । ଘାସର ଝାଳ, ସାଁବାଳୁଆର ହରକତ, ବତକର ଧନ୍ଦାଳି ହେବା ଦୁଃଖ ଇତ୍ୟାଦିର କବିତା । ସେ କେତେଦୂର ମୁଗ୍ଧ ହେଲେ କହିହେବ ନାହିଁ, ତେବେ ସେ ଗୋଟିଏ କ୍ରୋଧମିଶା ଉତ୍ତେଜନା ଅନୁଭବ କଲେ । ତାଙ୍କର ମନେହେଲା ଯେ ଇନ୍ଦ୍ରିୟର ଅନୁଗତ ଏଇ ମୃତ୍ତିକାର ମଧ୍ୟ ଯେଉଁ ଗଉଁ ରହିଛି ନା, ଅସହନୀୟ ସ୍ପର୍ଦ୍ଧା, ତାକୁ ଭାଙ୍ଗି ନ ଦେଲେ ତାଙ୍କ ପେଟ ପୂରିବ ନାହିଁ ।

X X X ଶୈଳ ଭାବି ନ ଥିଲା ତା'ର ବହୁ ଅପେକ୍ଷିତ କବିତାପାଠ ଉତ୍ସବ ଏଭଳି ଦୁଃଖ ଦେବ ତା'କୁ । ପ୍ରଥମଥର ପାଇଁ ତା'କୁ ସୁଯୋଗ ମିଳିଛି ଓଡ଼ିଶା ବାହାରେ ଅନୁଷ୍ଠିତ ଏକ ଆନ୍ତର୍ଜାତିକ କବିତା ଉତ୍ସବରେ ଯୋଗ ଦେବାପାଇଁ । ପୁଣି ଯେଉଁଠି ତା'ର ଅତି ଆପଣାର ଓଡ଼ିଆ କବି ରାମହରିବାବୁ ମଞ୍ଚାସୀନ ଥିବେ ଏବଂ ପଢ଼ିବେ ତାଙ୍କ ମିଷ୍ଟିକ୍ କବିତା, ବୁଝି ନ ହେଲେ ବି' ଗହୀରରେ ଅନୁଭବ କଲାଭଳି ମହାନ୍ କବିତା, ସୃଷ୍ଟିର ରହସ୍ୟକୁ ଚିଡ଼େଇଲା ପରି — ଆଃ ! ପୁଣି ତାଙ୍କର ସେଇ ଅପୂର୍ବ କଣ୍ଠସ୍ୱର, ଯେଉଁଥିରେ ଗଜଲ୍‌ର ମାଦକତା ଅଛି ତଥା ମନ୍ତ୍ରପାଠର ଗାରିମା । ଶୈଳ ଅପେକ୍ଷା କରି ରହିଥିଲା ତା'କୁ ପୁଣି ଥରେ ଶୁଣିବ ବୋଲି, ଗୋଟାଏ ନୂଆ ଜାଗାରେ, ଏକ ବିଶିଷ୍ଟ ନୂତନ ପରିବେଶରେ ।

ତା'ର ମନସ୍କାମନା ପୂର୍ଣ୍ଣ ହେଲାପରି ମନେ ହେଉଥିଲା । କେ-ବି-କେ ଓ ନୀଲିମା ତା'କୁ ଯଥାସମୟରେ ପହୁଞ୍ଚେଇ ଦେଇଥିଲେ ଇଣ୍ଡିଆ ଇଣ୍ଟରନେସ୍‌ନାଲ୍ ସେଣ୍ଟର୍‌ରେ ଏବଂ ସେ ଠିକଣା ଜାଗାରେ ବସିଥିଲା ଯେଉଁଠି ସେ ସ୍ପଷ୍ଟଭାବରେ ଦେଖିପାରୁଥିଲା ଓ ଶୁଣିପାରୁଥିଲା ସେମାନଙ୍କୁ । ଆଶ୍ୱିଲି ତଥା ଭାରତର ବିଶିଷ୍ଟ କବିମାନଙ୍କୁ । ତେଣୁ ରାମହରିଙ୍କ କବିତାର ପ୍ରତ୍ୟେକ ଶବ୍ଦ ଏବଂ ତା'ର ଉଚ୍ଚାରଣରେ ସ୍ପନ୍ଦିତ ହେଉଥିବା

ପ୍ରତ୍ୟେକଟି ଆବେଗକୁ, ଉଦ୍‌ବେଗକୁ, ସେ ଗ୍ରହଣ କରି ନେଇପାରୁଥିଲା । ତା'ର ମଧ ଖିଆଲ୍ ହେଲା ଯେ ରାମହରିଙ୍କ ଦୃଷ୍ଟି ପଡ଼ିଛି ତା' ଉପରେ । ତେଣୁ ତା'ର ଆଶା ହେଲା ଯେ ଆଜି ସୁବିଧାରେ ଦେଖା ହୋଇପାରିବ ତାଙ୍କ ସାଙ୍ଗରେ, ଏତେ ବଡ଼ ବଡ଼ ଲୋକଙ୍କ ଗହଳିକୁ ଆଡ଼େଇଦେଇ । ଅନ୍ତତଃ ପାଞ୍ଚମିନିଟ୍ ପାଇଁ ଏବଂ ଏହି ସାକ୍ଷାତ୍କାର ଅର୍ଥପୂର୍ଣ୍ଣ ହେବ ।

କିନ୍ତୁ ତା' ହେଲା ନାହିଁ । କବିତାପାଠ ଆରମ୍ଭ ନ ହେଉଣୁ ଜଣେ ବିଶିଷ୍ଟ କବି ତା' ମୁଡ୍ ଖରାପ କରିଦେଇଥିଲେ ଏବଂ କବିତାପାଠ ନ ସରୁଣୁ ଜଣେ ବିଶିଷ୍ଟ ଗାଳ୍ପିକ ତା'କୁ ଓଟାରି ନେଇଗଲେ ସଭାସ୍ଥଳରୁ । ପ୍ରଥମ ଜଣକ ଥିଲେ ମହାରାଷ୍ଟ୍ରର ଦଳିତ କବି ବିଷ୍ଣୁ ରାଙ୍ଗ୍‌ନେକାର । କେଜାଣି କାହିଁକି ସେ ଆଜି ଶୈଳକୁହିଁ ପାଇଲେ ତାଙ୍କ ବିଷୋଦ୍‌ଗାରଣର ଗ୍ରାହକ ହେବାପାଇଁ । ଅନେକ ସାହିତ୍ୟସଭାକୁ ସେ ଖାସ୍ ଏଇଥିପାଇଁ ଯାଆନ୍ତି । ମଞ୍ଚରେ ଗର୍ଜିବାର ସୁଯୋଗ ନ ପାଇଲେ ମଧ ଶ୍ରୋତାମଣ୍ଡଳୀର କାହାକୁ ହେଲେ ତାଙ୍କର ଦଳିତଧର୍ମୀ କ୍ରୋଧ ଶୁଣାଇବାଲାଗି । ଯେ ଶତସହସ୍ରବାର ଧିକ୍ ଏଇ ବୁର୍ଜୁଆ ବିଳାସକୁ ଯାହା ଦଳିତର ଲୁହ ଓ ଲହୁ ଉପରେ ପ୍ରତିଷ୍ଠିତ । ତେଣୁ କବିତା ଲେଖା ହେବା ଉଚିତ କେବଳ ତତେଇବାପାଇଁ, ମତେଇବାପାଇଁ । ଯେପରିକି ଅଚିରେ ନାଶ ହେବ ଏଇ ପୁଞ୍ଜିବାଦ, ସାମନ୍ତବାଦ, ବ୍ରାହ୍ମଣବାଦର ସାମ୍ରାଜ୍ୟ । ... ନା କ'ଣ କହୁଛନ୍ତି ଶୟଲାଜୀ ? ମୁଁ ଓଡ଼ିଶା ଯାଇଛି, ଦେଖିଛି ଆପଣଙ୍କ ଭାଇଭଉଣୀମାନଙ୍କ ଦୁର୍ଦ୍ଦଶା ... ସେଇଠୁଁ ଶୈଳର ସନ୍ଦେହ ହେଲା ଯେ ସେ ବୋଧହୁଏ ଭାବୁଛନ୍ତି ଯେ ମୁଁ ବି' ଜଣେ ଦଳିତ । ମୋର କଳାରଙ୍ଗ ତା'ଙ୍କୁ ଠକେଇଦେଇଛି । ହେ ଭଗବାନ୍ !

ଯାହାହେଉ ସେ ହଠାତ୍ ଆଉ କେଉଁ ଦରଦୀକୁ ଆବିଷ୍କାର କଲା ପରି ପ୍ରସ୍ଥାନ କଲେ ସେଠୁଁ ଏବଂ ଶୈଳ ବଞ୍ଚିଗଲା । ତା'ର ବିଗିଡ଼ି ହୋଇ ଆସୁଥିବା ମୁଡ୍‌କୁ ସଜାଡ଼ି ନେଲା ଏବଂ ମନଧ୍ୟାନ ଦେଇ ଶୁଣିଲା କବିମାନଙ୍କୁ । ବିଶେଷତଃ ରାମହରିଙ୍କୁ ଏବଂ ଉପଲବ୍ଧିରେ ଭରିଗଲା ତା'ର ହୃଦୟ । କିନ୍ତୁ ହାୟ । କବିତାପାଠ ନ ସରୁଣୁ ଏବଂ କେତେବେଳେ ଦେଖାହେବ ରାମହରିଙ୍କ ସାଙ୍ଗରେ ଏଇ ଯଥାର୍ଥ ସମ୍ଭାବନାଟିକୁ ମୁଠେଇ ନ ଧରୁଣୁ ତା'କୁ ଆକ୍ରମଣ କଲେ ଜଣେ ବଙ୍ଗଭାଷୀ ଭଦ୍ରଲୋକ । ଏବଂ ତା'କୁ ସେଠୁ ଓଟାରି ଆଣିଲେ କହିଲେ ଚଳେ । ତାଙ୍କୁ ମଧ ମନା କରି ହେଲା ନାହିଁ । କାରଣ ସେ କେବଳ ଜଣେ ପ୍ରଖ୍ୟାତ ଗାଳ୍ପିକ ନୁହଁନ୍ତି, ସେ ମଧ ଥିଲେ ଏଇ କେତେଦିନ ତଳର ସହଯାତ୍ରୀ । ଯେ ମଦ୍ୟପାନର ଆନନ୍ଦ ଯୋଗାଇଥିଲେ ଟ୍ରେନ୍‌ର କରିଡର୍‌ରେ ଏକାଠି ହୋଇଥିବା ସମଧର୍ମୀ ଭାଇମାନଙ୍କୁ । ଶ୍ରୀଯୁକ୍ତ ଦୀପାଙ୍କର ଗାଙ୍ଗୁଲି । ଲୋକଟା ଅସଭ୍ୟ । କାରଣ ତା' ଆଖିରେ ରାମହରିବାବୁଙ୍କ ଚେହେରା ସବୁଠାରୁ ନିର୍ବୋଧ । କିନ୍ତୁ ସାନ ଶୈଳ କେମିତି

ଭଲା ତାଙ୍କୁ ବାରଣ କରିପାରିଥାଆନ୍ତା, ଯେତେବେଳେ ସେ ତା'କୁ ନିମନ୍ତ୍ରଣ କଲେ କ୍ୟାଣ୍ଟିନ୍‌ରେ କପେ ଚା' ଖାଇବାପାଇଁ ତାଙ୍କ ସାଙ୍ଗରେ ? ତା'ଛଡ଼ା ତା'ର ଆଶା ଥିଲା ସେ ଶୀଘ୍ର ଫେରିଆସିବ ସେଠୁଁ । କବିତା ପାଠ ସରି ନ ଥିବ ସେତେବେଳକୁ, ଆଉ ସେ ଯଥାଶୀଘ୍ର ଭେଟ କରିପାରିବ ରାମହରିବାବୁଙ୍କ ସହିତ ।

କିନ୍ତୁ କିଏ ଜାଣିଥିଲା ଯେ ଚା'ପାନର ପର୍ବ ବି' ଏମିତି ଲମ୍ବି ଲମ୍ବି ଯିବ ମଦ୍ୟପାନ ପରି ଏବଂ ଦୀପାଙ୍କର ତା'କୁ ଅଧଘଣ୍ଟାଏ ବସେଇ ରଖିବେ ସେଠି, ଅଧିକତର ଏବଂ ଅନ୍ୟ ଏକ ଧରଣର ଯନ୍ତ୍ରଣା ଦେବାଲାଗି ? ରାଙ୍ଗନେକାର ତାକୁ ଶୁଣେଇଥିଲେ ଦଳିତର କ୍ରୋଧ, ଆଉ ଇଏ ଶୁଣାଇଲେ 'ବାସ୍ତବ ସତ୍ୟ'ର ବିଦ୍ରୂପ । କହିଲେ, କ୍ଷମା କରିବେ, ଆପଣଙ୍କ ପରି କେତେଜଣ ଅନୁଭବୀ କବିଙ୍କ କବିତାକୁ ଛାଡ଼ିଦେଲେ (ତମେ କେମିତି ଜାଣିଲ ମୁଁ ଅନୁଭବୀ ବୋଲି ?) କବିତା ମାତ୍ରେ ହିଁ କୃତ୍ରିମତା । କିଓ, ସିଧାସଳଖ କହୁ ନାହଁ ଯାହା କହିବାକୁ ଚାହୁଁଛ ? ଲାଜ ମାଡୁଛି ? ଆଉ ସେଇଥିଲାଗି ଦରକାର ଉପମାର କରାମତି, ଶବ୍ଦଯୋଜନାର ଚାତୁରୀ, ଯେତେକ ମୁଖା ଏବଂ ଅଳଙ୍କାର, ଯେଉଁଥିରେ ସତର ଲଙ୍ଗଳାପଣକୁ ଘୋଡ଼େଇଦେଇ ହେବ ? ଏମାନେ ସମସ୍ତେ ମିଛୁଆ, ବୁଝିଲେ ? ଅବଶ୍ୟ ଅନେକ ଗାଳ୍ପିକ ମଧ୍ୟ ସେମିତି । କିନ୍ତୁ କଥା ହେଉଛି ଯେ ଆମେ ସହଜେ ଧରା ପଡ଼ିଯାଉ, କିନ୍ତୁ କବିମାନେ ପାର୍ ପାଇଯାଆନ୍ତି ତାଙ୍କ ଛବି ଓ ଛନ୍ଦର ଭେଲିକି ଦେଖାଇ । ନା କ'ଣ କହୁଛନ୍ତି ?

ଦୀପାଙ୍କର ଦୁର୍ବିପାକରୁ ରକ୍ଷା ପାଇ ସଭାଗୃହକୁ ଫେରିଆସିଲା ବେଳକୁ କବିତାପାଠ ସରିଯାଇଥିଲା ଏବଂ ରାମହରିବାବୁଙ୍କ ପତା ମିଳିଲା ନାହିଁ ।

ଶୈଳର ତର ସରିଲା ନାହିଁ କେମିତି ପଳେଇଆସିବ ସେଠୁଁ ଏଇ ମହାନ୍ ସାହିତ୍ୟିକମାନଙ୍କ ଗହଣରୁ । ଏଇସବୁ ତାତ୍ତ୍ୱିକ ତିରସ୍କାରର କୌଣସି ମୂଲ୍ୟ ନାହିଁ ସାର୍ଥକ କବିପାଇଁ, ହେଲେ ମୁଁ ତା'ର ଜବାବ ଦେଇପାରୁ ନାହିଁ । କାରଣ ମୋର ସେହି ପ୍ରକାର ପ୍ରତିଷ୍ଠା ନାହିଁ, କି ବୟସ ଓ ଅଭିଜ୍ଞତାର ମର୍ଯ୍ୟାଦା । ତା'ଛଡ଼ା ସାନ ଶୈଳ ଯୁକ୍ତି କରିପାରିବ ନାହିଁ, ସେ ଖାଲି କବିତା ଲେଖିପାରିବ ।

ପଳେଇଆସିବ ତା'ର ମହାନୁଭବ ଏବଂ ଆତ୍ମୀୟ ହୋଷ୍ଟ-ହୋଷ୍ଟେସ୍‌ଙ୍କ ପାଖକୁ । କେ-ବି-କେ ସାହେବ (ମଜାର ଡାକ ନାଆଁଟିଏ ପାଇଛନ୍ତି !) ଓ ନୀଳିମାଦି'ଙ୍କ ସ୍ନେହଶ୍ରଦ୍ଧାର ଛାଇତଳକୁ, ସେଥିର ଅନାବିଳ ଉଷ୍ମତାକୁ । ଶୈଳକୁ କୁହା ହୋଇଥିଲା ଯେ ଦି'ଜଣଙ୍କ କାମ ଅଛି ବାହାରେ, ଜଣକର ଅଫିସ୍ ଏବଂ ଅନ୍ୟଜଣକର କେଉଁ କଳା ଅନୁଷ୍ଠାନ । ହେଲେ ନୀଳିମାଦି' ତା'କୁ ଏଠୁ ନେଇଯିବାକୁ ଚେଷ୍ଟା କରିବେ ଯଥାସମୟରେ । କିନ୍ତୁ ଶୈଳ ଆଉ ଅପେକ୍ଷା କରିପାରିଲା ନାହିଁ । ଟ୍ୟାକ୍ସିଟିଏ ଧରି ପହୁଞ୍ଚିଗଲା ତାଙ୍କ କାକାନଗର ଫ୍ଲାଟ୍‌ରେ ।

ଆସି ଦେଖିଲା ଯେ କେ-ବି-କେ ସାହେବ ଫେରିଆସିଛନ୍ତି ଅଫିସରୁ । କୌଣସି କାରଣରୁ, କିନ୍ତୁ ଦିଦି ଫେରି ନାହାନ୍ତି । କିଛି କ୍ଷତି ନାହିଁ । ୟାଙ୍କର ଏଇ ଘର, ଏଇ ପରିବେଶହିଁ କେତେ ଆରାମଦାୟକ ! ଶୈଳ କେ-ବି-କେଙ୍କୁ ପଦେ 'ହ୍ୟାଲୋ' କହିଦେଇ ଲମ୍ବିଗଲା ତା' ଖଟ ଉପରେ ।

ତା'ପରେ କ'ଣ ହେଲା ? କେ-ବି-କେ କେଉଁଥିପାଇଁ ଆସିଲେ ତା' ରୁମ୍‌କୁ ? କ'ଣ ପଚାରିବାପାଇଁ ? ... ନା, ସେ କିଛି ପଚାରିବାକୁ ଆସି ନାହାନ୍ତି । ତା'ଙ୍କ ଚାହାଣି ଭିନ୍ନ ଦେଖାଯାଉଛି । ସେ ତା'କୁ ପଚାରୁ ନାହାନ୍ତି କବିତାପାଠ ଉତ୍ସବ ବିଷୟରେ । ସେ ପାଖେଇ ଆସୁଛନ୍ତି । ଆଉ କେତେଟା କବିତା ମାଗି ନେବେ ବୋଲି ଆସୁ ନାହାନ୍ତି । ହାତ ବଢ଼ଉଛନ୍ତି ତା'ଆଡ଼କୁ । ତା' ଦେହରେ ହାତ ପକଉଛନ୍ତି । ତା'କୁ ଅଭୟ ଦେବାପାଇଁ କିମ୍ବା ଲଞ୍ଚ୍ ବଢ଼ା ହେଲାଣି ବୋଲି କହିବାପାଇଁ ନୁହେଁ । ସେ—ସେ...

ଶୈଳ 'ନା !' ବୋଲି ପାଟି କରି ଉଠିଲା ଏବଂ ଧାଇଁଗଲା ଦିଦିଙ୍କ ରୁମ୍‌କୁ, ସେ ସେଠି ନ ଥାଆନ୍ତୁ ପଛେ ଏବଂ ତାଙ୍କ ଚଉକିରେ ବସିପଡ଼ି କାନ୍ଦିଲା, ତା' ମୁହଁକୁ ଘୋଡ଼େଇଦେଇ ଦି'ହାତରେ । ଭାବିଲା—ଓଃ ! ଏତେ ଭଲ ଲୋକ, ବଡ଼ ବଡ଼ ଲୋକମାନେ କାହିଁକି ଏମିତି ଅସୁନ୍ଦର ହୋଇଯାଆନ୍ତି ବେଳେବେଳେ ? କେ-ବି-କେଙ୍କ 'ଆଇ ଆମ୍ ସରି', 'ଆଇ ଡିଡ୍ ନଟ୍ ମିନ୍ ଏନିଥିଙ୍ଗ୍' ଇତ୍ୟାଦି ଅର୍ଦ୍ଧସ୍ଫୁଟ କ୍ଷମା ଯାଚନାର ଶବ୍ଦ ପହୁଞ୍ଚିଲା ନାହିଁ ତା' ପାଖରେ ।

ଏହା ପରେ ଆଶା କରିବା ସ୍ୱାଭାବିକ ଯେ ଶୈଳ ଦିଲ୍ଲୀରୁ ମଧ ଛାଟିପିଟି ହୋଇ ପଳେଇଆସିବାକୁ ଚାହିଁବ । ପ୍ରଥମ ଟ୍ରେନ୍ କିମ୍ବା ପ୍ଲେନ୍‌ରେ ଏବଂ ସେ ପ୍ରକୃତରେ ତାହାହିଁ ଚାହୁଁଥିଲା । ଭାବିଥିଲା ଦିଦି ଫେରିଲେ ତାଙ୍କୁ ଅନୁରୋଧ କରିବ ଆଗତୁରା ଟିକେଟ୍ ଖଣ୍ଡେ କିଣେଇଦେବା ପାଇଁ । କିନ୍ତୁ ସେଇ ଦିଦିଙ୍କ ଯୋଗୁଁ ସେ ନିର୍ଦ୍ଧାରିତ ତାରିଖରୁ ଆହୁରି ତିନି ଦିନ ପଛେଇଗଲା । କାରଣ ଦିଦି କହିଲେ, — "ଅସମ୍ଭବ । ତୁମେ ଆସନ୍ତା ରବିବାର ପୂର୍ବରୁ ଯାଇପାରିବ ନାହିଁ । ମୁଁ ଫୋନ୍ କରିଦେଉଛି ତୁମ ମିଷ୍ଟରଙ୍କୁ । ମୁଁ ଗୋଟାଏ ପାର୍ଟି ଡାକିଛି ସେଦିନ, ଖାସ୍ ତୁମରିପାଇଁ । ତୁମରି କବିତା ଶୁଣେଇବାପାଇଁ ସେମାନଙ୍କୁ । ବଛା ବଛା ଲୋକମାନଙ୍କୁ । ବିଶିଷ୍ଟ ଶିଳ୍ପୀ ସଞ୍ଜୀବ୍ କେଲ୍‌କାର୍, ଜର୍ଣ୍ଣାଲିଷ୍ଟ ଜଗମୋହନ, ପ୍ରସିଦ୍ଧ ହିନ୍ଦୀ ଅନୁବାଦକ ଶ୍ରୀକାନ୍ତଜୀ, ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ । ଲେଖିକା ରୋମୀ ସେନ୍, ଆନ୍ତର୍ଜାତିକ...

ଶୈଳ ପରମକୃତଜ୍ଞ ଚାହାଣିରେ ଅନେଇ ରହିଲା ନୀଳିମାଦି'ଙ୍କୁ । 'ହଉ' ପଦଟିଏ ମଧ କହିପାରିଲା ନାହିଁ, ତାଙ୍କ ଅନୁରୋଧକୁ ଟାଳିଦେବା ଦୂରର କଥା ।

## ଚାରି

ମୋତେ କ'ଣ ବୋଲି ଭାବିଛି କି ସେ ? ମେଈଡ଼ ମଫସଲିଆଣୀ ଟୋକୀ ଖଣ୍ଡେ...କେ-ବି-କେ ଛିଗୁଲେଉଥିଲେ ଶୈଳକୁ । ମନେ ମନେ ଏବଂ ମନ ଇଚ୍ଛା । ହେଲେ ତା' ପାଖ ମାଡ଼ୁ ନ ଥିଲେ ସେ ତାଙ୍କ ଘରେ ଥିବାତକ, ଦିଲ୍ଲୀ ଛାଡ଼ିବା ପୂର୍ବରୁ । ମୁହାଁମୁହିଁ ଭେଟ ହୋଇଗଲେ ସାମାନ୍ୟତମ ହସ ଓ ପଦୁଟିଏ 'ହ୍ୟାଲୋ' ଛଡ଼ା ଆଉ କୌଣସି ଆଦାନପ୍ରଦାନ ହୋଇପାରୁ ନ ଥିଲା ଦିହିଁଙ୍କ ଭିତରେ ଏବଂ ସେ ନିଜକୁ ସଫେଇ ଦେଉଥିଲେ ଯେ ଅଧିକବିଶେଷ ଅନାବଶ୍ୟକ । ...ଦରକାର କଅଣ ? ସେ କୋଉଠି ଆଉ ମୁଁ କୋଉଠି—ମୋର କ'ଣଟା ଗପିବାକୁ ଅଛି ତା' ସାଙ୍ଗରେ ? କିନ୍ତୁ କଥା ହେଉଛି ଯେ ଏମିତି ଗୋଟାଏ ଆବ୍ସର୍ଡ଼ ଧାରଣା କେମିତି ଆସିଲା ତା' ମନକୁ ?

ଠିକ୍ ଅଛି, ମୁଁ ତୋ ଦେହରେ ହାତ ପକେଇବାକୁ ଯାଉଥିଲି । ତୋ ଅଙ୍ଗରେ । କାହିଁକିନା... କାହିଁକିନା ମୁଁ ତୋତେ କିଛି କହିବାପାଇଁ ଚାହୁଁଥିଲି । ତୋ କବିତା ବିଷୟରେ (କ'ଣ କହିବା ପାଇଁ ଚାହୁଁଥିଲି ?)... ନା, ନା, ମୁଁ ବୋଧହୁଏ ତୋତେ ଡାକୁଥିଲି, ଡ୍ରଇଂରୁମ୍‌କୁ ଯାଇ ବସିବାପାଇଁ, ଯେଉଁଠି ଆମେ ଏଣୁତେଣୁ ବିଷୟରେ ଗପସପ ହେବା ନୀଲ୍ ଫେରିବା ପୂର୍ବରୁ । ହଁ, ମୁଁ ତୋତେ ପଚାରିବାକୁ ଯାଉଥିଲି ତମ ଇ-ଣ୍ଟ-ର୍ ନ୍ୟାସ୍‌ନାଲ୍ କବିତାପାଠ ଉତ୍ସବ ବିଷୟରେ । କବିତା ଫବିତା ପ୍ରତି ମୋର ଆଗ୍ରହ ନ ଥିଲେ ନାହିଁ, କୌତୂହଳ ରହିବ ନାହିଁ କେମିତି ?

ଧ୍ୟାତ୍ ! କୁଲ୍‌ଭୂଷଣ କର୍ ଆଇ.ଏ.ଏସ୍. ଭାରତ ସରକାରଙ୍କ ଦପ୍ତରରେ ଜଣେ ବିଶିଷ୍ଟ ଅଧିକାରୀ । ସେ ସଫେଇ ଦେବାକୁ ପ୍ରସ୍ତୁତ ନୁହେଁ ଗୋଟିଏ ଓଡ଼ିଆ, ତେଣୁ ମୋଟାମୋଟି ଆତ୍ମୀୟା କାଳୀ ଝିଅର ଗଉଁକୁ ଖାତିର୍ କଲା ପରି ଯେ ମୁଁ ଏଇଥିପାଇଁ ତୋ ଦେହରେ ହାତ ପକେଇବାକୁ ଯାଉଥିଲି । ହାତ ପଡ଼ିଯାଇଥିଲା, ମୁଁ ମାନୁଛି । ବ୍ଲାଉସ୍ ତଳ ଖୋଲା ବାହୁ ଉପରେ । କିନ୍ତୁ କ'ଣ ହେଲା ସେଥିଁ ? କେତେଥର ହାତ ପଡ଼ି ନାହିଁ ମୋର କକ୍‌ଟେଲ୍ ପାର୍ଟିରେ ସୁନ୍ଦରୀ-ଅସୁନ୍ଦରୀଙ୍କ ଖୋଲା ବାହୁ କି ଖୋଲା ପିଠିରେ ? କିନ୍ତୁ ସେଥିରେ କେହି ହେଲେ ଚିହିଁକି ଉଠନ୍ତି ନାହିଁ; କାରଣ ତା'କୁ କହନ୍ତି ନିର୍ଦୋଷ ଆମୋଦ । ସୌଖୀନ ଆମୋଦ । ଯାହା ହାଇ-ସୋସାଇଟି ଅର୍ଥାତ୍ ଆମ ସମାଜର ଅଂଶବିଶେଷ, ଯେତେବେଳେ ସେମାନେ ତାଙ୍କ ନାନାଦି ଗୁରୁ ଦାୟିତ୍ୱରୁ ଓହରି ଆସି ତାଙ୍କ ଟାଇ ହୁଗୁଳେଇ ଦେଇଥାଆନ୍ତି, କି ଶାଢ଼ି ପଣତ ଖସେଇ ଦେଇଥାଆନ୍ତି । ତୁ ତା'ର ମର୍ଯ୍ୟାଦା ବୁଝିବୁ କୋଉଁଠୁ, ମଫସଲିଆଣୀ କୋଉଠିକାର ? ଅବଶ୍ୟ ସେଇ ହିସାବରେ ନୀଲ୍ ଗୋଟିଏ ବିଚିତ୍ର ଲେଡ଼ି । ତା'ର ଶାଢ଼ି ପଣତ କେବେହେଲେ

ଖସେ ନାହିଁ ତା' ଛାତିରୁ କି ପିଠିରୁ । ଯଦିଓ ସେ ମଧ ପାନପାତ୍ରରେ ଚୁମୁକ ଦିଏ, ସେ ମଧ ଢୋକ୍ କରେ, ସେ ମଧ ... ଛାଡ଼, ତା' କଥା ନିଆରା ।

କିନ୍ତୁ ଧର ମୁଁ ତୋ ଦେହରେ ହାତ ପକେଇଲି ଏବଂ ଯେହେତୁ ତୁ ଆମ ସମାଜର ନୁହଁ, ତୁ ତା'କୁ ନିର୍ଦୋଷ ଆମୋଦ ବୋଲି ଭାବିପାରିଲୁ ନାହିଁ, ତା' ବୋଲି ତୋର ଏମିତି ପାଟି କରି ଉଠିବାର କ'ଣ ଥିଲା ? ତୋ ଦେହ ଶୀତେଇ ଉଠିଲା ? ସତେ ? ଯୋଉ କବି ଘାସର ଝାଳରେ ମସ୍‌ଗୁଲ୍ ହୋଇଯାଏ, ବତକ କେମିତି ଧନ୍ଦାଳି ହୁଏ କୋଉ କାଦୁଆ କଣାରେ ସେଥିରେ ପୁଲକିତ ହୋଇଉଠେ, ତା'କୁ ଏମିତି ଅଡୁଆ ଲାଗିଲା, ମୁଁ ତା' ଦେହରେ ହାତ ପକେଇଲି ବୋଲି ? ରବିସ୍ !

କେ-ବି-କେ ରାଗରେ କୁହୁଳୁଥିଲେ ଏମିତି ସେଇ କେଇଟା ଦିନ, ଯଦିଓ ସେ ଆତିଥ୍ୟର ଉପଚାରକୁ ହୁଡ଼ି ନ ଥିଲେ, ନୀଳିମାଙ୍କ ପଛେ ପଛେ ଥାଇ ।

କିନ୍ତୁ କେ-ବି-କେ ଅନ୍ୟାୟ କରୁଥିଲେ ଶୈଳ ତଥା ତା'ର କବିତ୍ୱ ପ୍ରତି । ତାଙ୍କର ଦୋଷ ନୁହେଁ । ତାଙ୍କୁ କେମିତି ଜଣାଥାଆନ୍ତା ଶୈଳମାନସଟି କେଉଁ ଧାତୁରେ ଗଢ଼ି ହୋଇଉଠିଛି, କେଉଁ ଅତୀତରୁ ପାରି ହେବାଲାଗି ? ଅତୀତର ଗୋଟିଏ ଦୃଶ୍ୟ ବିଶେଷ ଭାବରେ ଉଲ୍ଲେଖନୀୟ ।

ଆଠ ବର୍ଷର ଶୈଳ ଅକାରଣରେ ଚାହିଁ ରହିଛି ଅଗଣାରେ ଶିଉଳିମଖା କାନ୍ଥ ଆଡ଼କୁ, ପାଟିଟାକୁ ଦରମେଲା କରି । ତା'ଛଡ଼ା ସେ ଆଉ କ'ଣ କରିପାରିବ ? ଭୋକ ତ ମରିଗଲାଣି କେତେବେଳୁଁ । କାନ୍ଦିବାକୁ ବି ମନା ବୋଉ କାମ କଲାବେଳେ । ପାଟି ଶୁଣିଲେ ବୋଉ ଧାଇଁଆସିବ । ଆଉ 'କୋଉଠି ଥିଲା ଏଇ ଚଣ୍ଡୀ କାଳୀକାନୀ !' ବୋଲି କହି ଦି' ପୁଞ୍ଜା କଷିଦେବ ତା' ପିଠିରେ । ସୁତରାଂ ଏମିତି ଅନେଇ ରହିବା ହିଁ ସାର । ହେଲେ ପିଣ୍ଡା ଉପରୁ ଆକାଶକୁ ବି' ତ ଅନେଇ ହୁଅନ୍ତା ? କିନ୍ତୁ ଶୈଳ ସେ ଆଡ଼କୁ ଅନେଇ ପାରୁ ନାହିଁ ବେଶି ସମୟଯାଏଁ । ଦୃଷ୍ଟି ବାରମ୍ବାର ଫେରିଆସୁଛି ଶିଉଳିମଖା କାନ୍ଥ ଆଡ଼କୁ, ବୋଉ ଯେଉଁଠି ବାସନ ମାଜୁଛି ଆଣ୍ଠୁରୁ ଲୁଗାପଟା ଟେକି, ପିଠିଟାକୁ ବି' ଦରଲଙ୍ଗଳା କରି । ସତେକି ଏହାହିଁ ତା'ର ପାଉଣା, ଏଠା ପାଖର ନିଜର ଦୃଶ୍ୟଟିଏ, କୋଉ ସୁଦୂର ଆକାଶ ନୁହେଁ । ଅଗଣାର ଏଇ ପଚପଚ ପାଣି, ଯାହା ଉପରେ ମାଳର କି ସଗର କି ପରିର, କି ଛଅଟାଯାକ ଭାଇ ଭଉଣୀଙ୍କ ଖଙ୍କାର ବି' ଭାସୁଥିବାର ଦେଖାଯାଉଛି, କାହିଁକିନା ନଳାଖଣ୍ଡକ ଯୁଗ ଯୁଗର ଅଳିଆ ଆବର୍ଜନାରେ ଚୁଙ୍ଗି ହୋଇ ରହିଛି । ଏଇ ଚମଛଡ଼ା ବଦରଙ୍ଗୀ କାନ୍ଥ, ତା'ର ପିନ୍ଧିଥିବା ମଇଳା ତାଳିପକା ଫ୍ରକ୍ ପରି, ଯାହା ଏକଦା ମାଳର ଥିଲା ଏବଂ ପରେ ସଗର ହେବ, ଯଦି ସେତେବେଳକୁ

ପୂରାପୂରି ଛିଣ୍ଡିଯାଇ ନ ଥାଏ । ଆଉ ଏଇ ଝୁଲୁଥିବା, ଶୁଖୁଥିବା ଓ ମୁହଁମାଡ଼ି ପଡ଼ିଥିବା ଲୁଗାପଟା, ପାଛିଆ, ଟୋକେଇ ଏବଂ ଯେତେକ ଆଳିମାଳିକା । ସେ ସବୁକୁ ଆବୁରିଥିବା ଗୋଟାଏ ଗମ୍ଭୀରିଆ ବାସ୍ନା, ଯାହା ବେଳେବେଳେ ଗନ୍ଧେଇଉଠେ । ହଉ ବାସ୍ନା ହେଉ କି ଗନ୍ଧ, ସେ ତା'ର ଦେହସୁହା ହୋଇଗଲାଣି । କିନ୍ତୁ ଶୈଳ ଜାଣିଛି ଯେ ଇଏ ଖାଲି ଆମର, ଆମ ଘରର ବାସ୍ନା; ବାହାରର ନୁହେଁ । ଦେହଲଗା ବାସ୍ନା । ଘାସର ନୁହେଁ, ଗଛର ନୁହେଁ, ପାଣିର ନୁହେଁ କି ପବନର ।

ଦୃଶ୍ୟପଟରେ ହଠାତ୍ ଜଣଙ୍କର ଆବିର୍ଭାବ । ବାପା କେଉଁଠି ଥିଲେ, ପହଞ୍ଚିଗଲେ ବୋଉ ପାଖରେ । ଆଣ୍ଠୁ ଟେକି ବସିପଡ଼ିଲେ ଓ ତା' ଖୋଲା ପିଠିରେ ହାତ ବୁଲେଇଲେ । ସେଇଠୁଁ ବୋଉ ବୁଲିପଡ଼ି ଚିହିଁକି ଉଠିଲା— ଛାଡ଼ ଛାଡ଼ ମୋତେ ! ତମର ସିନା କିଛି କାମ ନାହିଁ, ଖଟିବାକୁ ଗୋଟାଏ ମାଇପ ଅଛି ତମର...

ବୋଉ ସାଙ୍ଗକୁ ନିଜେ ଚିହିଁକି ଉଠିବା ପାଇଁ ବଳ ନ ଥିଲା ଶୈଳର । କିନ୍ତୁ ତା ଦେହଟା କେମିତି ଶୀତେଇ ଉଠିବ ନାହିଁ ଏଭଳି ଦୃଶ୍ୟର ଦର୍ଶନରେ ? ସତେକି ଏଇ ଦେହଲଗା ଘର ସିନା ତା'ର ଦେହସୁହା ହୋଇଗଲାଣି, ତା' ବୋଲି କାହା ଦେହଟା ବି' କ'ଣ ଲାଗିବ ଆଉ କାହା ଦେହ ସାଙ୍ଗରେ ? ଇସ୍ ! ଶୈଳର ପିଲା ମନରେ ଦରିଦ୍ରତା ଓ କୁତ୍ସିତର ବାର୍ତ୍ତାବହ ହୁଏ ଏଇ ଦେହ, ଅସନା ଅନ୍ତରଙ୍ଗ ଦେହ—ବାପା ବୋଉଙ୍କର ତଥା ତା' ନିଜର, ମାଳର, ସରର, ପରିର, ଛବିର, ବାବୁଲିର, ଗଣିଆ ଗଉଡ଼ର ଯେତେବେଳେ ତା' ସିଂଘାଣିନାକୀ ଝିଅ ଲଦି ହୋଇପଡ଼େ ତା' ଖୋଲା ପିଠି ଉପରେ, ସେ ଦୁଧ ଦୁହିଁଲାବେଳେ ଇତ୍ୟାଦି ।

ଏଇ ଶୀତ୍କାରକୁ ସେ ଦବେଇପାରେ ନାହିଁ, 'ଇସ୍' ବୋଲି ତା' ପାଟିରୁ ବାହାରୁ କି ନ ବାହାରୁ, ଯେତେବେଳେ ତିନି ଭଉଣୀ ଲଗାଲଗି ହୋଇ ଶୋଇଥିଲାବେଳେ କେହି ଜଣେ ଗଡ଼ିଆସେ ତା' ଉପରକୁ ଏବଂ ତା' ଖୋଲା ଗୋଡ଼, ଖୋଲା ଜଙ୍ଘ, ଖୋଲା ଛାତି, କି ଆଉ କ'ଣ ସ୍ପର୍ଶ କରେ ତା' ଦେହକୁ । ଅବା ସେ ଅଧା ନିଦ କିମ୍ୱା କଳ୍ପନାରେ ଦେଖେ ବାପାବୋଉଙ୍କର ଅସନା କାରବାର । ମନେହୁଏ ଘର—ଅସନାର ପୁଞ୍ଜୀଭୂତ ଗନ୍ଧ ମାଡ଼ିବସୁଛି ତାକୁ । ସଶରୀରେ । ସେଥିରୁ ଉଦ୍ଧାର ନାହିଁ !

ବାଳିକା ବଡ଼ ହେଲା । ଯଥାକ୍ରମେ ସେ ବୁଝିଲା ଯେ ସେମାନେ ଦରିଦ୍ର, ସେଇଥିପାଇଁ ଏଇ ଗନ୍ଧ, ଏଇ ଅସନା ଘରକରଣା । ମିଛୁଟାରେ ଦେହକୁ ଦୋଷ ଦେଇ ଲାଭ ନାହିଁ । ତା'ଛଡ଼ା ତା' ନିଜ ଦେହ ତା'କୁ ଭଲ ଲାଗିଲା ଏବଂ ତା'ର ଇଚ୍ଛା ହେଲା ଖେଳିବ ତା' ସାଙ୍ଗରେ । ଖେଳେ ମଧ୍ୟ, କିନ୍ତୁ ଶୀତ୍କାରକୁ

ଅମାନ୍ୟ କରି । ଏବଂ ଯଥାଶୀଘ୍ର ସେ ଗାଧୁଆଘରକୁ ଯାଇ ଦେହରେ ପାଣି ଢାଳିହୁଏ । ... ବୋଉ ଯେତେ ପାଟି କଲେ କରୁ । ହେଲା ଯେବେ ମୋତେ ନିମୋନିଆ ହେବ, ଆଉ ମୁଁ ମରିବି । ମଲେ ମରିବି, ସେଇ ହେବ ମୋ ପାପର ଶାସ୍ତି !

କିନ୍ତୁ ପୁଣି ଯୋଉ କଥାକୁ ସେଇ କଥା । ସେଇଭଳି 'ପାପ', ସେଇଭଳି ସ୍ନାନ ଶୁଚି ହେବାପାଇଁ ଏବଂ ସେହି ପ୍ରକାର ଶାସ୍ତିର କାମନା । ଶୈଳ ବେଳେବେଳେ ରାଗେ ନିଜ ଉପରେ । ଭାବେ ସେ ଆତ୍ମହତ୍ୟା କରିବ ଅଥବା ଘର ବୋଲାଉଥିବା ଏଇ ଗନ୍ଧିଆ ଗୁହାରୁ ଉଠି ପଳେଇଯିବ ବାହାରକୁ, ଯେଉଁଠି ଖାଲି ପ୍ରକୃତି ଗଛ ଆଉ ପାଣି, ପବନ, ଆକାଶ ଓ ତା' ଭିତରେ ଆନନ୍ଦ କରୁଥିବା ଜୀବଜନ୍ତୁମାନେ । ...ଆଃ ! ମୁଁ ତାଙ୍କରି ଭିତରୁ ଜଣେ ହୋଇଯାଆନ୍ତି କି ! ତା'ହେଲେ ମୁଁ ରକ୍ଷା ପାଇଯାଆନ୍ତି ଏଇ ମଣିଷ ଦେହର ଦାଉରୁ ।

ହେଲେ ତା'ର ମନେହୁଏ ଅନ୍ୟମାନେ କେହି ଦୁଃଖୀ ନୁହନ୍ତି କି ଖରାପ ନୁହନ୍ତି ତା'ପରି । ସେହେତୁ ସେ ବିଶେଷ ଚେଷ୍ଟା କରେ ନିଜକୁ ଧରା ନ ପକେଇବାଲାଗି । ହସଖୁସି ହୁଏ, ଖେଳକୁଦ କରେ, ସର୍ବସାଧାରଣ ଝିଅଙ୍କ ପରି । ନିଜ ଭାଇ ଭଉଣୀଙ୍କ ସାଙ୍ଗରେ ଏବଂ ସ୍କୁଲ୍‌ରେ ପଢ଼ିଲାରୁ ସାଙ୍ଗସାଥୀମାନଙ୍କ ସାଙ୍ଗରେ । ସେ ବିଶେଷ ପ୍ରଶଂସାଭାଜନ ହୁଏ ତା'ର ଗୋଟିଏ ଗୁଣପାଇଁ । ମଇଳା ସାତସିଆଁ ଫ୍ରକ୍‌କୁ ସେ ବର୍ଜନ କରିପାରିଛି । ନିଜ ପାଇଁ ନିଜର ଫ୍ରକ୍‌କୁ ପିନ୍ଧିବାର ଅଧିକାର ହାସଲ କରିନେଇଛି କୌଣସିମତେ ଏବଂ ତା'କୁ ସେ ସବୁବେଳେ ଧୋବଫରଫର କରି ରଖିଥାଏ । ସେହେତୁ ଝିଅର ପିନ୍ଧିଥିବା ଫ୍ରକ୍ ଏବଂ ଯଥାକ୍ରମେ ଶାଢ଼ି ସବୁବେଳେ ଚମକୁଥାଏ, ତା'ର ଶୁଭ୍ରତା ଓ ସ୍ୱଚ୍ଛତାକୁ ନେଇ । ମନେହୁଏ ଧୂଳିମଇଳା କେବେହେଲେ ତା'କୁ ଛୁଇଁ ନାହିଁ କି ଛୁଇଁପାରିବ ନାହିଁ । ଠିକ୍ ଯେମିତି ସେ ସଦାବେଳେ ପିନ୍ଧିଥାଏ ତା'ର ଶୁଭ୍ରସୁନ୍ଦର ହସ । ହସରେ ତା'ର ଚିକି ଚିକି ଧଳା ଦନ୍ତପଂକ୍ତି ଦିଶିଯାଉ କି ନ ଦିଶୁ । କାହାରି ବୁଝିବାର କ୍ଷମତା ନ ଥାଏ ଯେ ଏଇ ଚେଷ୍ଟାକୃତ ଶୁଭ୍ରସ୍ୱଚ୍ଛ ପରିପ୍ରକାଶରେ ସେ କାଟିଦେଉଛି, ପୋଛିଦେଉଛି, ନିର୍ମୂଳ କରିଦେଉଛି ତା' ଗନ୍ଧିଆ ଦେହଲଗା ଘରର ଅବଦାନ ତଥା ତା' ଦେହର ସାମୟିକ 'ପାପ' । ସତେକି ହସ ହେଉ କି ବେଶ ହେଉ, ସେ ଗୋଟାଏ ଟାଣୁଆ ଜବାବ୍ ଦେବାକୁ ଚାହେଁ ତା'ର ଏଇ ଜନ୍ମଗତ ଦେହର ଓ ଦେହଲଗା ସଂସାରର ଅଭିଶାପକୁ ।

ସେଇଠୁଁ ଦିନେ, କେଉଁ ଏକ ଉଦାସ ମେଘୁଆ ଅପରାହ୍ଣରେ ସେ ଗୋଟାଏ କାଗଜ ଛିଣ୍ଡେଇ ଆଣିଲା ତା' ଏକ୍ସରସାଇଜ୍ ଖାତାରୁ ଏବଂ ଲେଖିବସିଲା—

ହେ ଶ୍ୟାମଳ, ମୁଇ ତୁମ ଶୈଳ
ଚିର-ଅଭିଳାଷୀ ତୁମ ଅନାବିଳ ଶିଶିର ବିନ୍ଦୁର,
ହେ ସୁନୀଳ, ମୁଇଁ ତୁମ ଶୈଳ
ଚିର-ପିପାସିନୀ ତୁମ ନିର୍ମଳରେ
ନିର୍ମଳରେ କ୍ରୀଡ଼ାରତ ମେଘମାନଙ୍କର,
ହେ ସୁରଭି...

ଏଇ ଥିଲା ତା'ର ପ୍ରଥମ କବିତା, ଯେଉଁଥିରେ ଶୈଳ ତା'ର ପ୍ରଥମ ଅର୍ଘ୍ୟ ବାଢ଼ିଦେଲା ପ୍ରକୃତି ପାଖରେ । ଯେ ମୁଁ ହୋଇପାରେ ଏଇ ଦେହଲଗା ଘରର ଦେହୀ ମଣିଷଟାଏ, ନାରୀବିଶେଷ । କିନ୍ତୁ ମୁଁ ପ୍ରକୃତରେ ତୁମର, ମୋର ଆତ୍ମା ଏବଂ ଅତି-ଆତ୍ମିକ କାମନାକୁ ନେଇ । ମୋତେ ନିଅ ମ... ନେବ ନାହିଁ ??

ତା'ପରେ ଦିନେ ଏକ ଶୁଭ୍ରସୁନ୍ଦର ସକାଳରେ ସେ ଅନୁଭବ କଲା ଯେ ନବଯୁବତୀର କିଛି ଗୋଟାଏ କହିବାର ଅଛି ଏଇ ସ୍ୱଚ୍ଛ ନିର୍ମଳ ସକାଳକୁ । ସତେକି ଦୁହିଁଙ୍କ ନବୀନତା ଗୋଟିଏ ଧାତୁରେ ଗଢ଼ା । କିନ୍ତୁ ସେ କେମିତି କ'ଣ କହିବ ବୋଲି ବୁଝିପାରିଲା ନାହିଁ । ସେଇଠୁଁ ବୁଝିଲା । ... ଆରେ, ମୋତେ କବିତା ଲେଖି ଆସେ ପରା ? ସେଇ ମୋର ପ୍ରେମପତ୍ର, ଅନ୍ତରଙ୍ଗ ଆଳାପ ତା' ସାଙ୍ଗରେ । ହଁ, ହଁ, ପ୍ରେମ । ଯୁବତୀମାନେ ପ୍ରେମ କରନ୍ତି । କିନ୍ତୁ ମୋ ପ୍ରେମର ଚେହେରାଚରିତ୍ର ଭିନେ । ସେଥିରେ ଆଉ ଯାହା ଥାଉ ବା ନ ଥାଉ, ଦେହ ନାହିଁ । ମଣିଷର ଦେହ, ଆଉ ତା' ଗନ୍ଧିଆପଣ । ଏବଂ ମୁଁ ସେହିଭଳି ପ୍ରେମ କରିବି ତୁମ ସାଙ୍ଗରେ । ସେଣିକି ତୁମ ଇଚ୍ଛା ।

କିନ୍ତୁ ପ୍ରକୃତିପ୍ରେମର କବିତା ଲେଖୁ ଲେଖୁ ସେ ପ୍ରଣୟୀର ଆହୁରି ପାଖକୁ ଚାଲିଆସିଲା, ତା'କୁ ଆହୁରି ନିବିଡ଼ରେ ଅନୁଭବ କରିବାପାଇଁ । ତେଣୁ ସେ ଯଥାକ୍ରମେ ଅନୁଭବ କଲା ପାଚିଲା ଫଳରୁ ଉପୁଚି ଉଠୁଥିବା ରସ, ଗଛ କୋରଡ଼ରେ ଖୁଜୁବୁଜୁ ହେଉଥିବା ଗୁଣ୍ଡୁଚିର ଖେଳ, ପୋଖରୀରେ ସିରି ସିରି ହେଉଥିବା ପାଣିର ପୁଲକ...ଇତ୍ୟାଦି । ଅନୁଭବ କଲା ଏବଂ ତା'ର ଗହନ ଶରୀରକୁ ଚିହ୍ନେଇବାକୁ ଚେଷ୍ଟା କଲା ତା' କବିତାରେ, ଛଟପଟ ହୋଇ । ଛଟପଟ ଏଇଥିପାଇଁ ଯେ ତା'ର ମନେହେଲା ତା' ଭାଷା କୁଳଉ ନାହିଁ ତା' ଭାବକୁ । ସେ ପୂରା କଥାଟା କହିପାରୁ ନାହିଁ । କିନ୍ତୁ ଲେଖିବାକୁ ହେବ, ଆହୁରି ଲେଖିବାକୁ ହେବ ସେଇ କେଇଟା ପରିଚିତ ଶବ୍ଦକୁ ନେଇ । ଲେଖିବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ ହତଭାଗିନୀର, ଅପ୍ରେମରୁ ପ୍ରେମ ଆଡ଼କୁ ଯିବାଲାଗି । ତରୁଣୀ ଶୈଳ ଛଟପଟ ହୋଇ ଲେଖେ, ଉଲ୍ଲସିତ ହୋଇ ଲେଖେ, ପ୍ରେମିକ ପ୍ରକୃତିର

ସମସ୍ତ ଚିକିନିଖି କଥା, ଯାବତୀୟ ଅନ୍ଦିକନ୍ଦିର ଦୃଶ୍ୟ-ଅଦୃଶ୍ୟ କଥା—ତା'ର ବଟବଟ କାଦୁଅ, ତା' ଗୁହାର କିଟିକିଟି ଅନ୍ଧାର, ତା'ର ଝିଲିମିଲି, ତା'ର ସୁଲୁସୁଲୁ...ଯାହାକି ସୁନ୍ଦର, ସଦା ସୁନ୍ଦର । ମଣିଷ ଦେହଠୁଁ କାହିଁ କେତେ ଦୂରରେ, କାହିଁ କେତେ ଊର୍ଦ୍ଧ୍ୱରେ ।

ଏହି କ୍ରମରେ ସାଁବାଳୁଆ ସହଜେ ହଇରାଣ କଲା ସଜନା ଗଛକୁ, ଘାସର ଝାଳରୁ ଗୋଟାଏ ଅନୁପମ ଉତ୍କଟ ବାସ୍ନା ବାହାରିଲା, ଯେଉଁଥିରେ ଶୈଳ ବିଭୋର ହେଲା ଏବଂ ବତକ ଧନ୍ଦାଳି ହେଲା କାଦୁଆ ଗାତ ଭିତରେ ।

ଶୈଳଜା ତ୍ରିପାଠୀ ଯେ କେବଳ କବି ପାଲଟିଗଲା ନୁହେଁ, ସେ ଗୋଟିଏ ନିଚ୍ଛକ୍ ରୋମାଣ୍ଟିକ୍ କବି ବୋଲାଇଲା । ଯେ ସୁନ୍ଦରର ପୂଜାରୀ ତଥା ପ୍ରକୃତିର । ସୁନ୍ଦରର ପ୍ରେମିକା ତଥା ପ୍ରକୃତିର । କୀଟସ୍—ରାଧାନାଥ ଗୋଷ୍ଠୀର ଲୋକ, ଯେଉଁମାନେ ତାଙ୍କ ରକ୍ତରେ, ଶିରାଧମନୀରେ, ପ୍ରାଣର ପ୍ରତିଟି ସ୍ପନ୍ଦନରେ ସୁନ୍ଦରକୁ ଅନୁଭବ କରନ୍ତି ଏବଂ ତଥ୍ୟ ବାଢ଼ିବାକୁ ହେଲେ ବାଢ଼ିଦିଅନ୍ତି, ତିଳେମାତ୍ର ଦ୍ୱିଧା ନ କରି, ଯେ 'ସୁନ୍ଦର ତୃପ୍ତିର ଅବସାଦ ନାହିଁ...' ଏବଂ ଏହା ମଧ ସ୍ୱତଃସିଦ୍ଧ ସେମାନଙ୍କ ପାଇଁ ଯେ ପ୍ରକୃତି ସୁନ୍ଦର । ପୂର୍ଣ୍ଣଚ୍ଛେଦ । କିନ୍ତୁ ମଣିଷ ? ସେ ବିଷୟରେ କିଏ କ'ଣ ଉତ୍ତର ଦେଇପାରି ଥାଆନ୍ତା କହିହେବ ନାହିଁ । କିନ୍ତୁ ଶୈଳକୁ ପଚରା ହୋଇଥିଲେ ସେ ନିଶ୍ଚୟ କହିଥାଆନ୍ତା—ଧ୍ୟାତ୍ ! ମଣିଷ କୋଉଠୁ ସୁନ୍ଦର ହେବ ମ, ତା'ର ଦେହ ଅଛି ପରା !

ଶୁଚିସ୍ମିତା ଶୈଳ ପିଲାଟିଦିନୁ ଲୋକପ୍ରିୟ ହୋଇଆସିଛି, ଏ କଥା ଦୋହରେଇବା ଅନାବଶ୍ୟକ । ତେବେ ଉଲ୍ଲେଖଯୋଗ୍ୟ ଯେ ରୋମାଣ୍ଟିକ୍ କବିତା ଲେଖିପାରିବାର ଆନନ୍ଦ, ତା' ପିଲାଳିଆ ପାପବୋଧକୁ ନିର୍ମୂଳ କରି ଦେଇଥିବା ଆନନ୍ଦ, ତା'ର ସଦାବିହାରୀ ହସଟିକୁ ଆହୁରି ସୁନ୍ଦର କରି ଗଢ଼ିଲା, ସାଙ୍ଗସାଥୀ ତଥା ତା' ମାଷ୍ଟର୍ ଅବା ଗୁରୁଜନମାନଙ୍କ ପାଖରେ । ଏବଂ ତା'ର ବନ୍ଧୁ ଓ ଶୁଭାକାଙ୍କ୍ଷୀମାନଙ୍କ ଗହଣରେ ।

କିନ୍ତୁ କେମିତି ସେ କବି ବୋଲାଇଲା ? ଛିଣ୍ଡା କାଗଜରେ ଲେଖା ହୋଇଥିବା ପହିଲି କବିତାର ବଂଶଧରମାନେ କେମିତି ପହୁଞ୍ଚିଲେ ସୁଧୀ ପାଠକ ମହଲରେ ? ଭୀରୁ ଶୈଳ ସେଭଳି ଉଦ୍ୟମ କରିଥିବ ବୋଲି ମନେ ହେଉ ନାହିଁ ତ ? ନା, ସେଥିପାଇଁ ଆଉ ଜଣେ ଦାୟୀ । ଅରୁ ଭାଇନା ।

ସୁସମ୍ପନ୍ନ ଓକିଲ ବାପର ପୁଅ, ଖେଳୁଆଡ଼ ଏବଂ ସହରିଆ ଅରବିନ୍ଦ ମିଶ୍ର ତ୍ରିପାଠୀ ପରିବାରର ଅନେକ ଉପକାର କରି ସାରିଥିଲେ ଶାଳୀର କବିତା ଉପରେ ଆଖି ପକେଇଲା ପୂର୍ବରୁ । ପ୍ରଥମେ ସେ ଶୈଳର ବଡ଼ଭଉଣୀ ଏବଂ ସୁନ୍ଦରୀ

ମାଳକୁ ପ୍ରେମ କରି ବାହାହେଲେ ଏବଂ ବିମ୍ବାଧରବାବୁଙ୍କୁ କନ୍ୟାଦାୟର ପ୍ରଥମ ପର୍ଯ୍ୟାୟରୁ ମୁକ୍ତ କଲେ । ଦ୍ୱିତୀୟରେ ଦରପାଠୁଆ ଏବଂ ଦରବୁଢ଼ା ଶ୍ୱଶୁରଙ୍କୁ ନାନାମତେ ସାହାଯ୍ୟ କଲେ । ଆଦିନିବାସ ବଉଳିଆ ଗାଆଁର ସନ୍ତସନ୍ତିଆ, ଅନ୍ଧାରିଆ ଏବଂ ଶୈଳର ଭାଷାରେ ଗନ୍ଧିଆ ମାଟିଘରୁ ଉତ୍ତୀର୍ଣ ହୋଇ ପାଲିକିପୁରର ଗୋଟିଏ ଛୋଟିଆ, ହେଲେ ମନପସନ୍ଦ ପକ୍କା ଘରକୁ ଯିବାପାଇଁ । ଯେଉଁଠି ବାପପୁଅ କୁହାବୋଲା କରି ତାଙ୍କୁ ସବ୍ ପୋଷ୍ଟମାଷ୍ଟର୍ ଚାକିରିଟି କରେଇଦେଲେ । ସେ ଦିଗରେ ବାପର ପ୍ରତିପତ୍ତି ନା ପୁଅର ଆକର୍ଷକ ବ୍ୟକ୍ତିତ୍ୱ, ଯାହାକୁ ଚାର୍ମ୍ ବୋଲି କୁହନ୍ତି ଇଂରେଜୀରେ, ବେଶି କାମ ଦେଲା କହି ହେବ ନାହିଁ ।

ଯାହାହେଉ ଅରୁଭାଇନାଙ୍କର ସେଇ ଚାର୍ମ୍ ତ ଏମିତି ହଟହଟାରେ ପକେଇଲା ଶୈଳକୁ ! କାରଣ ସେ ଯେତେବେଳେ ଶାଳୀର ଖୋଲା ପଡ଼ିଥିବା କବିତାଟିକୁ ଦେଖି ତା'ର ବାହାବା କଲେ, ଶୈଳ ତାଙ୍କ ଉପରେ ରାଗିମାଗି ହାତ ହଲେଇଲା, ଗୋଡ଼ କଚାଡ଼ିଲା ସତ, କିନ୍ତୁ ତାଙ୍କ ପ୍ରସ୍ତାବକୁ ଟାଳିଦେବାର କ୍ଷମତା ନ ଥିଲା ତା'ର । କହିଲେ ଶୈଳ, ମୁଁ ସତ କହୁଛି, ମୁଁ ଏମିତିକା କବିତା ପଢ଼ି ନ ଥିଲି ଏଥି ପୂର୍ବରୁ । କେବଳ ଶବ୍ଦକୁ ନେଇ କୌଣସି ଜିନିଷ ଏତେ ମିଠା ହୋଇପାରେ ବୋଲି ମୋର ଧାରଣା ନ ଥିଲା (ଅବଶ୍ୟ ମୋ ଶାଳୀଟି ଯେମିତି...ଧ୍ୟାତ୍ !...) ସେଇଲାଗି ମୁଁ କହୁଛି କ'ଣ କି, ମୋତେ ଏଇ କବିତାଟିକୁ ଦେ', ମୁଁ ତା'କୁ 'ସୁରଭି'ରେ ଛପେଇବି ।''

''କୋଉଠି ? ସୁରଭିରେ ? ୟୁ ମିନ୍ — ୟୁ ମିନ୍ —''

''ହଁ କ୍ୟାପିଟାଲ୍‌ରୁ ବାହାରୁଥିବା ପହିଲା ନମ୍ବର ସାହିତ୍ୟପତ୍ରିକା ସୁରଭିରେ । ଆଲୋ, ତା' ସମ୍ପାଦକ ପ୍ରଦୀପ ପଟ୍ଟନାୟକ ମୋ ସାଙ୍ଗର ବଡ଼ଭାଇ ପରା ?''

ଏହିପରି ଭାବରେ ଶୈଳର କବିତା ଆଉ ତା'ର ନିଭୃତ ସମ୍ପଦ ହୋଇ ରହିପାରିଲା ନାହିଁ । ତା'କୁ ତା'ର ଚାର୍ମିଙ୍ଗ୍ ଭିଣେଇ ହରଣଚାଳ କରି ନେଇଗଲେ ପାଠକସମୁଦାୟଙ୍କୁ ଆନନ୍ଦ ଦେବାପାଇଁ ଏବଂ ଶୈଳ କେବଳ ନିଜକୁ ନିଜେ କବି ହୋଇ ରହିଲା ନାହିଁ । ସେ ମଧ୍ୟ କବି ବୋଲାଇଲା । ସେତେବେଳକୁ ଶୈଳ କଲେଜରେ ପଢ଼ିଲାଣି ।

ବିଶିଷ୍ଟ 'ସୁରଭି' ପତ୍ରିକାରେ ବାହାରିଥିବା ତା'ର ସେଇ କବିତାର ନାଆଁ ଥିଲା 'ଶ୍ୟାମଳୀ' । ଯେଉଁଥିରେ ଶୈଳ ତା'ର ଆନ୍ତରିକ ସମବେଦନା ଜଣାଇଥିଲା ତା'ର ପ୍ରାଣସଙ୍ଗିନୀ ପାଇଁ । କବିତାର ପ୍ରଥମ ଧାଡ଼ି କେତୋଟି ଥିଲା ଏହି ପ୍ରକାର :

ଶ୍ୟାମଳୀ ଲୋ, ଛନଛନ ତୋର ଶିରୀ
ଶୁଣିଛି ସହୀ ତୋ କାନ୍ଦୁରା ସ୍ୱରଟି,

ସ୍ପନ୍ଦନ ତୋର ଶିରାଧମନୀର,
ଅଗୁଆଁର ଅଦେହୀ ସେ ପବନଟା ଲାଗି
ଅକାରଣେ ଝୁରି ଝୁରି, ଗୁମୁରି ଗୁମୁରି ।

ପାଠକ ପାଠିକାମାନଙ୍କର ଦୃଷ୍ଟି ପଡ଼ିଥିଲା ସେଇ କବିତା ଉପରେ । ବିଶେଷତଃ ନୂତନ ଲେଖିକାଙ୍କର ଏଇ ଅଭିନବ ସମ୍ବେଦନା ହେତୁ, କେତେକ ସହପାଠିନୀ ଆଖି ଠରାଠରି ଓ ଫୁସ୍‌ଫୁସ୍ ହେଲେ ପରସ୍ପର ସହିତ,—ସେ ନିଜେ କାଳୀ କିନା, ସେଇଲାଗି ତା'ର ଏତେ ଦରଦ ଶ୍ୟାମଳୀ ପ୍ରତି ! କିନ୍ତୁ ଭାବିବା କଥା ଯେ ସେ କୋଉ ଅଦେହୀ ପାଇଁ ଝୁରି ହେଉଛି...(ଠେଲାପେଲା ହସ) । ଯାହା ହେଉ ତା'କୁ ଅଜ୍ଞବହୁତ ପ୍ରଶଂସା ମିଳିଲା ତା'ର ଏଇ ପ୍ରଥମ ପ୍ରକାଶିତ କବିତା ପାଇଁ ଏବଂ ତା'କୁ ମାଡ଼ିପଡ଼ିଲା ତା'ର ସ୍ନେହଶୀଳ ବାପା ଯେଉଁ କାଣ୍ଡଟି କଲେ । ଦୁନିଆଁସାରା କହି ବୁଲିଲେ ଯେ ତାଙ୍କ ଝିଅ ଗୋଟାଏ କବିତା ଲେଖିଛି । ଏମିତି ସେମିତି କବିତା ନୁହେଁ, ସୁରଭିରେ ବାହାରିଛି । ପଢ଼ିଲଣି ତା'କୁ ?

ଯେଉଁମାନଙ୍କ ଆଗରେ ତା'ର ଗୁଣଗାନ କଲେ ବିଦ୍ୟାଧରବାବୁ, ସହଜେ ପୋଷ୍ଟ ଅଫିସର୍ ସହକର୍ମୀଗଣ ଏବଂ ତା' ପରେ ଡିପାର୍ଟମେଣ୍ଟର କେତେଜଣ ବନ୍ଧୁ ଥିଲେ ତା'ର ପହିଲି ଶ୍ରୋତା, ଏବଂ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ ଜିଲ୍ଲା ହେଡ୍‌କ୍ୱାଟର୍ସର ସିନିୟର ପୋଷ୍ଟ ମାଷ୍ଟର ଜଗନ୍ନାଥ ପାଢ଼ୀ । ସେ ବିଦ୍ୟାଧରବାବୁଙ୍କ ଉପରିସ୍ଥ ଅଧିକାରୀ ହୋଇଥିଲେ ମଧ୍ୟ, ତାଙ୍କ ମଉଜିଆ କୁହାଳିଆ ପଣ ଏବଂ ତାଙ୍କ ସ୍ତ୍ରୀ ପରିବାରଙ୍କ ବିନମ୍ର ଚାରୁହାସ—ଚାରୁଭାଷପଣ (ସେଥିରେ ଥିଲା ଗୃହିଣୀ ବୀଣାପାଣିଙ୍କର ଆତିଥ୍ୟ, ମାଳର ସୌନ୍ଦର୍ଯ୍ୟ, ଶୈଳର ସସ୍ମିତ ଚାହାଣି, ସଗର ଚପଳମଧୁର ଭାବ, ଇତ୍ୟାଦି), ତାଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା ଏବଂ ପାଲିକିପୁରକୁ ଆସିଲେ ସେ ବିଦ୍ୟାଧରବାବୁଙ୍କ ଘରେ କିଛି ସମୟ ନ ବିତେଇ ରହିପାରନ୍ତି 'ନାହିଁ । ସେମିତିକା ଗୋଟିଏ ଭିଜିଟ୍ ସମୟରେ ବିଦ୍ୟାଧରବାବୁ ତାଙ୍କୁ ଶୁଣାଇଥିଲେ ସେହି ଚମକପ୍ରଦ ସମ୍ବାଦ ଯେ ତାଙ୍କ ଝିଅ ଶୈଳ ଗୋଟିଏ କବିତା ଲେଖିଛି ଯାହା 'ସୁରଭି'ରେ ପ୍ରକାଶ ପାଇଛି । କବିତାଟିକୁ ମଧ୍ୟ ପଢ଼େଇଥିଲେ । ଜଗନ୍ନାଥବାବୁ ଶୈଳକୁ ପାଖକୁ ଡାକିଆଣି ତା'କୁ ଆଶୀର୍ବାଦ କରିଥିଲେ । ସେଇଠୁ ଉଲ୍ଲସିତ ହୋଇ ବିଦ୍ୟାଧରବାବୁ ଝିଅର ସ୍ୱଭାବ ଚରିତ୍ରର ଉତ୍କର୍ଷକୁ ନେଇ ଆହୁରି କେତୋଟି ଅବାନ୍ତର କଥା କହିଲେ । ଯଥା, ସେ ସବୁବେଳେ ଧଳା ଶାଢ଼ି ପିନ୍ଧିବାକୁ ଭଲ ପାଏ, ପରିଷ୍କାର ପରିଚ୍ଛନ୍ନତାରେ ସରିଯାଇଛି, କାହାରି ମନରେ କଷ୍ଟ ଦିଏ ନାହିଁ, ଇତ୍ୟାଦି, ଯାହାକି ଲାଖିଗଲା ଜଗନ୍ନାଥବାବୁଙ୍କ ମନରେ । ଯଦିଓ ତାଙ୍କ ମନରେ କିଞ୍ଚିତ୍ ଈର୍ଷାଭାବ ଉଦ୍ରେକ ହେଲା ଯେ, ଏଇ କନିଷ୍ଠ

ଅଧିକାରୀର ଘରେ ଏଭଳି ପ୍ରତିଭା ରହିଛି, ଅଥଚ ତାଙ୍କ ନିଜ ପରିବାର ବିରାଦରିରେ ସେମିତି କିଛି ନାହିଁ ଗର୍ବ କଲାପରି । ସେଇଲାଗି କେତୋଟି ବର୍ଷ ପରେ ସେ ପହିଲି ସୁଯୋଗରେ ଗର୍ବର ସହିତ କହିଲେ ବିଦ୍ୟାଧରବାବୁଙ୍କୁ—ଜାଣିଛନ୍ତି ? ମୋ ଶାଳୀର ପୁଅ ବାବୁନି, ତା' ନାଆଁ କୁଳଭୂଷଣ, ଆଉ ସେ ସତରେ ଆମ କୁଳର ଭୂଷଣ, ଆଇ.ଏ.ଏସ୍. ହୋଇଛି ଏଇ ବର୍ଷ । ମହା ବିଚକ୍ଷଣ ଟୋକା, କେଉଁଥିରେ କିଛି ଖୁଣିବାକୁ ନାହିଁ ।

ଅରବିନ୍ଦ ଭଳି ସୁଯୋଗ୍ୟ ଟୋକାର ଶ୍ୱଶୁର ହୋଇପାରିଥିବା ବିଦ୍ୟାଧରବାବୁଙ୍କର ସାହସ ହେଲା, ଲୋଭ ହେଲା ଏବଂ ସେ ସତୃଷ୍ଣ ନୟନରେ ଅନେଇଲେ ଜଗନ୍ନାଥବାବୁଙ୍କୁ । କାହିଁକି ଏହି କୁଳଭୂଷଣ ପିଲାଟି ମୋ ଜ୍ୱାଇଁ ହୋଇପାରିବ ନାହିଁ ? ମୋର କବି-ଝିଅଟି କେଉଁ ହିସାବରେ ଯୋଗ୍ୟ ନୁହେଁ ତା' ପାଇଁ ? ପ୍ରସ୍ତାବ ପକେଇଲା ପୂର୍ବରୁ ଜଗନ୍ନାଥବାବୁ ବୁଝିନେଇଥିଲେ ତାଙ୍କ ଚାହାଣିର ଭାଷା ।

କିନ୍ତୁ ଦୁଃଖର ବିଷୟ କୁଳଭୂଷଣର ବାପମାଆ, ବିଶେଷତଃ ଶାଳୀମହୋଦୟା, ମାଆ ପ୍ରସ୍ତାବଟିକୁ ଗ୍ରହଣ କଲେ ନାହିଁ, ଯାହା ପୂର୍ବରୁ କୁହାଯାଇଛି । ଝିଅର କବିତ୍ୱ ମଧ କିଛି କାମ ଦେଲା ନାହିଁ । ଶୈଳ ବି.ଏ. ପାସ୍ କଲାଣି ସେତେବେଳକୁ ଓ ତା' ବୟସ ବାଇଶି ପୂରି ତେଇଶି ଧରିଲାଣି ।

ଶୈଳ ଜାଣିଲାଣି ଯେ ତା' ବାପମାଆ ବ୍ୟସ୍ତ ହୋଇ ଉଠିଲେଣି ତା'କୁ ବାହା ଦେବାପାଇଁ । ପ୍ରସ୍ତାବ ପରେ ପ୍ରସ୍ତାବର ତୀର ପେଷୁଛନ୍ତି ଏବଂ ତା'ର ସୁରାକ୍ ପାଇଲା କ୍ଷଣି ଭାଇଭଉଣୀମାନେ ତା'କୁ ଚିଡ଼଼ଉଛନ୍ତି ତା' ଭାବୀ ବରକୁ ନେଇ । କେଉଁ ହରୀଶ, କେଉଁ ଗିରିଧାରୀ ଅବା କେଉଁ ଅସିତ୍‌କୁ ନେଇ । ହେଲେ ଶୈଳର ଅଜଣା ନୁହେଁ ଯେ ପାତ୍ରଟିଏ ଜୁଟିବାକୁ ନାହିଁ । ହରୀଶ ଗିରିଧାରୀ ହୋଇଯାଉଛି କେଇଟା ଦିନ ଭିତରେ, ସେଇଠୁ ଅସିତ, ସେଇଠୁଁ ପାବକ । ଶେଷକୁ ସେ ଥରେ ରାଗିଲାପରି ହୋଇ ପଚାରିଲା ସେମାନଙ୍କୁ—ଡିକ୍ସନାରୀରେ ଆଉ କିଛି ନାଆଁ ଅଛି ତ ? ଏବଂ ସେ କୁହୁଳିଲା ମନେ ମନେ । କାହିଁକି ସେମାନେ ଏତେ ବିକଳ ହେଉଛନ୍ତି ମୋତେ କେଉଁଠି ହେଲେ ବାହା ଦେବାପାଇଁ ? ମାଳନାନୀଙ୍କୁ ଯଦି ଅରୁଭାଇନା ମିଳିଗଲେ କୋଉଠୁ ଆସି, ମୋତେ ବି' କ'ଣ କେହି ଜଣେ ମଳିଯିବ ନାହିଁ ? ମୁଁ କ'ଣ ଏତେ ଅସୁନ୍ଦର ନା ଅଯୋଗ୍ୟ ? ନା, ଅସଲ କଥା ହେଉଛି ମୋ ବାପା ଦରିଦ୍ର, ଯୌତୁକ ଦେବାର ଶକ୍ତି ନାହିଁ ତାଙ୍କ ପାଖରେ । ସେଇଲାଗି ସେମାନେ ତାଙ୍କୁ ଫେରାଇଦେଉଛନ୍ତି ଜଣକ ପରେ ଜଣେ, ହରୀଶ ଓଗେରଙ୍କ ବାପମାଆ ।

ହେଲେ ସେ ଛିଗୁଲେଇଲା ନିଜକୁ । ମଲା, ହରୀଶ ଓଗେରଙ୍କ ବାପମାଆ କାହିଁକି, ସେମାନେ ନିଜେ ତୋତେ ଫେରାଇ ଦେଇ ନାହାନ୍ତି ବୋଲି ଜାଣିଲୁ କେମିତି ? ସେମାନେ କ'ଣ ତୋ ଫଟୋ ଦେଖି ନାହାନ୍ତି, ନା ତୁ ଦିବ୍ୟ କାଳୀଟିଏ ବୋଲି ଶୁଣିନାହାନ୍ତି ? ଏବଂ ଏଇ କ୍ରୋଧଟିକୁ ସେ ଦିନେ ଉତାରିଦେଲା ତା' ବୋଉ ଉପରେ—ବୋଉ, ତମେ ସବୁ କାହିଁକି ଭଲା ଲାଗିଛ ମୋତେ ବାହା ଦେବାପାଇଁ, କହିଲ ? ତୁ' କ'ଣ ନିଜେ କହୁ ନ ଥିଲୁ ମୋ ପିଲାଦିନେ, ଯେ କାଳୀକାନୀଟାକୁ କେହି ବାହା ହେବେ ନାହିଁ ?

ବୀଣାଦେବୀ ପ୍ରତିବାଦ କରିଥିଲେ । କହିଲେ, ହୁଣ୍ଡୀ, ମୁଁ ସେମିତି କିଛି କହି ନାହିଁ । ଟିକିଏ କଳା ହେଲେ ଯାଏ କେତେ ଆସେ କେତେ, କିଏ କହିବ ମୋ ଝିଅକୁ ଅସୁନ୍ଦର ବୋଲି ? ନା ଏମିତିକା ଗୁଣର ଝିଅ ମିଳିବ କାହାକୁ ଖଣ୍ଡମଣ୍ଡଳରେ ? କିନ୍ତୁ ତାଙ୍କ ମର୍ମକୁ ବିନ୍ଧିଥିଲା ତା' ଅଭିମାନର ସେଇ ପଦକ ଏବଂ ସେ ତାଙ୍କ ରାଗ ଉତାରି ଦେଇଥିଲେ ସ୍ୱାମୀଙ୍କ ଉପରେ । ପୁଣି ଥରେ କହିଥିଲେ ହଜାରବାର ପରେ ଯେ ସେ ଗୋଟିଏ ନିଷ୍କର୍ମା ।

ଏହି ପରିସ୍ଥିତିରେ ଦିନେ ଅବେଳରେ ପୋଷ୍ଟ ଅଫିସ୍‌ରୁ ପଳେଇ ଆସି ବିଦ୍ୟାଧରବାବୁ ଯେଉଁ ବଡ଼ପାଟିଆ ଘୋଷଣା କଲେ ପରିବାରବର୍ଗଙ୍କ ଆଗରେ, ତା'କୁ ଭୁଲିବାର ନୁହେଁ । କହିଲେ—''ସନାତନ ପଣ୍ଡା । ବୁଝିଲ ? ତା' ନାଆଁ ସନାତନ ପଣ୍ଡା । କୋଉ ବଡ଼ଲୋକର ପୁଅ ନୁହେଁ କି ଆଇ.ଏ.ଏସ୍ ନୁହେଁ । କାହାରି ନଉକର ନୁହେଁ । ନିଜ ଗୋଡ଼ରେ ଠିଆ ହୋଇଛି, ଆଉ ନିଜେ ଗୋଟାଏ କାରଖାନା ଚଳେଇଛି । ସାନିଟାରୀ ୱାର୍ । ଏଇ ହାତଧୁଆ ବେସିନ୍ ଫେସିନ୍ ମ ? କହିଲା ମୁଁ କବି ଶୈଳଜା ତ୍ରିପାଠୀଙ୍କୁ ଜାଣେ । ମୁଁ ତାଙ୍କୁ ଦେଖିଛି ଏବଂ ତାଙ୍କୁ ବାହା ହେବାରେ ମୋର କୌଣସି ଆପତ୍ତି ନାହିଁ ।''

ଏଭଳି ଏକ ଅପ୍ରତ୍ୟାଶିତ ଶୁଭସମ୍ବାଦକୁ ବିଶ୍ୱାସ କରି ହେଲା ନାହିଁ ପ୍ରଥମେ । ମନେହେଲା ଇଏ ହତାଶ ବାପର ମିଛିମିଛିକା ଆସ୍ଫାଳନ, ତିକ୍ତ ରସିକତା । କିନ୍ତୁ କ୍ଷଣକ ପରେ ବୁଝାଗଲା ଯେ କଥାଟା ସତ । ଅଚ୍ଚ ବହୁତ ପାଟି ଖୋଲିଗଲା ସମସ୍ତଙ୍କର ଖୁସି ହେବାଲାଗି ଏବଂ ସେମାନେ ଗୃହକର୍ତ୍ତାଙ୍କୁ ବେଢ଼ିଗଲେ ଅଧିକ କିଛି ଜାଣିବାପାଇଁ ଘରର ଏଇ ନୂତନତମ ହିରୋଙ୍କ ବିଷୟରେ । ଯାହାଙ୍କ ନାଆଁ ସନାତନ ପଣ୍ଡା ।

ପାଖ ଘରେ ଥାଇ କିଛି ଶୁଣି ନ ପାରିବାର ପ୍ରଶ୍ନ ଉଠୁ ନ ଥିଲା ଶୈଳପାଇଁ । ସେ ଶୁଣିଲା । ବୁଝିଲା ଏବଂ ତା' ଛାତିଟା ଧପ୍‌କିନି ହେଲା ।

...କ'ଣ ହେଲା କି ଲୋ ? ଗଡ଼ ଜିଣିବାର ମହାନନ୍ଦକୁ ଧରି ରଖିପାରୁ ନାହୁଁ ? ତୁ ବି' କିଛି ଊଣା ନୁହଁ ସୁନ୍ଦରୀମାନଙ୍କଠାରୁ, ବରଣୀୟ ବର ଜଣେ

ଆସୁଛି ତୋ ଗୋଡ଼ତଳକୁ, ସମ୍ମାନନୀୟା କବୟିତ୍ରୀ ଶୈଳଜା ତ୍ରିପାଠୀଙ୍କୁ ସ୍ୱଚକ୍ଷୁରେ ଦେଖିସାରଲା ପରେ ଏଇ ଅପୂର୍ବ ସୌଭାଗ୍ୟକୁ କଳିପାରୁ ନାହୁଁ ?

ନା, ନା, ତା' ନୁହେଁ । ମାନେ, ଖାଲି ତା' ନୁହେଁ । ମୁଁ ତାଙ୍କୁ ବାହା ହେବି । ମୋର ବାହା ହେବା ଉଚିତ । କିନ୍ତୁ ମୋତେ ଭୟ ଲାଗୁଛି ।

ଧ୍ୟାତ୍, ସବୁ ଝିଅଙ୍କୁ ଏମିତି ଲାଗେ ଅଳ୍ପବହୁତ, ବାହା ହେଲା ପୂର୍ବରୁ । ବିଶେଷତଃ ଓଡ଼ିଆ ଝିଅମାନଙ୍କୁ । କିନ୍ତୁ ସେ ସବୁ ତରଳି ମିଳେଇଯାଏ ସ୍ୱାମୀର ବାହୁବନ୍ଧନରେ । ଶୈଳ ନିଜ ଭୟକୁ ଜବାବ୍ ଦେଲା, ବହିପଢ଼ା ପାଠ ଶୁଣେଇଲା ପରି ।

କେତେବେଳକେ ସେ ବୁଝିଲା ତା' ଆଶଙ୍କାର ମୂଳ କେଉଁଠି । ତା'ର ଚେର ଲମ୍ବିଯାଇଛି ଅତୀତର କେଉଁ ଗହୀରକୁ । ବାହାଘର ଖାଲି ରୋଷନି ଆଲୁଅ ନୁହେଁ । କି ବାଜାବାଜଣା ଆଉ ଭୋଜିଭାତ । ସବାଶେଷକୁ ଅଛି ଆଉ ଗୋଟାଏ ଭବିତବ୍ୟତା । ସନାତନ ପଣ୍ଡାର ଦେହ, ଯାହା ଲଦି ହେଇପଡ଼ିବ ତା' ଉପରେ । ଲଦି ହେବ, ଅବଶ୍ୟ ଲଦି ହେବ । କାରଣ ସେଇଟା ତା'ର ଅଧିକାର । ତା'କୁ ମନା କରି ହେବ ନାହିଁ ।

ହଉ, ସେଇଆ ହେଉ । ଯାହା ହେବାର ହୋଇଯାଉ...

ଶୈଳ ଆଖି ବୁଜି ଓଠ କାମୁଡ଼ି ସହିନେଲା ତା'ର ବାସର ରାତିକୁ । କିନ୍ତୁ ଆଶ୍ଚର୍ଯ୍ୟ ହେଲା ଯେ ତା'କୁ ଭଲ ଲାଗୁଛି । ଏମିତି କେବେ ଭଲ ଲାଗି ନ ଥିଲା ତା'କୁ ଏଇ ଗନ୍ଧିଆ ଦେହଟାକୁ ନେଇ । କିନ୍ତୁ ରାତି ଶେଷରେ ସେ ଅଳ୍ପ ବହୁତ ଥରିବାକୁ ଲାଗିଲା ଏବଂ ତା'ର ପ୍ରବଳ ଇଚ୍ଛା ହେଲା ସେଠୁଁ ଉଠି ପଳେଇଯିବ ଗାଧୁଆ ଘରକୁ ଓ ଦେହ ମୁଣ୍ଡରେ ପାଣି ଢାଳିହେବ ଭୁସ୍ ଭୁସ୍ କରି । ପୁନରୁଜ୍ଜୀବିତ ଏଇ ଉଦ୍ଭଟ କାମନାକୁ ସେ ଦବେଇଦେଲା ସତ, କିନ୍ତୁ ସେ ଗୋଟାଏ ବିଚିତ୍ର ଅଳି କଲା ସ୍ୱାମୀଙ୍କୁ । ତେବେ ତାଙ୍କଠାରୁ ଦୂରେଇ ଯାଇ ନୁହେଁ, ତାଙ୍କ ଛାତିରେ ଲେପ୍‌ଟିଯାଇ—

"ତମେ ମୋ କବିତାକୁ ଭଲ ପାଅ ପରା ?"

"ହଁ, ମୁଁ ତ ସମସ୍ତଙ୍କୁ କହିଛି ସେ କଥା । ବାହାଘର ଆଗରୁ ବି ।"

"ତା'କୁଇ ଭଲ ପାଇବ । ଆହୁରି ଆହୁରି ଭଲ ପାଇବ । ସେଇ ଏକା ଭଲ, ମୁଁ ନୁହେଁ । ମୁଁ ଖରାପ, ନିହାତି ଖରାପ—"

"ପାଗଳୀ !" ଉଦାରପ୍ରସନ୍ନ ସନାତନବାବୁ ତା' ପାଗଳାମି ଉପରେ ପ୍ରଚଣ୍ଡ ଓ ପ୍ରଲମ୍ବିତ ଚୁମ୍ବାଟିଏ ଦେବାକୁ ବସିଲେ । କିନ୍ତୁ ଶୈଳ ଦୂରେଇ ନେଲା ନିଜକୁ ।

ସାରା ରାତିଟା ବିତିଗଲା, ହେଲେ ସନାତନବାବୁଙ୍କର ଏଇ ସାମାନ୍ୟ ମନସ୍କାମନାଟିକ ପୂର୍ଣ୍ଣ ହୋଇପାରିଲା ନାହିଁ ।

କେତେବେଳେ ଖରା ତ କେତେବେଳେ ବର୍ଷା । ମାସ ମାସ ଧରି 'ମୋତେ ଭଲ ଲାଗୁ ନାହିଁ, ଏକ୍ସକିଉଜ୍ ମି'ର ବିଭିନ୍ନ ସଂସ୍କରଣ ଓ ତା'ପରେ କେତେବେଳେ ଭୁସ୍‌କିନି ଲୋଟିଯିବ ସ୍ୱାମୀ ଉପରେ ଏବଂ ମୁହଁରେ ନ କହିଲେ ବି' ହାବଭାବରେ ଜଣେଇଦେବ ଯେ ମୋତେ ନିଅ, ପୂରାପୂରି ନିଅ, ନ ହେଲେ ମୁଁ ବଞ୍ଚିବି ନାହିଁ । ଏଇ ହେଲା ଶୈଳଜା ପଣ୍ଡାର ନୈଶ ଆଚରଣ ତା' ବାହାଘର ପରେ । ବର୍ଷ ପରେ ବର୍ଷ ପାରି ହୋଇଗଲା, ତଥାପି ସନାତନବାବୁ ଆଶ୍ୱସ୍ତ ହୋଇପାରିଲେ ନାହିଁ ଯେ ଏଥର ଶୈଳ 'ନର୍ମାଲ୍' ହୋଇଯିବ । କାରଣ ଏମିତି କେତେଥର ତାଙ୍କ ଆଶା ଗଜୁରି ଉଠିଛି, ତା'ପରେ ସେ ଦିନେ ହଠାତ୍ କୁହେ "ମୋ ଦେହରେ ହାତ ପକାଅ ନାହିଁ, ପ୍ଲିଜ୍, ତମକୁ ମୋ ରାଣ..."

ଶେଷକୁ ସନାତନବାବୁ ଧରିନେଲେ ଯେ ଏଇ ହେଉଛି ତାଙ୍କ ଯୌନ ଜୀବନର ନକ୍ସା, ତା'କୁ ବଦଳେଇ ହେବ ନାହିଁ ବିଶେଷ କିଛି । ବୋଧହୁଏ କବିମାନେ ଏମିତି ହୁଅନ୍ତି, ବିଶେଷତଃ ନାରୀ କବିମାନେ । କିଛି କ୍ଷତି ନାହିଁ । ଶୈଳ ମୋତେ ଭଲପାଏ । କେବେହେଲେ ସେ ମୋତେ ହତାଦର କରି ନାହିଁ । କେଉଁ ଗୋଟିଏ ଦିନ ଯାଇଛି କି, ଯେଉଁଦିନ ସେ ମୋତେ ହସି ହସି 'ବାଏ' କହି ନାହିଁ ଦାଣ୍ଡ ଦୁଆରରେ ଫ୍ୟାକ୍ଟରୀକୁ ବାହାରିଲା ବେଳକୁ ? ଆଉ ସଜଫୁଲଟିଏ ଧରେଇଦେଇ ନାହିଁ ମୋ ହାତରେ, ଯାହାକୁ ସେ ନିଜେ ତୋଳି ଆଣିଥିବ ଆମ ଫୁଲବଗିଚାରୁ ?

ନା, କେଉଁ ଗୋଟିଏ କବିତା ଅଛି ଯାହାକୁ ସେ ମୋତେ ଶୁଣେଇ ନାହିଁ ଆଗେ, ମ୍ୟାଗାଜିନ୍‌ରେ ଛପେଇବା ପୂର୍ବରୁ ? ତା'ଛଡ଼ା ତା'ର ପ୍ରଥମ ବହିଟିକୁ ତା' ବାପାବୋଉଙ୍କୁ ଉତ୍ସର୍ଗ କରିସାରିଲା ପରେ ଦ୍ୱିତୀୟଟି ସେ କ'ଣ ମୋରି ହାତକୁ ଟେକି ଦେଇ ନାହିଁ ? ଆଉ ଲେଖିଛି—"ମୁଁ ଯାହାଙ୍କ ହାତ ଧରି ବାହା ହୋଇଛି, ଆଉ ଯେ ମୋର ହଜାରେ ଦୋଷତ୍ରୁଟି ସତ୍ତ୍ୱେ ମୋତେ ତାଙ୍କ ନିଜର କରି ରଖିଛନ୍ତି, ତାଙ୍କରି ପାଇଁ ଏଇ କେତୋଟି କବିତା..." । ଆଉ କ'ଣ ଲେଖିପାରି ଥାଆନ୍ତା ? ଏବଂ ଜଣେଇଥାଆନ୍ତା ସେ ମୋତେ କେତେ ଭଲପାଏ ବୋଲି ? ସନାତନବାବୁ ତାଙ୍କ ମନର ସନ୍ଦେହୀ ଭୂତଗୁଡ଼ାକୁ ପୂରାପୂରି ଘଉଡ଼େଇ ଦେଇପାରିଥିଲେ ବାହାଘରର ପାଞ୍ଚ ବର୍ଷ ଭିତରେ ।

ଏଇ ପାଞ୍ଚବର୍ଷ ଭିତରେ ଆଉ ଗୋଟିଏ ବଡ଼ ଘଟଣା ଘଟିଲା ତାଙ୍କ ଦାମ୍ପତ୍ୟ ଜୀବନରେ, ଯେଉଁଥିରେ ତାଙ୍କ ଯୌନଜୀବନର ତଥାକଥିତ ଅଭାବ ଆହୁରି ହାଲୁକା

ହୋଇଗଲା । କାରଣ ଝିଅଟିଏ ଆସିଲା ଶୈଳର କୋଳକୁ । ସୁନ୍ଦରିଆ କଉତୁକିଆ ଝିଅଟିଏ ଏବଂ ବାପସୁଆଗୀ । ଦିନ ଆସିଲା, ଯେତେବେଳେ ତନୁଶ୍ରୀ ଓରଫ୍ ତନୁ ନିଜେ ଫୁଲଟିଏ ତୋଳି ଆଣିଥିବ ବଗିଚାରୁ ଓ ବାପାଙ୍କ ମୁଣ୍ଡକୁ ନୁଆଁଇ ତାଙ୍କ କୋଟ୍‌ର ବଟନ୍ ହୋଲ୍‌ରେ ଲଗେଇଦେବ, ବୋଉ ତା' କାମଦାମ ସାରି 'ବାପାଙ୍କୁ 'ବାଏ' କହିବା ପୂର୍ବରୁ । ଉଲ୍ଲେଖଯୋଗ୍ୟ ଯେ ଇତିମଧ୍ୟରେ ସନାତନ ପଣ୍ଡାଙ୍କର ସିରାମିକ୍ସ ଫ୍ୟାକ୍ଟରୀ ଇଷ୍ଟର୍ଣ୍ଣ ଇଣ୍ଡିଆ ସିରାମିକ୍‌ସ୍ ଲିମିଟେଡ୍‌ର ସ୍ତରକୁ ଉନ୍ନୀତ ହେଲାଣି । ଏବଂ ସେ ସେଥିର ମୁଖ୍ୟ ହୋଇଥିବାରୁ ତାଙ୍କୁ କୋଟ୍‌ପ୍ୟାଣ୍ଟ୍ ପିନ୍ଧି ଯିବାକୁ ପଡୁଛି । ସେହେତୁ ଫୁଲ ଲଗା ହେଉଛି ବଟନ୍ ହୋଲ୍‌ରେ । ଇଏ ମଧ୍ୟ ବାହାଘର ପରର ଛୋଟିଆ କ୍ୱାଟର୍ସ୍‌ରେ ଥିବା ସୀମିତ ବଗିଚାର ଏଣୁତେଣୁ ଫୁଲ ନୁହେଁ । ବଡ଼ କ୍ୱାଟର୍ସରେ ଥିବା ଆଖିଦୁରୁଶିଆ ବଗିଚାର ସତେଜ ରକ୍ତଗୋଲାପ, ଯାହାକୁ ମାଆ ଝିଅ ଧରାପରା ହେଉଛନ୍ତି ତାଙ୍କୁ ଭେଟି ଦେବାପାଇଁ ।

ଉତ୍ତରଣର ଏହି କ୍ରମରେ ସନାତନବାବୁ ଭୁଲିଗଲେଣି ମଝିରେ ସେଇ ଗୋଟିଏ ବର୍ଷର ସ୍ମୃତିକୁ । ଶୈଳ ଗର୍ଭବତୀ ବୋଲି - ଜଣାପଡ଼ିଲା ବେଳଠୁଁ ତନୁ ଜନ୍ମ ହୋଇ ତା'କୁ ଦି'ତିନି ମାସ ହେବାଯାଏଁ । ଯେତେବେଳେ ଶୈଳ ସଦାସର୍ବଦା ବିରସ ଦିଶୁଥାଏ । ବିରସ ନୁହେଁ, ପୂରାପୂରି ହାରିଗଲା ପରି ଏବଂ ତା'ର କବିତା ଲେଖା ମଧ୍ୟ ବହୁତ କମିଯାଇଥାଏ । ଯୌନମିଳନର ବ୍ୟବଧାନ ମଧ୍ୟ କ୍ରମଶଃ ଏତେ ବଢ଼ିଯାଇଥାଏ, ଥାଇ ନ ଥିବା ସାଙ୍ଗେ ସମାନ, ଯେ ସନାତନବାବୁ ଧରି ନେଇଥାଆନ୍ତି ଏଣିକି ଏଇ ହେଉଛି ତାଙ୍କ ଭାଗ୍ୟ । କିନ୍ତୁ ସେଇ ଅସନ୍ତୋଷିଆ ଦିନଗୁଡ଼ାକ ଲିଭି ପୋଛି ହୋଇଗଲାଣି କେବେଠୁଁ ।

ଶୈଳ ଯେମିତି ଉଛୁଳି ଉଠେ ରାମହରିବାବୁଙ୍କ ନୂଆ କବିତାଟିଏ ଦେଖିବାକୁ ପାଇଲେ, ସେଥିରୁ ସନାତନବାବୁ ବେଶ୍ ଜାଣିପାରିଲେଣି ଯେ ଏଇ ଜଣକ ଶୈଳର ଫେଭରିଟ୍ କବି । ଯଦିଓ କ'ଣ ସେ ତା'ର ଅଗଡ଼ମ୍ ବଗଡ଼ମ୍ କବିତାରୁ ପାଏ, ଭଗବାନ୍ ଜାଣନ୍ତି ! କିନ୍ତୁ ସେହେତୁ ତାଙ୍କ ମନରେ ସନ୍ଦେହର ଛାଇଟିଏ ପଡ଼େ ନାହିଁ । କବିମାତ୍ରେ ହିଁ ଅବାଗିଆ, ତାଙ୍କ ଭିତରେ କିଏ କାହାର ଅବାଗିଆପଣକୁ ବେଶି ଭଲ ପାଏ ଏବଂ କାହିଁକି, କିଏ ଭଲା ତା'ର ଭେଦ ପାଇପାରିବ ? ପ୍ରକୃତରେ ଶୈଳର ସାହସ ହେଉ ନାହିଁ ସିନା, ଯଦି ସେ ତା'ର ପରବର୍ତ୍ତୀ ବହିଟିକୁ ରାମହରିବାବୁଙ୍କୁ ଉତ୍ସର୍ଗ କରିଦିଏ (ଯାହା ସେ ପ୍ରତ୍ୟେକଥର ଭାବି ଆସିଛି ତୃତୀୟ କବିତା ବହି ଛପେଇବା ବେଳଠୁଁ), ସେଥିରେ ସନାତନବାବୁ ଆଦୌ ବିଚଳିତ ହୁଅନ୍ତେ ନାହିଁ । ତା'ର ଭୟ ହୁଏ ଏଇଥିପାଇଁ ଯେ ତା' ମନରେ ଗୋଟାଏ ଅଜବ ଧାରଣା ବସା ବାନ୍ଧିଲାଣି କେତେବର୍ଷ ହେଲା ଯେ ସେ ରାମହରିବାବୁଙ୍କୁ ଭଲପାଏ !

ଶ୍ରୀରାଧା ଯେମିତି ଶ୍ରୀକୃଷ୍ଣଙ୍କୁ ଭଲ ପାଉଥିଲେ । ଅଦେହୀ, ଅପାର୍ଥିବ, ଯଥାର୍ଥରେ ଆଧ୍ୟାତ୍ମିକ ପ୍ରେମ । କିନ୍ତୁ ମୋର ସଂସାରୀ ସ୍ୱାମୀ କହିବାକୁ ଗଲେ ପୃଥିବୀର ଯେ କୌଣସି ସ୍ୱାମୀ, କ'ଣ ବୁଝିପାରିବ ତା'ର ତତ୍ତ୍ୱ ?

ରାମହରିବାବୁଙ୍କର ଠିକ୍ କେଉଁ କବିତାଟି ମୋହନବଂଶୀ ପରି ଶୁଣାଗଲା ତା'କୁ କହି ହେବ ନାହିଁ । ବେଳେବେଳେ ସେ ନିଜେ ମନେ ପକାଇବାକୁ ଚେଷ୍ଟା କରେ, କନ୍ତୁ ହାରିଯାଏ । ...ତେବେ ତନୁର ଜନ୍ମ ହେଲା ପରେ । ହଁ ବୋଧହୁଏ ସେଇଆ, ଯେତେବେଳେ ମୁଁ ମୋର ଅବସାଦରୁ କ୍ରମଶଃ ଉଧୁରି ଆସିଲି । ଭାବିଲି ଯେ ମୋର ପ୍ରକୃତ ଅବସ୍ଥିତି କାବ୍ୟ ଜଗତରେ, ମୋ ସାରସ୍ୱତ ପରିବାରଙ୍କୁ ନେଇ । ତେଣୁ ଏଇ ଅପର ସ୍ଥୂଳ ଜଗତ ମୋ ଉପରେ ଲଦି ହୋଇପାରିବ ନାହିଁ କି ମୋତେ ବାନ୍ଧିପାରିବ ନାହିଁ । ସେମାନେ ଯେତେ ସ୍ନେହୀ ହୁଅନ୍ତୁ ନା କାହିଁକି । ଚୁମ୍ବନକାମୀ ସ୍ୱାମୀ ହେଉ, କି ସ୍ତନଲୋଭୀ ଏଇ ଝିଅଟା । କାରଣ ମୁଁ ଥିବି ଆଉ କେଉଁଠି, ଏକ ଭିନ୍ନ ରାଜ୍ୟରେ ।

ହଁ, ସେତିକିବେଳେ ବୋଧହୁଏ ପଢ଼ିଥିଲି ତାଙ୍କର କେତୋଟି ଅଦ୍ଭୁତ ସୁନ୍ଦର କବିତା । ମନେପଡୁଛି—

ତୋଅରି ସେ ଆମନ୍ତ୍ରଣ, ତୋଅରି ବ୍ୟାଦାନ
ଆରେ ତିମିପୁତ୍ର,
ସେହି ମୋର ମୁକ୍ତିର ତୋରଣ ।
ତା' ଭିତରେ ପଶିଯାଇ ସେଇ ବାଟ ଦେଇ
ମସ୍ତ ପାଟି ଖୋଲି ଆମେ ଚଲୁ କରିଦେବା
ଏଇ ସିନ୍ଧୁଟାକୁ । ଜୀବନର ଉତାଳ ଅସନ୍ତୋଷଟାକୁ...
(ମତ୍ସ୍ୟରାଜ ପ୍ରତି)

ଏମିତିକା ଆଉ ଗୋଟାଏ ଆହ୍ୱାନ
ନା, କ୍ଷମା କରିବୁନୁ' ସେଇ ଚନ୍ଦ୍ରମାକୁ
ତୋଅରି କୁତ୍ସିତ ଏବଂ ତୋଅରି ଯନ୍ତ୍ରଣା
ମଧ୍ୟ ପରାଭବ ତା'ର...
ବଞ୍ଚିଥିବୁ ବନ୍ଧୁ ତା'ର ସୁଧା ଭାଣ୍ଡଟାରେ
ମୋର ପହୁଞ୍ଚିବା ଯାଏଁ,
ଆହୁରି ଆହୁରି ତା'କୁ ଘାଣ୍ଟିବାର ପାଇଁ
ଜୀବନ୍ତନ୍ତୁ ଲୁହଲହୁ ତେଲଲୁଣ ଦେଇ...
(ଠେକୁଆ ପ୍ରତି)

ଆଃ, ଜୀବନ ଯନ୍ତ୍ରଣାର ଶେଷକଥା ! ପ୍ରକୃତିର ପ୍ରାଣୀମାନଙ୍କ ପ୍ରତି କି ଗଭୀର ସମ୍ବେଦନା ! କ୍ରୋଧ ଓ ସମ୍ବେଦନାର ଲାଭା...

ହେ ରାମହରିବାବୁ, ମୁଁ ମୋ ପ୍ରକୃତିକୁ ଭଲ ପାଏ । କିନ୍ତୁ ତଥାପି ମୁଁ ଛଟପଟ ହୁଏ । ସତେକି ପ୍ରେମରେ ଅନ୍ଧ ହୋଇ ମୁଁ ସବୁକଥା କହିପାରୁ ନାହିଁ, ତା'ର ଦାରୁଣ ଦୁଃଖକୁ ଛୁଇଁପାରୁ ନାହିଁ, ମୋତେ ଭୟ ଲାଗୁଛି । କିନ୍ତୁ ତୁମ କବିତା ପଢ଼ିଲା ପରେ ମନେ ହେଉଛି ଯେ ତୁମେ ହିଁ ମୋ ଛଟପଟକୁ ବୁଝିଛ ଓ ବୁଝିପାରିବ । ତା' ଉପରେ ସବାର ହୋଇପାରୁଛ । ତାହାହିଁ ପୂର୍ତ୍ତି, ତାହାହିଁ ଶାନ୍ତି । ଅନ୍ତତଃ ସେଇ ମୁହୂର୍ତ୍ତରେ, ପୁଣି ଗୋଟାଏ କବିତା ଲେଖିବାଯାଏଁ...

ମୁଁ ତୁମର ଆହୁରି ପାଖକୁ ଆସିପାରନ୍ତି ନାହିଁ ରାମହରିବାବୁ ? ହୋଇପାରେ ତୁମେ ଜଣେ ପ୍ରବୀଣ ପ୍ରତିଷ୍ଠିତ ଲେଖକ । ହୋଇପାରେ ତୁମେ ଜଣେ ଅସାଧାରଣ ମିଷ୍ଟିକ୍ କବି ଓ ମୁଁ ଗୋଟିଏ ସର୍ବସାଧାରଣ ରୋମାଣ୍ଟିକ୍ କବି, ଯାହା ସେମାନେ କହିଥାଆନ୍ତି ମୋତେ । କିନ୍ତୁ ମୋ ଭଲପାଇବା ଭିତରେ ଯେଉଁ ଛଟପଟ ଅଛି, ତାକୁ ସେ ବୁଝନ୍ତି ନାହିଁ, କି ତୁମ ଯନ୍ତ୍ରଣା ଭିତରେ ଯେଉଁ ଭଲପାଇବାର କୋହ ରହିଛି, ଯେଉଁ ପ୍ରଚଣ୍ଡ ଅଭିମାନ, ତା'ର ଧାର ଧାରନ୍ତି ନାହିଁ ସେମାନେ । ତେଣୁ ଆମେ ଯଦି ଅନ୍ତରଙ୍ଗ ହୋଇପାରନ୍ତେ, କିନ୍ତୁ କେବଳ ଆମ କବିତା ମାଧ୍ୟମରେ, ମୋ କବିତା ମିଶିଯାଆନ୍ତା ତୁମ କବିତାରେ, ସେଇ ହୁଅନ୍ତା ଆମ ଛଟପଟ, ଆମ ଯନ୍ତ୍ରଣାର ଅବସାନ ଏବଂ ଏକ ଅନବଦ୍ୟ ପ୍ରାପ୍ତି, ଉପଲବ୍ଧି...ଆଃ !!...

ଯଥାକ୍ରମେ ସେ ତାଙ୍କୁ ଦେଖିବାକୁ ପାଇଲା ବିଭିନ୍ନ ସଭାସମିତିରେ । କିନ୍ତୁ କେବେହେଲେ ତାଙ୍କ ପାଖ ମାଡ଼ିଲା ନାହିଁ । କାଳେ ସେ ତାଙ୍କୁ ଫେରାଇଦେବେ । ହେଲେ ଦୂରରୁ ଦେଖି ମଧ୍ୟ ତା'ର ମନେହେଲା ଯେ ତାଙ୍କ ଚେହେରା ଠିକ୍ ଏମିତି ହୋଇଥିବ ବୋଲି ସେ ଅନୁମାନ କରିଥିଲା । ସାଧାରଣ ଅର୍ଥରେ ସୁନ୍ଦର ନୁହନ୍ତି । ସାଧାରଣ ଲୋକଙ୍କ ମନକୁ ପାଇବ ନାହିଁ । କିନ୍ତୁ ଆଉ ଜଣେ କବି ବୁଝିବ, ମୋରି ପରି ଜଣେ । କେବଳ ସେଇ ବୁଝିବ ଯେ ସେଇ ଓହଳା ଚିବୁକ, ଦବିଲା ନାକ ଓ ମୋଟା ଚଷମାଦିଆ ଆଖି କିଭଳି ଗାରିମାକୁ ଘୋଡ଼େଇ ରଖିଛି ଏବଂ ତାଙ୍କର ସେଇ ଗାମ୍ଭୀର୍ଯ୍ୟ କିଭଳି ଯନ୍ତ୍ରଣାର ଘନୀଭୂତ ବରଫ ।

ସେଇଲାଗି ତା' ବିସ୍ମୟାନନ୍ଦର ସୀମା ରହିଲା ନାହିଁ, ଯେତେବେଳେ ତା'ର ଦୁଃସାହସ ଫଳପ୍ରସୂ ହେଲା । କହିବାକୁ ଗଲେ ଆଖିପିଛୁଡ଼ାକେ । ଶୈଳ ନିଜକୁ ଭଲ ଭାବରେ ବୁଝାଇପାରିଲା ନାହିଁ ଯେ ସେ କାହିଁକି ଦିଲ୍ଲୀ ଯିବାକୁ ଚାହେଁ, ଗୋଟିଏ ଆନ୍ତର୍ଜାତିକ କବିତାପାଠ ଉତ୍ସବରେ ଯୋଗଦେବାପାଇଁ । ଅଥଚ ସେ ମୋ ପାଟିରୁ କଥା ଛଡ଼େଇନେଲେ । ବୁଝିନେଲେ ମୁଁ କ'ଣ ଚାହେଁ । କହିଲେ, "ଆପଣ କ'ଣ ଯିବାକୁ ଚାହାନ୍ତି ସେଠିକି ?" ଏବଂ ମୁଁ ତା'ର ଉତ୍ତର ନ ଦେଉଣୁ ହଉ ବୋଲି କହିଲେ । ତାଙ୍କ ଛଡ଼ା ଆଉ କିଏ ଏମିତି ମୋ ମନକଥା ବୁଝିପାରିଥାଆନ୍ତେ, ନା ଏଭଳି ଅକୁଣ୍ଠିତ ଚିତ୍ତରେ ମୋର ମନସ୍କାମନା ପୂର୍ଣ୍ଣ କରିଥାଆନ୍ତେ ?

ଏଇ ଥିଲା ଶୈଳଜାର ଅତୀତ ଓ ବର୍ତ୍ତମାନ, ଯେତେବେଳେ କେ-ବି-କେ କିଛି ଗୋଟାଏ ସମ୍ପର୍କ ଗଢ଼ିବାକୁ ଚାହିଁଲେ ତା' ସାଙ୍ଗରେ, କିନ୍ତୁ ତା'ର ପାଗ ବିଗିଡ଼ିଗଲା ଓ ଫଳ ଓଲଟା ହେଲା । ଯାହାହେଉ ସାଧାରଣ ପରିସ୍ଥିତି ଯଥାଶୀଘ୍ର ଫେରିଆସିଲା । କେ-ବି-କେ ଘଟଣାଟାକୁ ଏକ ସାମାନ୍ୟ ଏବଂ ହାସ୍ୟାସ୍ପଦ ଦୁର୍ଘଟଣା ବୋଲି ମନେ କଲେ ଏବଂ ଶୈଳଜାର ମନରେ ଖେଳିବାକୁ ଲାଗିଲା ଦିଦିଙ୍କ ପ୍ରାୟୋଜିତ ପାର୍ଟି ଓ ସେଥିର ସମ୍ଭାବନା ।

...ପାର୍ଟିଟା କୁଆଡ଼େ ଖାସ୍ ମୋରି ପାଇଁ । ମୋତେ ଚିହ୍ନେଇବା ପାଇଁ, ମୋରି ଭବିଷ୍ୟତ ପାଇଁ । କେତେ ଭଲ ମୋର ଏଇ ଦିଦିଟି ମ ! କେମିତି ସେ ମୋର ଏତେ ନିଜର ହୋଇଗଲେ ଏଇ କେଇଟା ଦିନ ଭିତରେ ? ଆଶ୍ଚର୍ଯ୍ୟ ! ଆଉ ଏଇକ୍ଷଣି ଅଣ୍ଟା ଭିଡ଼ିଛନ୍ତି ମୋ ପାଇଁ କିଛି କରିବେ ବୋଲି, ନ ହେଲେ ତାଙ୍କ ମନ ଶାନ୍ତ ହେବ ନାହିଁ । ...ଶୈଳ ତା'ର ପରମ ସୌଭାଗ୍ୟକୁ ହେଳୁଥିଲା ତାଙ୍କ ଫ୍ଲାଟ୍‌ର ବାଲ୍‌କୋନିରେ ବସି । ନୀଳ ଆକାଶକୁ ଅନେଇଥିଲା । ଏମିତି ଭାବରେ ଅନେଇଥିଲା ଯେ ମନେ ହେବ ଯେ ସେ କେବଳ ମଜ୍ଜିଯାଇ ନାହିଁ ନୀଳିମାରେ, ମଧ୍ୟ ପଛରୁ ତାଳି ମାରୁଛି ନିଉଛୁଣା ପଳାତକ କେତୁଟା ଚଲା ମେଘଙ୍କ ଦୁଃଖ ଦେଖି, ଯେଉଁମାନେ ଆସିଥିଲେ ତା'କୁ ହଇରାଣ କରିବାଲାଗି । ଶୈଳ ତା' ଦିଲ୍ଲୀ ରହଣିର ଯେତେକ ସାମାନ୍ୟ ସାଧାରଣ ଅସ୍ୱସ୍ତିକୁ ଭୁଲିଯାଇଥିଲା ଏବଂ ଅପେକ୍ଷା କରିଥିଲା ଶେଷ ପର୍ଯ୍ୟାୟର ଏଇ ଅପ୍ରତ୍ୟାଶିତ ବୋନସ୍‌ଟିକୁ ପାଇବାଲାଗି, ଯତ୍‌ସାମାନ୍ୟ ଉଦ୍‌ବେଗର ସହ ।

ନୀଳିମାଙ୍କର ପାର୍ଟି ସଫଳ ହୋଇଥିଲା । ସେମାନେ ପ୍ରାୟ ସମସ୍ତେ ଆସିଥିଲେ । ସଞ୍ଜୀବ୍ କେଲ୍‌କାର, ଜଗମୋହନ, ଶ୍ରୀକାନ୍ତଜୀ, ରୋମୀ ସେନ୍, ଓଗେର ଓଗେର ଏବଂ ସେମାନେ ବୁଝିଲେ ଶୈଳଜା ପଣ୍ଡାଙ୍କ କବିତାର ମହିମା, ଯେତେବେଳେ ନୀଳିମା ତା'କୁ ବୁଝେଇଦେଲେ, କେତେବେଳେ ହିନ୍ଦୀ ଓ କେତେବେଳେ ଇଂରେଜୀ ତର୍ଜମା କରି ଏବଂ ଦର୍ଶାଇଲେ ତାହା କେମିତି ସେନ୍‌ସୁଅସ୍ ହୋଇଥିଲେ ମଧ ସେନ୍‌ସୁଆଲ୍ ନୁହେଁ । ସେଇଠୁଁ ଅତିଥିଗଣ କ୍ଷଣକପାଇଁ ଅନେଇଥିଲେ ନବୀନା ନବାଗତା କବୟିତ୍ରୀର ମୁହଁକୁ, ଦେଖି ନ ଦେଖିଲାପରି । ସେଥିରେ କିଏ କ'ଣ ଆବିଷ୍କାର କଲା କେଜାଣି, କିନ୍ତୁ ସମସ୍ତେ କହିଲେ ବିଭିନ୍ନ ଭାବରେ, ଯାହା ନୀଳିମାଦୀ ଚାହୁଁଥିଲେ ଶୁଣିବାଲାଗି । ଯେ କିଛି ଗୋଟାଏ କରିବାକୁ ହେବ ଏଭଳି ଅନିନ୍ଦ୍ୟସୁନ୍ଦର କବିତାକୁ ନେଇ । ତା'କୁ ଚିହ୍ନାଇବାକୁ ହେବ ସର୍ବଭାରତୀୟ ସୁଧୀ ମହଲରେ । ସେଇଠୁଁ ବିଦେଶରେ...

ସୁଖର ଆତିଶଯ୍ୟରେ ତା' ଆଖିରେ ଲୁହ ଜକେଇଥାଆନ୍ତା କି କଅଣ କହିହେବ ନାହିଁ । ତେବେ ସୁଖ ବଳେଇଯିବା ପୂର୍ବରୁ ତା'କୁ ଗୋଟାଏ ଦାରୁଣ ଆଘାତ ସହ୍ୟ କରିବାକୁ ପଡ଼ିଲା । ଯେତେବେଳେ ପ୍ରସଙ୍ଗକ୍ରମେ ସଦ୍ୟ-ଅନୁଷ୍ଠିତ ଆନ୍ତର୍ଜାତିକ କବିତା ପାଠ ଉତ୍ସବ ବିଷୟରେ ନାନା କଥା କୁହାଗଲା, ତା'ର ତାତ୍ତ୍ୱିକ ତଥା ବ୍ୟବସ୍ଥାତ୍ମକ ଦୋଷଗୁଣକୁ ନେଇ ଏବଂ ରୋମୀ ସେନ୍ ନାମକ ଭଦ୍ରମହିଳା, ସେ କୁଆଡ଼େ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନା ଲେଖିକା, ଅଯଥାରେ ପଚାରିଲେ ଶୈଳକୁ—

"ସେ ରାମହରି ଦାସ ଲୋକଟି କିଏ ଯେ ତମ ଅଞ୍ଚଳରୁ ଆସିଥିଲା ? ବୁଲ୍‌ଶିଟ୍ ବୋଧହୁଏ ବେଶି କାମରେ ଆସିବ ତା' କବିତାଠାରୁ ।"

ପ୍ରାୟ ସମସ୍ତେ ହୋ' ହୋ' ହୋଇ ହସିଉଠିଲେ, ଶୈଳ ଛଡ଼ା । ଏବଂ ଶୈଳ ସ୍ଥିର କଲା ଯେ ସେମାନେ ତା' କବିତାକୁ ନେଇ କିଛି ନ କଲେ ନାହିଁ, ସେ ଆଉ ସହିପାରିବ ନାହିଁ ତା' କବିଙ୍କ ଅବମାନନା ।

କିନ୍ତୁ ତୁ କ'ଣଟା କରିପାରିବୁ ଲୋ ମେଞ୍ଚଡ଼ ଟୋକୀ ? ଶୈଳକୁ ଘାରିଦେଲା ନିଜର ଅସହାୟତା, ଯେତେବେଳେ ସେଇ ଚିଲାଆଖିଆ ଗୋଜମୁହାଁ ରୋମୀ ସେନ୍ ତା' ଆଡ଼କୁ ଚାହିଁଲେ, ତା'ଠାରୁ ମଧ ତାଙ୍କ ଚତୁର-ଚମତ୍କାର ମନ୍ତବ୍ୟର ସମର୍ଥନ ପାଇବାଲାଗି, ଏବଂ ସେ ନିଜସ୍ୱ ହସଟିଏ ଛାଡ଼ିଦେଲା ତାଙ୍କ ଆଡ଼କୁ । ତା'ଛଡ଼ା ଆଉ କ'ଣ ଉପାୟ ଥିଲା ତା'ର ?

## ପାଞ୍ଚ

କଲେଜ ଛୁଟି ହୋଇଗଲାଣି କେବେଠୁଁ । କିନ୍ତୁ ଇଂରାଜୀ ଡିପାର୍ଟମେଣ୍ଟ୍‌ର ଭିତର୍ ରାମହରି ଦାସ ତାଙ୍କ ନିର୍ଦ୍ଦିଷ୍ଟ କମରାରେ ବସିରହି ପ୍ରକୃତି ଆଡ଼କୁ ଅନେଇଛନ୍ତି । ଅନିର୍ଦ୍ଦିଷ୍ଟ ଭାବରେ ନୁହେଁ । ଛାତ୍ରଛାତ୍ରୀମାନଙ୍କୁ ପୁଣି ଗୋଟି ଗୋଟି କରି ଦେଖିଲା ପରି । ସେଇ ପ୍ରତ୍ୟେକ ଗଛମାନଙ୍କୁ—ସୁନାରୀ ଗଛ, ନିମ୍ବଗଛ, ଚାକୁଣ୍ଡା ଗଛ, ଅନାମଧେୟ ଗଛ ଏବଂ ହତାର ସେ ପାଖରେ ଥିବା ଦୂରବର୍ତ୍ତୀ ଓସ୍ତଗଛ, ଯାହାର ପାଦଦେଶରେ ଥିବା ଗୋଟାଏ ବିରାଟ ଉଇହୁଙ୍କା ସାଙ୍ଗରେ ତାଙ୍କର ଅନେକ ଦିନର ପରିଚୟ । ତା'ର ବିରାଟତ୍ୱକୁ ସେ ଥରେ ଭାଙ୍ଗିଦେଇଥିଲେ ତାଙ୍କ କବିତାରେ, କେଉଁ ଏକ ଅନାବଶ୍ୟକ କୁନି ତାରାର ଉତ୍କଟ ଆଲୁଅ ମୁନରେ ତା'ର ଗଣ୍ଡିକୁ ଫୁଟେଇଦେଇ ! ମଧ୍ୟ ସେ ଅନାଉଥିଲେ ପ୍ରତ୍ୟେକ ବୁଦାକୁ, ଘାସ ଉପରେ ପଡ଼ିଥିବା ଦାନ୍ତୁରା ପାଛିଆକୁ, ଟିଣ ଛାତ ଉପରେ ଖେଳେଇ ହୋଇଥିବା ନଡ଼ିଆ କତାକୁ, ଆଖି ଆଗରେ ଥିବା ଯେତେକ ସଜୀବ ତଥା ନିର୍ଜୀବ ବସ୍ତୁକୁ । ସତେକି ସମସ୍ତଙ୍କଠାରୁ ସେ ଠୋସ୍ ଜବାବ୍ ଚାହାଁନ୍ତି ଆଜି, ଅନ୍ଧାର ଆସି ସେମାନଙ୍କୁ ଗୋଳେଇ ପୋଳେଇ ଦେବା ପୂର୍ବରୁ—କୁହ, କୋଉ ଲେଖକଟା ତମକୁ ଅଧିକ ମର୍ଯ୍ୟାଦା ଦେଇଛି ମୋଠୁଁ ? ଜହ୍ନ-ଚକୋର, ଯକ୍ଷ-ଆଷାଢ଼, ଗୋଲାପ-ଭ୍ରମର ଆଦି ନନ୍‌ସେନ୍ସ ରୋମାଣ୍ଟିକ୍‌ପଣିଆରୁ ଉଦ୍ଧାର କରିଛି ଏବଂ ତମ ସତ ସ୍ୱରୂପକୁ ସଗର୍ବେ ଚିହ୍ନେଇଛି, ତାହା ଯେତେ ଅସନା ହେଉ ପଛେ ? ଖାଲି ଚିହ୍ନେଇଛି ନୁହେଁ, ତମ ଅସୁନ୍ଦରକୁ ବଳ ଦେଇଛି, ସୁନ୍ଦର-ଛେଉଁଆଙ୍କ ସ୍ୱର୍ଗକୁ ମାଡ଼ି ବସିବାପାଇଁ କ୍ରୋଧରେ, ଉଲ୍ଲାସରେ...

କରିଛି ନା ନାହିଁ ? କରିଛି ନା ନାହିଁ ?? ସତ କୁହ ।

ଅବଶ୍ୟ କରିଛି । ନ ହେଲେ ସେମାନେ ମୋତେ ମିଷ୍ଟିକ୍ ବୋଲି କହୁ ନ ଥାଆନ୍ତେ । ହେଲା ଏବେ ଅଧିକାଂଶ କିଛି ନ ବୁଝିଲାରୁ ସେମିତି କହୁଛନ୍ତି, ସତେକି ଯାହା ଦୁର୍ବୋଧ, ତାହାହିଁ ରହସ୍ୟମୟ ।

କିନ୍ତୁ ସେମାନେ ମୋତେ ପାଖରେ ପୂରାଉ ନାହାନ୍ତି । ମୁଁ କ'ଣ ଜାଣେ ନାହିଁ ସେ କଥା ? ପିଲାଦିନେ ବି' ସେମିତି ମୋତେ ମିଶଉ ନ ଥିଲେ ତାଙ୍କ ଖେଳ କଉତୁକରେ । କାହିଁକିନା ମୁଁ ତାଙ୍କପରି ଦୌଡ଼ଧାପଡ଼ କରିପାରିବି ନାହିଁ, ହେଁ ହେଁ, ଫେଁ ଫେଁ ହୋଇପାରିବି ନାହିଁ, କି ଯେତେକ ବଜାରିଗିରି କରିପାରିବି ନାହିଁ । ମିଛିମିଛିକା ସମ୍ମାନ ଦେଖଉଥିଲେ ମୁଁ ପାଠୁଆ ପିଲା ବୋଲି । ହେଲେ ମନେ ମନେ ଦୟା କରୁଥିଲେ ଯେ ମୁଁ ଗୋଟାଏ ମୋଟୁ, ଶୁଆମୁହାଁ ଏବଂ ଅସୁନ୍ଦର । ସେମିତି ଆଜି ମଧ୍ୟ ମୁଁ ଯେତେ ସମ୍ମାନିତ ହେଲେ ମଧ୍ୟ

ଗୋଟାଏ ଅଲଗା ଲୋକ । ମୁଁ କେହି ନୁହେଁ, ତାଙ୍କର ତଥାକଥିତ ମୁଖ୍ୟବସ୍ତୁ କିମ୍ବା ଆଖଡ଼ା ଘରର । ଠିକ୍ ଅଛି, ମୁଁ ବି ଚାହେଁ ସେଇଆ । ଧନ୍ୟବାଦ ।

କାହାରି ସାହସ ନାହିଁ ରାମହରି ଦାସକୁ ମୁହେଁ ମୁହେଁ କହିବ, ଯେ ତମ କବିତା କେବଳ ଦୁର୍ବୋଧ ନୁହେଁ, ମଧ୍ୟ ନିକୃଷ୍ଟ । ତମ କଳ୍ପନା ବିକୃତ । ତମ ଦର୍ଶନ କଳୁଷିତ । କାହିଁକିନା ତାଙ୍କ ମିଛ ଭକ୍ତିଭାବ ଭିତରେ ଗୋଟାଏ ସତ ଭକ୍ତିଭାବ ବି ରହିଛି । ମୋ ପ୍ରତି ନୁହେଁ, ମୋର ଭାବମୂର୍ତ୍ତି ପ୍ରତି । କାଳେ ତା' ଭିତରେ ଗୋଟାଏ ଗୂଢ଼ ଆଧ୍ୟାତ୍ମିକତା ଥିବ, ଯାହାକୁ ମୂଢ଼ ବୁଝିପାରୁ ନାହିଁ । ସେହେତୁ ମୁଖ୍ୟସ୍ରୋତବାଲାଙ୍କ 'ଦୁନ୍ଦୁଭି', 'ବୈଜୟନ୍ତୀ', 'ଲୀଳା' ଆଦି ସାହିତ୍ୟପତ୍ରିକାରେ କୋଉ ସମ୍ପାଦକ, ଲେଖକ, କି ସମୀକ୍ଷକ ଧାଡ଼ିଏ ବି' ଲେଖିବାକୁ ସାହସ କରି ନାହିଁ ଆଜିଯାଏଁ, ଯେ ରାମହରି ଦାସ ଗୋଟାଏ ଭଣ୍ଡ ବାବାଜି ।

ଲେଖିଲେ ସିନା ମଜା ହୁଅନ୍ତା ! ତା'ହେଲେ ଥୋକେ ମୋ ତରଫରୁ ବାହାରି ପଡ଼ନ୍ତେ ତା'ର ପ୍ରତିବାଦ କରିବାପାଇଁ, ଯେଉଁଥିରୁ ତାଙ୍କର ତତ୍ତ୍ୱଦର୍ଶିତାର ପରିଚୟ ମିଳିବ । ଯଦିଓ ସେମାନଙ୍କ ଭିତରୁ ବି' କେହି ହେଲେ ବୁଝୁ ନ ଥିବେ ମୋ କବିତାର ଅର୍ଥ ।

ରାମହରିବାବୁ ହସିଲେ ମନକୁ ମନ । ନିଶବ୍ଦରେ ହସୁ ହସୁ ବଡ଼ ପାଟି କରି ହସିଲେ । ସତେକି ସେ ତାଙ୍କ ବିଦ୍ରୂପକୁ ପରିସ୍ଫୁଟ କରିବାକୁ ଚାହାନ୍ତି ।

କିନ୍ତୁ ତାଙ୍କୁ ହାଲିଆ ଲାଗିଲା କିଛି ସମୟ ପରେ । ...ଘରକୁ ଫେରିବା ଏଥର । କିନ୍ତୁ ଘରଟା ବି' କୋଉ ଭିନ୍ନ ଯା'ଠାରୁ ? ସେଠି ବି' ସେଇ ନୀରବତା, ଯାହାକି ମିଷ୍ଟିକ୍ କବିମାନଙ୍କର ପ୍ରାପ୍ୟ ଏବଂ ଏହି ଧରଣର ଭାବନା ଆସିବ ମୋ ମନକୁ । ରାଗିମାଗି ଗୋଟାଏ ନୂଆ କବିତାର ପ୍ରଚଣ୍ଡ ପ୍ରଥମ ଧାଡ଼ି ଲେଖିବାଯାଏଁ ।

ବାପା ତ ଗଲେଣି କେବେଠୁଁ । ଖାଲି ବୋଉ ଥିଲା, ଯେ ତା' ଶେଷ ଜୀବନ ମୋରି ପାଖରେ ବିତେଇବ ବୋଲି ଠିକ୍ କରିଥିଲା, କୋଉ ପାପର ପ୍ରାୟଶ୍ଚିତ୍ତ କଲାପରି । ଆଉ ଗୋଟାଏ ଫଟା ରେକର୍ଡ଼୍‌ର କାନ୍ଦଣା ଶୁଣାଉଥିଲା ମୋତେ, ପ୍ରାୟ ପ୍ରତ୍ୟେକ ଦିନ । ଦିନୁଁ ଦିନ ବିଭିନ୍ନ ଭାବରେ, ବିଭିନ୍ନ ଉପକ୍ରମଣିକାର ଆଳରେ । ନାନାଦି ସ୍ମାର୍ଟ ଓ ସୁନ୍ଦରୀ ଝିଅମାନଙ୍କର ସୂଚନା ଦେଇ, ଯେଉଁମାନଙ୍କ ବାପମାଆ ଚାହିଁ ବସିଛନ୍ତି, ଅଦ୍ୟାବଧି ଚାହିଁ ବସିଛନ୍ତି, ପ୍ରୌଢ଼ ରାମହରିଙ୍କୁ ତାଙ୍କର ଜ୍ୱାଇଁ କରିବାଲାଗି । ମୁଁ ହସୁଥିଲି ତା' କଥାରେ, ଆଉ ଖେଳୁଥିଲି ତା' ସାଙ୍ଗରେ—ହଉ ହଉ, ଭାବିବା ସେ ବିଷୟରେ ।

ହେଲେ ଗୋଟାଏ ମାଧୁର୍ଯ୍ୟ ଥିଲା ସେଇ ଡାଏଲଗ୍‌ରେ । କେବଳ ମାଧୁର୍ଯ୍ୟ ନୁହେଁ, ମଧ୍ୟ ମର୍ଯ୍ୟାଦା । କାରଣ ସେଥିରେ ମଧ୍ୟ ଥିଲା ଗୋଟାଏ ଧରଣର ସ୍ୱୀକୃତି । ମୁଖ୍ୟସ୍ରୋତର । ଯେ ବୁଢ଼ା କବି ତଥାପି ଯୋଗ୍ୟ, କହିବାକୁ ଗଲେ ଆହୁରି ଯୋଗ୍ୟ କେଉଁ ପତ୍ନୀର ପତି ହେବାପାଇଁ । ବୋଉ କ'ଣ ମିଛ କହୁଛି ?

କିନ୍ତୁ ବୋଉ ବି' ଗଲା । ଆଉ ତା' ସାଙ୍ଗରେ ସେଇ କଉତୁକିଆ ଦି'ପଦ ବି' ଉଭେଇଗଲା ମୋର ବ୍ୟାଚେଲର୍ କ୍ୱାଟର୍ସ୍‌ରୁ । ତେଣୁ ସେଠି ବି' ନୀରବତା । ଯାହାକୁ ଧୋଇ ପଖାଳି ସେବନ କରିବାକୁ ହେବ ନିଦ ଲାଗିବା ପୂର୍ବରୁ । ଖାଲି ଚାକରଟୋକା ସର୍ଜୁ ଓ ତା' ମାଇପ ନସରପସର ହୋଇ ଆସିବେ ଖାଇବା ବାଢ଼ିବାପାଇଁ ଏବଂ 'ଆଜ୍ଞା ଆଜ୍ଞା' ହୋଇ ଆଉ କ'ଣ ଦେବି, କଫିରେ ଚାମୁଚେ କି ଦି' ଚାମୁଚ ଚିନି ଦେବି ବୋଲି ଫଟରେଇ ହେବେ, ବୋଉକୁ ନକଲ କଲାପରି । ବିରକ୍ତ କରିବେ ।

ନେଭର୍ ମାଇଣ୍ଡ୍ । ମୋ ଜୀବନ ମୋର । ମୁଇଁ ତା'ର ଭଲମନ୍ଦ ବୁଝିବି । ରାମହରି ଦାସ ନିଜକୁ ବଦଳେଇ ନାହିଁ କି ବଦଳେଇପାରିବ ନାହିଁ, ନିର୍ବୋଧ ସଂସାରର ସୁଖବୋଧପାଇଁ । ପୁଣି ତା' ପଚିଶଚାଳିଶ ବର୍ଷ ବୟସରେ, ଏବଂ ଆଠଖଣ୍ଡ ଟାଣୁଆ ମିଷ୍ଟିକ୍ କବିତା ସଙ୍କଳନ ଲେଖିସାରିଲା ପରେ ।

ରାମହରିବାବୁ ଘରକୁ ଫେରିଲେ ଏବଂ ଗୋଟାଏ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ପାଇଲେ ତାଙ୍କ ପଢ଼ାଘରକୁ ପଶିଲା ପରେ । ଆଲୁଅ ଜଳୁଛି । ଆଉ ଗୋଟାଏ ଅପରଛନିଆ ପିଲା ଚଉକି ଉପରେ ବସି ଅନଉଛି ତାଙ୍କ ଆଡ଼କୁ ଏବଂ ହସୁଛି ଅଭଦ୍ରଙ୍କ ପରି । ସର୍ଜୁର ଦେଢ଼ବର୍ଷିଆ ପୁଅ ନାନୁ ।

''କିରେ, ତୁ ଏଠି କ'ଣ କରୁଛୁ ?''

ନାନୁ ଆଖି ଉଠେଇ ଅନେଇଲା ଆଗନ୍ତୁକଙ୍କୁ ଏବଂ ଉତ୍ତର ହିସାବରେ କେବଳ ଦାନ୍ତ ଗିଞ୍ଜିଡ଼ିଲା । ଓହଳା ଗାଲ, ଚେପ୍‌ଟା ନାକ ଏବଂ ଉଞ୍ଚ କପାଳ ବିଶିଷ୍ଟ ପାଉଁଶିଆ ମୁହଁରେ ଦିବ୍ୟ ହସ ଖଣ୍ଡେ ଛାଡ଼ିଦେଲା ।

କିନ୍ତୁ ରାମହରିବାବୁ ଆପ୍ୟାୟିତ ହେଲେ ନାହିଁ । ଅଧିକନ୍ତୁ ତାଙ୍କ ରାଗ ଆହୁରି ଚଢ଼ିଗଲା, ସେ ଯେତେବେଳେ ଦେଖିଲେ ଯେ ପିଲା କେବଳ ତାଙ୍କ ଚଉକିରେ ଆସନ ଜମେଇ ନାହିଁ, ମଧ୍ୟ କ'ଣ ଗାରଉଛି ବସି ତାଙ୍କରି କାଗଜ କଲମରେ । ...ବୋଉ ମୁହଁ ବଢ଼େଇ ଦେଇଛି ଏମାନଙ୍କର । ବୋଉ ଯା'କୁ ପାଖରେ ବସି ଖୁଆଇବାର ମୁଁ ଦେଖିଛି । ପାଖରେ ଶୁଆଇଥିବ ହୁଏତ । ଧୋ' ବାୟା ଗୀତ ଶୁଣାଉଥିବ । ସେତେବେଳେ ମୁଁ ବୋଉକୁ ଡିଆରି ପାରି ନ ଥିଲି, କାଳେ

ନାତିପ୍ରେମ ମଡ଼ଉଥିବ ତା'କୁ । କିନ୍ତୁ ବୋଉ ଗଲା, ପରେ ବି' ସେଇ ଲୀଳା ଲାଗିଥିବ ମୋ ଘରେ ? ଏମାନେ ମୋତେ କ'ଣ ବୋଲି ପାଇଛନ୍ତି, କି ?...

ରାମହରିବାବୁ ଅଗ୍ରସର ହେଲେ । ଦେଖି ଆଶ୍ୱସ୍ତ ହେଲେ ଯେ ସେ ଟେବୁଲ୍ ଉପରେ ପଡ଼ିଥିବା ଗୋଟାଏ ବାଜେ କାଗଜ ଉପରେ ଗାରଉଛି । ଚିଠି କବିତା ଆଦି ଦରକାରୀ କାଗଜ ନୁହେଁ । ତା'ମାନେ ଟୋକା ଡ୍ରୟର୍ ଘାଣ୍ଟିବାର ଦୁଃସାହସ କରି ନାହିଁ । ଧନ୍ୟବାଦ । କିନ୍ତୁ ସେ ଯେଉଁ ଉଦ୍ଦେଶ୍ୟରେ ଆଗଉଥିଲେ, ଯେ ତା'କୁ ଚଉକି ଉପରୁ ଉଠେଇ ଆଣି ତଳେ କଚିଦେବେ କିମ୍ବା ଆଉ କିଛି ଶାସ୍ତି ଦେବେ, ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । କ'ଣ ହେଲା ? ଦାନ୍ତ ଗିଜିଡ଼ା ବନ୍ଦ କରିଦେଇ, ହେଲେ ତାଙ୍କ ରାଗିଲା ଚାହାଣିକୁ ଭ୍ରୂକ୍ଷେପ ନ କରି ସେ ପୁଣି ତା' କାମରେ ଲାଗି ପଡ଼ିଲାଣି, ଏଇ ଜିନିଷଟା ତାଙ୍କୁ ମଜା ଲାଗିଲା ? ସତେ କି ଏଇ ଖଣ୍ଡକ ବି' ଆଜିଠୁଁ ଗୋଟାଏ ସ୍ରଷ୍ଟା ହେବାକୁ ବସିଲାଣି, ଯେ ଆପଣା ସୃଷ୍ଟିରେ ଭୋଳ ହୋଇଯାଏ, ବାସ୍ତବ ସଂସାରକୁ ପରୁଆ ନ କରି ?

ନା, ବୋଧହୁଏ ତା' ନୁହେଁ । ଆମୋଦର ଲକ୍ଷଣ ଦିଶୁ ନାହିଁ ରାମହରିବାବୁଙ୍କ ଚେହେରାରେ । କିନ୍ତୁ, କ୍ରୋଧ ମଧ୍ୟ ଥମିଗଲାପରି ଲାଗୁଛି । ଅଟକିଯାଇଛି କେଉଁ ଏକ ଆବିଷ୍କାରରେ । ଭୂତ ଦେଖିଲା ପରି ।

...ମୁଁ କ'ଣ ୟା'ରି ପରି ଦିଶୁଥିଲି ମୋ ପିଲାବେଳେ ? ହଁ, ସେତେବେଳର ଗୋଟାଏ ଫଟୋ ମୋ ଆଖିରେ ପଡ଼ିଛି । ଅଳ୍ପବୟସୀ ବୋଉ ଗୋଟାଏ ନିହାତି ଅସୁନ୍ଦରିଆ ପିଲାକୁ କୋଳରେ ଧରିଛି, ଯାହାର ଓହଳା ଗାଲ ସମାନ ଭାବରେ ବି' ଓହଳି ନାହିଁ । ଅଧିକା ଝୁଲିପଡ଼ିଛି ଗୋଟାଏ ଆଡ଼କୁ, ଗାଲୁଆ ହେଲାପରି କିମ୍ବା ଖଟେଇ ହେଲାପରି । ୟା'ରି ମୁଣ୍ଡରେ ତ ଗୋଛାଏ ବାଳ ଅଛି, କିନ୍ତୁ ସେଇଟା ପୂରାପୂରି ନଣ୍ଡା । ଆଉ କଉପୁନୀ ଖଣ୍ଡେ ପିନ୍ଧିଛି ଯେ ନ ପିନ୍ଧିବା ସାଙ୍ଗେ ସମାନ । ଇସ୍ ! 'ଏଇଟା କିଏ ମ', ମୁଁ ବୋଉକୁ ପଚାରିଥିଲି ଥରେ । ସେ ଯେତେବେଳେ ତା' ହାତବାକ୍ସରୁ ପୁରୁଣା ଫଟୋ ଓ ଚିଠିପତ୍ର ଜାତୀୟ କାଗଜକୁ ଖେଳେଇ ଏପାଖ ସେପାଖ କରୁଥିଲା, ଆଉ ମୁଁ ପହୁଞ୍ଚିଗଲି ସେତିକିବେଳେ । ମୋ ପ୍ରଶ୍ନର ଉତ୍ତରରେ ସେ ହସି ପକେଇଲା ଆଉ ବାକ୍ସକୁ ବନ୍ଦ କରିଦେଲା । 'ହସୁଛୁ କାହିଁକି, କିଏ ସେ ପିଲାଟା ?' ବୋଲି ପୁଣି ଥରେ ପଚାରିଲାରୁ କହିଲା ମିଛ ରାଗ ଦେଖେଇ—'ତୋର ଜାଣିବାର କ'ଣ ଅଛି ? ତୋ ଛଡ଼ା ମୁଁ କ'ଣ ଆଉ କାହାକୁ ଧରି ନ ଥାଆନ୍ତି ମୋ କୋଳରେ ?' କିନ୍ତୁ ମୁଁ ଜାଣିଲି । ସେଇ ବୟସର ଅସ୍ପଷ୍ଟ ଧାରଣା ସ୍ପଷ୍ଟ ହୋଇଗଲା ଟିକିଏ ବଡ଼

ହେଲାରୁ, ଯେତେବେଳେ ମୁଁ ଜାଣିଲି ଯେ ଇଏ ନିଶ୍ଚୟ ସେଇ, ଯାହାକୁ ବୋଉ ରାଗରେ ଡାଗୁଳେଇମୁହାଁ ବୋଲି କୁହେ । ଇଏ ସେଇ ଯାହାକୁ ସେ ଗେହ୍ଲାରେ 'ମୋ ଚକାମୁହାଁ' ବୋଲି କୁହେ । ସେଇ ଗନ୍ଧିଆ ପିଲାଟା ମୁଇଁ ନିଜେ । ଡ୍ୟାମ୍ ! କିନ୍ତୁ ମୁଁ କ'ଣ ସେମିତି ଦିଶୁଛି ଆଜିକାଲି ? ଅସମ୍ଭବ । ଖଣ୍ଡାରେ ମୁଁ ଦେଖିବସେ ନିଜକୁ ମୋ ଦର୍ପଣରେ ଏବଂ ନିଜକୁ ଆଶ୍ୱାସନା ଦିଏ ଯେ ମୁଁ ସିଏ ନୁହେଁ, ଅର୍ଥାତ୍ ଏଇକ୍ଷଣି ନୁହେଁ, ଅନ୍ତତଃ ଏତେଟା ଅସୁନ୍ଦର ନୁହେଁ । ଏମିତି କେତେ ମିଛ ପାରି ହୋଇଆସିଛି ଏଇ ପଇଁଚାଳିଶି ବର୍ଷ ଭିତରେ, ଆଉ ନିଜକୁ ଠିଆ କରେଇଛି ଗୋଟାଏ ଗଣ୍ୟମାନ୍ୟ ମଣିଷ ହିସାବରେ । ଡକ୍ଟର ରାମହରି ଦାସ, କବି ରାମହରି ଦାସ । ଏବଂ କ୍ୟାପିଟାଲ୍‌ର ସୁପ୍ରସିଦ୍ଧ ପ୍ରତାପରୁଦ୍ର ମହାବିଦ୍ୟାଳୟର ଅନ୍ୟତମ ବରିଷ୍ଠ ଅଧ୍ୟାପକ । ହେଲେ ଆଜି ଏଇ ପିଲାଟା ଏମିତି ଚମକେଇଦେଲା ତା'କୁ, ଯେ ତା' ପାଦ ଅଟକିଗଲା ?

ଅଟକିଯାଉ, କିଛି କ୍ଷତି ନାହିଁ । ମୋ ପିଲାଦିନ, ମୋ ଅତୀତ, ଆଉ ବର୍ତ୍ତମାନର ଏଇ ପିଲାଟା, ସବୁଥିର ମୂଲ୍ୟ ଅଛି ମୋ ପାଇଁ । ମୁଁ କାହାରିକୁ ହୁରୁଡ଼େଇ ଦେଇପାରିବି ନାହିଁ, କି ହୁରୁଡ଼େଇ ଦେବାକୁ ଚାହେଁ ନାହିଁ । ନିଜକୁ ଠକେଇବା ମୋ ଜାତକରେ ନାହିଁ...

ସେଇଠୁ ପିଲାଟାକୁ ଉଠେଇ କଚାଡ଼ିଦେବା ପରିବର୍ତ୍ତେ ସେ ତା' ମୁଣ୍ଡକୁ ଆଉଁଶିଦେବାକୁ ଲାଗିଲେ । ...ଠିକ୍ ଅଛି । ଆଙ୍କ ଯା' ଯାହା ଆଙ୍କୁଛୁ । ପରୁଆ କର୍ ନାହିଁ କିଏ ଆସିଲା କି ଗଲା, କିଏ ହସିଲା କି ଛିଗୁଲେଇଲା ତୋତେ, ତୋ ଚେହେରା ଓ କାରବାରକୁ ନେଇ । ଆରେ, ତୁ ବି' ଗୋଟାଏ କଳାକାର ହେବୁ ମ ବଡ଼ ହେଲେ ! ଅର୍ଡିନାରୀ ଆର୍ଟିଷ୍ଟ ନୁହେଁ, ମିଷ୍ଟିକ୍, ରୀତିମତ ମିଷ୍ଟିକ୍ ।

ବିଳମ୍ବରେ ହେଉ ପଛେ ତାଙ୍କ ରସବୋଧ ଉତୁରି ଆସିଥିଲା, ଯେତେବେଳେ ପିଲାର ମାଆ ଆତଙ୍କିତ ହୋଇ ପଶିଆସିଲା ଘରକୁ, ଆଉ ତା' 'ଅଲକ୍ଷଣା' ପୁଅଟାକୁ ଉଠେଇନେଲା ଚଉକି ଉପରୁ । ତା'ର ଗଣଗଣିଆ ହତାଶିଆ କଣ୍ଠରେ ଗାଳି ଦେବାକୁ ଲାଗିଲା ପୁଅକୁ, ଯାହାକି ବାବୁଙ୍କୁ କ୍ଷମା ମାଗିବା ସାଙ୍ଗରେ ସମାନ ବୋଲି ତା'ର ମନେ ହୋଇଥିବ । ହେଲେ ସେ ଦେଖି ଆଶ୍ଚର୍ଯ୍ୟ ହେଲା ଯେ ଉଦାର ସ୍ନେହ ଝରିପଡୁଛି ବାବୁଙ୍କ ହସରୁ । ...ଭାଗ୍ୟରେ ଥିଲେ ମିଳେ ଏମିତି ଗୋଟିଏ ଖାମିନ୍ଦ । ଯା' ବାପ କୋଉ ବୁଦ୍ଧିରେ କହୁଥିଲା ଯେ ଆମକୁ ବୋଧହୁଏ ପୋଷେଇବ ନାହିଁ ଏଠି, ମାଆ ସାଆନ୍ତାଣୀ ଚାଲିଗଲା ପରେ ?...

ହେଲେ ଚଉକି ଖାଲି ହେଲାରୁ ରାମହରିବାବୁ ସେଠି ବସିପାରିଲେ ନାହିଁ, କି ନାନୁର କଳାକୃତି ଦେଖି ତା'ର ଉଜ୍ଜ୍ୱଳ ଭବିଷ୍ୟତକୁ କଳ୍ପନା କରିବାର ଅଧିକ ସୁଯୋଗ ପାଇଲେ ନାହିଁ । କାରଣ ଫୋନ୍ ବାଜିଉଠିଲା । ବିରକ୍ତିର ସହ ସେ କାନ୍ଥଲଗା ଛୋଟ ଟେବୁଲ୍ ପାଖକୁ ଗଲେ ଏବଂ ରିସିଭର୍ ଉଠେଇ ପଚାରିଲେ ରୁକ୍ଷ ସ୍ୱରରେ—

"ୟେସ୍ ? ମୁଁ ରାମହରି ଦାସ୍ କହୁଛି..."

"ନମସ୍କାର ସାର୍ । ସରି, ମୁଁ ଆପଣଙ୍କୁ ବିରକ୍ତ କରୁଚି । କିନ୍ତୁ ଗୋଟାଏ ଇଣ୍ଟରେଷ୍ଟିଂ ଖବର ଅଛି ଆପଣଙ୍କ ପାଇଁ, ଲେଖକ ହିସାବରେ । ରଙ୍ଗନାଥ ମୋତେ ଜଣାଇଲା ଏଇ କିଛି ସମୟ ଆଗରୁ । କାଗଜରେ ବାହାରି ନାହିଁ ଆହୁରି..."

"ହଁ, ହଁ, କୁହ ।" ରାମହରିବାବୁ ବୁଝିଲେ ଯେ ଇଏ ହେଉଛି ଶାରଙ୍ଗଧର ପାତ୍ର । ସହରର ଜଣେ ଉଦୀୟମାନ ବ୍ୟବସାୟୀ ତଥା ଉଚ୍ଚାଙ୍ଗ ଟାଉଟର୍, ଯେ ନାନା 'ଇଣ୍ଟରେଷ୍ଟିଂ' ଖବର ଯୋଗାଇଥାଏ ତା'ର ବନ୍ଧୁମାନଙ୍କୁ, ତା'ର ଶ୍ୟାଳକ ଏବଂ ଏମ୍.ପି. ରଙ୍ଗନାଥ ଦଳେଇଙ୍କ କୃପାରୁ । ସେ ପ୍ରତ୍ୟେକଥର ଆଶ୍ଚର୍ଯ୍ୟ ହୁଅନ୍ତି ଯେ ସେ କାହିଁକି ଏଇ ଲୋକଟାକୁ ପ୍ରଶ୍ରୟ ଦେଉଛନ୍ତି । କିନ୍ତୁ ପରେ ପରେ ସେ ଅଧିକ ଆଶ୍ଚର୍ଯ୍ୟ ହୁଅନ୍ତି ଯେ ଏଇ ଲୋକଟା ବି' କାହିଁକି ତାଙ୍କୁ ତା'ର ଅନ୍ୟତମ ବନ୍ଧୁ ବୋଲି ଗ୍ରହଣ କରିଛି, ଯଦିଓ ଦିହେଁ ସମ୍ପୂର୍ଣ୍ଣ ଭିନ୍ନ ଜଗତ ଏବଂ ଭିନ୍ନ ସ୍ତରର ଲୋକ । ବୋଧହୁଏ ସେଇ ବୈଷମ୍ୟ ଯୋଗୁ, ସେ କୁହନ୍ତି ନିଜକୁ ଥଟ୍ଟା କଲାପରି, ଏବଂ ବନ୍ଧୁତା ପ୍ରସାରିତ ହୁଏ । ଯାହାହେଉ, ଆଜି ସେ ଯତ୍‌ସାମାନ୍ୟ ଆଗ୍ରହର ସହିତ ଶୁଣିବାକୁ ଚାହିଁଲେ ସେ କ'ଣ କହୁଛି । କୁଆଡ଼େ ତାଙ୍କର ଶୁଣିବା ଦରକାର ଲେଖକ ହିସାବରେ !

"'ଦିବ୍ୟଜ୍ୟୋତି' ପୁରସ୍କାର ଘୋଷଣା କରାଯାଇଛି ଏଇ ଘଣ୍ଟାକ ଆଗରୁ । ପାଇଲା କିଏ ଜାଣନ୍ତି ? ଆପଣ ବିଶ୍ୱାସ କରିପାରିବେ ନାହିଁ, ଭାରତର ଯେତେକ ଲେଖକ ଗଲେ ଗାଧୋଇ, ଆଉ ପାଇଲା କିଏ ନା ଆମ ଆଡ଼ର କୋଉ ଶୈଳଜା ପଣ୍ଡା ! ଶୁଣିଛନ୍ତି ତା' ନାଆଁ ? ଅବଶ୍ୟ ଆମର ଖୁସି ହେବାର କଥା ଯେ ଭଦ୍ରମହିଳା ଓଡ଼ିଆଣୀ ନିଶ୍ଚୟ..."

ରାମହରିବାବୁ ଶୁଣିଗଲେ ତା'ର ବକର ବକର । ଯେ ରଙ୍ଗନାଥ ପୁରସ୍କାର ସମିତିର ମୁଖ୍ୟ ତଥା ପୁରସ୍କାର ପାଣ୍ଠିର ଦାତା ଜ୍ୟୋତିପ୍ରକାଶଜୀଙ୍କୁ ଭଲଭାବରେ ଜାଣେ ଏବଂ ସେ ତାଙ୍କରି ମୁହଁରୁ ଶୁଣିଲା ଏଇ ତାଜା ଖବର ପାର୍ଲିଆମେଣ୍ଟ୍ ହାଉସ୍ କ୍ୟାଣ୍ଟିନ୍‌ରେ । ସେ କୁଆଡ଼େ କହିଲେ ଯେ ଏଇ ଝିଅର କବିତାରେ

ଗୋଟାଏ ଢୋସ୍ ଅଛି, ଇଂରାଜୀରେ ଯାହାକୁ କହନ୍ତି ପ୍ୟାସନ୍, ଇତ୍ୟାଦି । କିନ୍ତୁ ଆବେଗଶୂନ୍ୟ 'ଗୁଡ୍ !' ବୋଲି ପଦୁଟିଏ କହିବା ଛଡ଼ା ରାମହରିବାବୁ ଆଉ କିଛି କହିପାରିଲେ ନାହିଁ ତାଙ୍କର ପ୍ରତିକ୍ରିୟା ସ୍ୱରୂପ ।

...ଗୁଡ୍ ! କୋଉ ଶୈଳଜା ପାଉ କି ଗିରିଜା ପାଉ, ମୋର ସେଥିରେ କିଛି ଯାଏ ଆସେ ନାହିଁ । ରାମହରି କୌଣସି ପୁରସ୍କାରର ଆଗ୍ରହୀ ନୁହେଁ । ପୁରସ୍କାର ଆଦି ଯେଉଁଭଳି ଲୋକଙ୍କ ସ୍ୱୀକୃତି ଉପରେ ନିର୍ଭର କରେ, ସେମାନେ ଅଧମରୁ ଭଳି ହୀନ । ମଧ୍ୟମ । ସେମାନେ ମୁଖ୍ୟ ସ୍ରୋତ କି କେଉଁ ସ୍ରୋତର ନୁହନ୍ତି, କାରଣ ସେମାନେ ତା' ସ୍ରୋତରେ ଭାସି ଭାସି ଯାଆନ୍ତି କାଠିକୁଟା ପରି । ଭିତରକୁ ଗଲେ ବିପଦ । ଛାଡ଼, ମିଛୁଟାରେ ମୋତେ ଡିଷ୍ଟର୍ବ କଲା ଏଇ ପାତ୍ର ଲୋକଟା । ଇଣ୍ଟରେଷ୍ଟିଂ—ମାଇଁ ଫୁଟ୍ !

କିନ୍ତୁ କିଛି ସମୟ ଗଲାରୁ ତାଙ୍କୁ ଅସ୍ୱସ୍ତି ଲାଗିଲା । ଯେମିତିକି କଥାଟା ତା' ନୁହେଁ, ରାମହରି ଦାସ ସାଙ୍ଗରେ ପୁରସ୍କାରର କିଛି ସମ୍ପର୍କ ନ ଥାଇପାରେ, କିନ୍ତୁ ଘଟଣାଟା ଅପ୍ରୀତିକର । ତା'କୁ 'ଗୁଡ୍ !' ବୋଲି କହିବାରେ ମଧ୍ୟ କୌଣସି ଅର୍ଥ ନାହିଁ । ଦିବ୍ୟଜ୍ୟୋତି ପୁରସ୍କାର ଯେତେହେଲେ ଗୋଟାଏ ସର୍ବଭାରତୀୟ ପୁରସ୍କାର । ତା' ବିଷୟରେ ବାହାରିଥିଲା କେଉଁ ମ୍ୟାଗାଜିନ୍‌ରେ ଏବଂ ତାଙ୍କ ଦୃଷ୍ଟିକୁ ଆସିଥିଲା । ଏକେ ଦୁଇ ଲକ୍ଷ ଟଙ୍କା । ତା'ଛଡ଼ା ଏଥିରେ ଗୋଟାଏ ବିଶିଷ୍ଟ ସର୍ତ୍ତ ରହିଛି, ସମାଜକୁ ଜଣାଇଦେଲା ପରି ଯେ ଇଏ ଏକ ଭିନ୍ନ ଧରଣର ପୁରସ୍କାର ଏବଂ ଅନ୍ୟତମ ବଦାନ୍ୟତା ନୁହେଁ କେଉଁ ଶିଳ୍ପପତିର, ମାଆ ସରସ୍ୱତୀଙ୍କୁ ମଧ୍ୟ ତୁଷ୍ଟ କରିବାପାଇଁ । କାରଣ ପୁରସ୍କାରର ଯୋଗ୍ୟ ହେବାଲାଗି ଏକ ଆଧ୍ୟାତ୍ମିକତାର ସ୍ପର୍ଶ ମିଳୁଥିବ ବିଚାରାଧୀନ କବିଙ୍କ କବିତାରେ । କେଉଁ ଏକ ନୂତନ ଅନୁଭବର ସଞ୍ଚାର, ଯାହା ତୁମକୁ ଉର୍ଦ୍ଧ୍ୱମୁଖୀ କରାଇବ । ଯେହେତୁ ଶିଳ୍ପପତି ଜ୍ୟୋତିପ୍ରକାଶ ସୁରଡ୍ୱାଲାଙ୍କ ବାପା ବଚ୍‌ଚୁଭାଇ ଓରଫ୍ 'ଦିବ୍ୟଜ୍ୟୋତି' ସୁରଡ୍ୱାଲା କୁଆଡ଼େ କୋଉ କବିତାରୁ ସେହିପ୍ରକାର ସ୍ପର୍ଶ ପାଇଥିଲେ, ଯାହାର ତାଡ଼ନାରେ ସେ ତାଙ୍କ ଧନସମ୍ପତ୍ତି ପରିତ୍ୟାଗ କରି ସନ୍ନ୍ୟାସୀ ହୋଇଗଲେ ଏବଂ ତାଙ୍କର ଯୋଗ୍ୟ ଦାୟାଦ ହିସାବରେ ଜ୍ୟୋତିପ୍ରକାଶଜୀ ଗଢ଼ିଛନ୍ତି ଏଇ ଅନନ୍ୟ ପୁରସ୍କାର-ଅନୁଷ୍ଠାନଟିକୁ । ପ୍ରତିବର୍ଷ ଭାରତବର୍ଷର କୌଣସି ଏକ କବିଙ୍କୁ ପୁରସ୍କାର ଦେବାଲାଗି, ତାଙ୍କ କବିତାରୁ ମିଳୁଥିବା ଅନୁରୂପ ଅନୁଭବ ପାଇଁ । ଭଲ କଥା । କିନ୍ତୁ ସେଇ ସୃଷ୍ଟିଛଡ଼ା ଅନୁଭବ କ'ଣ ମିଳିବାକୁ ବାଧ୍ୟ କେଉଁ ଅନାମଧେୟ କବିଠାରୁ, ଯାହାର ନାଆଁ କେହି ଶୁଣି ନାହାନ୍ତି ? ଜିନିଷଟା ପ୍ରକୃତରେ ଷ୍ଟୁପିଡ୍ ନୁହେଁ କି ?

ହଁ, ରାମହରି ଦାସ କୌଣସି ପୁରସ୍କାରର ଆଗ୍ରହୀ ନୁହେଁ । ମୁଁ ମଧ୍ୟ କହୁ ନାହିଁ ଯେ ମୋ କବିତାରେ ଆଧ୍ୟାତ୍ମିକତା କି ସେମିତି କିଛି ଅଛି ବୋଲି । ସତକଥା କହିବାକୁ ଗଲେ ମୋତେ ଜଣା ନାହିଁ ବସ୍ତୁଟି କେଉଁ ଧାତୁରେ ଗଢ଼ା । କିନ୍ତୁ ବାବୁ, ତମେ ଯଦି ପ୍ରକୃତରେ ଖୋଜୁଥାଅ କିଛି ନୂତନତା, ଭିନ୍ନତା ଯାହାକୁ ପଢ଼ିଲେ ସ୍ୱର୍ଗ ମଡ଼େଇବ ତୁମକୁ (ହୁଏତ ନର୍କକୁ ଦେଖିଲାରୁ), ତା'ହେଲେ ଏଇ ମିଷ୍ଟିକ୍ କବିକୁ ମନେ ପକାଇବା ଉଚିତ ଥିଲା ତୁମର । ଯାହାକୁ ପାଞ୍ଚ ଦଶଟା ଲୋକ ଜାଣନ୍ତି । ବୁଝିଲ ? ଏନିୱେ, ଆଇ କୁଡ଼୍‌ନଟ୍ କେୟାର ଲେସ୍ । ମୋର ଅନ୍ୟ କଥା ଭାବିବାକୁ ଅଛି... ରାମହରିବାବୁ ଝାଡ଼ିଝୁଡ଼ି ହେଲେ ତାଙ୍କର ଅସ୍ୱସ୍ତିରୁ । କିନ୍ତୁ ତାଙ୍କୁ ସମୟ ଲାଗିଲା ସେଥିରୁ ମୁକ୍ତ ହେବାଲାଗି ।

...ଶୈଳଜା ପଣ୍ଡା । ଶୈଳଜା । ଆରେ...ଇଏ ସେଇ ନୁହେଁ ତ...ତା' ନାଆଁ ଶୈଳଜା ନୁହେଁ କି...ଯେ ଦି' ତିନିବର୍ଷ ତଳେ ଆସିଥିଲା ମୋ ପାଖକୁ, ଦିଲ୍ଲୀର ଇଣ୍ଟରନ୍ୟାସନାଲ ପୋଏଟ୍ରୀ ମିଟ୍‌ରେ ଯୋଗଦେବା ଲାଗି ? ଆଉ ମୁଁ ଦୟା ଦେଖାଇ ପାସ୍ ଖଣ୍ଡିଏ ଯୋଗାଡ଼ କରିଦେଲି ତା' ପାଇଁ, ଯେମିତିକି ସେ ପାଞ୍ଚରେ ପଞ୍ଚେଇ ହୋଇ ବସିବ ଆମନ୍ତ୍ରିତ ଅତିଥି ହିସାବରେ ? ତା'ର ଗୋଟେ ଅଧେ କବିତା ପଡ଼ିଛି ମୋ ଆଖିରେ । ମୁଁ ତା'କୁ ପଢ଼ିଥିଲି ଦିଲ୍ଲୀରୁ ଫେରିବା ପରେ, ମୋ କୌତୂହଳ ମେଣ୍ଟାଇବା ପାଇଁ । କିନ୍ତୁ କ'ଣଟା ଲେଖିଛି ସେ ? ତୁଚ୍ଛା ରୋମାଣ୍ଟିକ୍ ଷ୍ଟଫ୍ । ଯେତେକ ପିଲାଳିଆ ନନ୍‌ସେନ୍ସ । ହେଲେ ତା'କୁଇ ମିଳିଲା ଏଭଳି ଏକ ସର୍ବଭାରତୀୟ ପୁରସ୍କାର ! ଆଉ କାଲି ସକାଳେ ଦୁନିଆଁ ଜାଣିବ ଯେ ସେ ଗୋଟାଏ ବିରାଟ କବି, ତା' ଫଟୋ ବାହାରିବ ଯେତେକ ଅଲ୍‌ଇଣ୍ଡିଆ ପେପର୍, ଦୂରଦର୍ଶନ, ଇତ୍ୟାଦି ଇତ୍ୟାଦିରେ ଏବଂ ସାମ୍ବାଦିକମାନେ ତା'କୁ ଘେରିଯାଇ ପଚାରିବେ—କହିବେ କି ମ୍ୟାଡ଼ାମ୍, ଆପଣ କେଉଁଠୁ ପ୍ରେରଣା ପାଇଲେ ଏଭଳି ଅନବଦ୍ୟ କବିତା ଲେଖିବା ପାଇଁ ? ଜାତି ପାଇଁ, ଦେଶ ପାଇଁ, କିଛି ସନ୍ଦେଶ ଯୋଗାଇବେ କି ଦୟାକରି ?

ଡ୍ୟାମ୍ ! ଡ୍ୟାମ୍ ଦିସ୍ ମିଡ଼ିଆ ! ଡ୍ୟାମ୍ ଏଇ ପୁରସ୍କାର ବିଜିନେସ୍ ! ଡ୍ୟାମ୍ ତମ ଦେଶର ସାହିତ୍ୟ, କବିତା, ସଂସ୍କୃତି, ଓଗେର ଓଗେର...

ରାମହରିବାବୁଙ୍କୁ ଭଲ ନିଦ ହେଲା ନାହିଁ ସେଦିନ ରାତିରେ । ଏପରିକି ତାଙ୍କର ବେଳେବେଳେ ମନ ହେଉଥିଲା ସେ କବିତା ଲେଖିବେ ନାହିଁ ଆଉ ଏବଂ ଲେଖିଲେ ଲେଖିବେ ଆମେରିକାରେ କି କଣ୍ଟିନେଣ୍ଟ୍‌ରେ, ଯେଉଁଠି ତାଙ୍କର ଏକାଧିକ ବନ୍ଧୁ ଅଛନ୍ତି ଆସ୍‌ଲିଙ୍କ ସମେତ, ଯେଉଁମାନେ ଯଥାଯୋଗ୍ୟ ମୂଲ୍ୟ ଦେବେ ରାମହରି-ସାହିତ୍ୟର ।

ତା' ପରଦିନ କଲେଜ୍‌ରେ ରାମହରିବାବୁ ତାଙ୍କର ସ୍ୱଭାବସୁଲଭ ସ୍ୱଳ୍ପଭାଷିତାକୁ ଅଧିକ ସୁଯୋଗ ଦେଲେ ଆପଣା ସ୍ଥାନରେ ପ୍ରତିଷ୍ଠିତ ହୋଇ ରହିବାପାଇଁ । ସହକର୍ମୀମାନଙ୍କ ଗହଣରେ ଚୁପ୍‌ଚାପ୍ ବସି ରହି କେତେବେଳେ କେମିତି ଦୁର୍ଲଭ ହସ ଖଣ୍ଡେ ଛାଡ଼ିଦେବା ପରିବର୍ତ୍ତେ, ସେ ମୋଟ ଉପରେ ତାଙ୍କ ପାଖ ମାଡ଼ିଲେ ନାହିଁ । କମନ୍‌ରୁମ୍‌କୁ ଗଲେ ନାହିଁ । ଏପରିକି ଲାଇବ୍ରେରୀକୁ ମଧ୍ୟ ଗଲେ ନାହିଁ । କ୍ଲାସ୍ ସରିଲା ପରେ ଚୁପ୍‌କିନି ଖସିଗଲେ କୁଆଡ଼େ ବୋଲି କୁଆଡ଼େ ଏବଂ ଏଣେତେଣେ ଘୂରି ହାଲିଆ ହେଲା ଉତ୍ତାରୁ ଗଲେ କୋଉଠିକି, ନା ନିର୍ଜନ ସଂସ୍କୃତ ଲାଇବ୍ରେରୀକୁ । ଭବଭୂତିଙ୍କୁ ପୁଣି ଖୋଜିବସିଲେ । ଭବଭୂତିଙ୍କ କାବ୍ୟ ଯେ ତାଙ୍କୁ ବିଶେଷ ଭଲ ଲାଗେ, ତା' ନୁହେଁ, କିନ୍ତୁ ସେ ଧରି ନେଇଛନ୍ତି ଅନେକ ଦିନ ହେଲା, ଯେ ରୋମାଣ୍ଟିକ୍ ଓ ଲଳିତକାବ୍ୟ ରଚୟିତା କାଳିଦାସ ତାଙ୍କର ପ୍ରିୟପାତ୍ର ହୋଇପାରିବେ ନାହିଁ । ବରଂଚ ଦାନ୍ତଭଙ୍ଗା ଶବ୍ଦ ଯୋଜନାର ଅଧିକାରୀ ଭବଭୂତି ତାଙ୍କର ସମ୍ମାନ ପାଇବାର ଯୋଗ୍ୟ । କିନ୍ତୁ ଆଜି ସେ କେବଳ ପୃଷ୍ଠା ଓଲଟାଉଥିଲେ ତାଙ୍କର ସମ୍ମାନାର୍ଥେ । କାରଣ ତାଙ୍କର ମନ ଥିଲା ଅନ୍ୟଆଡ଼େ ।

...ହଁ, ମୁଁ ଖାଲି ଗୋଟାଏ ନିରୋଳା ଥାନ ଖୋଜୁଥିଲି, ଏକୁଟିଆ ହେବାପାଇଁ । ଆଉ ମୋ ଭାବନାଗୁଡ଼ାକୁ ସଜାଡ଼ିବି ବୋଲି । ମୁଁ ଲୁଚି ବୁଲୁ ନାହିଁ କାହାଠାରୁ ।

ଏଇ ପୁରସ୍କାର କଥାଟା ତଥାପି ମୋ ମନରୁ ଯାଉ ନାହିଁ । ମୁଁ କାହିଁକି ଯା'କୁ ପାଇଲି ନାହିଁ, ସେ ବିଷୟରେ କିଛି ଭାବିବାର ନାହିଁ । ଦିବ୍ୟଜ୍ୟୋତି ଯୋଗ୍ୟ ନୁହେଁ ରାମହରି ସାହିତ୍ୟର । କିନ୍ତୁ କଥା ହେଉଛି ଯେ ମୋ ସାହିତ୍ୟ ଗୋଟାଏ ବିଷମ ସମସ୍ୟା ହୋଇପଡ଼ିଛି ଆମ ସାହିତ୍ୟ ଜଗତରେ । କାହାରି ସାହସ ନାହିଁ ମୋ କବିତାକୁ ନିନ୍ଦା କରିବେ (କେତେଜଣ ଆଜିକାଲିକାର ଅର୍ବାଚୀନ ଟୋକାଙ୍କ ଛଡ଼ା), ଏଣେ କାହାରି ସାହସ ନାହିଁ ତା'କୁ ସୁପାରିଶ କରିବ କୌଣସି ଉଚ୍ଚ ଧରଣର ପୁରସ୍କାରପାଇଁ—ଏଇ ଅଦ୍ଭୁତ ପରିସ୍ଥିତିକୁ ନେଇ ମୋର କ'ଣ କିଛି କରିବା ଉଚିତ ?

ରାମହରି ଦାସ କ'ଣ ତଥାପି ମିଷ୍ଟିକ୍ ହୋଇ ରହି ତା' କବିତାର ଢାଞ୍ଚାକୁ ଟିକିଏ ବଦଳେଇବାକୁ ଚେଷ୍ଟା କରିବ ? ତା'କୁ କ'ଣ ଟିକିଏ ଆଖିଦୁରୁଶିଆ ଭାବରେ 'ଆଧ୍ୟାତ୍ମିକ' ବେଶ ପିନ୍ଧେଇବ ?'' ନା ତା'କୁ ଆଉ ଟିକିଏ ସୁବୋଧ କରିବାର ପ୍ରଯତ୍ନ କରିବ ?

ନ ହେଲେ କ'ଣ ହ୍ୟାପ ତା'କୁ ଅଳ୍ପବହୁତ ଅଶ୍ଳୀଳ କରି ଥୋଇବି ?? ସେ ଦେଶର କେତେକ କବି ଯେମିତି ଲେଖୁଛନ୍ତି ଆଜିକାଲି ଦେହ ସାଙ୍ଗରେ

ଅଦେହର ସଂଗମ କଳାପରି, ଯେମିତିକି ସମସ୍ତଙ୍କ ଆଖିରେ ପଡ଼ିବ ସେମିତିକା କବିତା ? ଆଉ ସେମାନେ କହିବେ ଯେ ଏତେ ବଡ଼ କବି ଅଶ୍ଳୀଳ ହୋଇ ନ ପାରେ, ତେଣୁ ଏଥିରେ ତାନ୍ତ୍ରିକତାର ଗୁଣ ରହିଛି ? ସମ୍ଭୋଗ ଜରିଆରେ ହରିଦର୍ଶନ, ଇତ୍ୟାଦି ।

ଆବ୍‌ସର୍ଡ୍ ! ରାମହରି ଦାସ କିଛି ବୋଲି କିଛି କରିବ ନାହିଁ ତା' କବିତାକୁ ନେଇ । ଯେମିତି ଲେଖୁଛି ସେମିତି ଲେଖିବ, ଲେଖି ଚାଲିଥିବ ମରିବାଯାଏଁ । ଲେଟ୍ ଦେମ୍ ଗୋ ଟୁ ହେଲ୍ । ... ଶେଷକୁ ରାମହରିବାବୁ ଏଇ ଅପରିବର୍ତ୍ତନୀୟ ସିଦ୍ଧାନ୍ତରେ ପହୁଞ୍ଚିଲେ ଲାଇବ୍ରେରୀ ହଲ୍ ଛାଡ଼ିବା ପୂର୍ବରୁ ।

କିନ୍ତୁ ଯିଏ ପାଉ କି ନ ପାଉ, ଏଇ ଶୈଳଜା ଟୋକୀଟା କେମିତି ପାଇଲା ଏଇ ପୁରସ୍କାର ? ଏଇ 'ଆବ୍‌ସର୍ଡ୍' ଜିନିଷଟାକୁ ସେ ତଥାପି ଭୁଲିପାରୁ ନ ଥାଆନ୍ତି । ସେ ତା'କୁ ମନେ ପକେଇବାକୁ ଚେଷ୍ଟା କଲେ । କିନ୍ତୁ କେବଳ ମନେପଡ଼ିଲା ଗୋଟିଏ କଳା ମୁହଁ ଏବଂ ତା' ଭିତରେ ଝଲି ଉଠିଥିବା ଯୋଡ଼ାଏ ଉଜ୍ଜ୍ୱଳ ଆଖି । ଉଜ୍ଜ୍ୱଳ କିନ୍ତୁ କୋମଳ । କୋମଳ ଏବଂ ମାଗନ୍ତା—ମୁଁ ପରା ଆସିଛି ତମ ପାଖକୁ ତମଠୁଁ ପାସ୍ ଖଣ୍ଡେ ନେବାଲାଗି ଦିଲ୍ଲୀର କବିତା-ଉତ୍ସବ ପାଇଁ ? ମୋତେ ଦେବ ନାଇଁ କେମିତି ? ଏବଂ ଦିଲ୍ଲୀରେ ମଧ୍ୟ ସେଇ ଚାହାଣି, ଯେତେବେଳେ ସେ ପିଇଗଲା ପରି ଶୁଣୁଥିଲା ମୋ କବିତା । ସେଠି ବି' ମାଗୁଥିଲା ପରି ମନେ ହେଉଥିଲା—ଦିଅ ! ଆହୁରି ଦିଅ ମ !

ଉଲ୍ଲେଖଯୋଗ୍ୟ ଯେ ଏଇ ସ୍ମୃତିଚାରଣରେ କେଉଁ ନାରୀକୁ ମନେ ପକାଇଲା ପରି ଲାଗୁ ନ ଥିଲା ତାଙ୍କୁ । ଅପରନ୍ତୁ ଗୋଟିଏ ସାନ ଜନ୍ତୁର କାନ୍ତବନ୍ତା ତଥା ଆକୁଳତାର ଧାରଣା ଆସୁଥିଲା ତାଙ୍କ ମନରେ । ଏଭଳି ଗୋଟାଏ ସାନ ଜନ୍ତୁ ଯେ ଛାଡ଼ିବ ନାହିଁ ତମକୁ । ତା'ର ସେଇ ନଛୋଡ଼ବନ୍ଧା ଆତୁରତା ହିଁ ତା'ର ହିଂସ୍ରତା ।

ଭାବନାଟା ରୋମାଞ୍ଚପନ୍ଥୀ ହୋଇଯାଉଛି ବୋଲି ସେ ଯଥାଶୀଘ୍ର ଓହରି ଆସିଲେ ସେଥିରୁ । ...ଯାହାହେଉ ପଛେ ଟୋକୀଟା କମ୍ ଚାଲାଖ୍ ହୋଇ ନ ଥିବ ! କମ୍ ଲବିଙ୍ଗ୍ କରି ନ ଥିବ ଏଭଳି ଗୋଟାଏ ପୁରସ୍କାର ପାଇବାପାଇଁ ଏବଂ ଗୋଟାଏ ଝିଅ ଯେତେହେଲେ, ତେଣୁ ଏକାଧିକ ଧରଣର ଲବିଙ୍ଗ୍ ସମ୍ଭବ ତା'ପକ୍ଷରେ...ଏହିପରି ଭାବରେ ସେ ଶୈଳଜାକୁ ଛିଗୁଲେଇଲେ ମନେ ମନେ ଓ ତା'ର ସ୍ମୃତିଗତ ଚେହେରାକୁ ତାଙ୍କ ମନରୁ ଘଉଡ଼େଇଦେଇ ପାରିଲେ ଆପାତତଃ ।

କିନ୍ତୁ ଦୁଃଖର ବିଷୟ ତାଙ୍କର ଏକୁଟିଆପଣ ତିଷ୍ଠି ରହିପାରିଲା ନାହିଁ । ସହକର୍ମୀ ମାଷ୍ଟରଙ୍କଠାରୁ ସିନା ଦୂରେଇ ଯାଇ ହେବ, ଛାତ୍ରଛାତ୍ରୀଙ୍କୁ ନେଇ କ'ଣ କରାଯାଇପାରିବ ? କ୍ଲାସ୍‌ରେ ତାଙ୍କୁ ପଢ଼େଇବାକୁ ହେବ ତ ଯେମିତି ହେଲେ ?

ସେଦିନର ତୃତୀୟ ଓ ଶେଷ କ୍ଲାସ୍ ସରିଲା ପରେ ପରେ ଥୋକେ ଘେରିଗଲେ ତାଙ୍କୁ । ରାମହରିବାବୁ ଲକ୍ଷ୍ୟ କଲେ ଯେ ଏମାନେ ହେଉଛନ୍ତି କଲେଜ୍‌ର ତଥାକଥିତ ପ୍ରଗତିବାଦୀ ସାହିତ୍ୟ ସଂସଦର ସକ୍ରିୟ ସଭ୍ୟ । ସେଇଲାଗି ଏଇ ସାହସ, ତାଙ୍କୁ ଘେରିଯାଇ ଗୋଟାଏ 'ସାହିତ୍ୟିକ' ପ୍ରଶ୍ନ ପଚାରିବାଲାଗି । ଏମାନେ ହେଉଛନ୍ତି ଯେତେକ ରଦ୍‌ଦି ମାଲ୍ ସାହିତ୍ୟକୁ ବୁଝିବା ବିଷୟରେ, ପରୀକ୍ଷାରେ ଯଥାକଥା ପାସ୍ କରିଯିବା ପିଲା । କିନ୍ତୁ ଏଇମାନଙ୍କ ଆଗ୍ରହ ସବୁଠୁଁ ବେଶି । କ'ଣ ପଚାରିବାକୁ ଚାହୁଁଛ ଏଥର ? ପ୍ରେମିକ ହିସାବରେ କିଏ ବଡ଼, କୀଟ୍‌ସ୍ ନା ଶେଲି, ସେ ବିଷୟରେ ଗୋଟାଏ ବାଜି ପଡ଼ିଛି ତମ ଭିତରେ ? ନା ଅର୍ନେଷ୍ଟ୍ ହେମିଙ୍ଗ୍‌ଓ୍ୱେ କେଉଁଥିପାଇଁ ଆତ୍ମହତ୍ୟା କଲେ, ତା'ର କେଉଁ ନୂତନ ତଥ୍ୟ ଆବିଷ୍କୃତ ହୋଇଛି ଓ ସେଥିରେ ସତମିଛ କ'ଣ ବୋଲି ପଚାରିବାକୁ ଚାହଁ ? ରାମହରିବାବୁ ଆଶା କରିଥିଲେ ଯେ ଏହି ପ୍ରକାର କୌଣସି ପ୍ରଶ୍ନ ପଚାରିବେ ସେମାନେ । ହୁଏତ ପଚାରିବେ ନାହିଁ ଏଇ ନୂତନତମ ସାହିତ୍ୟ ସମ୍ବାଦ ବିଷୟରେ । ହୁଏତ ଆଜିକା ଖବରକାଗଜରେ ବାହାରି ନ ଥିବ ସେକଥା କିମ୍ବା ସେମାନେ ତା'କୁ ପଢ଼ି ନ ଥିବେ । କିନ୍ତୁ ଅଚିରେ ତାଙ୍କ ଆଶା ଧୂଳିସାତ୍ ହେଲା । ପ୍ରଥମ ପ୍ରଶ୍ନ ପଚାରିଲା ରତି ମହାନ୍ତି । ବାବୁରି ବାଳ ଓ ଶାଗୁଆ ଟି-ସାର୍ଟ, ଯାହା ଉପରେ ଯୋଡ଼ାଏ ପାନପତ୍ର ତୁଲ୍ୟ ହୃଦୟର ଛବି, ଗୋଟାକ ଉପରକୁ ଆରଟା ମାଡ଼ିଯାଇଛି ଏବଂ ଦୁହେଁ ତୀରବିଦ୍ଧ । ପଚାରିଲା ।

''ଏଇ ଦିବ୍ୟଜ୍ୟୋତି ପୁରସ୍କାରଟା ବି' କ'ଣ ଗୋଟାଏ ବେପାରୀ କାରସାଦି, ନା ଯା'ର କିଛି ଗୋଟାଏ ଯଥାର୍ଥ ମୂଲ୍ୟ ରହିଛି ?''

ପ୍ରଶ୍ନର ଉତ୍ତର କ'ଣ ଦିଆଯିବ ବୋଲି ଚିନ୍ତା କରୁ କରୁ ଆହୁରି କେତେ ପ୍ରଶ୍ନ ଅଜାଡ଼ି ହୋଇପଡ଼ିଲା ତାଙ୍କ ଉପରେ । କିନ୍ତୁ ସେଇ ଗୋଟାଏ ବିଷୟକୁ ନେଇ ।

''ସାର୍, ଯଦି ଓଡ଼ିଶାରୁ କାହାକୁ ଦେବାର ଥିଲା, ତା'ହେଲେ କ'ଣ ଆମ ଔପନ୍ୟାସିକ ରୁଦ୍ର ବଳୀୟାର ସିଂହଙ୍କୁ ଦେବା ଉଚିତ ନ ଥିଲା ?''

''ଧ୍ୟାତ୍ !'' ବିରାଟ ନିଶ ଓ ମୁଣ୍ଡରେ କ୍ରିକେଟ୍ ଟୋପି ବିଶିଷ୍ଟ ଆଉ ଜଣେ ତା'କୁ ସଂଶୋଧନ କରି କହିଲା, ''ତୁ'ଟା କ'ଣ ବୁଝିଛୁ ? ଇଏ ଖାଲି କବିମାନଙ୍କୁ ଦିଆଯାଏ ବୋଲି ଜାଣି ନାହୁଁ ତୁ ? ତେବେ ବଡ଼ କବି କ'ଣ ନାହାନ୍ତି ଆମ ଓଡ଼ିଶାରେ ? ଜଗନ୍ନାଥ ଘଡ଼େଇ, ସୁପ୍ରିୟା ମହାପାତ୍ର, 'ଦିଲ୍‌ଖୁସ୍' ପଟନାଏକ୍, ଏମାନଙ୍କ ଭିତରୁ କ'ଣ କାହାକୁ ଦିଆ ଯାଇପାରି ନ ଥାଆନ୍ତା ? କିନ୍ତୁ ପାଇଲା ଶୈଳଜା ପଣ୍ଡା, ଯାହାର କବିତା ଏଇ ଏବେକାର, ଆଉ ସେମାନଙ୍କ ପାସଙ୍ଗରେ ପଡ଼ିବ ନାହିଁ ?''

କେଁକେଁଇଆଁ ସ୍ୱରରେ ଜଣେ ପାଟି କରି ଉଠିଲା ପଛରୁ । ମନେହେଲା ସେ ଜାଣିଶୁଣି ତା' କଣ୍ଠସ୍ୱରକୁ ବଦଳେଇଦେଇଛି, ଅନ୍ତତଃ ରାମହରିବାବୁଙ୍କୁ ଲାଗିଲା ସେମିତି । କହିଲା,

"ଏତେ କଥା କାହିଁକି ? ଆମ ସାର୍‌ଙ୍କୁ ଦିଆଯାଇ ପାରି ନ ଥାଆନ୍ତା ? ଓଡ଼ିଶାରେ କାହିଁକି, ତାଙ୍କପରି କେତେଜଣ କବି ଅଛନ୍ତି ଆମ ଭାରତବର୍ଷରେ ?"

ରାଗରେ ରାମହରିବାବୁଙ୍କ ମୁହଁ ରଙ୍ଗା ପଡ଼ିଗଲା ବୋଲି କହିଲେ ଭୁଲ୍ ହେବ ନାହିଁ । କାରଣ ସେ ଜାଣିଲେ ପିଲାଟା କିଏ । ଧରଣୀ ପତି । ଅସଲ ଖୋସାମତିଆ ଆଉ ବଢ଼ାରିଆ ଟୋକା । ମୁହଁ ଉପରେ ସବୁ ମାଷ୍ଟରଙ୍କୁ ଟେକୁଥାଏ ଏମିତି, ଆଉ ନବଢ଼ କରେ ତାଙ୍କ ପଛରେ । ସେହେତୁ ସେ ଯାହା କିଛି କହିଥାଆନ୍ତେ ହୁଏତ, କହିପାରିଲେ ନାହିଁ । 'ଏକ୍ସକିଉଜ୍ ମି, ମୁଁ କିଛି କହିପାରିବି ନାହିଁ ଏ ସବୁ ବିଷୟରେ କହିଦେଇ ପଳେଇ ଆସିଲେ ଏବଂ ପରେ ପସ୍ତେଇଲେ ତାଙ୍କର ଆଚରଣ ପାଇଁ । ...ସେମାନେ ଭାବିଥିବେ ଯେ ମୁଁ କ୍ଷୁଣ୍ଣ, କାହିଁକିନା ପୁରସ୍କାରଟା ମିଳି ନାହିଁ ମୋତେ । ଅନ୍ତତଃ ଟିକିଏ ହସିଦେଇଥିଲେ ଚଳିଥାଆନ୍ତା । ଫର୍‌ଗେଟ୍ ଇଟ୍...

କିନ୍ତୁ ଏଇ ଘଟଣାର ଛାଇ ସହଜେ ଉତୁରିଲା ନାହିଁ ତାଙ୍କ ମନରୁ । ଉତୁରି ନ ଥିଲା ଯେତେବେଳେ ଫୋନ୍ ବାଜି ଉଠିଲା ତା' ପରଦିନ ସନ୍ଧ୍ୟାବେଳେ; ଯେତେବେଳକୁ ପୁରସ୍କାରର ସମ୍ବାଦ ବିସ୍ତୃତ ଭାବରେ ପ୍ରକାଶ ପାଇ ସାରିଥିଲା ଓଡ଼ିଆ ଖବରକାଗଜମାନଙ୍କରେ, ଶୈଳଜାର ଫଟୋ ସହ । କିନ୍ତୁ କେବଳ 'ଜାଗରଣ'ରେ ବାହାରିଥିଲା ଗୋଟାଏ ସାକ୍ଷାତ୍‌କାର 'ଓଡ଼ିଆ ସାହିତ୍ୟର ଦିଗ୍‌ବଳୟରେ ଦୀପ୍ତିମନ୍ତ ନୂତନ ତାରକା' ଶୈଳଜା ପଣ୍ଡାଙ୍କ ସାଙ୍ଗରେ । ଏଇ କାଗଜଟି ରାମହରିବାବୁଙ୍କ ଘରକୁ ଆସେ । କିନ୍ତୁ ଫିଚର୍‌ର ଶିରୋନାମାକୁ ଦେଖିଲାକ୍ଷଣି ସେ ତା'କୁ ଚଟ୍‌କିନି ଆଡ଼େଇଦେଇ ପଢ଼ି ବସିଥିଲେ ସୋମାଲିଆରେ ଘଟୁଥିବା ଘଟଣା ବିଶେଷ । ସେଇଠୁଁ ଫୋନ୍‌ର ଡାକରା ।

ପୁଣି ସେଇ ସାରଙ୍କ ପାତ୍ର ! ତା'କୁ କ'ଣ ଗୋଟାଏ ମଜା ଲାଗିଛି ମୋତେ ଏଇ ସମୟରେ ଫୋନ୍ କରିବା ପାଇଁ ? ରାମହରିବାବୁ ଗୋଟାଏ ଗମ୍ଭୀର 'ୟେସ୍ ?' କହିଲେ ତାଙ୍କ ବିରକ୍ତିର ସୂଚନା ଦେଇ ।

"ଆଜ୍ଞା ପଢ଼ିଛନ୍ତି କଅଣ ବାହାରିଛି ଜାଗରଣରେ ?"

"କେଉ ବିଷୟରେ ?"

"ଆରେ, କେଉ ବିଷୟ କ'ଣ ମ ? ଆପଣଙ୍କ ବିଷୟରେ ପରା ?"

"ଡୋଣ୍ଟ୍ ବି ସିଲ୍ଲୀ—"

"ଆଜ୍ଞା, ମୁଁ ସତ କହୁଛି । ଶୈଳଜା ପଣ୍ଡାଙ୍କ ସାକ୍ଷାତ୍କାର ଜାଗରଣ'ର ବିଶେଷ ପ୍ରତିନିଧିଙ୍କ ସାଙ୍ଗରେ । ତାଙ୍କୁ ଯେତେବେଳେ ପଚରାଗଲା—ମ୍ୟାଡ଼ାମ୍, ଆପଣ କାହାଠାରୁ କିଛି ପ୍ରେରଣା ପାଇଛନ୍ତି କି କବିତା ଲେଖିବାରେ ?' ଭଦ୍ରମହିଳା କଅଣ କହିଲେ ଜାଣନ୍ତି ? କହିଲେ, କେବଳ ଜଣକଠାରୁ । କବି ରାମହରି ଦାସ ।"

"ହ୍ବାଟ୍ ??"

"ପ୍ରେରଣା ଆଜ୍ଞା, ପ୍ରେରଣା । କ'ଣ ସେ ଜିନିଷଟା ଅବଶ୍ୟ ଜଣା ନାହିଁ ମୋତେ । କିନ୍ତୁ ମୋର ଧାରଣା ନ ଥିଲା ଆପଣ ତା'କୁ ସେମିତି କିଛି ଦେଇଛନ୍ତି ବୋଲି—"

ରାମହରିବାବୁ ତା' ହାସ୍ୟରୋଳକୁ ପ୍ରଶ୍ରୟ ଦେଲେ ନାହିଁ । 'ଥ୍ୟାଙ୍କ୍ସ" କହି ଫୋନ୍ ରଖିଦେଲେ । ଅଭଦ୍ର କୋଉଠିକାର !

...କିନ୍ତୁ କଅଣ ବ୍ୟାପାର ? ଝିଅ ଖଣ୍ଡକ କ'ଣ ନିର୍ଘାତ୍ ମିଛୋଇ ନା ଥଟ୍ଟା କରୁଛି ମୋ ସାଙ୍ଗରେ ? ଥରୁଟାଏ କଥା କହିଛି ମୋ ସାଙ୍ଗରେ, ଆପଣା ମତଲବରେ । ଆଉ ଥରୁଟାଏ ମୋ କବିତାକୁ ଶୁଣୁଥିଲା, ଦେଖିଛି । ଏଇ ହେଲା ତା' ପ୍ରେରଣାର ଉତ୍ସ ?

କଅଣ ବାଜେ କଥା କହୁଛ ହେ କବି ? ସେ କ'ଣ ପଢ଼ି ନ ଥିବ ତମ କବିତା ତା' ଘରକୋଣରେ ? ତା'ଛଡ଼ା ତମକୁ କ'ଣ ଜଣା ନାହିଁ ଯେ ପ୍ରେରଣା ଆସେ କେଉଁ ଅଦୃଶ୍ୟ, ତରଙ୍ଗରେ, ଯାହାର ୱେଭ୍-ଲେଂଗ୍ଥ୍ କେବଳ ସେଇ ଜାଣିଛି ଯେ ତା'କୁ ଗ୍ରହଣ କରେ ? ତା'ବି ହୋଇ ନ ଥିବ । ସେ ନିଜେ ହୁଏତ ଜାଣି ନ ଥିବ କେମିତି ଏମିତି ହେଲା । କେବଳ ଏତିକି ଜଣାପଡୁଛି ଯେ ସେ ତମ କବିତାରେ ମୁଗ୍ଧ । ମନେ ନାହିଁ ସେ କେମିତି ଅନେଇଥିଲା ତମ ମୁହଁକୁ, ଯେତେବେଳେ ତମେ ତମ କବିତା ପଢୁଥିଲ, ଦିଲ୍ଲୀରେ ?

ହଁ, ସେ ମୋ କବିତାକୁ ଭଲ ପାଉଥିବ ନିଶ୍ଚୟ । ନ ହେଲେ ସେମିତି ଚାହିଁ ନ ଥାଆନ୍ତା ମୋ' କବିତା ପଢ଼ା ମୁହଁକୁ । ଇଡ଼ିଅଟ୍ ! ମୋ ମୁହଁଟାରେ କଅଣ ଅଛି ? ମୋ 'ବାବୁ' ମୁହଁର ଓଠରୁ, ଆଖିରୁ ନା କୋଉଥିରୁ ମୋ କବିତାମୃତ ଝରିପଡୁଥିଲା, ଯେ ତୁ ତା'କୁ ପିଇଯାଉଥିଲୁ ? ବୋକୀ ! ହେଲେ ଦ୍ୱିତୀୟଥରପାଇଁ ତା'କୁ ନିର୍ବୋଧ କହିଲାବେଳେ ରାମହରିବାବୁଙ୍କ ମନରେ ଗୋଟାଏ ସ୍ନେହଭାବର ଉଦ୍ରେକ ହେଲା ଶୈଳଜାପାଇଁ । ସତେକି ସେ ପ୍ରକୃତରେ

ତାଙ୍କ ମୁହଁର ଚେହେରାକୁ ବି' ଭଲପାଏ, କାରଣ ସେଥିରେ ମୂର୍ତ୍ତିମନ୍ତ ହୋଇଉଠେ ତାଙ୍କ କବିତାର ଅପରୂପ ରୂପ, ରଙ୍ଗ, ବାସ୍ନା ଏବଂ ସେଥିର ଅତି-ଅନ୍ତରଙ୍ଗ ସ୍ପର୍ଶ, ଯାହାକି କେବଳ ତା'ରି ପରି ବୋଦ୍ଧାମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ।

ରାତିରେ ତାଙ୍କ ଲେଖା ଟେବୁଲ୍ ପାଖରେ ମଧ୍ୟ ସେ ସେଇ ବୋଦ୍ଧାଟିକୁ ସ୍ମରଣ ନ କରି ରହିପାରିଲେ ନାହିଁ । ...ହଁ ବୋଦ୍ଧା, କିନ୍ତୁ ରୋମାଣ୍ଟିକ୍ ଅର୍ଥରେ । ଏବଂ ସେଥିରେ ଦୈହିକ କାମନା ନାହିଁ ବୋଲି କିଏ କହିବ ?

ଅସମ୍ଭବ ନୁହେଁ, ମୋ ଚେହେରା ଯାହା ହଉ ପଛେ । ରୋମାଣ୍ଟିକ୍ ପ୍ରେମରେ ଗଣ୍ଡିମୁଣ୍ଡ ନ ଥାଏ । ରୋମାଣ୍ଟିକ୍ ? ହଠାତ୍ ରାମହରିବାବୁଙ୍କ ମନରେ ଆସିଲା ଗୋଟାଏ ଅଦ୍ଭୁତ ଏବଂ ଅକାରଣ ଆକର୍ଷଣର ସ୍ମୃତି, ଯାହାକୁ ସେ ହସି ଉଡ଼େଇ ଦେଇଥିଲେ ସେତେବେଳେ । ତା'ଠୁ ଛୁଟି ପାଇ ଫେରିଆସିଲା ପୂର୍ବରୁ ତା'ର ନିବିଡ଼ ଆଲିଙ୍ଗନ ଏବଂ ପୁନଃ ପୁନଃ ଚୁମ୍ବନ ଏବଂ ଅଧା ହିନ୍ଦୀ ଅଧା ବଙ୍ଗଳା ଭାଷାରେ ଗୁଣ୍ଡା ପ୍ରେମ ନିବେଦନ, ଯଦି ତା'କୁ ପ୍ରେମ କୁହାଯାଏ—

''ହମ୍ ସଚ୍ ବୋଲ୍‌ତା ହେ ସାହେବ୍ । ହମ୍ ବହୁତ୍ ବହୁତ୍ ଭାଲୋବାସ୍‌ତା ହେ ତୁମ୍‌କୋ । ହନୁମାନ୍‌ଜୀକୀ କସମ୍ । ହମ୍ କିସୀକୋ ନହୀଁ ଦେଖା ତୁମ୍‌ହାରା ମାଫିକ୍ ।''

ସ୍ୱଭାବତଃ ସେ ତା' କଥାକୁ ହସି ଉଡ଼େଇଦେଇଥିଲେ । ତା'କୁ ପଚାରି ନ ଥିଲେ ସେ କେଉଁ ହିସାବରେ ଭିନ୍ନ ଅନ୍ୟମାନଙ୍କ ଠାରୁ । ଧରି ନେଇଥିଲେ ଯେ ସେ ଏଭଳି କଥା କହିଥିବ ତା'ର ଅନ୍ୟ କେତେକ ଗରାଖମାନଙ୍କୁ । କାରଣ ସେ ଥିଲା କଲିକତାର ହାଡ଼କଟା ଲେନ୍‌ରେ ଥିବା ଅନ୍ୟତମ ବେଶ୍ୟା, ତା' ନାଆଁ ସୁନ୍ଦରୀ । ସେ ଅନେକ ଅନେକ ଦିନ ତଳର କଥା ଏବଂ ମାତ୍ର ଗୋଟାଏ ରାତିର ବ୍ୟାପାର । ଆଉ କେଉଁ ନାରୀ, ଆଉ କେଉଁ ସୁନ୍ଦରୀ ପୁଣି କେବେ ଆସି ନାହିଁ ତାଙ୍କ ଜୀବନରେ ।

...ତା' ବୋଲି ମୁଁ ତା'କୁ ତମ ସାଙ୍ଗରେ ତୁଳନା କରୁ ନାହିଁ ଶୈଳଜା । ମୋର ଖାଲି ଏତିକି କହିବା କଥା ଯେ ଅଦ୍ଭୁତ ତୁମ ନାରୀମାନଙ୍କ କାରବାର । ସେଥିରେ ଦୁଇରେ ଦୁଇ ମିଶେଇଲେ ଚାରି ହୁଏ ନାହିଁ । ନ ହେଲେ କ'ଣ ତୁମମାନଙ୍କୁ ପ୍ରକୃତି ସାଙ୍ଗରେ ମିଶେଇ ଦିଆଯାଏ ? ଯେତିକି ବହୁରୂପୀ, ସେତିକି ବିଷମ, ବିପଜ୍ଜନକ ।

ନା, ମୁଁ ତା' ପ୍ରେରଣାକୁ ପରଖିବି । ରହସ୍ୟର ଗହୀରକୁ ଯିବି, ସିଏ ଅନ୍ଧକୂପ ହେଉ କି ଅତଳ ସାଗର । ...ଭାବି ଭାବି ରାମହରିବାବୁ ସ୍ଥିର କଲେ

ଯେ ସିଧାସଳଖ ତା'କୁ ପଚାରିଦେବା ହିଁ ଶ୍ରେୟସ୍କର । ଦି' ଧାଡ଼ିଆ ଚିଠି ଲେଖାଯାଉ ତା' ପାଖକୁ । ଯେ ମୋ ସହିତ ଟିକିଏ ଦେଖା କରିପାରିଲେ ମୁଁ ଉପକୃତ ହେବି ଏବଂ ତା'ର ଅକୁହା ପରିଭାଷା ହେଉଛି—ହ୍ୟାଲୋ ଶୈଳଜା, ଦିବ୍ୟଜ୍ୟୋତିର୍ମୟୀ ଶୈଳଜା, ଥ୍ୟାଙ୍କ୍ ୟୁ । ତମ ପ୍ରେରଣା କେଉଁ ବାଟେ ଆସିଲା, କେମିତି ଆସିଲା ଓ କାହିଁକି ଆସିଲା, ସେ ବିଷୟରେ କିଛି ଜଣାଇପାରିବ କି ମୋତେ ? ନ ହେଲେ ବୁଝିବି ଯେ ତମେ ଗୋଟିଏ ଭଣ୍ଡ ନାରୀବିଶେଷ, ସୁନ୍ଦରୀ ନ ହେଲେ ବି' ତା'ରି ପରି ଜଣେ । ଏତେ ସହଜରେ ମୁଁ ତମକୁ ଛାଡ଼ିଦେଇ ନାହିଁ, ବୁଝିଲ ?

ରାମହରିବାବୁ ଭୁଲିଗଲେ ଯେ ଏଇ ଦିନକ ଆଗରୁ ସେ ତା'କୁଇ ଗୋଟାଏ ନଛୋଡ଼ବନ୍ଧା ସାନ ଜନ୍ତୁ ବୋଲି ମନେ କରୁଥିଲେ, ଯାହାର ଆତୁରତାହିଁ ହିଂସ୍ରତା ସାଙ୍ଗରେ ସମାନ ।

## ଛଅ

"ହାଏ ସିଲ୍‌ଲୀ, ହାଓ ଆର୍ ୟୁ ?"

ଆଖିରୁ ନିଦ ଛାଡ଼ି ନ ଥାଏ । ତେଣୁ ଟେଲିଫୋନ୍ ଯନ୍ତ୍ରଟା ଉପରେ ରାଗିବାକୁ ପଡୁଥାଏ । ଅଭଦ୍ର, ସକାଳଟାରୁ ତା' କାମ ଆରମ୍ଭ କରିଦେଇଛି । କିନ୍ତୁ ସିଲ୍‌ଲୀ ପଦଟିକୁ ଶୁଣିଲା ମାତ୍ରେ ଶୈଳ ତେଜିଉଠିଲା । ଓଠକୁ ହସ ଆସିଗଲା ଏବଂ ଅଲରା ବାଳଗୁଡ଼ାକୁ ପଛକୁ ଠେଲିଦିଆଗଲା । ମୁହୂର୍ତ୍ତେ ବି' ଲାଗିଲା ନାହିଁ ଜାଗୃତିରୁ ଆବେଗ ଏବଂ ଆବେଗରୁ ଉଲ୍ଲାସ ଆସିବାଯାଏଁ ।

"ଦିଦି ! ନୀଳିମାଦି !"

ଆଉ କେହି ଶୈଳକୁ ସିଲ୍‌ଲୀ ବୋଲି ଡାକନ୍ତି ନାହିଁ । ସ୍ନେହ ସରାଗରେ ଜୁଡୁବୁଡୁ ଏଇ ଡାକଟି ତା'ର କେତେ ଆପଣାର, କିଏ ବୁଝିବ ସେ କଥା ? ଆନନ୍ଦର ଆତିଶଯ୍ୟରେ ଶୈଳ ଅସ୍ଥିର ହୋଇଉଠିଲା । ରିସିଭର୍‌କୁ ଏ ହାତରୁ ସେ ହାତକୁ ନେଲା । ଫୋନ୍ ଟେବୁଲ୍ ଉପରେ ଥୁଆ ହୋଇଥିଲା । ଫୁଲଦାନୀକୁ ଅକାରଣରେ ଘୁଞ୍ଚେଇଦେଲା ଏବଂ ଠିଆ ହେବାର ଭଙ୍ଗୀକୁ ବାରମ୍ବାର ବଦଳେଇବାକୁ ଲାଗିଲା । ପଚାରିଲା,

"ତମ ଦେହ କେମିତି ଅଛି ନୀଳିମାଦି' ? କେ-ବି-କେ ସାହେବ ଲେଖିଥିଲେ ଯେ କ'ଣ ସବୁ ଟେଷ୍ଟ୍ କରେଇବାର ଅଛି..."

"ଛାଡ଼୍ ସେ ସବୁ ବାଜେ କଥା । ଶୁଣ୍ ମୁଁ କ'ଣ କହୁଛି । ମନଦେଇ ଶୁଣ୍ । ଗୋଟାଏ ସୁଖବର । ଏ ବର୍ଷର 'ଦିବ୍ୟଜ୍ୟୋତି' ପୁରସ୍କାର ପାଇଛନ୍ତି ଶ୍ରୀମତୀ ସିଲ୍‌ଲୀ, ଆଇ ଆମ୍ ସରି, ଶୈଳଜା ପଣ୍ଡା । କଙ୍ଗ୍ରାଚୁଲେସନ୍‌ସ୍ !"

"ଏଁ— ?"

ନୀଲିମାଙ୍କର ଉଚ୍ଛ୍ୱସିତ ହାସ୍ୟଧ୍ୱନି ଶୁଣାଗଲା ଫୋନ୍‌ରେ । ସେଇଠୁଁ କହିଲେ, "ଏ କଣ ମ ? ତୁ କଣ ସତସତିକା ପ୍ରମାଣିତ କରିବାକୁ ଚାହୁଁ ଯେ ତୁ ଗୋଟିଏ ସିଲ୍‌ଲୀ ଗାର୍ଲ ? ଶୁଣ୍, ଇଏ ମିଛ ନୁହେଁ ସତ । ଆଉ ମୁଁ ହେଉଛି ତୋ ଦିଦି ନୀଲିମା କର୍ । ଯେ ତୋତେ ଭଲ ପାଏ, ଅତି ବେଶୀ ଭଲପାଏ । ସେଇଲାଗି ସେ ଖାଲି ତା' କଙ୍ଗ୍ରାଚୁଲେସନ୍ ଜଣେଇ ଚୁପ୍ ହୋଇଯାଇପାରିବ ନାହିଁ । ସେ ତୋତେ କୁଣ୍ଢେଇ ଧରିବ । ଆଉ ମନଭରି ଚୁମାଟିଏ ଦେବ... (ଚୁମା ଦେବାର ଶବ୍ଦ) ... ଶୁଣିପାରୁଛୁ ନା ?"

"ଦିଦି, ଦିଦି ... ତମେ ଭାରୀ— !" ଶୈଳର ସର୍ବାଙ୍ଗ ଶିହରି ଉଠିଲା ।

ଗୋଟାଏ ଅଦ୍ଭୁତ ଶିହରଣ, ଯାହାର କାରଣ ସେ ପୂରାପୂରି ବୁଝିପାରିଲା ନାହିଁ । ଯେହେତୁ ସେଥିରେ ଯେତିକି ଉଲ୍ଲାସ ଥିଲା, ମଧ ସେତିକି ଭୟ । ... ଦିଦି ମୋତେ ଭଲ ପାଆନ୍ତି । ଏତେ ଭଲ ପାଆନ୍ତି କେମିତି ମ ? କିନ୍ତୁ ସେ କହୁଛନ୍ତି କ'ଣ ନା ମୋତେ 'ଦିବ୍ୟଜ୍ୟୋତି' ପୁରସ୍କାର ଦିଆଯାଇଛି । ଦିବ୍ୟଜ୍ୟୋତି ପୁରସ୍କାର !! ଗତବର୍ଷ ଯାହାକୁ ମହାରାଷ୍ଟ୍ରର ସୁପ୍ରସିଦ୍ଧ କବି ନାରାୟଣ ନାର୍ଭେକାର ପାଇଥିଲେ । ତାଙ୍କ ପୂର୍ବରୁ ବାରାଣସୀର ସ୍ୱନାମଧନ୍ୟ କବୟିତ୍ରୀ ଲଳିତାଜୀ, ଯାହାଙ୍କୁ ଏ ଯୁଗର ମୀରାବାଈ ବୋଲି କୁହାଯାଏ । ସେମାନଙ୍କ ପଛକୁ ମୁଁ—ମୁଁ—ଶୁକୁଟୀ କାଳୀକାନୀ ଶୈଳଜା ! ହେ ଭଗବାନ୍ ! ଯା'ପରେ କଅଣ ହେବ ? ମୁଁ ସେମିତି ଦେଖାଯିବି ତ, ସେମିତି କଥା କହିପାରିବି ତ, ଏତେ ବଡ଼ ପୁରସ୍କାର ପାଇଲା ପରି ? ...କେତେବେଳେ ଶୈଳର ଖିଆଲ ହେଲା ଯେ ସେ ରିସିଭର୍‌ଟାକୁ ଧରି ଠିଆ ହୋଇଛି । ଦିଦି କେତେ କ'ଣ କହୁଛନ୍ତି, ହେଲେ ତା' ପାଟିରୁ ହୁଁ କି ଚୁଁ ବାହାରୁ ନାହିଁ । କହୁଛନ୍ତି କେମିତି ବୋର୍ଡ଼ର ଅନ୍ୟତମ ସଭ୍ୟ ଗୁରୁବାନୀ-ପଣ୍ଡିତ ସତ୍‌ପାଲ୍ ସିଂହ ଟିକିଏ ଆପତ୍ତି କରୁଥିଲା, କିନ୍ତୁ ରୋମୀ ସେନ୍ ତା'କୁ ଦବେଇଦେଲା, କହିଲା ଇଏ ହେଉଛି 'ଏମ୍.ସି.ପି.' ଢଙ୍ଗ, ନାରୀବିରୋଧୀ ମନୋବୃତ୍ତି, ଆମ ପୁରୁଷମାନଙ୍କର ଗୋଟାଏ ଧାରଣା ଯେ ଆଧ୍ୟାତ୍ମିକତା ନାରୀମାନଙ୍କୁ ଛୁଏଁ ନାହିଁ, ସେମାନେ ବିଧବା କିମ୍ବା ବୁଢ଼ୀ ନ ହେବାଯାଏଁ । ରୋମୀକୁ ତ ଦେଖିଛୁ ସେ କେମିତି ମୁହେଁ ମୁହେଁ କହିଲାବାଲା । ଅବଶ୍ୟ ସେ ନିଜେ କେମିତି ସେ ବୋର୍ଡ୍ ଭିତରକୁ ପଶିଲା ଆଧ୍ୟାତ୍ମିକତାର ପାଖ ନ ମାଡ଼ି ସେ ବି' ଗୋଟାଏ ରହସ୍ୟ— । ତା'ପରେ ସେ ହସିଲେ । ସେଇଠୁଁ ସେ କ'ଣ ସବୁ କହିଲେ କେଜାଣି ! ଯାହାହେଉ ଶୈଳ କିଛି କହିବାପାଇଁ ବାଧ୍ୟ ହେଲା, ଯେତେବେଳେ ଦିଦି ତା'କୁ ତିଆରିଲେ—'କି ଲୋ, ଶୋଇପଡ଼ିଲୁ ନା କ'ଣ ?'

"ସରି... କିନ୍ତୁ ଦିଦି, ମୋତେ ଡର ମାଡୁଛି..."

ଇଏ ଥିଲା ଗୋଟିଏ ସଙ୍ଗୀନ୍ ମୁହୂର୍ତ୍ତ, ଯେତେବେଳେ ତା' ମନରେ ଉଲ୍ଲାସ ଓ ଭୟର ଭାଗମାପ ଅନ୍ତବହୁତ ଢଳିଯାଇଥିଲା ଭୟ ଆଡ଼କୁ । ତେଣୁ ଶୈଳ ଉଚିତରୁ ଅଧିକ ସ୍ପର୍ଶକାତର ହୋଇ ପଡ଼ିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବୋଧହୁଏ ନୀଳିମାଦି' କିମ୍ବା ସେହିପ୍ରକାର କୌଣସି ଦରଦୀ, ହେଲେ ବହିର୍ଜଗତର ବ୍ୟକ୍ତି, ବିଶେଷତଃ ନାରୀମୂର୍ତ୍ତି, ତା'କୁ ଏଥିରୁ ଉଦ୍ଧାର କରିପାରି ଥାଆନ୍ତେ । କିନ୍ତୁ ସେ ତ କାହିଁ କେତେ ଦୂରରେ, ଦିଲ୍ଲୀର ରିସିଭର୍ ପାଖରେ, କେଉଁ ସ୍ୱପ୍ନଲଭ୍ୟ ସଂଦେଶର ରଚୟିତା ।

କିନ୍ତୁ ଗତକାଲି ରାତିରେ ଉଚିତ ଦୁର୍ଲ୍ଲଭ ଯୌନସମ୍ଭୋଗରେ ଆପ୍ୟାୟିତ ହୋଇଥିବା ସନାତନବାବୁ କେମିତି ଭଲା ବୁଝିଥାଆନ୍ତେ ଏଇ ମୁହୂର୍ତ୍ତର ନିଦାରୁଣ ମହିମା ? ଅପରନ୍ତୁ ସେ ତାଙ୍କ କବୟିତ୍ରୀ ସ୍ତ୍ରୀଙ୍କୁ ଅତି ମାତ୍ରାରେ ଭଲ ପାଇଲା ପରି ମନେ ହେଉଥିଲା ଆଜି, ଏଇ ଶରତ ସକାଳର ପ୍ରାରମ୍ଭରେ । ... କିଏ ଏତେ ସକାଳୁ ସକାଳୁ ଫୋନ୍ କରିଛି ଶୈଳକୁ ଯେ ସେ ଏମିତି ମୋହି ହୋଇଗଲା ପରି ଦିଶୁଛି ? ଖାଲି ଶୁଣି ଶୁଣି ଯାଉଛି, ପଦେ କଥା ବାହାରୁ ନାହିଁ ତା' ମୁହଁରୁ । ମୋହି ହୋଇଯାଇଛି ନା ଛାତିରେ ଛନକା ପଶିଯାଇଛି କୌଣସି କାରଣରୁ ?...

ତେଣୁ ନୀଳିମା ଯେତେବେଳେ କ'ଣ କହୁଥିଲେ ଫୋନ୍‌ରେ 'ସିଲ୍‌ଲୀ'ର ଭୟକୁ ଘୁଞ୍ଚାଇବାପାଇଁ, ସେତିକିବେଳେ ସନାତନବାବୁ ପଚାରିଲେ ଶୈଳକୁ—"କୋଉଠୁଁ ଫୋନ୍ ଅସିଛି କି ସକାଳଟାରୁ ? ଗୋଟାଏ ଜବର୍ ଖବର ବୋଲି ମନେ ହେଉଛି ?"

"ହଁ, ମୋତେ ଗୋଟାଏ ଆୱାର୍ଡ଼ ମିଳିଛି । ଦିବ୍ୟଜ୍ୟୋତି ପୁରସ୍କାର ।" ଶୈଳ ସ୍ୱାମୀଙ୍କ କୁତୂହଳୀ ପ୍ରଶ୍ନକୁ ତତ୍‌କ୍ଷଣାତ୍ ଛିଣ୍ଡେଇଦେବାକୁ ଚାହୁଁଥିଲା, ଯେମିତିକି ସେ ମନଧ୍ୟାନ ସହ ଶୁଣିପାରିବ ନିଦିଙ୍କର ଯବୁତକ କଥା ।

କିନ୍ତୁ ସେଇ ଦି'ଧାଡ଼ିଆ ଉତ୍ତର ଯଥେଷ୍ଟ ଥିଲା ପତ୍ନୀସୁଆଗରେ ଉଜ୍ଜୀବିତ ହୋଇଉଠିଥିବା ସନାତନବାବୁଙ୍କ ପାଇଁ । ପହରଣରେ ଲୁଙ୍ଗି ଓ ବୋତାମଖୋଲା ଅଧାକୁର୍ତ୍ତା ତଥା ଅବିନ୍ୟସ୍ତ କେଶବିଶିଷ୍ଟ ସନାତନ ପଣ୍ଡା ପରମ ଆଗ୍ରହରେ ପାଖେଇ ଆସିଲେ ସ୍ତ୍ରୀଙ୍କ ପାଖକୁ ଏବଂ 'ରିଏଲି ?' 'ରିଏଲି ??' କହି ତାଙ୍କୁ କୁଣ୍ଢେଇଧରିଲେ ପଛଆଡୁ । ତେବେ ସେତିକି ନୁହେଁ, ଶୈଳର କାନ୍ଧରେକିନି ଚୁମାଟିଏ ଦେଲେ, ଯାହାର ଶବ୍ଦ ହୁଏତ ଫୋନ୍‌ରେ ଭାସି ଯାଇଥିବ, ଦିଦିଙ୍କୁ ବି' ଶୁଣା ଯାଇଥିବ..."

ଶୈଳ ସନାତନବାବୁଙ୍କୁ ଛିଞ୍ଚାଡ଼ିଦେଲା । ପତ୍ନୀ ପତିର ସୁଆଗକୁ କ'ଣ ଏମିତି ଛିଞ୍ଚାଡ଼ିଦିଏ ନାହିଁ ବେଳେବେଳେ, କାର୍ଯ୍ୟବ୍ୟସ୍ତ ଥିଲାବେଳେ ? କିନ୍ତୁ ସନାତନବାବୁ

ଆଶା କରିଥିଲେ ସେଥିରେ ଥିବ ଯତ୍‌ସାମାନ୍ୟ କୃତ୍ରିମତା ଏବଂ ରାଗ ସାଙ୍ଗକୁ ସ୍ୱାମୀଠାରୁ ମିଳିଥିବା ଏଇ ବିପୁଳ ପ୍ରେମର ସ୍ୱୀକୃତି, ତାହା ଯେତେ ଅଭିଳା କି ଅଲାଜୁକ ହେଉ ପଛେ । କିନ୍ତୁ ତା' ବଦଳରେ ସେ ଯାହା ଦେଖିଲେ ତା' ମୁହଁର ଚେହେରାରେ, ସେଥିରେ କେବଳ ଗୋଟାଏ ଭାବ ପରିସ୍ଫୁଟ ହେଉଥିଲା । ବିସ୍ୱାଦ । ରାଶି ରାଶି ବିସ୍ୱାଦ । ସନାତନବାବୁ ଅବାକ୍ ହେଲେ । ଏବଂ ଫେରିଆସିଲେ ପଛକୁ, ଆହତ ହେବାର ଭାବକୁ ଲୁଚେଇ ନ ପାରି । ତାଙ୍କ ବୁଝିବାର ଶକ୍ତି ନ ଥିଲା ଯେ ସୁଦୂରରୁ ଆସୁଥିବା ସ୍ୱପ୍ନଲଭ୍ୟ ବାଣୀ ସାଙ୍ଗରେ ଏଇ ସ୍ଥୂଳ ସ୍ୱାମୀତ୍ୱର ଭାଷା, ଏଇ ଦୈହିକତା ମୋଟେ ଖାପ୍ ଖାଏ ନାହିଁ । ବୁଝିଲେ ନାହିଁ ଯେ ସେ ସେହି ଅତୀନ୍ଦ୍ରିୟ କାବ୍ୟଜଗତର କେହି ନୁହନ୍ତି, ସେ ତାଙ୍କ କବି-ସ୍ତ୍ରୀକୁ ଯେତେ ଭଲ ପାଆନ୍ତୁ ନା କାହିଁକି ।

ଏହି ସମୟରେ ଶୈଳ ଆବିଷ୍କାର କଲା ଯେ ଦୂରେଇ ଯାଉଥିବା ସ୍ୱାମୀଙ୍କ ପଛକୁ କେହି ଜଣେ ଠିଆହୋଇଛି । ତନୁଶ୍ରୀ ଓରଫ୍ ତନୁ । ତା'ର ସାତ ଆଠବର୍ଷର ଝିଅ । ନା, କେବଳ ତା'ର ନୁହେଁ, ମାଆର ନୁହେଁ, ମଧ୍ୟ ବାପାର । ଏବଂ ସେ ଏଇ ଦୃଶ୍ୟ ଦେଖିଛି ନିଶ୍ଚୟ । ଦେଖି ନ ଥିବ କେମିତି ?

ଦେଖୁ, ସେଥିରେ ଯାଏ କେତେ ଆସେ କେତେ ?

ଏଡ଼ିକି ଟିକିଏ ପିଲା, କ'ଣଟା ବୁଝିବ ଯେ ସାଇତି ରଖିବ ତା' ମନରେ ?

ମଲା, କୋଉ ଘରେ ପିଲାମାନେ ଦେଖନ୍ତି ନାହିଁ ବାପମାଆଙ୍କ କଳିକଜିଆ ? ବରଂ ଆମେ ଦି'ଜଣ ନିଆରା ବୋଲି ମୁଁ କହିବି । ଆମେ କ୍ୱଚିତ୍ କଳି କରୁ, ରାଗୁ ପରସ୍ପର ଉପରେ ।

ଏହି ପ୍ରକାର ବିଭିନ୍ନ ସଫେଇ ଶୈଳର ମନରେ ଆସିବାକୁ ଲାଗିଲା ଫୋନ୍‌ରେ କଥାବାର୍ତ୍ତା ସରୁ ନ ସରୁଣୁ । ହେଲେ ସେ ନିଜକୁ ତିଆରିଲା ଯେ ସେ ଅଯଥାରେ ଏମିତିକା ସଫେଇ ଦେଉଛି—ସତେକି ସେ ବିରାଟ ଦୋଷଟାଏ କରି ପକେଇଛି ଏବଂ ଆହୁରି ବିରକ୍ତ ହେଲା ଯେ କେଜାଣି କୋଉ ଯୁଗର ଗୋଟାଏ ଦୃଶ୍ୟ ମନେ ପଡ଼ିଯାଉଛି ତା'ର, ଯେତେବେଳେ ବାପା ପାଣିଟ୍ୟାପ୍ ପାଖରେ ବସିପଡ଼ି ବାସନ ମାଜୁଥିବା ବୋଉକୁ ସୋଗ କରିବାକୁ ଯାଉଥିଲେ । ଧାତ୍, କୋଉ କଥାରୁ କୋଉ କଥା ମନେ ପଡୁଛି ! ଏଠି କୋଉ ବାସନମଜାର ଦୁଃଖ ନାହିଁ, କି ଗନ୍ଧିଆ, ଅପରଛନିଆ ଲଗାଲଗି ପଣ ନାହିଁ ଯେ ତନୁର ଦେହ ଶୀତେଇ ଉଠିବ । ହୁଏତ ସେ ଗୋଟାଏ ଭୁଲ୍ କାମ କଲେ, କିନ୍ତୁ ଏଠି ସବୁ ସ୍ୱଚ୍ଛ, ସବୁ ନିର୍ମଳ ଏବଂ ଆନନ୍ଦ । ଆଜିକାର ଏହି ଦିନରେ ଆଉ କିଛି ଭାବିବାର ନାହିଁ । କୋଉ ବାବନାଭୂତର ଛାଇ ପଡ଼ିବ ନାହିଁ ମୋ ଉପରେ, କି ବାପଝିଅଙ୍କ ଉପରେ...

''ମାର୍ଚ୍ଚ-ଏପ୍ରିଲ୍ ବେଳକୁ ? ହଉ, ମୁଁ ଯିବି, ନିଶ୍ଚୟ ଯିବି । କିନ୍ତୁ ତମେ ମୋତେ ବତେଇଦେବ ଦିଦି, ମୋତେ କ'ଣ କହିବାକୁ ପଡ଼ିବ । ନ ହେଲେ ମୋ ପାଟି ଖନି ବାଜିଯିବ, ଆଉ ମୁଁ ଷ୍ଟେଜ୍ ଉପରେ ହାମୁଡ଼େଇ ପଡ଼ିବି । ତମକୁ କ'ଣ ଭଲ ଲାଗିବ ସେ କଥା ?'' ଶୈଳ ହସି ହସି କହୁଥାଏ ତା' ଦିଦିଙ୍କୁ । ମନେହେବ ସେ ଅଚ୍ଛ ବହୁତ ଗେହ୍ଲେଇ ହୋଇ କହୁଛି ଏମିତିକା କଥା, ଡର ଭୟ ଆଉ କିଛି ନାହିଁ ତା' ମନରେ ।

ଶେଷକୁ ବାର୍ତ୍ତାଳାପ ସରିଲା ଏବଂ ଶୈଳ ଫେରିଚାହିଁଲା, ତା'ର ମହାନନ୍ଦକୁ ବ୍ୟକ୍ତ କରିବ ବୋଲି ବାପଝିଅଙ୍କ ଆଗରେ । କିନ୍ତୁ ଦେଖିଲା ବାପ ନାହାନ୍ତି । ଯାହାହେଉ ଝିଅ ଅଛି । କାନ୍ଥ ଠଣାରୁ କ'ଣ ଗୋଟାଏ ଡିବା ବାହାର କରି ତା' ଭିତରେ ଥିବା ଦ୍ରବ୍ୟମାନଙ୍କୁ ଦେଖୁଛି । ଶୈଳ ଝିଅ ପାଖକୁ ଯାଇ ତା'କୁ ଦି' ହାତରେ ଧରିଲା । ଏବଂ ତା' ମୁହଁକୁ ବୁଲେଇଆଣିଲା ନିଜ ଆଡ଼କୁ ଏବଂ ଅକାରଣରେ ହସିଲା, ଏକ ପ୍ରସାରିତ ହସ । ଆନନ୍ଦର ହସ । ଭାବିଲା ସେଥିର ପ୍ରଭାବ ନିଶ୍ଚୟ ପଡ଼ିବ ତା'ର ଏଇ ଟିକି ଝିଅର ମନରେ ଏବଂ ସେ ଆପେ ଆପେ ଖୁସି ହୋଇଉଠିବ ତା' ମାଆର ଖୁସିରେ—ମୋ ମାଆ ଖୁସି ଅଛି, ମୁଁ ବି' ଖୁସି, ପୃଥିବୀ ଖୁସି...

ଏପରିକି ତା' ମନରେ ଆସୁଥିଲା ତନୁକୁ କହିବ ତା' ମାଆକୁ କିଭଳି ଗୋଟିଏ ବିରାଟ ପୁରସ୍କାର ମିଳିଛି । ଯାହା ଓଡ଼ିଶାରେ କାହାକୁ ହେଲେ ମିଳି ନାହିଁ ଆଜିଯାଏଁ ଏବଂ ତା' ବୟସରେ କାହାକୁ ହେଲେ ମିଳି ନ ଥିବ, ବୋଧହୁଏ, ଆମ ଦେଶରେ । କିନ୍ତୁ ଦୁଃଖର ସହିତ ସେ ସେଥିରୁ ନିରସ୍ତ ହେଲା । ତନୁର ବୟସ ହୋଇ ନାହିଁ ତା'ର ତାତ୍ପର୍ଯ୍ୟ ବୁଝିବାଲାଗି ।

ଶୈଳ ବାହାରେ ଆସି ଠିଆହେଲା, ଦାଣ୍ଡ ବାରଣ୍ଡାରେ । କହିହେବ ନାହିଁ ସେ କୋଉଥିପାଇଁ ଆସିଲା । ହୁଏତ ଇଏ ହେଉଛି ତା' ଅସ୍ଥିର ଆନନ୍ଦର ଲକ୍ଷଣ । ତେବେ ଆସିଲାକ୍ଷଣି 'ଇଚ୍ଛାପୁରୀ' କଲୋନୀର ପ୍ରକୃତି ଉଜ୍ଜ୍ୱଳି ଉଠିଲା ତା'କୁ ସ୍ୱାଗତ ଜଣାଇବାଲାଗି । ଅନ୍ତତଃ ତା'ର ମନେହେଲା ସେମିତି । ...ଲୋକମାନେ ଯା'ଆସ କରୁଛନ୍ତି, ସବୁଦିନ ପରି । ଫ୍ୟାକ୍ଟରୀ ଲୋକମାନେ, ତଥା କଲୋନୀର ସେବାକାରୀ ଖବରକାଗଜବାଲା, ଦୁଧବାଲା ଓଗେରେ । ଅଚ୍ଛ କେତେକ ଘରଣୀମାନେ ମଧ୍ୟ ତାଙ୍କ ଘର ଦାଣ୍ଡରେ ଆସି ଠିଆ ହୋଇଛନ୍ତି ମୋ ପରି । ଭାବୁଥିବେ ଯେ ମ୍ୟାନେଜରିଆଣୀ ମଧ୍ୟ ତାଙ୍କରି ପରି ଆଉଗୋଟିଏ ଘରଣୀ, ଦୈନନ୍ଦିନତାରୁ ଟିକିଏ ଫୁରୁସତ୍ ପାଇବାପାଇଁ ଆସିଛି ବାହାରକୁ । ବିଚରା କେହି ଜାଣି ନାହାନ୍ତି । କେମିତି ବା ଜାଣିବେ ଯେ ମୁଁ କେବଳ ମ୍ୟାନେଜରିଆଣୀ ନୁହେଁ, ଯାହାକୁ

ତୁଚ୍ଛ ମଣିବାର ଯଥେଷ୍ଟ ଅଧିକାର ଅଛି ସେମାନଙ୍କର । ମୁଁ ଅଧିକବିଶେଷ । ଖାଲି ଓଡ଼ିଶାର ନୁହେଁ, ଭାରତବର୍ଷର ଜଣେ ବିଶିଷ୍ଟ କବି !

ତମେ ସିନା କେହି କିଛି ବୁଝିପାରୁନ, କି ବୁଝିବାପାଇଁ ଅକ୍ଷମ, କିନ୍ତୁ ଦେଖ, ମୋ ପ୍ରକୃତିକୁ ଦେଖ । ମୁଁ ଯାହାର ସେବା କରିଆସିଛି, ଯାହାର ଗୁଣ ଗାଇଆସିଛି ଏତେଦିନ ହେଲା ଏବଂ ତା'ଠିଠାରୁ ପାଇଛି ଯେତେକ ସ୍ନେହ, ଶ୍ରଦ୍ଧା, ପ୍ରୀତିର ବିପୁଳ ଅନୁଦାନ, ଜନସଂସାରଙ୍କୁ ବାଣ୍ଟିଦେବା ଲାଗି । ଦେଖ ଆଜିର ଏଇ ସୂର୍ଯ୍ୟ ଆଲୁଅକୁ । ଅଧିକ ତୋଫା ଦିଶୁ ନାହିଁ ସବୁଦିନଠାରୁ ? ଘାସମାନଙ୍କୁ ଦେଖ, ପତରମାନଙ୍କୁ ଦେଖ, ଏପରିକି ଦେଖ ଲୁହାବାଡ଼ର ଗୋଲେଇ ଭିତରେ ବନ୍ଦୀ ହୋଇଥିବା ଦ୍ରୁମ-ଶିଶୁମାନଙ୍କୁ । ସେମାନେ ସମସ୍ତେ ଇସାରା କରୁଛନ୍ତି ମୋତେ— ଫୁରୁଫୁରୁ ହୋଇ, ଫଡ଼ଫଡ଼ ହୋଇ, ବାଡ଼ର ଜାଲି ଭିତରେ ମୁଣ୍ଡ ଗଳେଇ । ଗୋଟିକି ଗୋଟି । ଏବଂ କହୁଛନ୍ତି ସାବାସ୍, ୱେଲ ଡନ୍ !

ବର୍ଷାଧୁଆ ପୃଥିବୀର ଉଜ୍ଜ୍ୱଳ ପ୍ରଭାତ ପହିଲି ଶରତର ହୋଇପାରେ, ବହିପଢ଼ା ପାଠ ଅନୁଯାୟୀ । କିନ୍ତୁ ମୁଁ ଯଦି ମୋ ପ୍ରକୃତିକୁ ଜାଣିଥାଏ, ତା'ହେଲେ ଲେଖିନିଅ ମୋଠୁଁ ଯେ ଆଜି ସେମାନେ ଉଚିତରୁ ଅଧିକ ତେଜି ଉଠିଛନ୍ତି, ଏବଂ ମୋତେ ଅଭିନନ୍ଦନ ଜଣାଉଛନ୍ତି । ଆଉ କିଏ କେମିତି ଭଲା ବୁଝିବ ଆମ ଭିତରେ ଚାଲିଥିବା କେତେ ଦିନର ଓ କେତେ ଅନ୍ତରଙ୍ଗ ଆଳାପର ଭାଷା ?

କିନ୍ତୁ ମୋ ଲୋକମାନେ ମଧ୍ଯ ବୁଝିବେ, ତାଙ୍କର ବୁଝିବା ଉଚିତ, ମୋର ଏଇ ଆନନ୍ଦର କାରଣ କଅଣ । ତା'ର ମର୍ଯ୍ୟାଦା, ତା'ର ମାହାତ୍ମ୍ୟ । ଯେଉଁ ଲୋକମାନେ ମୋତେ ଭଲ ପାଆନ୍ତି । ଅବଶ୍ୟ ସମସ୍ତେ ମୋତେ ଭଲ ପାଆନ୍ତି, ଯେଉଁମାନେ ମୋ ସଂସ୍ପର୍ଶରେ ଆସିଛନ୍ତି । ସୁଦୂର ଦିଦିଙ୍କଠାରୁ ଆରମ୍ଭ କରି, ଇଚ୍ଛାପୁରୀର ସାନସାନ ପିଲାଙ୍କଯାଏଁ, ଯାହାଙ୍କର ମୁଁ ଫେଭରିଟ୍ ଆଣ୍ଟି ।

ହେଲେ ପ୍ରଥମେ ମୋ ସ୍ୱାମୀ, ମୋ ଝିଅ, ମୋ ବାପମାଆ, ଭାଇଭଉଣୀ । କବି ହିସାବରେ ମୁଁ ସାର୍ବଜନୀନ ହୋଇପାରେ, କିନ୍ତୁ ପ୍ରଥମେ ମୋ ପରିବାର । ତାଙ୍କରି ଅଗ୍ରାଧିକାର ମୋ ଉପରେ ।

ଆରେ, ତମେ ସତରେ ମୋ ଉପରେ ଟିକିଏ ରାଗିଗଲ ନା କ'ଣ ସେତେବେଳେ ? କିନ୍ତୁ କେମିତି ବୁଝୁ ନାହଁ, ଗୋଟାଏ ଗୋଟାଏ ମୁହୂର୍ତ୍ତ ଆସେ, ଉପଲବ୍ଧିର ମୁହୂର୍ତ୍ତ, ଅଶରୀରୀ ଉତ୍ତରଣର ମୁହୂର୍ତ୍ତ, ଯେତେବେଳେ ମଣିଷ ଦେହର ମଣିଷ ହୋଇ ରହେ ନାହିଁ, ତେଣୁ ସେ ଚାହେଁ ନାହିଁ କିଏ ତା'କୁ ଚେତେଇଦେବ ଯେ ସେ ବି' ଗୋଟାଏ ଦେହ, ସ୍ଥୂଳ, ଇତର...ମୋର ଠିକ୍ ସେମିତି ମନେ ହେଉଥିଲା ଦିଦିଙ୍କ ଅମୃତବାଣୀ ଶୁଣିଲାବେଳେ । ଦିବ୍ୟଜ୍ୟୋତିର ଅମୃତ ନୁହେଁ,

ତାଙ୍କରି ବଚନାମୃତ । ଅବଶ୍ୟ ଦି'ଟାଯାକ ମିଶିଯିବାରୁ ମୁଁ କୋଉ ସ୍ୱର୍ଗରେ ପହୁଞ୍ଚିଥିଲି ସେତେବେଳେ ।

ମୋତେ ଭୁଲ୍ ବୁଝ ନାହିଁ ସନାତନବାବୁ, ମୋ ସ୍ୱାମୀ, ମୋ ତନୁର ବାପା । ମୁଁ ତମକୁ ଭଲପାଏ, ଅବଶ୍ୟ ଭଲପାଏ । ସବୁ ସ୍ତ୍ରୀ ତାଙ୍କ ସ୍ୱାମୀମାନଙ୍କୁ ଯେମିତି ଭଲପାଆନ୍ତି, ତା'ଠୁଁ ବେଶୀ ହେବ ପଛେ କମ୍ ନୁହେଁ । କିନ୍ତୁ ମାଇଁ ଡିଅରେଷ୍ଟ, ମୋର ସେହି ଏକାନ୍ତ କାବ୍ୟିକ ଅନୁଭବ ଉପଲବ୍ଧି ନ ହେଲେ ବି' ତା'ର ପାଖାପାଖି, ତା' ଭିତରକୁ ତମେ ଆସିପାରିବ ନାହିଁ । ମୋ ଦୋଷ ନୁହେଁ । ତମକୁ କିଏ କହୁଥିଲା କବିଟିଏକୁ ବାହା ହେବାପାଇଁ ?

କିନ୍ତୁ ଆଜି ତମେ ଭାଗୀ ହେବ ମୋ ଆନନ୍ଦରେ । ମୋର ସେତିକି ପାଉଣା ତୁମଠାରୁ । ମୁଁ ଜାଣିଛି ମ, ତମେ ରାଗି ନାହଁ ମୋ ଉପରେ । ତମପରି ଉଦାର ସ୍ୱାମୀଟିଏ ଅଛି କୋଉଠି ଏ ପୃଥିବୀରେ ?

ଶୈଳ ଘର ଭିତରକୁ ଯାଇ ଖୋଜିବସିଲା ସନାତନବାବୁଙ୍କୁ । ଦେଖିଲା ବାବୁ ମଝିଘର ଚଉକିରେ ବସି ଖବରକାଗଜ ପଢୁଛନ୍ତି । ଶୈଳ ଖବରକାଗଜ ହଟେଇଦେଲା ତାଙ୍କ ମୁହଁ ଉପରୁ । କିନ୍ତୁ ସେଇଠୁଁ ସେ ଅଟକିଗଲା । ଯାହା କହିବାକୁ ଚାହୁଁଥିଲା କହିପାରିଲା ନାହିଁ । ଠିକ୍ କ'ଣ କହିବାକୁ ଚାହୁଁଥିଲା, ତା' ବି' ଭୁଲିଗଲା ।

କ'ଣ ହେଲା ? ସ୍ୱାମୀଙ୍କ ଉଦାରପ୍ରସନ୍ନ ମୁହଁ ଏତେ ଅଧିକ ଉଦାର ଓ ପ୍ରସନ୍ନ ଦେଖାଗଲା ଯେ ତା' ଆନନ୍ଦର କୁଳୁକୁଳୁ ବାଟ ପାଇଲା ନାହିଁ ସେଥିର ନୀରନ୍ଧ୍ର ମସୃଣତା ଭିତରେ ପଶିବାପାଇଁ ? ନା ଉଦାରତା ଭିତରେ କେଉଁ ସମ୍ଭ୍ରାନ୍ତ ଉଦାସୀନତା ଫୁଟିଉଠୁଛି ବୋଲି ତା'ର ମନେ ହେଲା, ଯାହାକୁ ଦେଖି ସେ ଶଙ୍କିଗଲା ?

ତଥାପି ସେ ନିଜକୁ ଛାଟ ମାରିଲା କିଛି କହିବା ପାଇଁ । ଦିବ୍ୟଜ୍ୟୋତି ପୁରସ୍କାରର ନାଆଁ ଶୁଣିଛନ୍ତି ସିନା, (ନ ହେଲେ ଏମିତି ଆକ୍ରମଣ କରି ନ ଥାଆନ୍ତେ ମୋ ଉପରେ) କିନ୍ତୁ ସେ କ'ଣ ଜାଣିଛନ୍ତି ତା'ର ପ୍ରତିଷ୍ଠା କେତେ ବେଶି ଆମ ଲେଖକ-ସାହିତ୍ୟିକଙ୍କ ମହଲରେ ? ସେ ବିଷୟରେ କିଛି କହିଲେ ହେବ ।

ନ ହେଲେ ସିଧାସଳଖ କହିବି—ଜାଣିଛ ? ମୁଁ ଆଜି ଭାରୀ ଖୁସି, ଏମିତି ଖୁସି କେବେହେଲେ ହୋଇ ନ ଥିଲି ଏଥି ପୂର୍ବରୁ । ଅତଏବ...ଅତଏବ...ତମେ ପୁଣି ଥରେ ଆକ୍ରମଣ କରୁ ନା' ମୋ ଉପରେ ? ଯୋଉ କାମଟା ଅଧା ରହିଗଲା ମୋ ଯୋଗୁଁ—ଆଇ ଆମ୍ ସରି—ତା'କୁ ପୂରା କରିଦେଉନା ?

ମୁଁ କ'ଣ ମନା କରୁଛି ? ବୁଦ୍‌ବକ୍, ବୁଝିପାରୁନ' ଯେ ମୁଁ ଖାସ୍ ସେଇଥିପାଇଁ ଆସିଛି ତମ ପାଖକୁ, ଆଉ ଖବରକାଗଜଟା ହଟେଇଦେଇଛି ତମ ମୁହଁ ଉପରୁ ?

କିନ୍ତୁ ତାଙ୍କ ପ୍ରସନ୍ନ ବଦନରେ ଯେଉଁ ସ୍ଥିର, ହେଲେ ଧାରୁଆ ହସଟିଏ ବିଦ୍ୟମାନ ଥିଲା, ତାହା ଶୈଳକୁ ପଦୁଟିଏ କଥା କୁହାଇଦେଲା ନାହିଁ । ସତେ କି ସେଥିରେ ଉଦାସୀନତାରୁ ବଳି ଆଉ କିଛି ଅଛି, ଅଧିକ ସକ୍ରିୟ । ହୁଏତ ଆମୋଦ, ହୁଏତ ବିଦ୍ରୂପ ।

ତଥାପି· ଶୈଳ ନିଜକୁ ହାରିବାକୁ ଦେଲା ନାହିଁ । ସ୍ୱାମୀଙ୍କ ହାତ ଧରି କହିଲା—"ଶୁଣ, ମୁଁ କ'ଣ କହୁଛି । ତମର ଟିକିଏ ସମୟ ହେବ, ଆଜିକାଲି ଭିତରେ ମୋତେ ପାଲିଙ୍କିପୁର ନେଇଯିବାପାଇଁ, ବାପାବୋଉଙ୍କ ପାଖକୁ ? ସେ କେତେ ଖୁସି ହୁଅନ୍ତେ ମୋର ଏଇ ଖବର ଶୁଣି—"

ସନାତନବାବୁ ଟିକିଏ କୁନ୍ଥୁକୁନ୍ଥୁ ହୋଇଥିଲେ କଥାଟା ଭିନ୍ନ ହୋଇଥାଆନ୍ତା । ସେ ପାଲଟା ରାଗ ଅଭିମାନ କରିଥାଆନ୍ତା ତାଙ୍କ ଉପରେ । କିନ୍ତୁ ସେଭଳି ସୁଯୋଗ ମିଳିଲା ନାହିଁ ତା'କୁ । ସନାତନବାବୁ ଶାନ୍ତ, ସସ୍ମିତ, ଅବିଚଳିତ ଭଙ୍ଗୀରେ କହିଲେ—"ସିଓର୍ ! ଏଇକ୍ଷଣି ଯିବା ନା ଉପରବେଳା ?"

X X X ଶୈଳର ମନେହେଲା ଖବରଟା କେମିତି କେଜାଣି ପହୁଞ୍ଚିଯାଇଛି ବାପା ବୋଉଙ୍କ ପାଖରେ, ସେ ଆସିବା ଆଗରୁ । ଯଦିଓ ସେଭଳି ଧାରଣାର କୌଣସି କାରଣ ନ ଥିଲା । ଖବରକାଗଜରେ ବାହାରି ନାହିଁ କିଛି ଏତେବେଳଯାଏଁ । ସେଥିର ସମୟ ହୋଇ ନାହିଁ । ତେଣୁ ପାଲିଙ୍କିପୁରର ବିମ୍ବାଧରବାବୁ କି ତାଙ୍କ ସ୍ତ୍ରୀ ଆଗତୁରା ଜାଣିନେଇଥିବେ ସେ ବିଷୟରେ, ତା'ର ସମ୍ଭାବନା ସୁଦୂର ପରାହତ । ତଥାପି ଶୈଳର ମନେହେଲା ସେମାନେ ଜାଣିନେଇଛନ୍ତି—ବାପା ବୋଉ ଯେତେହେଲେ ।

...ମୁଁ କେବଳ ଜଣେ ପ୍ରସିଦ୍ଧ କବି ନୁହେଁ, ମୁଁ ମଧ୍ୟ ମୋ ବାପାବୋଉଙ୍କ ଝିଅ । ଗେହ୍ଲା ଝିଅ, ଏକମାତ୍ର ନ ହେଲା ନାହିଁ । ଏବଂ ସେମାନଙ୍କର ମଧ୍ୟ ଯଥେଷ୍ଟ ଗର୍ବ କରିବାର ଅଛି ମୋତେ ନେଇ । ଆରେ, ମୁଁ କହୁଛି ପରା, ଖବରଟା ପହୁଞ୍ଚିଯାଇଛି ତାଙ୍କ ପାଖରେ, ତାଙ୍କ ଅଜାଣତରେ । ତାଙ୍କ ରକ୍ତରେ ସଞ୍ଚାଳିତ ହେଉଛି । ସେଇଲାଗି ସେମାନେ ଏମିତି ଖୁସି ଦେଖାଯାଉଛନ୍ତି । ବୋଉର ଆଣ୍ଠୁଗଣ୍ଠି ବାତ ଉଭେଇଯାଇଛି ଏବଂ ପୋଷ୍ଟମାଷ୍ଟରବାବୁଙ୍କର (କେବେଠୁଁ ରିଟାୟାର୍ କଲେଣି, ହେଲେ ଲୋକମୁଖରେ ସେ ଏବେ ମଧ୍ୟ ପୋଷ୍ଟମାଷ୍ଟର୍‌ବାବୁ) ଧଳା-କଳା ବହଳ ନିଶ ଗୋଟି ଗୋଟି କରି ଖଡ଼ା ହୋଇ ଉଠିଛି, ସମ୍ବାଦ ବିଶେଷକୁ ବାଢ଼ିବାପାଇଁ ଆଗନ୍ତୁକମାନଙ୍କ ଆଗରେ । ତାଙ୍କ ନିଜସ୍ୱ ଭଙ୍ଗୀରେ, ଲମ୍ୱେଇ

ଲମ୍ବେଇ । ଶୈଳର ସସ୍ନେହ ପରିହାସ କରିବାକୁ ମନ ହେଲା, ବାପାବୋଉଙ୍କ ସାଙ୍ଗରେ । ବୋଉକୁ ବି' ଥଟ୍ଟା କରିବ । କହିବ ସେ ଆହୁରି ମୋଟା ହୋଇଯାଇଛି ତା'କୁ ଗତଥର ଦେଖିଲା ଦିନଠୁଁ, ତା' ରଙ୍ଗ ଆହୁରି ଚହଟିଯାଇଛି, କାହିଁକି ନା 'ଟିକିବର'ଟିଏ, ମାନେ ମାଲଅପାର ଚାଇଁ ପୁଅ ଖଣ୍ଡକ—ଠିକ୍ ତା' ବାପ ଭଳିଆ— ଏଇଠି ରହୁଛି ଆଜିକାଲି ।

...ପ୍ରଥମେ ବୋଉକୁ କହିବି ନା ବାପାଙ୍କୁ ? ବୋଉକୁ କହିବି—ଶୁଣ, ତୋ' କାଳୀକାନୀ ଝିଅ କୋଉଠି ଯାଇ ପହୁଞ୍ଚିଲାଣି । ନା, ନା, ସେମିତି କିଛି କହିବି ନାହିଁ । କୋଉ ପିଲାଦିନର କଥା, ତା' ମନରେ କଷ୍ଟ ହେବ ।ଏକାଠି ଦି'ଜଣଙ୍କୁ କହିବି...

ଶେଷକୁ ଶୈଳ ସେଇଆ କଲା । ଉଭୟଙ୍କୁ ଜଣାଇଲା ଏକା ସାଙ୍ଗରେ ଏବଂ ସେମାନଙ୍କ ଉଚ୍ଛୁଳା ଆନନ୍ଦରେ ଉବୁଟୁବୁ ହେଲା, ଯାହା ସେ ଆଶା କରିଥିଲା । ବୋଉ ତା'କୁ କୁଣ୍ଢେଇ ପକେଇଲା ଏବଂ ବାପା ତା'କୁ ପାଖକୁ ଟାଣି ଆଣି ତା' ମୁଣ୍ଡ ବାଳକୁ ଖୁସୁଖୁସୁ କଲେ, ପିଲାଦିନେ ଯେମିତି କରୁଥିଲେ, ତାକୁ ଶୁଆଇ ପକେଇଲାବେଳେ । ଶୈଳର ସାହସ ହେଲା ନାହିଁ ତାଙ୍କ ମୁହଁକୁ ଅନେଇବାଲାଗି, କାଳେ ସେ ଆନନ୍ଦାଶ୍ରୁ ଦେଖିବାକୁ ପାଇବେ ତାଙ୍କ ଆଖିରେ ।

ସନ୍ତାନପଣର ଏଇ ପରମ ସୁଖବୋଧ ହେତୁ ସେ ବାପାବୋଉଙ୍କ ନିର୍ବୋଧ ମନ୍ତବ୍ୟ କେଇଟାକୁ ଘେନା କଲା ନାହିଁ । ବାପା ଯେତେବେଳେ କହିଲେ—ଇଏ ହେଉଛି ତୋ'ର ଦ୍ୱିତୀୟ ପୁରସ୍କାର, ନୁହେଁ ? ପ୍ରଥମେ ଅରୁନ୍ଧତୀ... । ହେ ଭଗବାନ୍ । ଏତେ କଥା କହିଲା ପରେ ତମେ ଏଇଆ ବୁଝିଲ ? କାହିଁ ରାଣୀ, କାହିଁ ଚନ୍ଦ୍ରକାଣୀ ! କାହିଁ ଦିବ୍ୟଜ୍ୟୋତି, ଭାରତର ଏକ ମହାନ୍ ପୁରସ୍କାର, ଆଉ କାହିଁ ଗୋଟାଏ ଆମ ବାରିଆଡ଼ର ନଗଣ୍ୟ... । ଛାଡ଼, ତଥାପି ସେ ଯେମିତି ଖୁସି ହେଉଛନ୍ତି, ସେଇ ଲକ୍ଷେ ଟଙ୍କା । ଆଉ ବୋଉର ମନ୍ତବ୍ୟରେ ସେ ହସିବ କି କାନ୍ଦିବ ବୁଝିପାରିଲା ନାହିଁ । କହିଲା—ମୁଁ ସେଦିନ କହୁଥିଲି ପରା ନନ୍ଦ ଭାରିଯାକୁ ? ଯେ ମୋ ଝିଅ ଯେମିତିକା କବିତା ଲେଖୁଛି, ଆଉ ଯେମିତିକା ନାଆଁ କଲାଣି ନା, ଦେଖିବ ସେ ନୋବଲ୍ ପ୍ରାଇଜ୍ ପାଇବ କିଛିଦିନ ପରେ । ଆଉ ଦେଖ, ସେଇଆ ହେଲା ? 'ନୋବଲ୍ ପ୍ରାଇଜ୍' ନାଆଁଟା ବୋଉ କୋଉଠୁ ଶୁଣିଲା ଭଗବାନ୍ ଜାଣନ୍ତି । ତେବେ ଶୈଳ ନିଜକୁ ଟିକିଏ କୁତୁକୁତୁ କରିବାର ଲୋଭ ସମ୍ଭାଳି ପାରିଲା ନାହିଁ । — କଅଣ, ଭାବୁଛୁ କି ବୋଉର ତୁଣ୍ଡ ସୁତୁଣ୍ଡ ହେବ ? ରବୀନ୍ଦ୍ରନାଥଙ୍କ ପରେ ଶୈଳଜା ପଣ୍ଡା ?

ବାପା କେବଳ ସେତିକିରେ ରହିଲେ ନାହିଁ । ପବ୍ଲିକ୍ ଫୋନ୍‌ରୁ ଫୋନ୍ କଲେ ତାଙ୍କ ଅନ୍ୟ ପିଲାମାନଙ୍କୁ, ଯେଉଁମାନଙ୍କ ଘରେ ଫୋନ୍ ଅଛି ଏବଂ ସେମାନେ

ସମସ୍ତେ ତାଙ୍କ ହାର୍ଦ୍ଦିକ ବଧେଇ ପଠେଇଲେ ବାପାଙ୍କ ହାତରେ । ଏବଂ ମାଳ, ଯେ ପାଖରେ ଥାଏ କାଳିକା ନଗରରେ, ଯେଉଁଠି ଅରବିନ୍ଦବାବୁ ଏକ ଉଦୀୟମାନ ଆଡ୍‌ଭୋକେଟ୍, କହିଲା ଯେ ଦିନେ ଦି'ଦିନ ଭିତରେ ଆସି ପହଞ୍ଚିଯିବ । ଯେମିତି ହେଲେ ଏବଂ ଜୋଇଁବାବୁଙ୍କୁ ସାଙ୍ଗରେ ନେଇ । କହିଲା, ମୁଁ ନ ଗଲେ ବି' ସେ ତ ନିଶ୍ଚୟ ଯିବେ । ଶୈଳକୁ ପ୍ରାଇଜ୍ ମିଳିଛି ତା' କବିତାପାଇଁ, ଆଉ ସେ ଯିବେ ନାହିଁ ? ବିମ୍ବାଧରବାବୁ ଭାବିଲେ ଯେ ଇଏ ଗୋଟାଏ ସଧାରଣ ଶାଳୀ-ଭିଣୋଇ ରସିକତା, ଆଉ ମାଳ ତା'କୁ ଉସ୍‌କୋଉଛି । କିନ୍ତୁ ଶୈଳ ତା'ର ତାତ୍ପର୍ଯ୍ୟ ବୁଝିଲା, ବାପା ଯେତେବେଳେ କଥାଟାକୁ ଦୋହରେଇଲେ ତା' ଆଗରେ ଏବଂ ମନେ ମନେ କୃତଜ୍ଞତା ଜଣାଇଲା ଅରୁଭାଇନାଙ୍କୁ ।

କିନ୍ତୁ ସେ ଭାବି ନ ଥିଲା ଅରୁଭାଇନା ଏତେଦୂର ଯିବେ ତାଙ୍କ ପାଉଣା ହାସଲ କରିବାଲାଗି, ଥଟ୍ଟାରେ ହେଉ ପଛେ । କାରଣ ଅରୁଭାଇନା ଆସୁ ନ ଆସୁଣୁ କହିଲେ ସନାତନବାବୁଙ୍କୁ ଦାବୀ କଲାପରି—"ଆପଣ ବୋଧହୁଏ ଜାଣିଥିବେ ଯେ ମୋରି ଯୋଗୁଁ ଆପଣଙ୍କ ସ୍ତ୍ରୀ କବି ବୋଲାଇଲେ । ମୁଇଁ ତାଙ୍କର ଗୋଟିଏ କବିତା ଛପେଇଥିଲି 'ସୁରଭି'ରେ, ତାଙ୍କ କଥା ନ ମାନି, ଏବଂ ସେଇ ପ୍ରଥମ ପଦକ୍ଷେପଟି ନିଆହୋଇ ନ ଥିଲେ ଶୈଳଜା ଆଜି ଏଇ ଚନ୍ଦ୍ରଲୋକରେ ପହଞ୍ଚିପାରି ନ ଥାଆନ୍ତେ । ସେହେତୁ ମୋର ବି' ଗୋଟିଏ ପୁରସ୍କାର ଲୋଡ଼ା, ମୋର ଅବଦାନ ଯୋଗୁଁ । ଆପଣ ରାଜି ଅଛନ୍ତି ତ ?"

"ଅବଶ୍ୟ", ସନାତନବାବୁ କହିଲେ, କୃତ୍ରିମ ଗମ୍ଭୀରତା ସହ ।

"ମୋର ଟଙ୍କା ସୁନା ଲୋଡ଼ା ନାହିଁ । ଖାଲି ଆପଣଙ୍କ ସ୍ତ୍ରୀଙ୍କୁ ଥରୁଟାଏ ଆଲିଙ୍ଗନ କରିପାରିବି କି ?"

ସହଜେ ଶୈଳର ମୁହଁ ରଙ୍ଗା ପଡ଼ିଗଲା ଅରୁଭାଇନାଙ୍କ ଅଭଦ୍ର ପରିହାସରେ । କିନ୍ତୁ ସେ ପ୍ରସ୍ତୁତ ନ ଥିଲା ଏଭଳି ଏକ ଉତ୍ତର ଶୁଣିବ ତା' ସ୍ୱାମୀଙ୍କଠାରୁ ।

"ପ୍ଲିଜ୍ ଗୋ ଆହେଡ୍", ସନାତନବାବୁ କହିଲେ, "ମୋର ତିଳେ ମାତ୍ର ଆପତ୍ତି ନାହିଁ । ଆପତ୍ତି ନାହିଁ କି ଅଧିକାର । କାରଣ ସେ ପ୍ରଥମେ କବି, ତା'ପରେ ଆଉ ଯାହା । ତେବେ ଏଭଳି ଗୋଟିଏ କବିର ସ୍ୱାମୀ ହେବା କ'ଣ ଯଥେଷ୍ଟ ଗୌରବ ନୁହେଁ ମୋ ପାଇଁ ?"

ଶୈଳ ଥରେ ଅନାଇଲା ସ୍ୱାମୀଙ୍କ ଆଡ଼କୁ, ସେଇଠୁଁ ଅରୁଭାଇନାଙ୍କ ଆଡ଼କୁ । ଦୁହେଁ ସସ୍ମିତ । ଏକ ଚାରୁଚତୁର ଆଦାନ ପ୍ରଦାନକୁ ଉପଭୋଗ କଲାପରି । ଯଦିଓ ଭିଣୋଇଙ୍କ ଲଘୁ ପରିହାସ ଖାପ୍ ଖାଇ ନ ଥିବ ସ୍ୱାମୀ ଉବାଚର ପ୍ରଚ୍ଛନ୍ନ ଅର୍ଥ ସାଙ୍ଗରେ ଯାହା କେବଳ ଶୈଳକୁ ଜଣା ।

ହଠାତ୍ ଶୈଳର ମନ ବିଦ୍ରୋହ କରି ଉଠିଲା । ତା'ର ମନେହେଲା ଯେ ଏଇ ଦିଆନିଆରେ ରସିକତା ଥାଉ ବା ବିଦ୍ରୂପ, ଅଥବା ମିଛିମିଛିକା ମାନ ଅଭିମାନ, ଦିହିଁଙ୍କି ଦିହେଁ ନିଷ୍ଠୁର । ଯେଉଁ ନିଷ୍ଠୁରତା ଆମ ପୁରୁଷାୟିତ ସମାଜର 'ବଡ଼ପଣ' ବୋଲି ଧରି ନିଆଯାଏ । ଶୈଳ ନାରୀକବି ହୋଇପାରେ କି ଆଉ ଯାହା, ସେ ଯେତେହେଲେ ଗୋଟିଏ ନାରୀ, ପତ୍ନୀ, ଏବଂ ଶାଳୀ । ସେଇ ହେଉଛି ତା'ର ଅସଲ ସ୍ୱରୂପ । ଯାହା ସହଜେ ସାନ ଏବଂ ସାମାନ୍ୟ ।

ନା ! ଶୈଳ ମନେ ମନେ ପାଟି କରିଉଠିଲା ଏବଂ ସେଠୁଁ ଚାଲିଆସିଲା, ତା' ବିରକ୍ତିର ସୁସ୍ପଷ୍ଟ ସୂଚନା ଦେଇ ।

...ମୋର ବାସ୍ତବ ସ୍ୱରୂପ ହେଉଛି ଯେ ମୁଁ ଜଣେ କବି । ଯାହା ମୋ ଜୀବନର ଆଧାର ! ବାକୀ ସବୁ ବାହ୍ୟ, ସାମାଜିକ, ଯାହାର ସମ୍ପର୍କ କେବଳ ଖାଇପିଇ, ଦେହର ବିଭିନ୍ନ ଭୋକ ମେଣ୍ଟାଇ, ବଞ୍ଚିରହିବା ସାଙ୍ଗରେ । ସେମିତିକା ବଞ୍ଚି ରହିବାକୁ ଜୀବନ କୁହାଯାଏ ନାହିଁ । କିନ୍ତୁ ଥ୍ୟାଙ୍କ୍ ଗଡ୍, ଥ୍ୟାଙ୍କ୍ସ୍ ଟୁ ଦିଦି, ଥ୍ୟାଙ୍କ୍ସ୍ ଟୁ ଦିବ୍ୟଜ୍ୟୋତିର ବିଚାରକମଣ୍ଡଳୀ, ମୁଁ ଆଜି ସେହି ସମ୍ମାନ ଦେଇପାରୁଛି ନିଜକୁ ଏବଂ ଦେବି, ଅଲବତ୍ ଦେବି । ମୋ କାବ୍ୟମାନସକୁ ମୁଁ କେବେହେଲେ ତଳେ ପକେଇବି ନାହିଁ । କେବେହେଲେ ତା'ର ଅବମାନନା କରିବି ନାହିଁ— ବୁଝିଲ ?

ତମେ ଯାହା କହୁଥିଲ ସନାତନବାବୁ, ମୋ ଝିଅର ବାପା, ତାହାହିଁ ସତ । ମୋ ପରି ଜଣେ କବିର ସ୍ୱାମୀ ହୋଇପାରିଛ, ଏଇ ହେଉଛି ମନେରଖିବା କଥା । ଆମ ଦିହିଁଙ୍କ ପାଇଁ । ତେଣୁ ତମେ ମୋତେ ଭୁଲ୍ ବୁଝିଛ କି ମୋ ପ୍ରତି ଅନ୍ୟାୟ କରିଛ, ସେ ବିଷୟରେ ଭାବିବା ବୃଥା । ସେଥିରେ କିଛି ଯାଏ ଆସେ ନାହିଁ କବି ଶୈଳଜା ପଣ୍ଡାର...

ସାନ ଶୈଳ ବେଶ୍ ଉଚ୍ଚ ହୋଇ ସାରିଥିଲା ପାଲିଙ୍କିପୁର ଛାଡ଼ିବା ପୂର୍ବରୁ ଏବଂ କଲୋନୀରେ ପହୁଞ୍ଚୁ ନ ପହୁଞ୍ଚୁଣୁ ଯେତେବେଳେ ସେ ତା' ଫଟୋ ଦେଖିଲା ଓଡ଼ିଆ ତଥା ଟାଇମ୍ସ ଅଫ୍ ଇଣ୍ଡିଆ, ହିନ୍ଦୁସ୍ତାନ ଟାଇମ୍ସ, ଆଦି ସର୍ବଭାରତୀୟ ଇଂରେଜୀ ଖବରକାଗଜମାନଙ୍କରେ ଏବଂ ଘନ ଘନ ଫୋନ୍ ବାଜିଉଠିଲା ତା'କୁ ବଧେଇ ଦେବାପାଇଁ, ସେ ସେଥିରେ ପୋତି ହୋଇପଡ଼ିଲା ନାହିଁ । ଠିକଣା ଧନ୍ୟବାଦ ଦେଲା, ଯଥାବିଧି ନମ୍ରତା ସହ ଆତ୍ମବିଶ୍ୱାସର ପରାକାଷ୍ଠା ଦେଖାଇ । ପୁରୁଖା ନେତାଙ୍କ ପରି ମଧ୍ୟ ଆପଏଣ୍ଟମେଣ୍ଟ୍ ଦେଲା, ତା'ର ଖୁନ୍ଦି ହୋଇଉଠୁଥିବା କ୍ୟାଲେଣ୍ଡରକୁ ପୁଣି ଥରେ ଚେକ୍ କରି । କିଏ ଭଲା ଭାବିପାରିବ ଯେ ଦି'ଦିନ ତଳେ ସେ ତା ଦିଦିଙ୍କୁ କହୁଥିଲା ଫୋନ୍‌ରେ, ଯେ ସେ ଡରୁଛି କାଳେ ପୁରସ୍କାର ଗ୍ରହଣର ମଞ୍ଚରେ ସେ ହାମୁଡ଼େଇ ପଡ଼ିବ କି ତା' ପାଟି ଖନି ବାଜିଯିବ ?

ଏହି ପର୍ଯ୍ୟାୟରେ ଅନୁଷ୍ଠିତ ହୋଇଥିଲା ସେହି ଅବିସ୍ମରଣୀୟ ସାକ୍ଷାତ 'ଜାଗରଣ'ର ସମ୍ପାଦକଙ୍କ ସାଙ୍ଗରେ । ସନାତନବାବୁ ନିଜେ ତରୁଣ ସମ୍ପାଦକଙ୍କୁ ପାଛୋଟିଆଣି ଡ୍ରଇଂରୁମ୍‌ରେ ବସାଇଥିଲେ ଏବଂ ଔପଚାରିକ ପରିଚୟ ପର୍ବ ପରେ ତାଙ୍କୁ କହିଥିଲେ ଆହ୍ୱାନ କଲାପରି—"ନାଓ, ହିଅର୍ ଇଜ୍ ୟୋର୍ ଭିକ୍ଟିମ୍ । ବାଏ !"

"ଭିକ୍ଟିମ୍ ? ମାନେ ଆପଣ ମନେକରନ୍ତି ମୁଁ ଜଣେ ଶିକାରୀ ଏବଂ ଆପଣ ଇଚ୍ଛାପୂର୍ବକ ଆପଣଙ୍କ ପତ୍ନୀଙ୍କୁ ଛାଡ଼ିଦେଇଛନ୍ତି ମୋର ଶିକାର ହେବାପାଇଁ ?" ସମ୍ପାଦକ ଈଶାନ୍ ପାତ୍ର ପଚାରିଲେ ତାଙ୍କୁ ।

"ହଁ, ଉପସ୍ଥିତ କ୍ଷେତ୍ରରେ ସେ ଜଣେ ପୁରସ୍କାରପ୍ରାପ୍ତ କବି, ତେଣୁ ମିଡ଼ିଆର ଭୋଜ୍ୟ । ସେହେତୁ ମୋର କର୍ତ୍ତବ୍ୟ ହେଉଛି—"

"କ୍ଷମା କରିବେ ସନାତନବାବୁ । ସେହି ହିସାବରେ ଆପଣ ମଧ୍ୟ ମୋର ଭୋଜ୍ୟ, କବିଙ୍କର ସ୍ୱାମୀ ହୋଇଥିବାରୁ । ଅତଏବ ଆପଣ ଦୟାକରି ତାଙ୍କର ପାଖରେ ବସିବେ କି, ମୋର ଶରବ୍ୟ ହେବାପାଇଁ ?"

ଅଗତ୍ୟା ସନାତନବାବୁ ଶୈଳର ପାଖାପାଖି ବସିଥିଲେ, ଯେତେବେଳେ ବିଚକ୍ଷଣ ସମ୍ପାଦକ ଏହି ପ୍ରଶ୍ନଟିକୁ ପଚାରିଲେ ଶୈଳକୁ—

"ମିସେସ୍ ପଣ୍ଡା, ସାକ୍ଷାତ୍କାର ଶେଷ କଲା ପୂର୍ବରୁ ମୋର ଏହି ବିଶେଷ ପ୍ରଶ୍ନଟିଏ ପଚାରିବାର ଅଛି, ଯାହା ଅନେକ ପ୍ରତିଷ୍ଠିତ ବ୍ୟକ୍ତି ଏଡ଼ାଇ ଦେଇଥାଆନ୍ତି, ଯେକୌଣସି କାରଣରୁ । କିନ୍ତୁ ମୋର ଆଶା ଆପଣ ଏହାର ଉତ୍ତର ଦେବେ ନିଷ୍ଠାର ସହିତ ଏବଂ ସମ୍ପୂର୍ଣ୍ଣ ସଚେତନ ହୋଇ । —କହିବେ କି ଆପଣ କାହାଠାରୁ ପ୍ରେରଣା ପାଇଛନ୍ତି ? କିଏ ଆପଣଙ୍କ ଉପରେ ପ୍ରଭାବ ପକେଇଛି ତା'ର ସାହିତ୍ୟ ଜରିଆରେ ଅଥବା କିଏ ଆପଣଙ୍କୁ ପ୍ରୋତ୍ସାହିତ କରିଛି, ସେ କଥା ନୁହେଁ । ପ୍ରେରଣା, ଇନ୍ସପିରେସନ୍, ଯାହା ସମସ୍ତଙ୍କୁ ମିଳି ନ ଥାଏ । କିନ୍ତୁ ଯାହାକୁ ମିଳେ ତା' ଶିରାଧମନୀରେ ଚହଟିଯାଏ ଏବଂ ଏକ ଅଦମ୍ୟ ଏବଂ ଅନିର୍ବଚନୀୟ ତରଙ୍ଗର ସୃଷ୍ଟି କରେ..." । ସମ୍ପାଦକ ମହୋଦୟ ପ୍ରେରଣାର ଅପରିସୀମ ମହିମାରେ ବୁଡ଼େଇଦେଲେ ନିଜକୁ ।

ଏବଂ ଶୈଳ ଆଖି ବୁଜିଦେଲା, ପ୍ରଶ୍ନର ଉତ୍ତର ଦେଲା ପୂର୍ବରୁ । ସେହି ମହିମାକୁ ଅନୁଭବ କଲାପରି ।

କିନ୍ତୁ ତା'କୁ ବେଶି ସମୟ ଲାଗିଲା ନାହିଁ, ଆଖି ଖୋଲି ଯଥାର୍ଥ ଉତ୍ତରଟିଏ ବାଢ଼ିଦେବା ପାଇଁ । ବିନା ଦ୍ୱିଧାରେ ଏବଂ ତା'ର ନବଜାଗ୍ରତ କାବ୍ୟିକ ବ୍ୟକ୍ତିତ୍ୱକୁ ଥାପିଦେଇ ପ୍ରଶ୍ନକର୍ତ୍ତାଙ୍କ ଉପରେ । କହିଲା—

"କବି ରାମହରି ।"

"ୟୁ ମିନ୍ ପ୍ରଫେସର ରାମହରି ଦାସ, ଯିଏ ଯିଏ ଗୋଟାଏ ଭିନ୍ନ ଧରଣର କବିତା ଲେଖିଥାଆନ୍ତି... (ଅଜବ୍ ଧରଣର ବୋଲି କହିବାକୁ ସାହସ ହେଲା ନାହିଁ) କିନ୍ତୁ ଆପଣଙ୍କ ଲେଖା ତ ମୋଟେ ତାଙ୍କପରି ନୁହେଁ ?"

"ହୋଇଥିବ । କିନ୍ତୁ ସେ ହେଉଛନ୍ତି ମୋର ପ୍ରେରଣା, ମାନେ ତାଙ୍କର କାବ୍ୟମାନସ, ତାଙ୍କ କବିତା ପଛରେ ଥିବା ସାରସ୍ୱତ ଯନ୍ତ୍ରଣା, ଯାହାକୁ ମୁଁ ଅନୁଭବ କରିଛି ଏବଂ ସେହି ସହ-ଅନୁଭବ ମୋତେ ସଞ୍ଚାଳିତ କରିଛି ଆହୁରି କିଛି, ଆହୁରି ପଦେ ଲେଖିବା ପାଇଁ, ଯେଉଁଥିରେ ହୁଏତ ମୁକ୍ତି ମିଳିବ ସେହି ଯନ୍ତ୍ରଣାରୁ..."

ଏହା ପରେ କୌଣସି ସ୍ପଷ୍ଟୀକରଣର ଆବଶ୍ୟକତା ନ ଥିଲା । ସମ୍ପାଦକ ମହୋଦୟ କଥାଟାକୁ ହୃଦୟଙ୍ଗମ କଲାପରି ମନେହେଲା । କିନ୍ତୁ ଯତ୍‌ସାମାନ୍ୟ ବିସ୍ମିତ ହେଲାପରି । ଈଶାନ୍ ପାତ୍ର ଗୁରୁଗମ୍ଭୀର ମୁଦ୍ରାରେ ତାଙ୍କ ମୁଣ୍ଡକୁ ଉଠେଇଲେ ଏବଂ ପକେଇଲେ, କବିଙ୍କ ବକ୍ତବ୍ୟକୁ ଯଥାବିଧି ଟିପି ନେଲାବେଳେ ଏବଂ ତା'ରି ଭିତରେ ସେ ଥରେ ଅନେଇଥିଲେ ସନାତନବାବୁଙ୍କୁ, ଗୋଟାଏ ଅକୁହା ପ୍ରଶ୍ନ ପଚାରିଲା ପରି, ଯାହାର ଉତ୍ତର ସେ ଆଶା କରନ୍ତି ନାହିଁ ।

କିନ୍ତୁ ସ୍ୱାମୀଙ୍କ ସମ୍ଭାବିତ ପ୍ରତିକ୍ରିୟା ଆଦୌ ବିଚଳିତ କରି ନ ଥିଲା ଶୈଳକୁ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ କିମ୍ୱା ତା' ପରେ । ଇଏ ଗୋଟାଏ ନିରାଟ ସତ କଥା, କବି ଶୈଳଜାର ଅନୁଭୂତ ସତ୍ୟ, ତେଣୁ ତା'କୁ ଲୁଚେଇ ରଖିବା ଅନ୍ୟାୟ, ଏହି ଧର୍ମଧାରଣାରେ ପ୍ରତିଷ୍ଠିତ ହୋଇ । ସେ ଥରେ ହେଲେ ଅନେଇ ନ ଥିଲା ସନାତନବାବୁଙ୍କ ଆଡ଼କୁ ତାଙ୍କୁ ଆଶ୍ୱାସନା ଦେବାଲାଗି କିମ୍ୱା ଅନ୍ୟ କୌଣସି ଅର୍ଥରେ । ସେଥିରେ କୌଣସି କାରଣ ନ ଥିଲା ତା'ପାଇଁ ।

ଏହାର କିଛି ଦିନ ପରେ ସେ ଯେଉଁ ଚିଠି ପାଇଲା ରାମହରିବାବୁଙ୍କ ଠାରୁ, ତା'କୁ ପଢ଼ିଲାବେଳେ ମଧ୍ୟ ସନାତନବାବୁ ତା' ପାଖରେ ଥିଲେ । ସେହେତୁ ଶୈଳର ସହସା ଉଦ୍‌ଭାସିତ ବଦନ ମଧ୍ୟ ତାଙ୍କ ଆଖିରେ ପଡ଼ିଗଲା । କିନ୍ତୁ ସେ ତା'ର କାରଣ ପଚାରିଲେ ନାହିଁ । ଯେମିତିକି ସେ ଦ୍ୱିତୀୟଥର ପାଇଁ ପଚାରି ନ ଥିଲେ, ସେଦିନ ସକାଳର ଫୋନ୍ କେଉଁଠୁ ଆସିଥିଲା ବୋଲି । ଦୁଇଟିଯାକ ବାର୍ତ୍ତା ସେଇ ଜଣକଠାରୁ ଆସିଥିବ, ଏ ବିଷୟରେ ତାଙ୍କର କୌଣସି ସନ୍ଦେହ ନ ଥିଲା ।

ତେଣୁ ଶୈଳ ଯେତେବେଳେ କିଛି ସମୟ ପାଇଁ ଚିଠିଟିକୁ ମୁଠେଇ ଧରିଲା, ତା'ର ସାନ ଝାଳୁଆ ହାତରେ ଏବଂ ଏହି ଅପ୍ରତ୍ୟାଶିତ ନିମନ୍ତ୍ରଣର ମାହାତ୍ମ୍ୟକୁ ମନେ ମନେ ଅନୁଭବ କରୁଥିଲା, ତା'ର ବିହ୍ୱଳଭାବକୁ ମଧ୍ୟ ସେ ଲକ୍ଷ୍ୟ କରିଥିଲେ ଏବଂ ତା'ର ତାତ୍ପର୍ଯ୍ୟ ବୁଝି ନେଇଥିଲେ ।

ଶୈଳ ଯଥାକ୍ରମେ ସ୍ୱାମୀଙ୍କୁ ଜଣାଇଲା ଯେ ତା'କୁ କ୍ୟାପିଟାଲ୍‌କୁ ଯିବାକୁ ପଡ଼ିବ, ରାମହରିବାବୁଙ୍କ ସାଙ୍ଗରେ ଦେଖା କରିବାଲାଗି ଏବଂ ସନାତନବାବୁ କହିଲେ 'ଫାଇନ୍ !' କିଞ୍ଚିନ୍ମାତ୍ର ବିସ୍ମିତ ନ ହୋଇ । 'ଫାଇନ୍ !'ର ଅର୍ଥ ହେଲା—ମଲା, ମୁଁ କ'ଣ ଜାଣି ନ ଥିଲି, ସେଇଆ ହେବ ବୋଲି ? ସାରସ୍ୱତ ଇଚ୍ଛା, ସେଥିରେ କାହାର କ'ଣ କହିବାର ଅଛି ? ହେଲେ ଶୈଳକୁ କିଛି ଅଡୁଆ ଲାଗିଲା ନାହିଁ । ସେ ଭାବିପାରିଲା ନାହିଁ ଯେ ସ୍ୱାମୀଙ୍କ ପ୍ରତିକ୍ରିୟାରେ କିଛି ଅତିଶୟତା ଅଛି, ତା'କୁ ଆକ୍ଷେପ କଲାପରି ।

X X X କିଛି ଦିନ ପରେ, କ୍ୟାପିଟାଲ୍‌ରେ । କଲେଜ୍ ହତା ଭିତରେ ଥିବା ଗୋଟିଏ ଷ୍ଟାଫ୍ କ୍ୱାଟର୍ସର ଦାଣ୍ଡଘର । ମଝି ଟେବୁଲ୍‌ର ଦି'ପାଖରେ ଥିବା ସୋଫାରେ ମୁହାଁମୁହିଁ ହୋଇ ବସିଛନ୍ତି ଦି'ଜଣ । ମଧ୍ୟବୟସ୍କ କବି ରାମହରି ଏବଂ ଯୌବନକୁ ସଦ୍ୟ ପାରି ହୋଇ ଆସିଥିବା କବୟିତ୍ରୀ ଶୈଳଜା । ଦିହିଁଙ୍କର ମନେହେଲା ଯେ ଏଇ ପ୍ରଥମଥରପାଇଁ ସେମାନେ ଦେଖୁଛନ୍ତି ପରସ୍ପରକୁ ଦେଖିଲାପରି ଏବଂ ଏହି ଦର୍ଶନରୁ ଅନେକ କିଛି ବୁଝିବାର ଅଛି, ହେଲେ ତା'କୁ ବୁଝି ହେଉ ନାହିଁ ସହଜେ ।

ଶୈଳର ମନରେ ଆସୁଛି ଯେ ତାଙ୍କର ମୁହଁଟା ତା'ର ଅତି ପାଖରେ ଅଛି, ଉଚିତରୁ ଅଧିକ । ମୋତେ ଦେଖ୍, ଆଉ ବୁଝ୍ ବୋଲି ଚ୍ୟାଲେଞ୍ଜ୍ କଲାପରି ଏବଂ ତା'କୁ ଚିର୍ବୋଧ କୁହ କି ଅସୁନ୍ଦର ଅବା ଗାରିମାନ୍ୱିତ, ତା' ଆଡ଼କୁ ସିଧା ଅନେଇ ହେଉ ନାହିଁ । କିନ୍ତୁ ଏ ପାଖ ସେ ପାଖ ଦେଖିଲାରୁ ଆଉ କିଛି ହେଲେ ଆଖିରେ ପଡୁ ନାହିଁ । କାନ୍ଥରେ ଛବିଟିଏ କି ଫଟୋଟିଏ ଟଙ୍ଗା ହୋଇ ନାହିଁ । ସବୁ ସାଧା, ସିଲ୍‌ପଟ୍ । ଶୈଳର ମନେପଡ଼ିଲା ଦିଲ୍ଲୀରେ ଥିବା କେ-ବି-କେ ସାହେବ ଓ ନୀଲିମାଦି'ଙ୍କ ଘର । ସେଠି ଠିକଣା ଜାଗାରେ କିଛି ହେଲେ ଥିବ—ହୁସେନ୍‌ଙ୍କ ଘୋଡ଼ା, ତାଞ୍ଜୋରର ପାର୍ବତୀ କି ନାଲିଟକ୍‌ଟକ୍ ମ୍ୟାଗ୍ନୋଲିଆ ଫୁଲ, ଯେଉଁଥିରେ ତମେ ତମ ଦୃଷ୍ଟିକୁ ଥାପିଦେଇ ପାରିବ, ସାମ୍ନା ମଣିଷର ମୁଖଦର୍ଶନରୁ ଓହରିଯିବାଲାଗି । କିନ୍ତୁ ଏଠି କିଛି ବୋଲି କିଛି ନାହିଁ । ସତେକି ଜାଣିଶୁଣି ଏମିତି କରା ହୋଇଛି ଏବଂ ଖାସ୍ ତା'ରି ପାଇଁ । ଏହି ବହୁ-ଅପେକ୍ଷିତ ମୁହୂର୍ତ୍ତର ସଫଳତାପାଇଁ । କିନ୍ତୁ ଯାହା ଅପେକ୍ଷିତ, ତାହା ମଧ୍ୟ କ'ଣ ଅଭିଳକ୍ଷିତ ନୁହେଁ ? ତା'ହେଲେ ଶୈଳ, ତୋର କାହିଁକି ଇଚ୍ଛା ହେଉଛି ଏଠିକି ସେଠିକି ଅନେଇବାକୁ ? ତୋତେ କ'ଣ ଡର ମାଡୁଛି କି ଲୋ ? ଶୈଳ କହୁଛି ଧ୍ୟାଡ୍, ଭୟର ପ୍ରଶ୍ନ ଉଠୁ ନାହିଁ । କିନ୍ତୁ ମୋତେ ମାଡ଼ିପଡୁଛି । ତେଣୁ ମୁଁ କହିପାରୁ ନାହିଁ ଯାହା କହିବି ବୋଲି ଭାବିଥିଲି ।

ଏବଂ ରାମହରିବାବୁଙ୍କ ମନରେ ଆସୁଛି ଯେ ପାଖରେ, ଅତି ପାଖରେ ଥିବା ଏଇ ମୁହଁଟା କିଛି ମାଗିବାକୁ ଆସି ନାହିଁ ଏଥର । ତା'ର କୃଷ୍ଣ, ଘନ ଏବଂ ଘନିଷ୍ଠ ନାରୀପଣ ଓରଫ୍ କବିପଣ ତା'ର ଗୋଟାଏ ଜନ୍ମଗତ ଦାବୀ ସାବ୍ୟସ୍ତ କରିବାକୁ ଆସିଛି । କିନ୍ତୁ ହିଂସ୍ରତା କି ଆତୁରତା ନାହିଁ ତା' ଚାହାଣିରେ । କେବଳ ଗୋଟାଏ ଗଭୀର ଆତ୍ମପ୍ରତ୍ୟୟ । —ମୁଁ ତମଠାରୁ ପାଇବି, ଅବଶ୍ୟ ପାଇବି, ମୁଁ ଯାହା ଚାହେଁ । କିନ୍ତୁ ସେଥିରେ ତମର ଭାବିବାର କ'ଣ ଅଛି ? ହେଲେ ରାମହରିବାବୁ ତା'କୁ ଛିଗୁଲେଉଥିଲେ ମନେ ମନେ । ମୂର୍ଖ ବାଳିକା ! ତୁ ମୋତେ ଜାଣି ନାହୁଁ । କେହି ହେଲେ, ସେ ପୁଅ ହେଉ କି ଝିଅ, ବିଦୁଷୀ ହେଉ କି ପତିତା, ଅଧିକାର ଜମେଇପାରିବ ନାହିଁ ମୋ ଉପରେ । ସେଇ ମୋର କବଚକୁଣ୍ଡଳ । ମଧ୍ୟ ଜନ୍ମଗତ । ବୁଝିଲୁ ?

କ୍ରମଶଃ ମନେହେଲା ଯେ ରାମହରିବାବୁଙ୍କ ବ୍ୟକ୍ତିତ୍ୱ ଶୈଳର ନବୀକୃତ ବ୍ୟକ୍ତିତ୍ୱକୁ ଚହଲେଇ ଦେଉଛି । ଶୈଳର ଅସ୍ୱସ୍ତି ଆହୁରି ବଢ଼ିଗଲା, ଯଦିଓ ସେ ତା'କୁ ଭୟ ବୋଲି ସ୍ୱୀକାର କଲା ନାହିଁ । ହଁ, ମୋତେ ଲାଗୁଛି ମୁଁ ଗୋଟାଏ ନୁଖୁରା ଗୁହାର ଦୈତ୍ୟ ପାଖକୁ ଟାଣି ହୋଇ ଆସିଛି । ଏତେ ଦିନକେ । କିନ୍ତୁ ଏଥିରେ ଡରିବାର କଣ ଅଛି । ଏଇତ ମୋର ଭବିତବ୍ୟତା ! ମୋ କାବ୍ୟଜୀବନର ସଜୀବ, ସନ୍ନିକଟ, ଭଗବାନ୍ । ଭଗବାନ୍ ଯାହା ଦୈତ୍ୟ ସେଇଆ । ଆଲୋ, ତା'ହେଲେ ଆଉ ଅସୁବିଧା କଅଣ ? ସହଜ ହୋଇ ହସିଦେଉନୁ ତୋର ଲୋକପ୍ରିୟ ହସଟିଏ ? ଭବିତବ୍ୟତା ସାଙ୍ଗରେ ମିତ ବସିବା କ'ଣ ତୋର କର୍ତ୍ତବ୍ୟ, ଅନ୍ୟ ଅର୍ଥରେ କମନ୍‌ସେନ୍ସ ନୁହେଁ ?  ସେଇଠୁଁ ଶୈଳ ତା'ର ସ୍ୱକୀୟ ହସଟିଏ ଛାଡ଼ିଦେଇ କହିଲା, "ଅନେକ ଧନ୍ୟବାଦ ଆପଣଙ୍କୁ, ଯେ ମୋତେ ଏଇ ସୁଯୋଗ ଦେଇଛନ୍ତି, ମୋର ସୌଭାଗ୍ୟ..."

ରାମହରିବାବୁ ସେଇ ହସର ପ୍ରତିଦାନ ଦେଇଥିଲେ ସତ, କିନ୍ତୁ ବିମୁଗ୍ଧା ଶୈଳ ଛଡ଼ା କେହି ହେଲେ ଜାଣିପାରି ଥାଆନ୍ତା ଯେ ସିଏ ଗୋଟାଏ ଫମ୍ପା ହସ ଥିଲା । କାରଣ ସେ ପ୍ରକୃତରେ ନିଜକୁ ଆହୁରି ଆଣ୍ଟ କରିବାକୁ ଚାହୁଁଥିଲେ । ଯେ ସେ ହସୁ ବା କାନ୍ଦୁ ବା ଯେକୌଣସି ଭେଳିକି ଦେଖାଉ, ସେ ତା' ପାଲରେ ପଡ଼ିବାକୁ ନାରାଜ । ଅପରନ୍ତୁ ତାଙ୍କରି ଚଢ଼ଉ କରିବା କଥା ତା' ଉପରେ । ରାମହରି ଦାସ ଜାଣିବାକୁ ଚାହେଁ ତା' ପ୍ରେରଣା ଜିନିଷଟା କେଉଁ ଧାତୁରେ ଗଢ଼ା, ତା'ର ଅର୍ଥ କ'ଣ, ମତଲବ କ'ଣ...

ହେଲେ ସେ ସେହି ପ୍ରକାର କୌଣସି ପ୍ରଶ୍ନ ପଚାରିପାରିଲେ ନାହିଁ ତା'କୁ । କାରଣ ତାଙ୍କର ଆଶଙ୍କା ହେଲା ଯେ ତା'ର ଉତ୍ତରରେ ସେ ଯାହା କହିବ

ଗମ୍ଭୀର ହୋଇ, ଭାବାବେଗର ମହାନତା ଦେଖାଇ, ସେଇ ନିର୍ବୋଧ ମିଥ୍ୟାକୁ ସେ ବରଦାସ୍ତ କରିପାରିବେ ନାହିଁ । ସେହେତୁ ସେ ପଚାରି ବସିଲେ, "ତୁମ ନିଜ ବିଷୟରେ କିଛି କହିବ କି ? ତୁମର ଜନ୍ମ, ବାପମାଆ, ଘରସଂସାର କଥା... ଯଦି ତୁମର କିଛି ଆପତ୍ତି ନ ଥାଏ ।"

ଆପତ୍ତି ଦୂରର କଥା, ଶୈଳର ଛାତିରୁ ଗୋଟାଏ ବୋଝ ଖସିଗଲା । ଏଇ ଭଲ, କାରଣ ସେ ଯାହା କହିବାକୁ ଆସିଥିଲା, ତା'କୁ କଦାପି କହିପାରି ନ ଥାଆନ୍ତା । ଭୟ ନୁହେଁ, ଭୟର ପ୍ରଶ୍ନ ଉଠୁ ନାହିଁ, ସେ ଭାବିଲା ଯେ ତା'ର ଭାଷା ପାଉ ନାହିଁ ସେଇ ଗହନ ଭାବକୁ ପ୍ରକାଶ କରିବାପାଇଁ ।

ଏହିପରି ଭାବରେ ପ୍ରଥମ କେତୋଟି ନିର୍ବାକ୍ ମୁହୂର୍ତ୍ତର ଅବସାନ ହେଲା । ଆବିଷ୍କାରର ଅସ୍ୱସ୍ତି କଟିଗଲା ଏବଂ ଶୈଳ ଗଳଗଳ ହୋଇ ଗାଇଗଲା ତା'ର ଜୀବନ କାହାଣୀ, ଯାହାକୁ ରାମହରିବାବୁ ମନଦେଇ ଶୁଣିଲେ ।

କିନ୍ତୁ... ତା'ପରେ କ'ଣ ହେଲା ?

କିଛି ହେଲା ନାହିଁ । ବାହାରକୁ ଦେଖିଲେ ମନେହେବ କିଛି ହେଲା ନାହିଁ । ରାମହରିବାବୁ ତା' ଜୀବନ କାହାଣୀ ଶୁଣି ସସ୍ମିତ ଧନ୍ୟବାଦ ଦେଲେ । ସେଇଠୁଁ ଯଥାବିଧି ଅତିଥିସତ୍କାର କଲେ । ଶୈଳର ଭଦ୍ରତାସୂଚକ 'ନାହିଁ, ଥାଉ', 'ଆପଣ କାହିଁକି ଏତେ କଷ୍ଟ କରୁଛନ୍ତି ?' ଇତ୍ୟାଦିର ବାରଣକୁ ନ ମାନି ନିଜ ହାତରେ ଚା' ଜଳଖିଆ ଆଣି ଥୋଇଲେ, ଅତିଥିକୁ ବିଶେଷ ସମ୍ମାନ ଦେଲା ପରି ଏବଂ କହିଲେ ପୁଣି ଆସିବ, ତୁମ ନୂଆ କବିତା ପଢ଼େଇବ, ଯେଉଁଠୁ ଶୈଳ କହିଲା, ଧନ୍ୟବାଦ, କିନ୍ତୁ ପ୍ରଥମେ ଆପଣଙ୍କ କବିତା ।

ଶେଷକୁ ଶୈଳ ନିଜକୁ ବୁଝେଇଲା ଯେ ଏଇ ଭଲ । ଆମ ଭିତରେ ଏଇ ସହଜ ସ୍ୱଚ୍ଛନ୍ଦ ବନ୍ଧୁତାର ସୂତ୍ରପାତ । ଯାହା ପ୍ରେରଣାରେ ଆରମ୍ଭ ହେଲା ସ୍ରୋତସ୍ୱତୀ ହୋଇ, ତାହା ସ୍ୱଚ୍ଛନ୍ଦରେ ବହିଯାଉ ଏମିତି, ସୈକତିନୀ ପରି ।

କିନ୍ତୁ ଶୈଳ ଜାଣି ନ ଥିଲା ଯେ ରାମହରିବାବୁ ତା' ଜୀବନ କାହାଣୀକୁ ଶୁଣିବା ସଙ୍ଗେ ସଙ୍ଗେ କଥୁକୀର ଭିତିରି ଉଦ୍ଦେଶ୍ୟକୁ ମଧ ଅଣ୍ଡାଳୁଥିଲେ ।...ଦିବ୍ୟଜ୍ୟୋତି ଥିଲା ଗୋଟିଏ ବିଶିଷ୍ଟ ପୁରସ୍କାର, କିନ୍ତୁ ଜାତୀୟ ନୁହେଁ । ଯଥା, 'ଗଂଗୋତ୍ରୀ' ପୁରସ୍କାର ଏବଂ ଶେଷକୁ ସେଇ ଜାଜ୍ୱଲ୍ୟମାନ 'ବାଣୀସଂତାନ'ର ସ୍ୱର୍ଣ୍ଣପଦକ । ଯାହା ତିନିବର୍ଷରେ ଥରେ ମିଳିଥାଏ ଏବଂ ଯାହାକୁ ପ୍ରଦାନ କରିବାପାଇଁ ଭାରତ

ବାହାରୁ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ଆମନ୍ତ୍ରଣ କରାଯାଏ, ବିଶିଷ୍ଟ ଅତିଥି ରୂପେ । ଟୋକୀ କ'ଣ ସେହି ସବୁ ପୁରସ୍କାରର ସ୍ୱପ୍ନ ଦେଖୁଛି ଏବଂ ଆଗତୁରା ମୋତେ ବାନ୍ଧି ରଖିବାକୁ ଚାହେଁ ତା'ର ଜଣେ ଗୁଣୀଜ୍ଞାନୀ 'ମଉସା' ହିସାବରେ, ଯେ ସେ ଦିଗରେ କିଛି ସାହାଯ୍ୟ କରିପାରିବ ?

ସେଇଆ ହୋଇଥିବ । ତା' ଛଡ଼ା ଆଉ କ'ଣ ହୋଇପାରେ । କିନ୍ତୁ କୌତୁକରେ ସେ ଯାଇ ଗୋଟାଏ ସନ୍ଦେହକୁ ମଧ୍ୟ ପ୍ରଶ୍ରୟ ଦେଲେ । ... କିଏ ଜାଣିଛି, ସବୁ ସମ୍ଭବ ଏଇ ରହସ୍ୟମୟ ପୃଥିବୀରେ ମିଷ୍ଟିକ୍ କବିର କବିତାକୁ ଅନୁସରଣ କଲାପରି । ତେଣୁ ପୁରସ୍କାର ଫୁରସ୍କାର କଥା ଛାଡ଼, ସେ ମୋର ଶଯ୍ୟାସଙ୍ଗିନୀ ହେବାପାଇଁ ଚାହୁଁ ନ ଥିବ କାହିଁକି ? ଯଦି ସେ କୌଣସି ଜ୍ୟୋତିର ବଳୟ ଦେଖୁଛି ମୋ ମୁଣ୍ଡ ଚାରିପାଖରେ, ତା'କୁ କ'ଣ ସେ ଏକାନ୍ତ ନିଜର କରିବାକୁ ଚାହୁଁ ନ ଥିବ ? ହଉ, ମୁଁ କ'ଣ ମନା କରୁଛି ?

ସୁନ୍ଦରୀ ଯେମିତି ଗୋଟାଏ ମାଇକିନିଆ ଥିଲା ଏବଂ ଦରକାର ବେଳେ ମୋ କାମରେ ଆସିଲା, ତୁ ବି' ସେମିତି ଆଉ ଗୋଟାଏ ମାଇକିନିଆ ହୋଇପାରିବୁ । ମୁଁ ସେଥିରେ ବାଧା ଦେବି ନାହିଁ । କିନ୍ତୁ ଆଉ କିଛି ନୁହେଁ । କୋଉ ପ୍ରେମପ୍ରେମର ଦଖଲନାମା, କି ସେଇଭଳି କିଛି, ବୁଝିଲୁ ?''

ତେଣୁ ତାଙ୍କୁ ମୋଟେ ଭଲ ଲାଗିଲା ନାହିଁ, ଯେତେବେଳେ ତାଙ୍କୁ ପାଦ ଛୁଇଁ ପ୍ରଣାମ କଲା, ବିଦାୟ ନେଲା ପୂର୍ବରୁ ।

...ନା, ଇଏ ନୁହେଁ । ମୁଁ ଏସବୁ ଭାଣ୍ଡାମି ପସନ୍ଦ କରେ ନାହିଁ । ତୁ ମୋର ଝିଅ ନୁହଁ, କି ସାନଭଉଣୀ । ତୁ କେବଳ ଗୋଟାଏ ନାରୀ ମୋ ପାଇଁ । ଅନ୍ୟା, ଅପରା । ଏତିକି ପଶୁନାହିଁ ତୋ' ରୋମାଣ୍ଟିକ୍ ମଗଜରେ ?

ହଉ, ତୁ ଯଦି ତୋ ରୋମାଣ୍ଟିକ୍ ପଣିଆ ଦେଖାଇପାରୁ, ମୁଁ ମଧ୍ୟ ମୋ ମିଷ୍ଟିକ୍‌ପଣ ଜାହିର କରିପାରେ ତୋ ଉପରେ । ମାନେ ତୋତେ ବି' ରେପ୍ କରିପାରେ, ତାନ୍ତ୍ରିକ ଯୋଗୀ ପରି, ସୂର୍ଯ୍ୟଙ୍କୁ ଯେମିତି ଜୁଟେଇଛି ମୋ କବିତାରେ ପଚା ପାଳଗଦା ସାଙ୍ଗରେ ।

କିନ୍ତୁ କେଜାଣି କାହିଁକି ସେ ଗୋଟାଏ ତୀବ୍ର ବେଦନା ଅନୁଭବ କରୁଥିଲେ, ଏମିତି ଭାବିଲାବେଳେ । ସତେକି ସେ ଗୋଟିଏ ଅଭିଶପ୍ତ ଯୋଗୀ, ନିଜକୁ ହିଁ ଶାସ୍ତି ଦେଉଛନ୍ତି ।

## ସାତ

ଶୈଳର ମନେହେଲା ଯେ ସେ ଏଇ ପ୍ରଥମଥରପାଇଁ ବୁଝୁଛି ଅପରାହ୍ନଗୁଡ଼ାକର ଅବସାଦ ।

...କିଲୋ, ଇଏ କ'ଣ କୋଉ ନୂଆ କଥା ହେଇଛି ନା କ'ଣ ମ ? ଏଇ ସମୟକୁ କଲୋନୀର ପ୍ରତ୍ୟେକ ଘରଣୀ ଅନେଇଥିବ ଏମିତି, ତା' ନିଜର ନିସ୍ତେଜ ଆକାଶ ପୃଥିବୀକୁ । ଝୋଲାମରା ହୋଇ ପଡ଼ିଥିବା ଗଛ । ନିର୍ଜୀବ କା-କା । ସତେକି ଥାଇ ଥାଇ କିଛି ଗୋଟାଏ ଶବ୍ଦ କରିବାକୁ ହେବ, ନ ହେଲେ ସେମାନେ ଭାବିବେ ଯେ ଅଲକ୍ଷଣା କାଉ ମଲାଣି, ଗଲାଣି, ଧନ୍ୟବାଦ୍ ଏବଂ ଘରର ଯେତେକ ନିର୍ଜୀବ ବସ୍ତୁ ହଠାତ୍ ନିଜକୁ ଥାପି ଦେଉଥିବେ ତମ ଆଖି ଆଗରେ । ଆମକୁ ମଧ୍ୟ ଦେଖ, ଆମେ ମଧ୍ୟ ତମ ଚେତନାର ଉପାଦାନ ଯଦିଓ ଆମେ ଅଛୁ ବୋଲି ତମକୁ ଜଣା ନ ଥାଏ ସାଧାରଣତଃ । ଯଥା, ଉଗୁଡ଼େଇ ହୋଇ ପଡ଼ିଥିବା ଟୋକେଇ, ଯେଉଁଥିରେ କେବେ କେଉଁ ଫଳ ଭାର ଆସିଥିଲା ପାଲିଙ୍କିପୁରରୁ; ତନୁର ପରିତ୍ୟକ୍ତ ଟେଡ଼ୀ ବିଅର୍ ଯାହାକୁ ସେ ଦିନେ କୁଣ୍ଢେଇ କରି ଶୋଉଥିଲା, କିନ୍ତୁ ଏବେ ସେ ତା'କୁ ଦେଖିଲାକ୍ଷଣି କିକ୍ କରିବାକୁ ଚାହେଁ (ତନୁଟା ଅତି ବେଶି ଘୋଡ଼ୀଙ୍କ ପରି ହେଉଛି, ପୁଅ ପିଲାଙ୍କଠୁଁ ବଳି); ଟେରାକୋଟା ବେଙ୍ଗପାଟିଆ ଆସ୍-ଟ୍ରେ, ତା' ଭିତରକୁ ପାଉଁଶ ପକେଇବା ମନା, କିନ୍ତୁ ଥରେ ଜଣେ ଅତିଥି ଠିକ୍ ସେଇଆ କଲେ, ଅଥଚ ଭଦ୍ରଲୋକ ସ୍ୱାମୀ ତା'ର ତିଳେହେଲେ ପ୍ରତିବାଦ କଲେ ନାହିଁ (ଆଉ ଟିକିଏ କମ୍ ଭଦ୍ରଲୋକ ହୋଇଥିଲେ, ଆଉ ଯେ ବିଶେଷ କିଛି କ୍ଷତି ହୋଇଥାଆନ୍ତା ତା' ନୁହେଁ, ମୋଟେ ନୁହେଁ)... ଇତ୍ୟାଦି । ନିର୍ଜୀବମାନେ ନ୍ୟାୟ ମାଗୁଛନ୍ତି ତମଠୁଁ । ଚୋପା ମାଗୁଛନ୍ତି !.....

ଶୈଳକୁ ବିରକ୍ତ ଲାଗିଲା । ପାଟି କରି ଉଠିବାକୁ ଇଚ୍ଛା ହେଲା, ଯେମିତିକି ଅଳସୁଆମାନେ ଚେଇଁ ଉଠିବେ ଏବଂ କିଛି ଗୋଟାଏ କରିବେ ଯାହା ତାଙ୍କର କରିବା କଥା । ଜୀବିତର ଜୟଗାନ, ରଙ୍ଗ ଆଉ ରୂପର କୁହାଟ ଡ୍ୟାମ୍ ଇଟ୍ ! ମୁଁ ବି' ଶୋଇବି ଯାଉଛି ତା'ହେଲେ...

କେତେବେଳକେ ତା' ବିରକ୍ତିର ଅସଲ କାରଣ ଉଙ୍କି ମାରିଲା ତା' ମନରେ । କାରଣ ହେଉଛି ଏଇ ଯେ ସେ କବିତା ଲେଖି ନାହିଁ ଅନେକ ଦିନ ହେଲା । ସେଇଲାଗି ଏଇ ଅପରାହ୍ନଟା ମାଡ଼ି ବସୁଛି ତା'କୁ, ଯଦିଓ ଏହିଭଳି ଅପରାହ୍ନରେ ସେ କେଜାଣି କେତେ କବିତା ଲେଖିଆସିଛି । ଏକାନ୍ତରେ ଏକୁଟିଆ ପାଇଛି ତା' ପ୍ରକୃତିକୁ ଓ ତା' ସାଙ୍ଗରେ ରଙ୍ଗରସ ହୋଇଛି ।

ଆଉ କେହି ନିସ୍ତେଜ ନୁହେଁ, କି ନିର୍ଜୀବ । ସେଇ ନିଜେ ।

...ନାଇଁ ଲୋ, ଭୟ କରିବାର କିଛି ନାହିଁ । ତୋ ଲେଖନୀ ଶୁଖିଯାଇ ନାହିଁ । କଥା ହେଉଛି କ'ଣ କି ଦିବ୍ୟଜ୍ୟୋତି ପୁରସ୍କାର ପାଇଲା ପରେ ତୋର 'କିଛି ଗୋଟାଏ' ହୋଇଛି । ସାଧ ମେଣ୍ଟିଯିବା ପରର ଶୂନ୍ୟତା ? ଧ୍ୟାତ୍, ମୁଁ କେବେହେଲେ କୋଉ ପୁରସ୍କାର ଲୋଡ଼ି ନାହିଁ ଏବଂ ସେ ଦିଗରେ ମୋର କାଣିଚାଏ ଲୋଭ କି ଅଭିଳାଷ ନାହିଁ ।

ଓ-କେ । ତା'ହେଲେ କହିବି ଏଇ ନିଷ୍କ୍ରିୟତା କୋଉଥିପାଇଁ ? ଏଥର ଯେଉଁ କବିତା ଲେଖିବୁ, ତା'କୁ ତୋତେ ଦେଖାଇବାକୁ ପଡ଼ିବ ତୋ ଗୁରୁଙ୍କୁ । ସେଇଥିପାଇଁ ତୋ କଲମ ଚାଲୁ ନ ଥିବ ବୋଧହୁଏ । କାଳେ ତୋ କବିତା ତାଙ୍କ ନାପସନ୍ଦ ହେବ ଏବଂ ସେ ସେଥିରୁ ନାନା ଦୋଷ ଦୁର୍ବଳତା ବାହାର କରିବସିବେ, ଯାହାକି ଗୁରୁମାନଙ୍କର କର୍ତ୍ତବ୍ୟ । ଏଇଆ ନା ?

ମିଛ । ପୂରାପୂରି ମିଛ । ମୁଁ ଅବଶ୍ୟ ସ୍ୱୀକାର କରିଛି ଯେ ତାଙ୍କଠାରୁ ପାଇଛି ମୋ ସାରସ୍ୱତ ପ୍ରେରଣା, ମାନେ ତାଙ୍କ କବିତାରୁ । କେଉଁ ଏକ ଦିବ୍ୟ ଯନ୍ତ୍ରଣାର ସହାନୁଭବ । ବାସ୍, ସେତିକି ମାତ୍ର । ଆଉ କିଛି ନୁହେଁ । ମୁଁ କଦାପି ତାଙ୍କୁ ହସ୍ତକ୍ଷେପ କରିବାକୁ ଦେବି ନାହିଁ ମୋ କବିତାରେ । ଶୈଳଜା ଯେଉଁ ସ୍ୱାଧୀନତାର ଆନନ୍ଦ ପାଇଆସିଛି କଲମ ଧରିବା ଦିନଠୁଁ, ତା'ର ଯେତେକ ଧୂଳି ମଇଳା ଅଳିଆ ଆବର୍ଜନାକୁ ପୋଛି ଦେଇପାରିଛି ଏବଂ ଶୁଚିସ୍ନାତା ହୋଇ ଅନେଇପାରିଛି ସୂର୍ଯ୍ୟଙ୍କୁ, ସେ ମଧ୍ୟାହ୍ନର ହୁଅନ୍ତୁ କି ଅପରାହ୍ନର, ତା'କୁ ସେ କଦାପି ବ୍ୟାହତ ହେବାକୁ ଦେବ ନାହିଁ । ନେଭର୍ !...

ସେଇଠୁଁ ଶୈଳ ମନେପକାଇଲା ଜଣଙ୍କୁ । ଦିଦି । ...ଦିଦି ! ତମେ ଏଇକ୍ଷଣି ଥାଆନ୍ତ ନାହିଁ ମୋ ପାଖରେ ? ନିଷ୍କ୍ରିୟତା ହେଉ, କି ଦ୍ୱିଧା, ଦ୍ୱନ୍ଦ୍ୱ, ଅବସାଦ, ଯାହାହେଉ ପଛେ, ତମେଇ କେବଳ ମୋତେ ଉପରକୁ ଉଠେଇ ଆଣିପାରିଥାଆନ୍ତ ଖାଲି ଟିକିଏ ହସିଦେଇ, ମୋ ହାତ ତମ ଦି' ହାତ ମଝିରେ ରଖି ।

ସେ ଆଉ ଫୋନ୍ କରି ନାହାଁନ୍ତି ସେଇ ଦିନଠୁଁ । ଚିଠି ଖଣ୍ଡେ ବି' ଦେଇପାରି ଥାଆନ୍ତେ । ମୋ ଲମ୍ବା ଚିଠିର ଦି'ଧାଡ଼ିଆ ଉତ୍ତର ବି' ଚଳିଥାଆନ୍ତା । ଅବଶ୍ୟ ମୁଁ କୋଉ ପ୍ରଶ୍ନ ପଚାରି ନ ଥିଲି ଯେ ତା'ର ଉତ୍ତର ଦରକାର ଥିଲା । ହେଲେ ମୁଁ ଯାହା ଲେଖିଥିଲି, ଯେମିତି ଭାବରେ ଲେଖିଥିଲି, ତା'ର ମର୍ମ ତାଙ୍କ ପାଖରେ ପହୁଞ୍ଚିଛି କି ନାହିଁ ସେତିକି ଜାଣିବାପାଇଁ ମନ ହେଉଥିଲା । ଟିକିଏ ବେଶି ଭାବପ୍ରବଣ ହୋଇ ଲେଖିଥିଲି ହୁଏତ, ସେଇଥିପାଇଁ କ'ଣ [illegible] ମାଡ଼ିପଡୁଛି ? କ'ଣ ଲେଖିବେ ବୋଲି ଭାବିପାରୁ ନାହାନ୍ତି ?...

ଶୈଳ ମନକୁ ମନ ହସିଲା, ନିଜର ପ୍ରଗଳ୍ଭତାକୁ ଛିଗୁଲେଇଲାପରି । ... ତୁ କ'ଣ ଭାବୁଛୁ କି ନିଜକୁ ? ଏତିକି ବୁଝିପାରୁ ନାହୁଁ ଯେ ତୋ ପରି କେତେ ଗରାଖ, ତୋ'ଠାରୁ କେତେ ବରିଷ୍ଠ କଳାକାର, ଆଶାୟୀ କଳାକାର ତାଙ୍କ ଦ୍ୱାରା ଉପକୃତ ହୋଇଥିବେ ? ଏବଂ ସେମାନେ ଗଦ୍‌ଗଦ ହୋଇ କେତେ ଭଲି ଭାବ ଓ ଭାଷାର ଅର୍ଘ୍ୟ ବାଢ଼ିଦେଇ ନ ଥିବା ତାଙ୍କ ପାଦଦେଶରେ ? କୃତଜ୍ଞତା ଦେହସୁହା ହୋଇଯିବଣି ତାଙ୍କପାଇଁ । ଆଉ ଯଦି ସେ ପ୍ରତ୍ୟେକ ଅର୍ଘ୍ୟର ଅଙ୍ଗୀକାର ଦେଇ ବସିବେ ନା—

ଧ୍ୟାତ୍, ଅଙ୍ଗୀକାର ନୁହେଁ । ଅଙ୍ଗୀକାର ନୁହେଁ । ମୁଁ ମଧ କୋଉ ଆଶାୟୀ ନ ଥିଲି ଯେ ଇଏ ଥିଲା ମୋ କୃତଜ୍ଞତାର ଅର୍ଘ୍ୟ । ମୋତେ ଖାଲି ଗୋଟାଏ ସୁଯୋଗ ମିଳିଥିଲା ନିଜକୁ ବ୍ୟକ୍ତ କରିବାପାଇଁ ଏବଂ ତା' ବଦଳରେ ପୁଣି ସେଇ ଅପରୂପ ଅମଳିନ ଆତ୍ମୀୟତାର ସ୍ପର୍ଶ ପାଇବାଲାଗି । ସେଇ ଅନୁଭବଟିକ, ସେତିକି ଲୋଡ଼ା ଥିଲା ମୋର । ହେଲା ଏବେ ମୁଁ ଗୋଟାଏ ଲୋଭୀ, ମହାଲୋଭୀ ।

କିନ୍ତୁ ତମେ କ'ଣ ମୋତେ ସତରେ ଲୋଭୀ ବୋଲି କହିବ ଦିଦି ? ତମେ କ'ଣ ଅଯାଚିତ ଭାବରେ ମୋତେ ଦେଇ ନାହଁ ଦିଲ୍ଲୀର ପହିଲି ମୌସୁମୀର ପୃଷ୍ଠଭୂମିରେ, ଯାହାକି କୌଣସି ମୌସୁମୀ ମୋତେ ଦେଇପାରି ନ ଥିଲା ଆଜିଯାଏଁ ? ପୁଣି କୋଉଠୁ ଆସି ପହୁଞ୍ଚିଯାଇଥିବା ଅଜଣା ଅଶୁଣା ଝିଅଟାକୁ ? ଯେ ଓଡ଼ିଆଣୀ ହେଲେ ବି' ତମ ସ୍ୱାମୀଙ୍କର କୋଉ ବନ୍ଧୁବାନ୍ଧବ କି ଚିହ୍ନାପରିଚ ବି' ନୁହେଁ ?

ମୋ ଚିଠିରେ ଲେଖିଥିଲି ଗୋଟାଏ ଧାଡ଼ି—"ଦିଦି, ତମେ କାହିଁକି ଏତେ କଷ୍ଟ କଲ ମୋପାଇଁ ? କହିବାକୁ ଗଲେ ମୁଁ ତୁମର କେହି ନୁହେଁ । ଝିଅ ନୁହେଁ, ଭଉଣୀ ନୁହେଁ, କି ସେମିତି କିଛି । ଆଉ ତମ୍ଭ ନିଜ ଭାଷାରେ ତମେ କବିତା ଫବିତା କିଛି ବୁଝ ନାହିଁ (ମିଛ କଥା !) । ତଥାପି କାହିଁକି ତମେ ମୋ କବିତାକୁ ଉଠେଇନେଲ ସ୍ୱର୍ଗକୁ ? ବେଳେବେଳେ ମୋର କ'ଣ ମନେ ହୁଏ ଜାଣିଛ ଦିଦି ? ଯେ କବିତା ଗୋଟାଏ ଆଳ ଛଡ଼ା ଆଉ କିଛି ନୁହେଁ । ତମେ ମୋତେ ଭଲପାଅ । ପୂର୍ଣ୍ଣଚ୍ଛେଦ । ସରି, ଛୋଟ ମୁହଁରେ ବଡ଼ କଥା, ପ୍ଲିଜ୍ ଏକ୍ସକିଉଜ୍ ମି ।"

ଉହ୍ୟ ରହିଗଲା, ଯାହା ଲେଖିବା ସମ୍ଭବ ନ ଥିଲା, ଯେ ଇଏ ହେଉଛି ପ୍ରକୃତ ଭଲପାଇବା । ମାନେ ଅମଳିନ ପ୍ରେମ, ଯେଉଁଥିରେ ଦେହର ମଳିଧୂଳି ନାହିଁ । ଗଣ୍ଡଗୋଳ ନାହିଁ । କ'ଣ ବୁଝୁଛ ନା ଦିଦି, ମୁଁ ଯାହା କହିବାକୁ ଚାହୁଁଛି ? ମୁଁ କ'ଣ ଭୁଲିପାରିବି ସେଦିନ ସନ୍ଧ୍ୟାର ସେଇ ମୁହୂର୍ତ୍ତଟିକୁ, ଯେତେବେଳେ ତମେ ତମ ଘରର ଝରକା ପାଖରେ ଠିଆ ହୋଇଥିଲ, ଆଉ ମୁଁ ସେଠି ପହଞ୍ଚିଲାରୁ ମୋତେ ତମ ଛାତିକୁ ଟାଣିଆଣିଲ ? କହିଲ କ'ଣ ନା ତମେ ମୋର 'ଚିଲ' କବିତାଟିକୁ ପଢୁଥିଲ ଏବେ, ଯେ

ସେ କେମିତି ଥକିଗଲାଣି ଆକାଶର ନୀଳିମା ଭିତରେ, ହେଲେ କହି ହେଉଛି ଯେ ସେ ଥକି ନାହିଁ, କଦାପି ଥକିବ ନାହିଁ, ତା'ର ଖାସ୍ ବସ୍ତୁଟିକୁ ନ ପାଇବାଯାଏଁ । 'ଇସ୍ ! ଏତେ ଛିଦି ତୋ ଚିଲର ?' କହି ଆକାଶର କୋଉ ଚିଲ ଆଡ଼କୁ ଅନଉଥିଲ । ଆଉ ମୋତେ ଆଉଁଷିଦେଉଥିଲ ।

ମୋର ଇଚ୍ଛା ହେଉଥିଲା ମୁଁ ଆଖି ଖୋଲିବି ନାହିଁ କି ମୁଣ୍ଡ ଟେକିବି ନାହିଁ ତମ ଛାତି ଉପରୁ । ଆକାଶର ନୀଳିମାକୁ ମାର ଗୋଲି, ମୋ ନୀଳିମାରେ ମୁଁ କେବେହେଲେ ଥକିଯିବି ନାହିଁ, କି ସେ ମୋତେ ତଳେ ପକେଇଦେବ ନାହିଁ । ପାରିବ କି ନୀଳିମାଦି' ?

ଶେଷକୁ ଲେଖିଥିଲି ଆଉ ପଦେ, ମୋର ଭଲପାଇବାର ଦାବୀକୁ ସ୍ପଷ୍ଟ କରିଦେଲା ପରି—

"ମୁଁ ଯେତେବେଳେ ଦିଲ୍ଲୀ ଯିବି କୋଉ ଭି.ଆଇ.ପି.ଙ୍କ ହାତରୁ ପୁରସ୍କାର ନେବାଲାଗି, ତମେ ଖାଲି ହଲ୍‌ରେ ବସି ତାଳି ମାରିଲେ ଚଳିବ ନାହିଁ । ତମର ଆଉ ଗୋଟାଏ କାମ କରିବାର ଅଛି । ମୁଁ ତମରି ଧନ ଟୋକି ଦେବି ତମ ହାତକୁ, ଘରକୁ ଫେରିଲା ପରେ (ସ୍ୱତଃସିଦ୍ଧ ଯେ ମୁଁ ତମରି ଘରେ ରହିବି, ତମେ ମୋତେ ଡାକ କି ନ ଡାକ), ଆଉ ସେଇଠୁଁ ତମେ ତା'କୁ ବଢ଼େଇଦେବ ମୋ ହାତକୁ । ତା' ହେଲେ ଯାଇଁ ମୋତେ ଲାଗିବ ସତସତିକା ପୁରସ୍କାର ପାଇଲା ପରି..." ଏବଂ ଅଲେଖା ପଦୁଟିଏ ଥିଲା ତା' ସାଙ୍ଗକୁ । ଯେ ତମେ ସେତେବେଳେ ମୋତେ ଟାଣିଆଣିବ ତମ ଛାତିକୁ—ଆଣିବନି ?

ତଥାପି ଦି'ଧାଡ଼ି ଲେଖିପାରିଲ ନାହିଁ ମୋ ପାଖକୁ ? ଆସି ଦି'ମାସରୁ ଊର୍ଦ୍ଧ୍ୱ ହୋଇଗଲାଣି, ପୁରସ୍କାର ଉତ୍ସବକୁ ଆଉ ମାସୁଟାଏ ଅଛି କି ନାହିଁ । ସେମିତି କଥାକୁ ମୁଁ ଏଥର ରହିବି ନାହିଁ ତମ ଘରେ, ରହିବି ଯାଇଁ କୋଉ ହୋଟେଲ୍‌ରେ । ମୁଁ କ'ଣ ମାଗିଖାଇ ହୋଇଛି ଯେ ବିନା ନିମନ୍ତ୍ରଣରେ ଦଖଲ ଜମେଇବି ତମ ଉପରେ ? ପୁଣି ମୋ ସ୍ୱାମୀଙ୍କୁ ସାଙ୍ଗରେ ନେଇ ? ସେ ତ ଯେମିତିହେଲେ ବାହାରିବେ ଏଥର ମୋ ସାଙ୍ଗରେ । ଅବଶ୍ୟ ବାବୁଙ୍କର ଛଳ ନାହିଁ କୋଉ କଥାକୁ, ଏମିତି ଉଦାର ମଣିଷଟିଏ ପୃଥିବୀରେ ନ ଥିବେ, କିନ୍ତୁ ମୋର ନିଜର ଗୋଟିଏ ଆତ୍ମସମ୍ମାନ ଅଛି ତ ? ଶୈଳ ଘୋର ଅଭିମାନ କଲା ନୀଳିମାଙ୍କ ଉପରେ ।

ସେହେତୁ ସେ ଜାଣିପାରିଲା ନାହିଁ ଯେ ପ୍ରାୟ ଅନୁରୂପ ଅଭିମାନରେ ବିଦଗ୍ଧ ସ୍କୁଲ୍ ୟୁନିଫର୍ମ ପିନ୍ଧା ଆଠବର୍ଷିଆ ଝିଅ ଦ୍ୱିତୀୟବାର ପଚାରୁଛି ତା' ମାଆକୁ, ଜରୁରୀ ଉତ୍ତର ଲୋଡ଼ିଲାପରି—

"ବାପା କଅଣ ଅଫିସ୍‌ରୁ ଫେରି ନାହାନ୍ତି ଏତେବେଳଯାଏଁ ?"

ଶୈଳ କାବା ହୋଇ ଅନେଇଲା ଅଭିମାନିନୀ ଆଡ଼କୁ । କାରଣ ସେ ପ୍ରଶ୍ନର ଅର୍ଥ ବୁଝିପାରିଲା ନାହିଁ । ପ୍ରଥମ କଥା, ତୁ କେମିତି ଏତେ ସହଳ ଫେରିଆସିଛୁ ତୋ ସ୍କୁଲରୁ ? ଦ୍ୱିତୀୟରେ ତୁ କେମିତି ଆଶା କରୁଛୁ ଯେ ବାପା ମଧ୍ୟ ଫେରିଆସିଥିବେ ଏତେବେଳକୁ ? ଯାହାହେଉ ତା'କୁ ପାଲଟା ପ୍ରଶ୍ନ ପଚାରିବାକୁ ପଡ଼ିଲା ନାହିଁ । ବୁଦ୍ଧିମତୀ ତନୁ ବୋଉର ବିମୂଢ଼ତାକୁ ଲକ୍ଷ୍ୟ କରି, ତା'କୁ ତତ୍‌କ୍ଷଣାତ୍ ଦୂର କରିଦେଲା ଏବଂ ରୋକ୍‌ଠୋକ୍ କାରଣ ଦର୍ଶାଇ—

"ବାପା ମୋତେ ନେଇଯାଇ ଥାଆନ୍ତେ 'ଭାରତୀ ଭବନ'କୁ ଯେଉଁଠି ଆମର ରିହର୍ସାଲ୍ ହେବ । ଆଜି ପ୍ରଥମ ରିହର୍ସାଲ୍ । ମୁଁ ଏ ବର୍ଷ ବଛା ହୋଇଛି ଆମ ଜୁନିଅର୍ ସ୍କୁଲ୍‌ର ପ୍ଲେ ପାଇଁ । ମୁଁ ହେଉଛି ଶକୁନ୍ତଳା ।"

ମୁଁ ହେଉଛି ଶକୁନ୍ତଳା । ଶୈଳ ହସି ପକେଇଲା ତା'ର ଏଇ ପଦକରେ । ମନେହେଲା, ଅଣ୍ଟାରେ ହାତ ଦେଇ ରାଗ ଅଭିମାନରେ ତମତମ ହେଉଥିବା ଏଇ ଶକୁନ୍ତଳାଟିକୁ କୌଣସି ଦୁଷ୍ମନ୍ତ କସ୍ମିନ୍‌କାଳେ ଉପେକ୍ଷା କରିପାରିବ ନାହିଁ । ସତରେ, ଦିବ୍ୟ ସୁନ୍ଦରୀଟିଏ ହେବାକୁ ବସିଛି ମୋ ଝିଅ । କିନ୍ତୁ ଏମିତି ଚଣ୍ଡୀରୂପ ନ ଦେଖେଇଲେ ଚଳି ନ ଥାଆନ୍ତା ?

କିନ୍ତୁ ପରେ ପରେ ତା'ର ବିସ୍ମୟ ଭିନ୍ନ ରୂପ ଧାରଣ କଲା । ଝିଅ ସ୍କୁଲ୍ ପ୍ଲେରେ ପାର୍ଟ୍ ନେଇଛି, ଆଜି ତା'ର ପ୍ରଥମ ରିହର୍ସାଲ୍ । ଆଉ ତା' ବାପା ସହଳ ସହଳ ଅଫିସ୍‌ରୁ ଫେରି ତା'କୁ ନେଇଯିବେ ସେଠିକି—ଏସବୁ ବିଷୟରେ ମୋତେ ଜଣାଇବା ଉଚିତ ନ ଥିଲା ? ବାପର କି ଝିଅର ? ବାପାଙ୍କର ହୁଏତ ଖିଆଲ୍ ନ ଥିବ ଅଫିସ୍ କାମର ଭିଡ଼ରେ, କିନ୍ତୁ ଝିଅର ମନ ହେଲା ନାହିଁ ଏଇ ସୁଖବରଟିକୁ ଜଣାଇବା ତା' ମାଆକୁ ? ଶୈଳ ଭାବିଲା ତା'ର ରାଗିବା ଉଚିତ । ଅବଶ୍ୟ ଉଚିତ ।

"କିଲୋ, ମୋତେ କିଛି କହି ନାହୁଁ କାହିଁକି ଏ ବିଷୟରେ ? କେବେଠୁଁ ବଛା ହେଲୁଣି ଏଇ ପ୍ଲେ ପାଇଁ ?"

"ହପ୍ତାଏ ହେଲାଣି, କି ତା'ଠୁଁ ବେଶି । କିନ୍ତୁ ତମେ କୋଉ ଘରେ ରହୁଛ ଆଜିକାଲି, ଯେ ତମକୁ କହିବି ?"

"ହ୍ୱାଟ୍ ଡୁ ୟୁ ମିନ୍ ? ମୁଁ ଘରେ ରହୁ ନାହିଁ ?" ଶୈଳର ଆଖି ଦି'ଟା ଜଳିଉଠିଲା । ଝିଅର ମୁହଁ ବଢ଼ିଗଲାଣି । କିନ୍ତୁ ତନୁ ମଧ୍ୟ ଅନେଇ ରହିଲା ମାଆକୁ । ଉତ୍ତର ଦେଲା ନାହିଁ, କି ତା'ର ଦୃଷ୍ଟି ତଳକୁ କଲା ନାହିଁ । ମୁଁ

ଠିକ୍ କଥା କହିଛି, ବେଶ୍ କରିଛି, ମୋତେ କ'ଣ ଶାସ୍ତି ଦେବ ଦିଅ— ଏଇ ଭାବରେ ।

କିନ୍ତୁ କୌଣସି ଶାସ୍ତିର ବାଟ ଦିଶିଲା ନାହିଁ ଶୈଳକୁ । ଯଦିଓ ସେ ନିଶ୍ଚିତ ଥିଲା ଯେ ତନୁ ଜାଣିଶୁଣି ଭୁଲ୍ କହିଛି, ମିଛ କହିଛି । ହଁ, ମୁଁ ଆଜିକାଲି ବାରମ୍ବାର ଟାଉନ୍‌କୁ ଯାଉଛି, ଗଣନାଥପୁର କି ପାଖଆଖ ସହରକୁ, ବିଭିନ୍ନ ସାହିତ୍ୟ ସଭାରେ ଯୋଗ ଦେବାଲାଗି । ଆଗ ଅପେକ୍ଷା ଅନେକ ବେଶି । ହୁଏତ ଅନେକ ସମୟରେ ମୁଁ ଘରେ ନ ଥାଏ, ସେ ସ୍କୁଲରୁ ଫେରିଲା ବେଳକୁ । ତା' ବୋଲି ତା'କୁ ସମୟ ମିଳିଲା ନାହିଁ ଏଭଳି ଗୋଟିଏ ଖବର ଜଣାଇବାପାଇଁ ମୋତେ ? ରବିସ୍ ! ଅସଲ କଥା ହେଉଛି ଯେ ସେ ଗୋଟାଏ ଭର୍ତ୍ସନା ଶୁଣାଇଲା ତା' ମାଆକୁ ସେ ରାଗିଲେ ରାଗୁ ପଛେ । ଜଣାଇବାକୁ ଚାହିଁଲା ଯେ ତୁ ଘରଲୋକମାନଙ୍କୁ ପଚାରୁ ନାହୁଁ ଯେମିତି ପଚାରିବା କଥା । ଘର ଛାଡ଼ି ପଳଉଛୁ କୁଆଡ଼େ ବୋଲି କୁଆଡ଼େ, ତୋର ଛେନାଗୁଡ଼ ସାହିତ୍ୟ କାମରେ । ମୁଁ ତା'କୁ କହି ନ ଥାଏ କି, ବେଳେବେଳେ, ଯେ ମୁଁ ଯାଉଛି ମୋର ଗୋଟାଏ ସାହିତ୍ୟ କାମରେ, ତୁ ଘରେ ଥିବୁ ଭଲ ପିଲା ହୋଇ ? ବିଚାରୀ ! ଶାସ୍ତି ଦେବା ଦୂରର କଥା, ଶୈଳର ମନ ନରମ ହୋଇଆସିଲା । ସାମାନ୍ୟ ଗମ୍ଭୀରତା ସହ କହିଲା, 'ଓ-କେ, ତୋ କଥା ତୁ ଜାଣୁ ।' ହେଲେ ପଚାରିଲା ତା' ପରେ ତାକୁ ।

''କିନ୍ତୁ ମୁଁ ଆସିପାରେ କି ସେଠିକି, ତମ ଦି'ଜଣଙ୍କ ସାଙ୍ଗରେ ?''

''ଥ୍ୟାଙ୍କ୍‌ସ୍ !'' ତନୁର ମୁହଁ ଝଲି ଉଠିଲା ଏବଂ ଶୈଳ ଆଶ୍ୱସ୍ତ ହେଲା । ତା' ହସିଲା ମୁହଁରେ ମମତାର ରାଶି ରାଶି ସ୍ନେହ ଓ ସରାଗ ଥିଲା, ଯାହା ଯେକୌଣସି ଝିଅକୁ ସ୍ୱର୍ଗସୁଖ ଆଣିଦେବ । ତେବେ ଭାବିବାର ବିଷୟ ଯେ ସାଧାରଣତଃ ଝିଅ ଜଣକ ପାଦେ ଆଗକୁ ଆସିଲାପରି ହୋଇଥାଆନ୍ତା, ଏହି ଅବସ୍ଥାରେ ଏବଂ ସେ ଆସୁ ନ ଆସୁଣୁ ତା' ମାଆ ହାତ ବଢ଼େଇ ଥାଆନ୍ତା ତା'କୁ କୋଳକୁ ଆଣିବାଲାଗି । କିନ୍ତୁ ତା ହେଲା ନାହିଁ ।

ସନାତନବାବୁ ମଧ୍ୟ ଆସି ପହଞ୍ଚିଗଲେ କିଛି ସମୟ ପରେ ଏବଂ 'ହ୍ୟାଲୋ ଡାର୍ଲିଂ' କହି ଝିଅକୁ ଟେକି ନେଲେ ଉପରକୁ, ତା' ଗାଲରେ ଚୁମାଟିଏ ଦେବାଲାଗି । କହିଲେ 'ସରି, ମୋର ଟିକିଏ ଡେରି ହୋଇଗଲା । କିନ୍ତୁ ଆହୁରି ଯଥେଷ୍ଟ ଟାଇମ୍ ଅଛି ଏଇକ୍ଷଣି । ଚଟ୍‌କିନି ରେଡ଼ି ହୋଇଯା' । ସେଇଠୁଁ ଶୈଳଆଡ଼କୁ ଅନେଇ 'ତମେ ବି' ଆସୁଛନା ଆମ ସାଙ୍ଗରେ ? ନା ତମର କାମ ଅଛି ଆଉ କୋଉଁଠି ?

ଶୈଳର ହସ ଲିଭିଗଲାଣି । ତେବେ ସେ ବିନା ଦ୍ୱିଧାରେ କହିଲା, "ହଁ ମୁଁ ବି' ଆସୁଛି ତୁମ ସାଙ୍ଗରେ । ମୋର କାମ ନାହିଁ ଆଉ କେଉଁଠି ।" ଅଭିମାନର ତିଳେ ମାତ୍ର ଲକ୍ଷଣ ଦେଖାଇଲା ନାହିଁ ଯେ ମୁଁ ତମ ଝିଅର ମାଆ, କିନ୍ତୁ ତମେ ମୋତେ ଆଗରୁ କିଛି କହିନ ଏ ବିଷୟରେ ଏବଂ ତାହା ଘୋର ଅନ୍ୟାୟ । ସନାତନବାବୁ ଧରିନେଲେ ଯେ ଶୈଳକୁ ଜଣା ଥିବ ନିଶ୍ଚୟ ।

ଇତି ମଧ୍ୟରେ ଶୈଳର ସ୍ମରଣ ହେଲାଣି ଯେ ପ୍ରକୃତରେ ତା'ର ଗୋଟାଏ କାମ ଥିଲା ଆଜି ସନ୍ଧ୍ୟାରେ । ଗୋଟାଏ ଜରୁରୀ କାମ । ସର୍ବଭାରତୀୟ ସୁପ୍ରସିଦ୍ଧ ସାଂସ୍କୃତିକ ଅନୁଷ୍ଠାନ 'ତକ୍ଷଶିଳା'ର ସଚିବ ଶଙ୍କର୍ ଯାଦବ୍ ଓଡ଼ିଶା ଆସିଛନ୍ତି । କ୍ୟାପିଟାଲ୍‌ରେ ବିଭିନ୍ନ ସରକାରୀ ଓ ବେସରକାରୀ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ସହିତ ଦେଖାସାକ୍ଷାତ କରିସାରିଲା ପରେ ସେ ସିଧାସଳଖ ଫେରି ଯାଇଥାଆନ୍ତେ ତାଙ୍କ କର୍ମସ୍ଥଳୀ ଆଲାହାବାଦକୁ । କିନ୍ତୁ ସେ ଅଟକି ଯାଇଛନ୍ତି । କାରଣ ସେ ଯେତେବେଳେ ଦିଲ୍ଲୀ ଯାଇଥିଲେ କିଛିଦିନ ପୂର୍ବେ ଓ ତାଙ୍କର ଦେଖା ହୋଇଥିଲା ନୀଲିମାଦି'ଙ୍କ ସାଙ୍ଗରେ, ଦିଦି ତାଙ୍କୁ ପ୍ରବର୍ତ୍ତାଇଥିଲେ ଓଡ଼ିଶାର ଅନ୍ତତଃ ଗୋଟିଏ ଦର୍ଶନୀୟ ସ୍ଥାନ ଦେଖିବାପାଇଁ, ଯାହାକି ସାଧାରଣତଃ ଟୁରିଷ୍ଟମାନଙ୍କର ନକ୍ସାରେ ନ ଥାଏ । ଲୁପ୍ତ ନଗରୀ ମାଣିକ୍ୟପୁରର ଭଗ୍ନାବଶେଷ ଭିତରେ ଛପି ରହିଥିବା ମୁକ୍ତାସରୋବର, ଯାହାକି ରାଜପ୍ରାସାଦର ରାଣୀମାନଙ୍କ ସ୍ନାନପାଇଁ ଉଦ୍ଦିଷ୍ଟ ଥିଲା । ଏବେ ମଧ୍ୟ ସେଠି ନୀଳକମଳ ଶୋଭା ପାଉଥାଏ, କୋକିଳ କୂଜନକୁ କାନ ଡେରି ଶୁଣିବାକୁ ପଡ଼େ ନାହିଁ ଏବଂ ଧ୍ୟାନମଗ୍ନ ହେଲେ (ଧ୍ୟାନମଗ୍ନ ହେବା ସ୍ୱାଭାବିକ), ତୁମକୁ ଶୁଣାଯିବ ରାଜଜେମାମାନଙ୍କର ନୂପୁର ନିକ୍ୱଣ...

ଶଙ୍କରଜୀ ଦିଦିଙ୍କର ଏହି ପ୍ରକାର ଉଚ୍ଛ୍ୱସିତ ଏବଂ କବିତ୍ୱପୂର୍ଣ୍ଣ ବର୍ଣ୍ଣନାକୁ ଉଦ୍ଧାର କରିଥିଲେ ତାଙ୍କ ଚିଠିରେ । ସେଇଠୁଁ ଲେଖିଥିଲେ ନୀଲିମାଜୀ ସୁପାରିଶ କରିଛନ୍ତି ଯେ ମାଣିକ୍ୟପୁରରୁ ପ୍ରାୟ ଦଶମାଇଲ୍ ଦୂରରେ ଥିବା ଗଣନାଥପୁର ସହରର ସଂଲଗ୍ନ ଇଚ୍ଛାପୁରୀ କଲୋନୀକୁ ଯିବା ଉଚିତ । କାରଣ ସେଠି ଅଛି ଇଷ୍ଟର୍ଣ୍ଣ ଇଣ୍ଡିଆ ସିରାମିକ୍ସର ଫ୍ୟାକ୍ଟରୀ ଏବଂ ତା'ର ତରୁଣ ମାଲିକ ତଥା ମ୍ୟାନେଜର୍ ସନାତନ ପଣ୍ଡାଙ୍କ ସ୍ତ୍ରୀ ହେଉଛନ୍ତି ଶୈଳଜା ପଣ୍ଡା । ସେହି ଶୈଳଜା ଯେ 'ଦିବ୍ୟଜ୍ୟୋତି' ପୁରସ୍କାର ପାଇଛନ୍ତି ଏହି ବର୍ଷ । ଯାହାଙ୍କ କବିତା ପଢ଼ିଲେ ମନେହେବ ଯେ ମୁକ୍ତାସରୋବର ଅକ୍ଷୁଣ୍ଣ ହୋଇ ରହିଛି ଆଜିଯାଏଁ, ଏତେ ଶହେ ବର୍ଷ ପାରିହେଲା ପରେ ମଧ୍ୟ, ଯେପରିକି ଶୈଳଜା ନାମକ ଜଣେ କବି ତା' କୂଳରେ ଯାଇ ବସିବ ଏବଂ ଲେଖିବ ତା'ର ଅନବଦ୍ୟ କବିତା । "ତେଣୁ ମୋର ବିଶେଷ ଇଚ୍ଛା, ମିସେସ୍ ପଣ୍ଡା, ଆପଣଙ୍କ ସହିତ ଦେଖା କରିବାପାଇଁ ।

ଗଣନାଥପୁର ଡାକବଙ୍ଗଳା, ତେର ତାରିଖ ସନ୍ଧ୍ୟା ଛଅଟା । ଦୟାକରି ଆସିବେ । ମୁଁ ଆଉ କେତେଜଣ ଲେଖକ-କଳାକାରମାନଙ୍କୁ ମଧ୍ୟ ଡାକିଛି ସେଠିକି । ମୁଁ ଅପେକ୍ଷା କରିଥିବି ।''

ଆଜି ତେର ତାରିଖ । ସକାଳ ପହରୁ ମୋର ମନେ ଥିଲା ସେ କଥା ଯେ ମୁଁ ଯିବି ସେଠିକି; ନିଶ୍ଚୟ ଯିବି । ଯାଙ୍କ ଗାଡ଼ି ନ ମିଳିଲେ ଟ୍ୟାକ୍ସିରେ ଯିବି । ମୋର ଯିବା ଉଚିତ । ତଥାପି ମୁଁ କେମିତି ଭୁଲିଗଲି ସେ କଥା, ଏ ଝିଅଟା ସାଙ୍ଗରେ ପ୍ରେମ ହେଉ ହେଉ, ଆଉ କହିଲି ମୋତେ ବି' ନେଇଯା' ତୋ ରିହର୍ସାଲ୍‌କୁ ?

ହଉ, ମୁଁ ଯିବି ତୋ ରିହର୍ସାଲ୍‌କୁ । ଯିବି ନାହିଁ ଶଙ୍କରଜୀଙ୍କ ସାଙ୍ଗରେ ଦେଖା କରିବାପାଇଁ । କିନ୍ତୁ ତମେ ବାପ ଝିଅ କ'ଣ କେବେହେଲେ ବୁଝିବ ମୋ ସ୍ୱାର୍ଥତ୍ୟାଗର ମହତ୍ତ୍ୱ ? କେହି ବୁଝିବ ନାହିଁ, କେହି ବୁଝିବ ନାହିଁ । ତମ କଥା ଛାଡ଼ିଦିଅ, କ୍ୱଚିତ୍ କେହି ବୁଝିବ ଏଇ ଘୋର ବସ୍ତୁବାଦୀ ସଂସାରରେ, ଆମ କଳାକାରମାନଙ୍କ ଛଡ଼ା...

ଶୈଳ ଗଲା 'ଭାରତୀ ଭବନ'କୁ ବାପଝିଅଙ୍କ ସାଙ୍ଗରେ । ଅନ୍ୟ ସାନ ଅଭିନେତା ଅଭିନେତ୍ରୀମାନଙ୍କ ମାଆମାନଙ୍କ ସହିତ ହସଖୁସି ହେଲା ଏବଂ ସୁବିଧା ଦେଖି ଚିହ୍ନେଇ ଦେଲା ଶକୁନ୍ତଳା ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ସୁନ୍ଦରୀ ଝିଅଟିକୁ—''ସିଏ ହେଉଛି ମୋ ଝିଅ ।''

''ଆଚ୍ଛା ? ରିଏଲ୍ ପ୍ରେଟ୍‌ଟୀ !''

''ଥ୍ୟାଙ୍କ୍ସ ।'' ଶୈଳର ମାତୃହୃଦୟ ଗର୍ବରେ ଫୁଲିଉଠିଲା ଏବଂ ସେ ତା' ଉତ୍‌ଫୁଲ୍ଲ ମୁହଁ ଯତ୍‌ସାମାନ୍ୟ ତଳକୁ କଲା, ବିନୟଚ ଭଙ୍ଗୀରେ ।

ମଧ୍ୟ ଶକୁନ୍ତଳାର ଭୁଲ୍ ହୋଇଯାଇଥିବା ଧାଡ଼ି ଏବଂ ଅକାରଣ ଦୁର୍ବିନୀତ ଭଙ୍ଗୀକୁ ଦେଖି ହସି ଉଠିଲା, ନିର୍ଦ୍ଦେଶକଙ୍କ ଦୁଃଖୀଭାବକୁ ପରୁଆ ନ କରି । ସତେକି ନିର୍ଦ୍ଦେଶକଙ୍କ ଜାଣିବା ଉଚିତ ଯେ ଏ ଝିଅଖଣ୍ଡକ ଆଉ କାହା ପରି ନୁହେଁ । ସେ ହେଉଛି ତନୁଶ୍ରୀ ପଣ୍ଡା । ସେ ଆହୁରି କେତେ ଭୁଲ୍‌ଭଟକା କରିବ ବଡ଼ ହେଲାରୁ, କିନ୍ତୁ ତା' ସତ୍ତ୍ୱେ ସେ ତା' ଦେଖିଲା କାମ କରିବ । ହଜାରେ ମାଷ୍ଟର-ଡାଇରେକ୍ଟରମାନଙ୍କୁ ପାଠ ପଢ଼େଇବ ।

...କିନ୍ତୁ ସେ ଏମିତି କେମିତି ହେଲା ? ଆମେ ଦିହେଁ ତ ଏତେ ଧୀରସ୍ଥିର, ନରମପନ୍ଥୀ, ହେଲେ ଆମ ଝିଅଟା ଏତେ ତେଜ ପାଇଲା କେଉଁଠୁ ? ଠିକ୍ ଅଛି, ଏମିତି ହେବା ଦରକାର ଆଜିକାଲିକା ଦୁନିଆଁରେ । ଏକ ବିକୃତ ଆନନ୍ଦର ଭାବ ଆସିଲା ତା' ମନକୁ ।

କିନ୍ତୁ ଯଥାର୍ଥ ହେଉ କି ବିକୃତ, ଥରକୁ ଥର ସେ ତା'ର ନିଜ ଖୁସିକୁ ପଛରେ ପକେଇ ଭାବୁଥାଏ ଯେ ସେ ଏଠିକି ଆସିଛି ବାପଝିଅଙ୍କୁ ଖୁସି କରିବାପାଇଁ । ତାହା ହିଁ ତା'ର ଉଦ୍ଦେଶ୍ୟ । ଯାହାର ଅନ୍ୟ ନାଆଁ ସ୍ୱାର୍ଥତ୍ୟାଗ ।

ନ ହେଲେ ସେ ଏତେବେଳକୁ ବସିଥାଆନ୍ତା ଗଣନାଥପୁର ଡାକବଙ୍ଗଳାରେ । ଭାରତୀୟ ସଂସ୍କୃତିର ଏକ ବିଶିଷ୍ଟ ସାରଥିଙ୍କ ସାମ୍ନାସାମନି ହୋଇ । ଦିଦିଙ୍କ ସୁପାରିଶ ଅର୍ଥପୂର୍ଣ୍ଣ । ମାଣିକ୍ୟନଗର, ମୁକ୍ତାସରୋବର, ଏ ସବୁ ବାଜେ କଥା । ସେ ଚାହୁଁଥିଲେ ଶଙ୍କରଜୀଙ୍କର ଦେଖା ହେଉ ଶୈଳ ସାଙ୍ଗରେ । ଯେମିତିକି ଆହୁରି ଗୋଟିଏ ସୁଯୋଗ ମିଳିବ ତା'କୁ, ସର୍ବଭାରତୀୟ କ୍ଷେତ୍ରରେ ନିଜକୁ ଥାପିବାଲାଗି । ଯେମିତିକି 'ସିଲ୍ଲୀ' ଆହୁରି ବଡ଼ ହେବ ଆହୁରି ନାଆଁ କରିବ...ଦିଦି, ୟୁ ଆର୍ ଓ୍ୱଣ୍ଡରଫୁଲ୍ ! ରିଏଲି ଓ୍ୱଣ୍ଡରଫୁଲ୍ । କିନ୍ତୁ ତମେ ମୋ ପାଖକୁ ଦି'ଧାଡ଼ି ଲେଖି ନ ଥାଆନ୍ତ ସେ ବିଷୟରେ ?

ସେମାନେ ତାଳି ମାରୁଛନ୍ତି କେଉଁ ଗୋଟାଏ ଦୃଶ୍ୟରେ । ଶକୁନ୍ତଳାର ଡାଏଲଗ୍‌ରେ ବୋଧହୁଏ । କିନ୍ତୁ ଶୈଳର ଲୟ ନ ଥିଲା ସେ ଆଡ଼କୁ । ତା' କରତାଳିରେ ଦମ୍ ନ ଥିଲା । ସେ ଅନ୍ୟମନସ୍କା ହୋଇପଡ଼ିଥିଲା ।

...ସ୍ୱାର୍ଥତ୍ୟାଗ, ମାଇ ଫୁଟ୍ ! ଇଏ ହେଉଛି ତୋର ଦୁର୍ବଳତା, ମାଇପି ଦୁର୍ବଳତା—ବୁଝିଲୁ, ଶୈଳ ? ତୋର ସାହସ ନାହିଁ ତୋର ଅସଲ ଦିଅଁକୁ ପୂଜିବାପାଇଁ, ଯେ କି ତୋ' ସ୍ୱାମୀଠାରୁ ବଡ଼, ଝିଅଠାରୁ ବଡ଼, ସାଧାରଣ ଜୀବନର ଯାବତୀୟ ତଥାକଥିତ କର୍ତ୍ତବ୍ୟର ଅନେକ ଅନେକ ଊର୍ଦ୍ଧ୍ୱରେ । କ୍ରୀତଦାସୀ ହୋଇ ରହିଛୁ ଯାହାଙ୍କ ପାଖରେ । ତାଙ୍କ ନାଆଁ ବାଗ୍‌ଦେବୀ । ସେ କ'ଣ କଦାପି ପସନ୍ଦ କରିବେ ତୋର ଏଇ ବିଚ୍ୟୁତି ? କହିବାକୁ ଗଲେ, ସ୍ୱାର୍ଥପରତା ? ମୁଁ ଥରେ କହୁଥିଲି ଦିଦିଙ୍କୁ ପରିହାସ ଛଳରେ ଯେ ଏଇ ହେଉଛି ଆମର ଦୁର୍ଭାଗ୍ୟ । ଏଇ କ୍ରୀତଦାସୀ ପଣ । ବିଶେଷତଃ ଲେଖିକାମାନଙ୍କର । ସେଇଠୁଁ ସେ ହସି ହସି କହିଲେ—''ସତେ ? ସ୍ୱେଚ୍ଛାରେ ବିକିଦେଇଛୁ ନିଜକୁ, ଶ୍ୱେତପଦ୍ମର ସୁରଭିରେ ମୋହି ହୋଇଯାଇ, ଯେମିତିକି ମିତ ବସିବୁ ତାଙ୍କ ହଂସ ସାଙ୍ଗରେ, ଆଉ ଚୁପ୍‌କିନି ଶୁଣିବୁ ତାଙ୍କ ବୀଣାର ଅଶୁଣା ମୂର୍ଚ୍ଛନାଟିକ, ଯାହା ଆମର କାହାରି କାନରେ ପଡ଼େ ନାହିଁ, ତଥାପି ଢଙ୍ଗ ବାହାର କରୁଛୁ ? ଲାଜ ନାହିଁ ତୋ ମୁହଁକୁ ?''

ସେଇଠୁଁ ହଠାତ୍ ମୋର ମନେହେଲା ଯେ ସେଇ ହେଉଛନ୍ତି ମୋ ବାଗ୍‌ଦେବୀ । ସଶରୀରେ ଆସିଛନ୍ତି ମୋ ପାଖକୁ ମୋତେ ବୁଦ୍ଧି ଦେବାପାଇଁ ।...

ସେଇ ବାଗ୍‌ଦେବୀ ଏଇକ୍ଷଣି ଦିଶିଗଲେ ଶୈଳଜାକୁ । ସେ ମନ ଦୁଃଖ କରୁଛନ୍ତି । ତାଙ୍କ ଚିଲା ଆଖିର ଚାହାଣିରେ ରାଶି ରାଶି ବ୍ୟଥା । ସରୁ ଓଠରେ ରାଶି ରାଶି କ୍ଲେଶ । —କେତେ ଭାବିଚିନ୍ତି ମୁଁ ଶଙ୍କରଜୀଙ୍କୁ ପଠେଇଥିଲି ତୋ ପାଖକୁ, ତୋରି

ଭଲପାଇଁ । ହେଲେ ତୁ ତାଙ୍କୁ ଫେରେଇ ଦେଲୁ ଏମିତି ? ମୁଁ ତାଙ୍କୁ ଶୁଣେଇଥିବି ତୋ କବିତା, ତା'ର ପରିଭାଷା ବୁଝେଇଥିବି ଏବଂ ଇଙ୍ଗିତ ଦେଇଥିବି ତୋର ଭବ୍ୟ ଭବିଷ୍ୟତ ଆଡ଼କୁ, ଏତିକି ତୋ ମୁଣ୍ଡରେ ପଶିଲା ନାହିଁ ? ଏଡ଼ିକି ହୁଣ୍ଡୀ ହେଲୁ କେମିତି ମ ?

...ମୁଁ ଖାଲି ହୁଣ୍ଡୀ ନୁହେଁ ଦିଦି, ମୁଁ ପାପୀ ! ମହାପାପୀ । ମୁଁ କଷ୍ଟ ଦେଇଛି ତମକୁ...

ତଥାପି ଶୈଳ କୁଣ୍ଢେଇ ପକେଇଥିଲା ଝିଅକୁ, ବାପାର ଆଲିଙ୍ଗନ ପରେ ପରେ ଯେତେବେଳେ ସେ ମଞ୍ଚରୁ ଓହ୍ଲେଇ ଆସିଲା । ତା'କୁ ସାବାସ୍ ଦେବାଲାଗି, ତା' ଅଭିନୟପାଇଁ । ଏବଂ ସେ ମଧ କହିଥିଲା ଗଳଦ୍‌ଘର୍ମା ଝିଅର ଚେହେରାକୁ ଦେଖି—'ଥକିଗଲାଣି ଝିଅଟା ! କିଛି ଖାଇ ବି' ନାହିଁ ରିହର୍ସାଲ୍ ଡେରି ହୋଇଯାଇଛି ବୋଲି । ଘରକୁ ଚାଲ୍, ଗାଧୋଇପାଧୋଇ ଚେଙ୍ଗା ହୋଇ ଉଠିବୁ ।'' ସେଇଠୁଁ ସନାତନବାବୁ ତାଙ୍କ ପାଣ୍ଡିତ୍ୟ ଦେଖାଇଲେ 'ଅଭିଜ୍ଞାନ ଶାକୁନ୍ତଳମ୍'ରୁ ପଦେ ଉଦ୍ଧାର କରି—

''ସରସିଜମନୁବିଦ୍ଧଂ ଶୈବଳେନାପି ରମ୍ୟଂ, ମଳିନମପି ହିମାଂଶୋର୍ଲକ୍ଷ୍ମ ଲକ୍ଷ୍ମୀଂ ତନୋତି... ମୋ ଝିଅ ସେମିତି ସୁନ୍ଦର, ସବୁବେଳେ ସୁନ୍ଦର... କଅଣ ଭୁଲ୍ କହିଲି ?'' ଏବଂ ମନଫୁଲା ହସଟାଏ ହସିଲେ ।

ସେଇଠୁଁ ବାପ ଝିଅ କେତେ ଗେହ୍ଲେଇ ଫୁଲେଇ ହେଲେ, କହିଲେ ନ ସରେ । ଯାହାକି ଏକାନ୍ତ ଅବାନ୍ତର ଏବଂ ଅନାବଶ୍ୟକ ବୋଲି ମନେହେଲା ଶୈଳଜାକୁ ।

...ହଁ, ଖୁସି ହେବା କଥା, ମୁଁ ମାନୁଛି । କିନ୍ତୁ ସବୁଥିର ଗୋଟାଏ ସୀମା ଅଛି, ସଂଯମ, ନ ହେଲେ ତା'ର ମର୍ଯ୍ୟାଦା ନଷ୍ଟ ହୋଇଯିବ । ... ବିଶେଷକରି ସେ ଆଶ୍ଚର୍ଯ୍ୟ ହେଲା ସ୍ୱାମୀଙ୍କର ହାବଭାବ ଦେଖି, ଯାହାକୁ ଅସ୍ୱାଭାବିକ ବୋଲି କହିବାକୁ ହେବ । ସତେକି ଆଜି ତାଙ୍କର ମନ ହେଉଛି ଜବରଦସ୍ତ ଖୁସି ହେବାପାଇଁ । କିଛି ଗୋଟାଏ ଚିନ୍ତା, ଅବସାଦ, କି ଉଦ୍‌ବେଗକୁ ଜାଣିଶୁଣି ବାତିଲ୍ କରିଦେବାପାଇଁ, କାରଣ ଏଭଳି ସୁଯୋଗ ପୁଣି ଆସିବ ନାହିଁ ସହଜେ ।

ଏପରିକି ଶାଢ଼ି ବଦଳୋଉଥିବା ଶୈଳର ଖୋଲା ପିଠିକୁ ସେ ଚୁମାଟିଏ ଦେଲେ, ଯାହାକି ସେ କେବେହେଲେ କରି ନ ଥିଲେ ଏଥିପୂର୍ବରୁ, ଅନ୍ତତଃ ବାହାଘରର ପହିଲି କେଇ ମାସ ପରଠୁଁ । ଶୈଳ ଅବାକ୍ ହେଲା, ତା' ଲୋମ ଅବଶ୍ୟ ଟାଙ୍କୁରି ଉଠିଲା, କିନ୍ତୁ ତା'କୁ ଆଦୌ ଭଲ ଲାଗିଲା ନାହିଁ ଜିନିଷଟା । ତେବେ ତା'କୁ ସେ ଆସନ୍ତାର ଚେତାବନୀ ବୋଲି ଭାବିପାରିଲା ନାହିଁ । ଆଜିକାର ଘୋର ଅପରାଧ ତା' ମନରୁ ଯାଉ ନ ଥାଏ ।

...ଶଙ୍କରଜୀ କ'ଣ ଭାବିଥିବେ ଯେ ମୁଁ ଜାଣିଶୁଣି ଆସିଲି ନାହିଁ ? ସେ ହୁଏତ ମୋ ବିଷୟରେ ପଚାରିଥିବେ ମିଟିଂକୁ ଆସିଥିବା ଅନ୍ୟ କେତେଜଣଙ୍କୁ । ସେମାନେ କ'ଣ କହିଥିବେ ? ବିଚିତ୍ର ନୁହେଁ ଯେ ଜଣେ ଅଧେ କହିଥିବେ, ହିଂସୁକୁଟିଆଙ୍କର ଅଭାବ ନାହିଁ ଆମ ସାହିତ୍ୟ ସମାଜରେ, ଯେ ସେମାନେ ଶୈଳରାଣୀ ପଣ୍ଡାଙ୍କୁ ଚିହ୍ନନ୍ତି ନାହିଁ । ଆଉ କିଏ କହିଲେ ଯାଏ ଆସେ ନାହିଁ, କିନ୍ତୁ ସେ ବଛା ବଛା କେତେଜଣଙ୍କୁ ଡାକିଛନ୍ତି ବୋଲି ଲେଖିଥିଲେ । ଆଉ ସେମାନେ ଯଦି କୁହନ୍ତି, ଜାଣିଶୁଣି କି ଅଜାଣତରେ, ଯେ ଶୈଳ ଗୋଟିଏ ଅଚିହ୍ନା ବସ୍ତୁ; ସେହେତୁ ଏଇ ସାରସ୍ୱତ ବୈଠକର ଅଯୋଗ୍ୟ ଉଃ ! ଶୈଳ, ତୁ କାହିଁକି ଏ କଥା କଲୁ ??

ମୁଁ କ୍ଷମା ମାଗିନେବି ତାଙ୍କଠୁଁ । ଚିଠି ଖଣ୍ଡେ ଦେବି ତାଙ୍କ ଆଲାହାବାଦ ଠିକଣାରେ । ଲେଖିବି ଯେ ମୋ ଦେହଟା ହଠାତ୍ ଖରାପ ହୋଇଗଲା । ଏଭଳି କ୍ଷେତ୍ରରେ ଟିକିଏ ମିଛ କହିଲେ ଯାଏ ଆସେ ନାହିଁ, କାରଣ ମୁଁ ପ୍ରକୃତରେ ଅନୁତାପ କରୁଛି ମୋ ଭୁଲ୍‌ପାଇଁ । ଆଉ ଲେଖିବି ଯେ ମୁଁ ଆଲାହାବାଦ ଯାଇ ଦେଖା କରିବି ତାଙ୍କ ସାଙ୍ଗରେ, ପୁରସ୍କାର ନେଇ ଦିଲ୍ଲୀରୁ ଫେରିବା ବାଟରେ ।

କିନ୍ତୁ ପ୍ରଥମେ କ୍ଷମା ମାଗିବି ମୋ ଦିଦିଙ୍କଠାରୁ । ଯାହାଙ୍କ ମନରେ ମୁଁ କଷ୍ଟ ଦେଇଛି । ପାପ କରିଛି...

ହେଲେ ଶୈଳର ଦୁଃଖ, ଅନୁତାପ କି ପାପବୋଧ କିଛି ପହୁଁଚିଲା ନାହିଁ ସନାତନବାବୁଙ୍କ ପାଖରେ । କେମିତି ବା ପହୁଞ୍ଚିବ ? ଶୈଳ କ'ଣ ତା' ଯନ୍ତ୍ରଣାକୁ ଯଥାସାଧ୍ୟ ଲୁଚେଇ କରି ରଖି ନ ଥିଲା ନିଜ ଭିତରେ ? ତା'ଛଡ଼ା ଯେଉଁଭଳି ଆନନ୍ଦରେ ଉଚ୍ଛୁଳୁଥିଲେ ସନାତନବାବୁ, ଯେଉଁ ନିରାନନ୍ଦର ଛାଇ ତାଙ୍କ ଆଖିରେ ପଡ଼ିଥାଆନ୍ତା ସହଜେ ?

ଏହି ପରିସ୍ଥିତିରେ ସନାତନବାବୁ ଶୈଳର ପିଠିକୁ ଆଉଁଶିଲେ ରାତିର ଯୋଡ଼ି ପଲଙ୍କରେ । ଏମିତି କିଛି ନୂଆ ନୁହେଁ ଜିନିଷଟା । ବରଂ ଏହି ଭାବରେ ଆଶ୍ୱାସନା ଦେବା ତାଙ୍କର ଅନ୍ୟତମ ଗୁଣ । ଶୈଳ ତା'କୁ ଅନୁଭବ କଲା, ଗ୍ରହଣ କଲା । ଖିଆଲ କରିପାରିଲା ନାହିଁ ଯେ ଆଶ୍ୱାସନାର ପ୍ରଶ୍ନ ଉଠୁ ନାହିଁ ଆଜି, କାରଣ ସନାତନବାବୁ କଦାପି ଶୁଣିପାରି ନ ଥିବେ ତା' ମନଗହନର ଦୁଃଖ ଓ ଗ୍ଲାନିର କାହାଣୀ ।

କିନ୍ତୁ ପିଠି ଆଉଁଶା ସେତିକିରେ ରହିଗଲା ନାହିଁ । ସନାତନବାବୁ ଅଗ୍ରସର ହେଲେ ତା' ଦେହର ଅନ୍ୟାନ୍ୟ ଅଂଶ ଆଡ଼କୁ । ଏ ଜିନିଷଟା ନୂଆ ନ ହେଲେ ମଧ୍ୟ ତା'ଠୁଁ ଛାଡ଼ି ହୋଇଗଲାଣି ଅନେକ ଦିନ ହେଲା ଏବଂ ସେ ତା'କୁ ମାନି ନେଇସାରିଛି । ମଧ୍ୟ ବେଳେବେଳେ ଭାବି ଖୁସି ହୋଇଛି ଯେ ଉଦାର ସ୍ୱାମୀଜଣକ କିଛି ଦାବୀ କରୁ ନାହାନ୍ତି

ତା' ଉପରେ, ଯେମିତିକି ତା' ସାରସ୍ୱତ ସାଧନାରେ ଆଞ୍ଚ ଲାଗିବ ନାହିଁ । ଧନ୍ୟବାଦ । ସେହେତୁ ସେ ବିସ୍ମିତ ହେଲା ତାଙ୍କର ଆଜିକାର କାରବାରରେ । ମଧ ବିରକ୍ତ ହେଲା, ତା'ର ଉପସ୍ଥିତ ମାନସିକ ଅବସ୍ଥାର ପରିପ୍ରେକ୍ଷୀରେ ।

ହେଲେ ସେ ନିଜକୁ ଘୁଞ୍ଚେଇ ନେଲା ନାହିଁ । ...ହଁ, ମୁଁ ପାପିନୀ । ପାପିନୀ ଉପରେ ସମସ୍ତଙ୍କର ଅଧିକାର ଅଛି ଏବଂ ତମର ଅଗ୍ରାଧିକାର, ସ୍ୱାମୀ ହିସାବରେ । କରିଯାଅ, ଯାହା କରିବାକୁ ଚାହଁ, ମୁଁ ଆଦୌ ଆପତ୍ତି କରିବି ନାହିଁ । ସ୍ୱାର୍ଥତ୍ୟାଗ ହେଉ କି ପାପ, ତା'କୁ ଅଧାରୁ ଗୁଡ଼େଇଦେଇ ହେବ ନାହିଁ । ଯେଉଁ ଭାବରେ ଖୁସି କରି ଆସିଛି ତମମାନଙ୍କୁ, ଝିଅଠାରୁ ପଦେ ଶୁଣିଲା ବେଳଠୁଁ, ତା'ର ମିଆଦ ସରିଯାଉ, ପୂରା ହୋଇଯାଉ !

ସେହେତୁ ସନାତନବାବୁ ଡୁବିଗଲେ ଶୈଳର ଦେହରେ ଏବଂ ଶୈଳ ତା'କୁ ଗ୍ରହଣ କଲା କାଷ୍ଠବତ୍ । କିନ୍ତୁ ସନାତନବାବୁ ତା'ର କାଠପଣକୁ ଅନିଚ୍ଛା ବୋଲି ଭାବିଲେ ନାହିଁ ବୋଧହୁଏ, କାରଣ ସେ ତିଳେମାତ୍ର ନିଜକୁ ଦୂରେଇ ନେଲେ ନାହିଁ । ତାଙ୍କର ଆଗ୍ରହକୁ କୋହଳ କଲେ ନାହିଁ । ସତେକି ସେ ମଧ ବଦ୍ଧପରିକର ଆଜିକାର ଆନନ୍ଦକୁ ତା'ର ନ୍ୟାଯ୍ୟ ମାଇଲ୍‌ଖୁଣ୍ଟ ଯାଏଁ ନେଇଯିବାପାଇଁ ।

X X X ତା' ପରଦିନ ସକାଳେ ଯାଇଁ ଶୈଳର ବିଧ୍ୱସ୍ତ ଚେହେରା ଆଖିରେ ପଡ଼ିଲା ସନାତନବାବୁଙ୍କର ଏବଂ ସେ ପଚାରିଲେ ତା'କୁ "କ'ଣ ହୋଇଛି ତମର ? ଦେହ ଭଲ ଲାଗୁ ନାହିଁ ?"

"କିଛି ହୋଇ ନାହିଁ । କିନ୍ତୁ ମୁଁ ଗୋଟାଏ ଅନୁମତି ଚାହେଁ ତମ ପାଖରୁ । ମୁଁ ଗୋଟାଏ ଟ୍ରଙ୍କ୍‌କଲ୍ କରିପାରିବି, ଆମ ଘର ଫୋନ୍‌ରୁ ?"

"ମଲା ? ମୁଁ କ'ଣ ତମକୁ ମନା କରିଛି କେବେ ?"

"ନା ଯେ... ତେବେ ସେଦିନ ତମେ ବ୍ୟସ୍ତହେଉଥିଲ ଫୋନ୍ ବିଲ୍ ଦେଖି...ଓ-କେ-... ଥ୍ୟାଙ୍କ୍‌ସ... ଅନେକ ଧନ୍ୟବାଦ..."

ଶୈଳର ଆତୁର ବିଚଳିତ ଭାବକୁ ଲକ୍ଷ୍ୟ କରି ସନାତନବାବୁ ପଚାରିପାରି ଥାଆନ୍ତେ ଯେ ତମେ କାହାକୁ ଓ କୋଉଥିପାଇଁ ଫୋନ୍ କରିବାକୁ ଚାହଁ । କିନ୍ତୁ ସେ କିଛି ହେଲେ ପଚାରିଲେ ନାହିଁ । ସତେକି ତାଙ୍କୁ ଜଣା ସବୁ କଥା ଏବଂ ଚୁପ୍‌କିନି ଚାଲିଗଲେ ସେଠୁଁ ।

ଏବଂ ଶୈଳ ବାରମ୍ବାର ନିଜକୁ ବୋଧ ଦେବାକୁ ଲାଗିଲା ଯେ ପ୍ରତ୍ୟେକ ପାପର କ୍ଷମା ଅଛି, ତାହା ଯେତେ ଗହୀର ହେଉ ପଛେ ଏବଂ ଦିଦି ଜଣେ ମହୀୟସୀ ନାରୀ । କ୍ଷମା ଦେବା ତାଙ୍କର ସ୍ୱଧର୍ମ ।

## ଆଠ

ଫୋନ୍ ଯେତେବେଳେ ଆସିଲା, ସେତେବେଳେ କର୍ତ୍ତାଙ୍କର ନିଦ ଭାଙ୍ଗିଯାଇଥିଲା, କିନ୍ତୁ ଦିଲ୍ଲୀର କୁହୁଡ଼ି ଭାଙ୍ଗି ନ ଥାଏ ଏବଂ ଘରର ଗୃହିଣୀ ଶୋଇ ରହିଥାଆନ୍ତି । ଏପରି ଭାବରେ ଶୋଇଥାଆନ୍ତି ଯେ ମନେହେବ ଯେ ତା'ଛଡ଼ା ତାଙ୍କର ଅନ୍ୟ ଗତି ନାହିଁ ଏବଂ ତାଙ୍କ ଦେହମୁହଁର ପାଉଁଶିଆ ରଙ୍ଗ ବାହାରର କୁହୁଡ଼ି ସାଙ୍ଗରେ ଖାପ୍ ଖାଇ ଯାଉଥାଏ ।

"କେ.ବି. କାର୍ ସ୍ପିକିଙ୍ଗ୍—"

"..."

"ହାଓ ଆର୍ ୟୁ ? ଦିଦି ? ୱେଲ୍... ଦିଦି ନାହାନ୍ତି ଏଠି । ଏନି ମେସେଜ୍ ?"

"..."

"କେତେବେଳେ ଫେରିବେ କହିପାରିବି ନାହିଁ... ଆଇ ମିନ୍, ସେ ବାହାରକୁ ଯାଇଛନ୍ତି, ଦିଲ୍ଲୀ ବାହାରକୁ । ଫେରିଲେ ମୁଁ କହିଦେବି ତାଙ୍କୁ । ଏନି ମେସେଜ୍ ?"

"..."

"ଓ-କେ । ଥ୍ୟାଙ୍କସ ଫର୍ କଲିଙ୍ଗ୍ । ...ହଁ, ହଁ, ସେତେବେଳକୁ ସେ ନିଶ୍ଚୟ ଫେରି ଆସିଥିବେ । ଏନି — ?" କେ-ବି-କେ ଅଧାରୁ ରହିଗଲେ । ଚେତା ହେଲା ଯେ ସେ ସେଇ ଗୋଟାଏ ପ୍ରଶ୍ନକୁ ତୃତୀୟ ବାର ପଚାରିବାକୁ ଯାଉଥିଲେ । ଯାହାକି ଅପରପକ୍ଷକୁ ବିରକ୍ତିକର ବୋଧ ହେବା ସ୍ୱାଭାବିକ । ତା'ଛଡ଼ା ଝିଅଟା କଦାପି କୌଣସି ସନ୍ଦେଶ ଦେବ ନାହିଁ ତା' ଦିଦିଙ୍କପାଇଁ, ଆଉ କାହା ହରିଆରେ । ଦିଦିଙ୍କ ସ୍ୱାମୀ ହେଲେ କେତେ କି ଆଉ କିଏ । ଦିଦି ହେଉଛନ୍ତି ତା'ର ସ୍ପେଶାଲ । କେବଳ ସେଇ ବୁଝିଛନ୍ତି ତା' ସେନ୍‌ସୁଅସ୍—ମାଇଣ୍ଡ୍ ୟୁ, ସେନ୍‌ସୁଆଲ୍ ନୁହେଁ, ସେନ୍‌ସୁଅସ୍—କବିତାର ବିଶେଷତ୍ୱ । ତେଣୁ ତା'ର ଯେଉଁ ଗୋପନ ଗହନ କଥା କହିବାକୁ ଅଛି, ତା'କୁ ଆଉ କିଏ ଶୁଣିବାର ନୁହେଁ । ଭାଣ୍ଡାମିର ଗୋଟାଏ ସୀମା ଅଛି ! ଯାହାହେଉ ତାଙ୍କ ବାକ୍ୟ ଶେଷ ହେବା ପୂର୍ବରୁ ସେ ପାଖରୁ ମଧ ଫୋନ୍ କଟିଯାଇଥିଲା । ସେ ହେତୁ ସେ ସଶବ୍ଦରେ ରିସିଭର୍‌ଟାକୁ ରଖିଦେଇ ପାରିଲେ, ଓଡ଼ିଶାର ସେଇ ଝିଅଖଣ୍ଡକ ଓ ତା'ର ଦିଦିପଣିଆ ପ୍ରତି ତାଙ୍କର ବିତୃଷ୍ଣାକୁ ଚିହ୍ନେଇଲା ପରି ।

ସେଇଠୁଁ କେ-ବି-କେ ତାଙ୍କ ଶାୟିତା ପତ୍ନୀଙ୍କୁ ଅନେଇଦେଇ ଆସିଲେ, ତାଙ୍କପାଇଁ ନିର୍ଦ୍ଦିଷ୍ଟ ଭିନ୍ନ ଶୋଇବା ଘରେ । ...ଥ୍ୟାଙ୍କ୍ ଗଡ୍, ସବୁ ଠିକ୍ ଅଛି । ନୀଲ୍ ସେମିତି ଅଛି । ନର୍ସ ମଧ ଢୁଳଉଛି । କେହି ଡିଷ୍ଟର୍ବ ହୋଇ ନାହାନ୍ତି । ଅବଶ୍ୟ

ମୁଁ ସ୍ୱର ନ ଉଠେଇବାକୁ ଚେଷ୍ଟା କରିଥିଲି ଯଥାସମ୍ଭବ, କିନ୍ତୁ ସେ ଯେମିତି ପାଟି କରୁଥିଲା ନା ତା' ଦେହରେ ଚିଆଁ ଲାଗିଲା ପରି, ମୁଁ ଡରୁଥିଲି କାଳେ ତା'ର ଆର୍ତ୍ତନାଦ ଶୁଭିଯିବ ଏଠିକି । ଯାହାହେଉ ସବୁ ଠିକ୍ ଅଛି...

କିନ୍ତୁ ପରକ୍ଷଣରେ ତାଙ୍କୁ କିଏ ଛିଗୁଲେଇଲା ପରି ଲାଗିଲା ଯେ କିଛି ଠିକ୍ ନାହିଁ ଏବଂ ତମେ ଜାଣିଛ ସେ କଥା । ପରିସ୍ଥିତି ତ ଠିକଣା ନୁହେଁ ସହଜେ, କିନ୍ତୁ ତମେ ବି'ଠିକ୍ କାମ କରି ନାହଁ । ଫୋନ୍ ଧରେଇଦେଇଥିଲେ ତା' ଦିଦିଙ୍କୁ, ଦିହିଁଙ୍କ ଆନନ୍ଦ-ଆଳାପର ମାଧୁରୀ ନିଶ୍ଚୟ ଫୁଟି ଉଠିଥାଆନ୍ତା ନୀଲ୍‌ର ମୁହଁରେ ଏବଂ ତା'କୁ କ'ଣ ତମେ ଉପଭୋଗ କରି ନ ଥାଆନ୍ତ ? ରୁଗ୍‌ଣାର ସେହି ଆନନ୍ଦଟିକ ମଧ କ'ଣ ତା'ର ଯତ୍‌ସାମାନ୍ୟ ଉପକାର କରି ନ ଥାଆନ୍ତା ? ଅବଶ୍ୟ ତମକୁ ମନା କରାହୋଇଛି ତା'କୁ ଦୂରେଇ ରଖିବାକୁ ତା'ର ଅଗଣିତ ଶୁଭାକାଂକ୍ଷୀମାନଙ୍କ ଠାରୁ, ଯେମିତିକି ତା'ର ବିଶ୍ରାମରେ ବାଧା ନ ହୁଏ । କିନ୍ତୁ ତମେ କ'ଣ ଜାଣି ନାହଁ ଯେ ସେଇ ଓଡ଼ିଆଣୀ କବି ଜଣକ ପ୍ରକୃତରେ ସ୍ପେଶାଲ୍ ତା'ପାଇଁ ? ଯାହାପାଇଁ ତା' ସ୍ନେହସୁଧାର ଭାଣ୍ଡ ଉତୁରି ପଡ଼େ, ସତେକି କୋଉ ଅପହୃତା ଭଉଣୀଟିଏ ଫେରିଆସିଛି ତା' ପାଖକୁ ଏତେ ଦିନକେ ? ନ ହେଲେ କ'ଣ ସେ ଏତେ ଝାଳନାଳ ହୋଇଥାଆନ୍ତା, ଏଠୁ ସେଠିକି ଦୌଡ଼ିଥାଆନ୍ତା, ଆଉ ଜୁରୀରେ ଥିବା କୋଉ ପୋତାମୁହାଁ ପଣ୍ଡିତକୁ 'ତାଜ୍'ରେ ଡିନର୍ ଖୁଆଇଥାଆନ୍ତା, ତା'କୁ ଫୁସୁଲେଇବା ଲାଗି ଯେ ଭାଗ୍ୟକୁ ଶୈଳଜା ପଣ୍ଡା ବୋଲି ଗୋଟିଏ ଝିଅ ହଠାତ୍ ଖସି ଆସିଛି ଆସ୍‌ମାନ୍‌ରୁ ଏବଂ ସେଇ ଏକା ଯୋଗ୍ୟ ଏ ବର୍ଷର 'ଦିବ୍ୟଜ୍ୟୋତି' ପୁରସ୍କାର ପାଇବାପାଇଁ ?

ସବୁ ଜାଣିଛ ତମେ, ସବୁ ଜାଣିଛ, ଯେଉଁ ପ୍ରକାର ସମ୍ପର୍କ ଅଛି ଦି' ଜଣଙ୍କ ଭିତରେ । ଆଉ ସେଇଥିପାଇଁ ତମେ ନୀଲ୍‌କୁ ଖାଲି ଘରୁ ବାହାରକୁ ପଠେଇ ଦେଇ ନାହଁ, ଏକ୍‌ଦମ୍ ଦିଲ୍ଲୀରୁ ଘଉଡ଼େଇଦେଇଛ ! ଯେମିତିକି ଆଉକ ନିକଟ ଭବିଷ୍ୟତରେ ପୁଣି ଫୋନ୍ କରିବାର ସାହସ ନ କରେ । ମିଛୁଆ ସାଙ୍ଗକୁ ଏତେ ନିର୍ଦ୍ଦୟ ହୋଇପାରିଲ ତମେ ? ଡାକ୍ତର ଏଇଆ କରିବାକୁ କହିଥିଲା ତମକୁ ?

କେ-ବି-କେ ହସିଲେ ମନେ ମନେ । ... ହଁ, ମୁଁ ମିଛୁଆ ଏବଂ କହିପାର ମୁଁ ନିର୍ଦ୍ଦୟ । କିନ୍ତୁ ମାନିବାକୁ ପଡ଼ିବ ଯେ ମୁଁ ପ୍ରତ୍ୟୁତ୍ପନ୍ନମତି । ନିମିଷରେ ତା' ନିଆଁଲଗା ଆବେଗକୁ ରୋକିଦେଇପାରିଲି, ଅନ୍ତତଃ କିଛିଦିନପାଇଁ । ନ ହେଲେ ସେ ହୁଏତ ପୁଣି କେତେବେଳେ ଫୋନ୍ କରନ୍ତା; ମୁଁ ଘରେ ନ ଥିଲାବେଳେ ଏବଂ କିଏ ବୋଲି ଜାଣିଲାରୁ ନୀଲ୍ ଉଠିପଡ଼ନ୍ତା କାହାରି ବାରଣ ନ ମାନି ।

ସରାଗର ସୁଅ ଛୁଟେଇ ଦେଇଥାଆନ୍ତା । ହେଲେ ତା'କୁଇ କହନ୍ତି ଉତ୍ତେଜନା, ଇମୋସନାଲ୍ ଅପ୍‌ସେଟ୍ । ବିଶେଷତଃ ସେ ଯେମିତି ଧଇଁସଇଁ ହେଉଥିଲା, ସତେକି ତା'ର ଗୋଟା ଜରୁରୀ କଥା କହିବାକୁ ଅଛି, ତା'ର ଯେଉଁ ପ୍ରଭାବ ପଡ଼ିଥାଆନ୍ତା ତା' ସ୍ନେହଶୀଳା ଦିଦି ଉପରେ, ମାନେ ତା' ଦେହର ଏଇ ଅବସ୍ଥାରେ, ସେ କଥା କ'ଣ କାହାକୁ ବୁଝେଇବାକୁ ପଡ଼ିବ ? ନା, ମୁଁ ଠିକ୍ କରିଛି ।

ମୁଁ ସେ ଝିଅଟାକୁ ଷ୍ଟାଣ୍ଡ୍ କରିପାରେ ନାହିଁ, ସେ କଥା ଭିନ୍ନ । କିନ୍ତୁ ମୁଁ ଯାହା କରିଛି, ଠିକ୍ କରିଛି । ମୋ ନୀଲ୍‌ର ମଙ୍ଗଳପାଇଁ । ...

ନିଜକୁ ସାବାସ୍ ଦେଇ, ଷଡ଼ି ଟେବୁଲ୍‌ର କାଗଜପତ୍ରକୁ ଅଯଥାରେ ଏପାଖ ସେପାଖ କରି, ୟା'ପରେ କ'ଣ କରିବି ବୋଲି ଭାବୁଥିଲାବେଳେ ସୂର୍ଯ୍ୟକିରଣ କେଉଁଠି ଥିଲା, ହଠାତ୍ ଚମକିଉଠିଲା । ଅତର୍କିତରେ କୁହୁଡ଼ିର ପଛଆଡୁ ଆସି ତା'କୁ ତଳେ ଗଡ଼େଇଦେଇ, ଆପଣାକୁ ଜାହିର୍ କଲା ପରି ।

ଟେବୁଲ୍ ଉପରେ ଖରା ପଡ଼ିଥିଲା । ସରକାରୀ ଫାଇଲ୍‌ପତ୍ର ଉପରେ । ଟେନାଏ ମଧ ଛିଟିକିଯାଇ କାନ୍ଥ ଉପରେ, କ୍ୟାଲେଣ୍ଡର୍-ରମଣୀ ଉପରେ । ସ୍ୱଭାବତଃ କେ-ବି-କେ ଯତ୍‌ସାମାନ୍ୟ ଜାଗ୍ରତ ଏବଂ ଉତ୍‌ଫୁଲ୍ଲ ହୋଇଉଠିଲେ ଏବଂ କ୍ୟାଲେଣ୍ଡର୍ ରମଣୀର ଚହଟୁଥିବା ଗାଲକୁ ଦେଖି ହଠାତ୍ ଗୋଟାଏ ଅଦ୍ଭୁତ ଧାରଣା ତାଙ୍କ ମନକୁ ଆସିଲା । ଧାରଣା ନୁହେଁ, ପ୍ରଚଣ୍ଡ ଅଭିଳାଷର ଝଲକାଏ ।

...ରୁଗ୍‌ଣାର ପାଖକୁ ମଧ ଆସିଥିବ ଏଇ ଚମତ୍କାରୀ ଜ୍ୟୋତିର ଧାପେ । ଆସିବା ଉଚିତ । କାରଣ ତା' ରୁମ୍‌ର ଗୋଟାଏ ଝରକା ପୂର୍ବଦିଗକୁ ଅଛି, ବିଛଣାରୁ ବେଶି ଦୂର ନୁହେଁ । ତେଣୁ ସୌର କିରଣର ଏଇ ଅପୂର୍ବ ସ୍ୱର୍ଗୀୟ ସଂଘାତ, ସେଥିରେ ତା' ଶେତାପଣ କ'ଣ ଉଭେଇଯାଆନ୍ତା ନାହିଁ ସବୁଦିନପାଇଁ ? ତା' ଗାଲ କ'ଣ ପୁଣି ଗୋଲାପି ହୋଇଉଠନ୍ତା ନାହିଁ ?...

କେ-ବି-କେ ସଙ୍ଗେ ସଙ୍ଗେ ନିଜକୁ ସଂଶୋଧନ କଲେ । ...ଆରେ, ମୁଁ କହୁ ନାହିଁ ଏଇ କ୍ୟାଲେଣ୍ଡର୍ ସ୍ତ୍ରୀ ଲୋକଟା ପରି । ମୁଁ କହୁଛି ସେ ଆଗେ ଯେମିତି ଦିଶୁଥିଲା । ଜୀବନରଙ୍ଗରେ ରଞ୍ଜିତ, ତା'ର ସେଇ ଧାରୁଆ ଗୋରା ମୁହଁ ଖଣ୍ଡକ । ହାଲୁକା ରଙ୍ଗ, କଅଁଳ ରଙ୍ଗ, ଯାହାର ଉଦ୍ଦେଶ୍ୟ ନୁହେଁ ତୁମକୁ ଚମକେଇବା କିମ୍ୱା କୋଉ ମଦନଶରରେ ବିଦ୍ଧ କରିବା । ବରଂ ଯେଉଁଥିରେ ତୁମ କ୍ରୋଧ ଶାନ୍ତ ହୋଇଯାଏ । ସଂସାରଟା ସୁନ୍ଦର, ଅତି ସୁନ୍ଦର ବୋଲି ମନେ ହୁଏ ।

ହେଲେ କେ-ବି-କେ ପାଦ ବଢ଼େଇଲେ ନାହିଁ ନୀଳିମାଙ୍କ ରୁମ୍‌କୁ ଯିବାପାଇଁ । ତାଙ୍କ ପ୍ରଚଣ୍ଡ କାମନା-ପ୍ରାର୍ଥନା କେତେଦୂର ଫଳବତୀ ହୋଇଛି ବୋଲି ପରଖିବା ଲାଗି । କାରଣ ସେ ଜାଣିଥିଲେ ଯେ କେଉଁଥିରେ କିଛି ଲାଭ ନାହିଁ । ନୀଲ୍‌ର ମୁହଁ ସେମିତି ଶେତା ଦିଶୁଥିବ । ଖରା ହୁଏତ ତା' ଶେତାପଣକୁ ଆହୁରି ଚିହ୍ନେଇ ଦେଇଥିବ ।

ଡାକ୍ତର ବର୍ମାଙ୍କ କଥାରେ ତିଳେହେଲେ ମଳିଧୂଳି ନ ଥିଲା । ଅବା କ୍ଷୀଣତମ ଆଶାର ଅବକାଶ । ନୀଲ୍ ବଞ୍ଚିବ ନାହିଁ । କହିଲେ, ଦୁଃଖର ବିଷୟ କ୍ୟାନ୍‌ସର୍‌କୁ ଆବିଷ୍କାର କରିବାରେ ଡେରି ହୋଇଗଲା । ହୁଏତ ଡାକ୍ତରଙ୍କର ଦୋଷ, ଆପଣଙ୍କର ନୁହେଁ । ହେଲେ କିଛି କରି ହେବ ନାହିଁ ଏଇକ୍ଷଣି । ଅପରେସନ୍‌ରେ କିଛି ଲାଭ ହେବ ନାହିଁ, ବରଂ ତା'ର ଫଳ ଓଲଟା ହେବ । ଖାଲି ମ୍ୟାଡ଼ାମ୍‌ଙ୍କୁ ଟିକିଏ ଶାନ୍ତି ଦେବା କଥା, ତାଙ୍କର ଶେଷ ନିଃଶ୍ୱାସଯାଏଁ । ଆଉ ତିନି ଚାରିଟା ମାସ, ଖୁବ୍ ବେଶୀ ହେଲେ ଜୁଲାଇ-ଅଗଷ୍ଟ ।

"ଦିଆଲୀ ଯାଏଁ ବି ବଞ୍ଚିବ ନାହିଁ ?" କେ-ବି-କେ ପଚାରିଥିଲେ ଆତୁର କଣ୍ଠରେ ।

"ୱେଲ୍, ଲେଟ୍‌ସ୍ ହୋପ୍ ସୋ, ହୋପ୍ ଏଣ୍ଡ ପ୍ରେ !" — ଡାକ୍ତର ବର୍ମା କହିଥିଲେ, ହାତ ଦି'ଟାକୁ ଶୂନ୍ୟରେ ଟେକେଇ ନେଇ । ତାଙ୍କ ନିପାରିଲା ପଣକୁ ଦର୍ଶାଇଲା ପରି ।

...ତମେ କୋଉଠୁ ବୁଝିବ ଦିଆଲୀର ମହତ୍ତ୍ୱ କଅଣ, ଡାକ୍ତର ସାହେବ ? ଏବଂ କିଭଳି ଆଶାର ସଞ୍ଚାର ହୋଇଥିଲା ସେଦିନ, ତଥା କିଭଳି ପ୍ରାର୍ଥନାର ପୂରଣ ? ଏତେ ଶୀଘ୍ର ସେ ସବୁ ମିଛ ହୋଇଗଲା କେମିତି ? କାହିଁକି ?? କେ-ବି-କେ ରାଗିଲେ ବିଧାତା ଉପରେ । କିନ୍ତୁ ତାଙ୍କର ବୁଝିବାରେ ବିଳମ୍ବ ହେଲା ନାହିଁ ଯେ ଏଥର କେହି ହେଲେ ଆସି ପହଞ୍ଚିଯିବ ନାହିଁ, ତାଙ୍କ ରାଗକୁ ମିଟେଇଦେବା ଲାଗି । ଜୀବନରେ ନୀଲ୍‌ଟିଏ ସହଜେ ଆସେ ନାହିଁ । ଆସିଲେ ଆସେ ଥରୁଟିଏ, ମାତ୍ର ଥରୁଟିଏ । କେ-ବି-କେ ମନେ ପକେଇଲେ ସେଦିନର କାହାଣୀ ।

ସେଦିନ ଦିଆଲୀରେ କେଇଟା ଟୋକା ଅଫିସର ନିଜକୁ ଦୂରେଇ ନେବାକୁ ଚାହୁଁଥିଲେ ଦୀପଜଳା ବାଣଫୁଟା ତାମ୍‌ସାରୁ । କ'ଣ ଲେଖା ହୋଇଛି ଯେ ସମସ୍ତେ ଯାହା କରିବେ ଆମେ ସେଇଆ କରିବୁ ? ଠିକ୍ ଏଇ ଭାବରେ ଖୁସି ହେବୁ, କାରଣ ଆଜି ଏମିତି ଖୁସି ହେବା କଥା, ଯେହେତୁ ଏଇ ହେଉଛି ଆମ ଭାରତୀୟ ସଂସ୍କାର ? ସରି, ଆମର ଦୃଷ୍ଟିକୋଣ ଭିନ୍ନ । ଆମେ ପ୍ରତ୍ୟେକେ

ଶିକ୍ଷିତ, ସ୍ୱାଧୀନ ଏବଂ ସଚେତନ ବ୍ୟକ୍ତି । ଏବଂ ତରୁଣ । ସରକାରଙ୍କ ସାଙ୍ଗରେ କଣ୍ଟ୍ରାକ୍ଟ ହୋଇଛି ଯେ ଦିନକୁ କେଇ ଘଣ୍ଟା କାମ କରିବୁ । କେତୋଟି ନିର୍ଦ୍ଧାରିତ କାମ । ତା' ଉତ୍ତାରୁ ଆମେ ନିଜକୁ ନିଜେ । ଆଉ କାହାରି ସାଙ୍ଗରେ କିଛି କଣ୍ଟ୍ରାକ୍ଟ ନାହିଁ ଆମର । ଅଛି କି ?

ଏହି ଭାବରେ ସେଇ କେତେଜଣ ତରୁଣ ପ୍ରଶାସକ ଏକାଠି ହୋଇଥିଲେ ସେଦିନ, ଇଣ୍ଡିଆନ୍ ଫରେଷ୍ଟ ସର୍ଭିସ୍, ଜଗବିନ୍ଦର ସିଂହର ଆଉଟ୍ ହାଉସ୍‌ରେ । ଭାରତର ବିଭିନ୍ନ କୋଣରୁ ଆସି ୟୁ.ପି. ସରକାରଙ୍କ ଅଧୀନରେ କାମ କରୁଥିବା ଏବଂ ପରସ୍ପରକୁ ସମଧର୍ମୀ ବୋଲି ମଣୁଥିବା ବ୍ୟୁରୋକ୍ରାଟ୍ କେତେଜଣ । ଓଡ଼ିଆ କୁଲଭୂଷଣ୍ କର୍, ବଙ୍ଗାଳୀ ନାରୁ ଭଟ୍ଟାଚାର୍ଜି, ଦକ୍ଷିଣୀ ସୁବ୍ବା ଓରଫ୍ ମ୍ୟାଂଗାଲୋର୍ ମହାଦେବନ୍ ସୁବ୍ରମଣିୟମ୍ ଏବଂ ନିଜ ଷ୍ଟେଟ୍ କ୍ୟାଡ଼ର୍‌ରେ ଥିବା ସୁରଜିତ୍ ସାକ୍‌ସେନା । ଏମିତି ଏକାଠି ହୋଇ ଆସୁଛନ୍ତି ସେମାନେ ପାଞ୍ଚ ଛଅମାସ ହେଲା । କେବଳ ତାଙ୍କର ସମଭାବାପନ୍ନ ବ୍ୟକ୍ତିତ୍ୱକୁ ଜାହିର୍ କରିବା ଲାଗି । ଯାବତୀୟ ତଥାକଥିତ ପାରିବାରିକ-ସାମାଜିକ ଦାୟିତ୍ୱକୁ ପଛରେ ପକାଇ ନିଜକୁ ନିଜେ ହୋଇ ରହିବାର ସୁଖ ହାସଲ କରିବାପାଇଁ । ଯାହାକି ତାଙ୍କର ସାମ୍ବିଧାନିକ ବ୍ୟକ୍ତିଗତ ଅଧିକାର ।

କେ-ବି-କେ ଏଇ ମୁକ୍ତିବୋଧକୁ ଦୟନୀୟ ବୋଲି ମନେ କରୁଥିଲେ, ଯଦିଓ ସେ ସାମିଲ୍ ହୋଇଥିଲେ ସେମାନଙ୍କ ସାଙ୍ଗରେ । ହସୁଥିଲେ ଯେ ବିଚରା ମୁକ୍ତ ହେବାକୁ ଯାଇ ପୁଣି ଏକାଠି ହେଉଛନ୍ତି, ଗୋଟାଏ ଦଳ ଗଢୁଛନ୍ତି ! ହସୁଥିଲେ ଯେ ସ୍ତ୍ରୀପିଲା କି ବାପମାଆ ଭାଇଭଉଣୀଙ୍କ ଠାରୁ କିଛି ସମୟପାଇଁ ଖସି ଆସିବାର ପ୍ରବୃତ୍ତିକୁ ନିହାତି ପିଲାଳିଆ ବୋଲି କୁହାଯିବ ତଥା ହନ୍ତସନ୍ତିଆ । କାରଣ ତମେ ପୁଣି ତା'ରି ଭିତରକୁ ଯିବ ସେଇ ପୂଜାପାଠ କି ପଣତକାନିର ବନ୍ଧନକୁ । ଯିବାକୁ ବାଧ୍ୟ । କିନ୍ତୁ ମୁଁ ତମ ପରି ନୁହେଁ । ମୋର ପରିବାର କାହିଁ କେତେ ଦୂରରେ ଏବଂ ମୁଁ ସେମାନଙ୍କଠାରୁ ବିଚ୍ଛିନ୍ନ ହୋଇ ରହିଛି, ସବୁ ଦୃଷ୍ଟିରୁ । ତା'ଛଡ଼ା ମୁଁ ବାହା ହୋଇ ନାହିଁ । ମୋର କ'ଣ ମୁଣ୍ଡ ଖରାପ ଯେ ମୁଁ ଜାଣିଶୁଣି ଗୋଟାଏ ନୂଆ ବନ୍ଧନରେ ବାନ୍ଧି ହୋଇ ପଡ଼ିବି ? ଏହିଭଳି ଆଣ୍ଟରେ ସେ ନିଜକୁ ଭିନ୍ନ ବୋଲି ମନେ କରୁଥିଲେ ସେମାନଙ୍କଠାରୁ ଏବଂ ଭାବୁଥିଲେ ଯେ ସେ ଦର୍ଶକ ମାତ୍ର । ଘରେ ବୋର୍ ନ ହୋଇ ଏଠିକି ଆସୁଛନ୍ତି ସମୟ କଟେଇବାଲାଗି । ଅବଶ୍ୟ ଏମାନେ ସିଧା ଲୋକଗୁଡ଼ିଏ, ହିପୋକ୍ରିଟ୍ ନୁହନ୍ତି ଆମ ସମାଜର ଅଧିକାଂଶ ଲୋକଙ୍କ ପରି । ତାହାହିଁ ଖୁସିର କଥା ।

କିନ୍ତୁ କେ-ବି-କେ କେବେହେଲେ ଖୁସି ଥିଲାପରି ମନେ ହେଉ ନ ଥିଲେ । ସତେକି ମୋଟ ଉପରେ ଖୁସି ହେବାର କିଛି ନାହିଁ ଏଇ ସଂସାରରେ । କେଉଁଥିରେ

ଆନ୍ତରିକତା ନାହିଁ, ସବୁ ଲୋକଦେଖାଣିଆ ଏବଂ ଆଇ.ଏ.ଏସ୍. ନାମକ ଉଚ୍ଚମନ୍ୟ ଫମ୍ପା ଚାକିରିଟା ହେଉଛି ତା'ର ପୃଷ୍ଠପୋଷକ ।

ତରୁଣ କୁଳଭୂଷଣ୍ କର୍ ସହଜେ ସିନିକ୍ ହୋଇପାରି ଥାଆନ୍ତେ ଯେ ମାର ଗୋଲି 'ଦୁନିଆ'ଟାକୁ । ମୁଁ ମୋର ଖାଇପିଇ ମଉଜ କରିବି, ଯେତେଦୂର ସମ୍ଭବ । କିନ୍ତୁ ଦୁଃଖର ବିଷୟ ସେ ଥାଇ ଥାଇ ରାଗୁଥିଲେ । ଯେମିତିକି ଏମିତି ହେବା ଉଚିତ ନୁହେଁ । କେହି ହେଲେ ସତ କି ଭଲ କି ସୁନ୍ଦର ମଣିଷ ତାଙ୍କ ଜୀବନରେ ଆସିବା ଉଚିତ । ଶେଷକୁ ସେ ନିଜ ଉପରେ ରାଗୁଥିଲେ ଯେ ହୁଏତ ଦୋଷ ତାଙ୍କରି, ତାଙ୍କରି ଠାରେ କୌଣସି ଜନ୍ମଗତ ଦୋଷ ଅଛି, ଯେଉଁଥିପାଇଁ ସେ ଏମାନଙ୍କ ପରି ଖୁସି ହୋଇପାରୁ ନାହାନ୍ତି, ତାହା ଯେତେ କୃତ୍ରିମ କି ପଳାୟନପନ୍ଥୀ ହେଉ ପଛକେ ।

ଏହେତୁ ଗୋଠ ଭିତରେ ଥାଇ ମଧ୍ୟ ସେ ଗୋଠଖଣ୍ଡିଆ ବୋଲି ମନେ ହେଉଥିଲେ । ନିଜ ଆଖିରେ ତଥା ସେମାନଙ୍କର । ଡେରି ହେଉ ନ ଥିଲା ଅନୁମାନ କରିବାରେ ଯେ ଏଇ ତରୁଣ ଆଇ.ଏ.ଏସ୍. ଆସିଷ୍ଟାଣ୍ଟ୍ ମାଜିଷ୍ଟ୍ରେଟ୍ ଜଣକ ଭିନ୍ନ ଧାତୁରେ ଗଢ଼ା । ପ୍ରଥମ କଥା ସେ ପ୍ରାୟ ସବୁବେଳେ ରାଗିଲା ପରି ମନେହୁଅନ୍ତି — କେଉଁଥିପାଇଁ, ଭଗବାନଙ୍କୁ ଜଣା !

ବୋଧହୁଏ ତାଙ୍କର ବର୍ଦ୍ଧିଷ୍ଣୁ କ୍ରୋଧ ହିଁ ଗୋଟାଏ ଉର୍ବର କ୍ଷେତ୍ର ପ୍ରସ୍ତୁତ କରି ପାରିଥିଲା କେଉଁ ଏକ ବରଣୀୟ ସ୍ପର୍ଶକୁ ଗ୍ରହଣ କରିବାଲାଗି । ଯେଉଁଥିରେ ସେ ନିଜକୁ ମୁକୁଳେଇ ଆଣି ପାରିବେ କ୍ରୋଧର ଅର୍ଗଳିରୁ । ଅନ୍ତତଃ ଗୋଟାଏ ସଫେଇ ମିଳିବ ତାଙ୍କୁ, ଯେ ସେ ଅକାରଣରେ ତାଙ୍କର ନ୍ୟାଯ୍ୟ ଓ ବୌଦ୍ଧିକ କ୍ରୋଧକୁ ବିଦା କରି ଦେଇ ନାହାନ୍ତି । ଏଥର କିଛି ଗୋଟାଏ କାରଣ ଅଛି ସଂସାରକୁ ଭଲପାଇବାପାଇଁ । ଏବଂ ଯେହେତୁ ସେ ତରୁଣ ଥିଲେ, ସେହି ସ୍ପର୍ଶଟି ତାଙ୍କୁ ଆଉ କିଏ ଦେଇପାରି ଥାଆନ୍ତା, ଜଣେ ଉପଯୁକ୍ତ ତରୁଣୀ ଛଡ଼ା ? ଯଦିଓ ସେ ସଚେତନ ମନରେ ଲୋଡ଼ୁ ନ ଥିଲେ କେଉଁ ଉଦ୍ଧାରକାରିଣୀକୁ ।

ଯାହାହେଉ ସେ କୁଆଡ଼ୁ ଆସି ପହୁଞ୍ଚିଗଲା ସେଦିନ, ସେଇ ଦିଆଲି ସଞ୍ଜରେ । ତା' ନାଆଁ ନୀଲିମା ସାକ୍‌ସେନା । ସୁରଜିତ୍ ସାକ୍‌ସେନାର ଦୂରସମ୍ପର୍କୀୟା ଭଉଣୀ, ଯେ ସଦ୍ୟ ଏମ୍.ଏ. ପାସ୍ କରିଛି ଇଂରେଜୀ ସାହିତ୍ୟରେ ଏବଂ ଭିଜିଟ୍ କରିବାକୁ ଆସିଛି ଏଇ ସହରକୁ, କେତେକ ଭାଇବନ୍ଧୁଙ୍କ ସାଙ୍ଗରେ ଦେଖା କରିବାଲାଗି ଏବଂ ରହିଛି ସୁରଜିତ୍ ଭୈୟାର ଘରେ ।

ସେଇ ନିଜେ ପ୍ରଥମେ ଆସିଲା ତାଙ୍କ ପାଖକୁ ଏବଂ ପ୍ରଶ୍ନ ପଚାରିଲା । କାହିଁକି ? କେଉଁ ବିଶେଷତ୍ୱ କି ଅବିଗୁଣ ପାଇଲ ମୋ ପାଖରେ ? କେ-ବି-କେଙ୍କୁ

ଭଲ ଲାଗି ନ ଥିଲା ତା'ର ଅନୁପ୍ରବେଶ । ସେହେତୁ ସେ ବିଦ୍ରୁପର ସ୍ୱରରେ ପଚାରିଲେ,

"ଆଜିପରା ଦିନରେ ଆପଣ ଘରେ ନ ରହି ଏଠିକି ଆସିଲେ କାହିଁକି ? ଦୀପ ଜଳେଇବାକୁ ଚାହିଁଲେ ନାହିଁ ? ନା ବାଣଫୁଟାକୁ ଡରିଲେ ?"

"ଉହୁଁ । ଭାବିଲି ଘରେ ତ ଅନେକ ଅଛନ୍ତି ଦୀପ ଜଳେଇବାପାଇଁ । ତେଣୁ ବାହାରକୁ ଗଲେ ମନ୍ଦ ହେବ ନାହିଁ, ସୁରଜିତ୍ ଭୈୟାଙ୍କ ସାଙ୍ଗରେ । କାଲେ ମୋର ସାହାଯ୍ୟ ଲୋଡ଼ା ଥିବ ଆଉ କେଉଁଠି । ତା'ଛଡ଼ା ବାଣଫୁଟାକୁ ମୁଁ ପ୍ରକୃତରେ ଡରେ ।" ଈଷତ୍ ହସ । କଥା ଚାତୁରୀ ? ନା, ତା' କଥାଗୁଡ଼ା ପ୍ରକୃତରେ ସତ ବୋଲି ମନେ ହେଉଛି ଏବଂ ସୁନ୍ଦର ହେବା ଛଡ଼ା, ସେ ନାରୀଭାବାପନ୍ନ, ଢୋ-ଢା ଗର୍ଜନ ତା'କୁ କଦାପି ଭଲ ଲାଗୁ ନ ଥିବ । ଯାହାହେଉ କେ-ବି-କେ, ତା'କୁ ଆହୁରି ବିଡ଼ିବାକୁ ଚାହିଁଲେ । ପଚାରିଲେ,

"କିନ୍ତୁ ଦେଖିପାରୁଥିବେ ଯେ ନା ଦୀପଜଳା, ନା ବାଣଫୁଟା ଆମେ କେଉଁଥିରେ ବିଶ୍ୱାସ କରୁ ନା' ।"

"ସେଇଆ ଦେଖୁଛି । କିନ୍ତୁ ମୁଁ ସହଜେ ଫେରିଯାଏ ନାହିଁ, ଯେଉଁଠିକି ଆସିଥାଏ ।"

ସେ ଫେରିଗଲା ନାହିଁ । କିନ୍ତୁ କେ-ବି-କେଙ୍କୁ ଅଧିକ ବ୍ୟକ୍ତିଗତ ପ୍ରଶ୍ନ ପଚାରି ବିରକ୍ତ କଲା ନାହିଁ । କେବଳ କେତୋଟି ଜିଜ୍ଞାସା ପୂରଣ କରିବାକୁ ଚାହିଁଲା ଓଡ଼ିଶାର କଳା ଓ ସଂସ୍କୃତି ବିଷୟରେ । ସେଇଠୁଁ ମିଶିଗଲା ଗହଣରେ, ଅନ୍ୟମାନଙ୍କ ସାଙ୍ଗରେ । ହେଲେ ସେ ତଥାପି ବାରମ୍ବାର ଦୃଷ୍ଟିପାତ କରୁଛି ତାଙ୍କ ଉପରେ ବୋଲି କେ-ବି-କେ ନିଶ୍ଚିତ ହେଲେ । ... କାହିଁକି ସେ ଏମିତି ଅନଉଛି ମୋ ଆଡ଼କୁ ଥରକୁ ଥର ?

ଧ୍ୟାତ୍, ତମେ'ଇ ତା' ଆଡ଼କୁ ଅନଉଛ ଥରକୁ ଥର । ନ ହେଲେ ଜାଣୁଛ କେମିତି ତା' ଚାହାଣି କେଉଁ ଆଡ଼କୁ ଯାଉଛି ? ...

ସେଇ ଥିଲା ପ୍ରଥମ ଦେଖାରେ ପ୍ରେମ । ଅବଶ୍ୟ ତା'କୁ ଯଦି ପ୍ରେମ କୁହାଯାଏ । କାରଣ ସେତେବେଳେ ତା'ର ଲକ୍ଷଣ ଥିଲା କେବଳ ଏତିକି ଯେ ଯଦିଓ ଝିଅଟାର ଅନୁପ୍ରବେଶ ତାଙ୍କୁ ଭଲ ଲାଗୁ ନ ଥିଲା, ସେ ତାଙ୍କ ଭଲ ନ ଲାଗିବାର ଭାବକୁ ବଞ୍ଚେଇ ରଖିପାରିଲେ ନାହିଁ । ଅପରନ୍ତୁ ତାଙ୍କର ମନେହେଲା ଯେ ବୋଧହୁଏ ଗୋଟାଏ ଆକର୍ଷଣର ଭାବ ତାଙ୍କ ମନକୁ ଆସୁଛି । ଅଯଥାରେ ।

...ଅସମ୍ଭବ ! ମୁଁ କ'ଣ ସତରେ ଭାବୁଥିଲି ସେତେବେଳେ, ଯେ ସେ ମୋ ପାଖରେ ଆସି ବସନ୍ତା କିଛି ସମୟ ? ପଦୁଟିଏ କଥା କହନ୍ତା ନାହିଁ, ଖାଲି

ବସି ରହନ୍ତା । ହାଲୁକାରେ ଛୁଅନ୍ତା ମୋତେ, ତା' ଚାହାଣିରେ । ସେଇଠୁଁ ସନ୍ତର୍ପଣରେ ତା'ର ଗୋରା କମନୀୟ ହାତଟିକୁ ରଖନ୍ତା ମୋ ଉପରେ । ଆଉ ମୋର ଯେତେକ ଦୁଃଖ, ଗ୍ଲାନି ଓ କ୍ରୋଧକୁ ହରିନିଅନ୍ତା । ନା, ସେମିତି ହୋଇ ନ ଥିବ କେବେହେଲେ । କେ-ବି-କେ ରୋମାଣ୍ଟିକ୍ ନୁହେଁ । ହେଲେ ମାନୁଛି ଯେ କ୍ରମଶଃ ସେମିତି ହୋଇଥାଇପାରେ, ପୁଣି କେତେଥର ତା' ସାଙ୍ଗରେ ଦେଖା ହେଲା ଉତ୍ତାରୁ । ତା' ଚେହେରାରେ ଏକ ବିଶେଷ ଗୁଣ ଅଛି ନିଶ୍ଚୟ, ଯାହାର ପରିଭାଷା ଆଉଁଶିଦେବା । 'ଦୁଃଖ ବୋଲି କିଛି ନାହିଁର ଭ୍ରମ ଆଣିଦେବା । ଧୀରେ ଧୀରେ ମୁଁ ସେଥିରେ ବାନ୍ଧି ହୋଇଗଲି ଏବଂ ସେଇଆକୁ କହିଲି ଲଭ୍ ।

ଯାହାହେଉ ସେଇ ଦିଆଲୀ ଦିନରୁ ହିଁ ଆରମ୍ଭ ହେଲା ଆମର ଯୁଗ୍ମ ଜୀବନର କାହାଣୀ । ଟୋକୀ ବାହାରିଥିଲା ଦୀପଟିଏ ଜଳେଇବ ବୋଲି ସେଦିନ । ଆଉ ଜଳେଇଲା ନା ଛାଡ଼ିଲା !...

କେ-ବି-କେ ତା'କୁ ଫୋନ୍ କଲେ ତା' ପରଦିନ, ସୁରଜିତ୍‌ର ନମ୍ବରରେ । କ'ଣ ନା, ଆପଣ ତ ଦି'ତିନିଦିନ ପରେ ଏଠୁଁ ଆଉ କୋଉଠିକି ଚାଲିଯିବେ ବୋଲି କହୁଥିଲେ, ସେଇଲାଗି ମୁଁ ଆପଣଙ୍କୁ ସକାଳୁ ସକାଳୁ ଫୋନ୍ କରି ବିରକ୍ତ କରୁଛି । ମୁଁ ଯେଉଁ ବହି କଥା କହୁଥିଲି ଆପଣଙ୍କୁ— ଚାର୍ଲସ୍ ଫାବ୍ରିଙ୍କର । ହିଷ୍ଟ୍ରୀ ଅଫ୍ ଓରିସ୍‌ସାନ୍ ଆର୍ଟ— ସେଇ ବହି ଖଣ୍ଡକ ଅଛି ଏଠି ଜଣକ ପାଖରେ । ମୋର ଜଣେ ଅଧ୍ୟାପକ ବନ୍ଧୁଙ୍କ ପାଖରେ, ମୁଁ ଚେକ୍ କରି ସାରିଲିଣି । ଭାବୁଥିଲି ଆପଣଙ୍କୁ ନେଇ ଦେଖେଇବି, ଅବଶ୍ୟ ଯଦି ସମୟ ଥାଏ ଆପଣଙ୍କର...

ନୀଳିମା ସାକ୍‌ସେନାଙ୍କର ସମୟ ଥିଲା । ତିନିଦିନରୁ ଆଠଦିନ ହୋଇଗଲା । ସୁରଜିତ୍‌ର ଘରେ, ଆଉ ଯେଉଁ ସହରକୁ ଯାଇ ଅନ୍ୟାନ୍ୟ ବନ୍ଧୁବାନ୍ଧବଙ୍କ ସାଙ୍ଗରେ ଦେଖା କରିବା ପୂର୍ବରୁ ଏବଂ ଯେଉଁ ଆଦାନପ୍ରଦାନର ଆରମ୍ଭ ହେଲା ଚାର୍ଲସ୍ ଫାବ୍ରିଙ୍କ ସହଯୋଗରେ ତା'ର ପହୁଞ୍ଚ ବଢ଼ି ବଢ଼ି ଗଲା ଅନେକ ଦୂରକୁ । ଯେବେ ନୀଳିମା ସତସତିକା ହାତଟିଏ ପକେଇଲେ କେ-ବି-କେଙ୍କ ହାତରେ, ତାଙ୍କ ରହଣିର ଶେଷ ଦିନରେ ଏବଂ କହିଲେ, "ବହୁତ ଭଲ ଲାଗିଲା ଏଇ କେଇଟା ଦିନ, ଆପଣଙ୍କ ସାଙ୍ଗରେ ଦେଖା ହେଲା ପରେ । ଆଶା କରେ ପୁଣି ଦେଖା ହେବ ଶୀଘ୍ର..."

କେ-ବି-କେ କେବଳ 'ଥ୍ୟାଙ୍କ୍ ୟୁ" ବୋଲି କହିପାରିଲେ ସେଦିନ । କିନ୍ତୁ ମାସେ ନ ଯାଉଣୁ ସେ ବିଧିମୁତାବକ 'ପ୍ରପୋଜ୍' କଲେ, ଚିଠିର ଆଢୁଆଳରେ ଏବଂ ନୀଳିମା ତା'ର ଉତ୍ତରରେ ଲେଖିଲେ, "ଯାହାହେଉ ଏତେଦିନକେ ! ମୁଁ ତ ଆଶା ଛାଡ଼ି ଦେଇଥିଲି..." । ତାଙ୍କ ରେଜିଷ୍ଟ୍ରୀ ବାହାଘର ସେଇ ସହରରେ

ହେଲା ବସନ୍ତପଞ୍ଚମୀ ଦିନ ଏବଂ ଉପରୋକ୍ତ ବ୍ୟୁରୋକ୍ରାଟ୍ ବନ୍ଧୁମାନେ ଥିଲେ ଟା'ଖିଆ ଉତ୍ସବର ମୁଖ୍ୟ ଅତିଥି । ତା'ପରେ ଯାଇ ଆଶୀର୍ବାଦ ମାଗି ନିଆଗଲା ଉଭୟ ପକ୍ଷର ବାପମାଆଙ୍କ ଠାରୁ । ପରବର୍ଷ ଦିଆଲୀ ଦିନ ଦୁହେଁ ଏକାଠି ଦୀପ ଜଳେଇଥିଲେ ଏବଂ ଲଡ୍‌ଡୁ ମାଡ଼ିଥିଲେ ପରସ୍ପରର ପାଟିରେ ।

ପନ୍ଦରବର୍ଷରୁ ଊର୍ଦ୍ଧ୍ୱ ହୋଇଗଲାଣି ସେ ଦିନଠୁଁ । ହେଲେ ସେ ନ ଥିବ ଏଇ ଦିଆଲୀରେ । ମୁଁ ବି' ଭାବୁଛି ପଳେଇଯିବି ସେ ଦିନ ଆଉ କେଉଁଠିକି । ଯେଉଁଠି ଦୀପଫିପ କିଛି ଜଳୁ ନ ଥିବ । ସେମିତିକା ଗୋଟାଏ ଜାଗା କ'ଣ ନ ଥିବ ଆମ ଦେଶରେ ?...

ଉପସ୍ଥିତ ବର୍ତ୍ତମାନକୁ ଫେରିଆସିଲେ କେ-ବି-କେ ଏକ ଗଭୀର ଦୀର୍ଘନିଃଶ୍ୱାସ ସହ ଏବଂ ଗୋଟାଏ କଥା ସ୍ଥିର କଲେ ଯେ ଆଜି ସେ ଅଧିକରୁ ଅଧିକ ସମୟ ଧରି ହାତ ରଖିବେ ନୀଲ୍‌ର ଶେତା ହାତ ଉପରେ । ଭାବିଲେ ତା'ର ଅନେକ କଥା ବାକୀ ଥିବ ତାଙ୍କୁ କହିବାପାଇଁ । କିନ୍ତୁ ଅନୁକୂଳ ସମୟ ମିଳିଲା ନାହିଁ ତାଙ୍କୁ । ମାନେ ଯେତେବେଳେ ନୀଲ୍ ଚେତା ଥିବ, ଯନ୍ତ୍ରଣା ଭୋଗୁ ନ ଥିବ ଏବଂ ନର୍ସ୍ ଓଗେର କେହି ପାଖରେ ନ ଥିବେ । ଦିନ ପରେ ଦିନ ଗଡ଼ିଗଲା ଏମିତି ।

କିନ୍ତୁ ଦିନେ ରାତିରେ କେ-ବି-କେଙ୍କର ମନେପଡ଼ିଲା ଯେ ଆଜି ବି' ବସନ୍ତ ପଞ୍ଚମୀ । ସେ ଆଉ ଅପେକ୍ଷା କରିପାରିଲେ ନାହିଁ । ରାତିଖିଆ ସରିଗଲାଣି । ନର୍ସ ଶୋଇଯାଇଛି । ଖୋଲା ଝରକା ଦେଇ ମୃଦୁ ସମୀରଣ ବହି ଆସୁଛି ଏବଂ ତା'କୁ ବସନ୍ତ ପବନ ବୋଲି କୁହାଯାଇପାରେ । ଏବଂ ମନେ ହେଉଛି ଯେ ନୀଲ୍ ହସହସ ଦିଶୁଛି !

''ନୀଲ୍...'', କେ-ବି-କେ ତା' ହାତରେ ହାତ ରଖିଲେ । ନୀଲ୍ କିଛି କଥା କହିଲା ନାହିଁ ସିନା, କିନ୍ତୁ ସେ କ୍ରମଶଃ ତା' ହାତର ମୃଦୁଚାପ ମଧ୍ୟ ଅନୁଭବ କଲେ ।

''ଜାଣିଛ ? ଆଜି ହେଉଛି ବସନ୍ତ ପଞ୍ଚମୀ ।''

ରୁଗ୍ଣା ତଥାପି ନିରୁତ୍ତର ରହିଲା । ହେଲେ ସ୍ମିତହାସ ଲିଭୁ ନ ଥିଲା ତା' ଓଠରୁ । ଯେମିତିକି ସେ ଏହି ପରିସ୍ଥିତିକୁ ଭଲ ପାଉଛି ଏବଂ ଚାହୁଁଛି ତା'ର ମିଆଦ ସରିବ ନାହିଁ । ସେହେତୁ କେ-ବି-କେ କେବଳ ବସି ରହିଲେ, ହାତ ଦିଓଟିର ଉଷୁମ ଏବଂ ଅନ୍ତରଙ୍ଗ ସ୍ପର୍ଶକୁ ନେଇ, ଏବଂ ତାଙ୍କର ମନେହେଲା ଯେ ତାଙ୍କୁଙ୍କ ଉତ୍ତର ଦେବାକୁ ପଡ଼ିବ, ଯାହା ସେ ପଚାରିବ ବୋଲି ହେଉଛି,

ହେଲେ ପଚାରିପାରୁ ନାହିଁ । ପ୍ରଣୟର ସସ୍ମିତ ଆତ୍ମବିଶ୍ୱାସ ପଛକୁ ଥିବା କେତୁଟା ଅନାବନା ପ୍ରଶ୍ନ, ବାଛେ ପ୍ରଶ୍ନ (ପନ୍ଦର ବର୍ଷର ଅନ୍ଧିକନ୍ଧି ଭିତରେ ମୁଣ୍ଡ ଟେକିଥିବା କେଇଟା ଅନାବନା ଘାସ), ଯାହାକୁ ସମୂଳେ ସାଫ୍ କରିବାକୁ ହେବ, ନ ହେଲେ ସେ ଶାନ୍ତିରେ ମରିପାରିବ ନାହିଁ ।

...ଶୁଣ ନୀଲ୍, ମୁଁ ଜାଣେ ତୁମେ କ'ଣ ସ୍ପଷ୍ଟ କରି ନେବାକୁ ଚାହୁଁଛ । ମୁଁ ତମ ପ୍ରତି ବିଶ୍ୱାସଘାତକତା କରିଛି, ଆଉ କେଉଁ ସ୍ତ୍ରୀ ପାଖକୁ ଯାଇଛି, ଏହିପ୍ରକାର ପତ୍ନୀସୁଲଭ ପ୍ରଶ୍ନ କଦାପି ତମ ମନରେ ଆସୁ ନ ଥିବ । ଆସିବାର କୌଣସି କାରଣ ନାହିଁ । କିନ୍ତୁ ହୁଏତ ପଚାରିବାକୁ ଚାହୁଁଛ ଯେ ବେଳେବେଳେ ମୋ ଚେହେରାରୁ ମନେହୁଏ, ଆମ ସେକ୍ସ୍ ସୁଖ ଦେଉ ନାହିଁ । ନିରଙ୍କୁଶିଆ ଲାଗୁଛି ଏବଂ ସେହି ହିସାବରେ ଆମ ଯୌନ ଜୀବନକୁ ସଫଳ ବୋଲି କହି ହେବ ନାହିଁ । ପଚାରୁଛ, ଇଏ କ'ଣ ସତ ନା ମିଛ ?

ମିଛ । ହଁ, ବେଳେବେଳେ ଗୋଟାଏ ଅତୃପ୍ତି ଆସେ ମୋ ମନରେ, ଆମର ଦୈହିକ ସଙ୍ଗମକୁ ନେଇ । କିନ୍ତୁ ଯଥାକ୍ରମେ ମୁଁ ବୁଝିବାକୁ ପାଏ ଯେ ସେଥିର କୌଣସି କାରଣ ନାହିଁ । ଦୋଷ ମୋର, ପୂରାପୂରି ମୋର । ମୋର ବ୍ୟକ୍ତିତ୍ୱ ତୁମର ସୂକ୍ଷ୍ମ ସୁନ୍ଦର ପ୍ରେମ ସାଙ୍ଗରେ ଖାପ୍ ଖାଇପାରୁ ନାହିଁ । ମନେହେଉଛି ତୁମେ ଆଉ ଟିକିଏ ସ୍ଥୂଳ ହୋଇଥାଆନ୍ତ କି !

ଛିଃ, ଛିଃ, ଅତି ନୀଚ ଭାବନା ! କିନ୍ତୁ ତାହା ସାମୟିକ ଏବଂ ବିଶ୍ୱାସ କର ଯେ କ୍ରମଶଃ ମୁଁ ତା'କୁ ଦୂରେଇ ଦେଇପାରିଛି ମୋ ମନରୁ । ଗତ ପାଞ୍ଚ ଛଅ ବର୍ଷ ଭିତରେ ତା'କୁ ମୋଟେ ଆସିବାକୁ ଦେଇନି । ଯେତେବେଳେ ମୁଁ ଜାଣିଲି ଯେ ସେକ୍ସ ସହଜେ ଗୌଣ ତୁମପାଇଁ । କାରଣ ସ୍ନିଗ୍ଧତା ହିଁ ତୁମର ସ୍ୱାକ୍ଷର, ଯାହାକୁ ଶୀତଳତା ବୋଲି ଭାବିବା ଘୋର ମୂର୍ଖତା ଛଡ଼ା ଆଉ କିଛି ନୁହେଁ । ସ୍ୱଭାବତଃ ସୌଖୀନ୍, ସ୍ୱଭାବତଃ ସମ୍ଭ୍ରାନ୍ତ ଏବଂ ସ୍ନିଗ୍ଧ । ତେଣୁ ଯେଉଁଠିକି ଯାଇଛ ମୋ ସାଙ୍ଗରେ, ଆଦମ୍‌ଗଡ଼୍, ବରେଲୀ, ବନ୍ଦା ଏବଂ ଆଜିର ମହାନଗରୀ ଦିଲ୍ଲୀ, ସବୁଠି ତମେ ତମ ନିଜର ଗୋଟାଏ ସାମ୍ରାଜ୍ୟ ଗଢ଼ି ନେଇପାରିଛ । ମୋରି ହୋଇଯାଆନ୍ତି ସେମାନେ, ତମ କସ୍ତୁରୀ ଗନ୍ଧରେ । ଯେତେକ କବି, ଗାଳ୍ପିକ, ଚିତ୍ରକର, ଜର୍ଣ୍ଣାଲିଷ୍ଟ, ଓଗେର ଓଗେର । ଯେତେକ ବେକାର, ଅଳସୁଆ, ଆଇ ମିନ୍ ତାଙ୍କ ଭିତରୁ ଅଧିକାଂଶ । କିନ୍ତୁ ସେଥିକୁ ତମର ଚାରା କଅଣ ? ଆଉ ତମ ଭକ୍ତମାନେ କ'ଣ ତମକୁ କମ୍ ହଇରାଣ କରନ୍ତି ? କମ୍ ଖଟାନ୍ତି ? ଲେଟେଷ୍ଟ୍ ହେଉଛି ସେଇ ଓଡ଼ିଆଣୀ କାଳୀକାନୀ ଖଣ୍ଡକ । ବେଳେବେଳେ ମୋର ମନେହୁଏ ଯେ ତା'ର ଛେନାଗୁଡ଼ 'ଦିବ୍ୟଜ୍ୟୋତି'ପାଇଁ

ଏତେ ଧାଁଧପଡ଼ କରି ନ ଥିଲେ, ଏତେ ହାଲିଆ ହୋଇପଡ଼ି ନ ଥିଲେ, ତମ ରୋଗଟା ହଠାତ୍ ଏମିତି ମାଡ଼ି ବସି ନ ଥାଆନ୍ତା ତମକୁ ।...

ଏଇ ସମୟରେ କେ-ବି-କେଙ୍କର ଭ୍ରମ ହେଲା ଯେ ନୀଲ୍‌ର ହସ ହସ ଭାବ ଉଭେଇଯାଇଛି । ସେ ଗମ୍ଭୀର । ତେଣୁ ସେ ହାତକୁ ସନ୍ତର୍ପଣରେ କାଢ଼ି ଆଣି ନୀଲିମାର ହାତକୁ ଆଉଁଶିବାକୁ ଲାଗିଲେ ।

...ସରି ! ମୁଁ କେବେହେଲେ ଆପତ୍ତି କରି ନାହିଁ, ତୁମର ଛୋଟ ବଡ଼, ହଟ୍‌ରଙ୍ଗୀ, ବଦ୍‌ରଙ୍ଗୀ ବନ୍ଧୁବାନ୍ଧବୀ ଓରଫ୍ ଭକ୍ତମାନଙ୍କୁ ନେଇ । କିନ୍ତୁ ଏ ଝିଅଟା ସମସ୍ତଙ୍କଠାରୁ ଭିନ୍ନ । ଭକ୍ତ ନୁହେଁ, ଶିଷ୍ୟ ନୁହେଁ, ଶୋଷକ ! ରୀତିମତ ଶୋଷକ, ମୁଁ ସତ କହୁଛି ।

ନା, ତୁମ ଦୋଷ ନୁହେଁ । ଅନ୍ୟମାନଙ୍କ ଉପକାର କରିବା ତମର ସ୍ୱଧର୍ମ । ଯେମିତିକି ତୁମେ ସ୍ୱଭାବତଃ ଶାନ୍ତ, ସ୍ନିଗ୍ଧ ଓ ସମ୍ଭ୍ରାନ୍ତ ଏବଂ ତୁମେ ଦାୟୀ ନୁହଁ, ତୁମର ସୁଗନ୍ଧିପାଇଁ...

ସେଦିନର ନୀରବ ଉପଚାର ସେତିକିରେ ସରିଯାଇଥାଆନ୍ତା, କାରଣ ନୀଲ୍‌ଙ୍କ ହସିଲା ମୁହଁର ଚେହେରା ଫେରିଆସିଲା ନାହିଁ । ତେଣୁ କେ-ବି-କେ ଯଥାଶୀଘ୍ର ବିଦାୟ ନେବାକୁ ବସିଥିଲେ, ଏହି ସମୟରେ ସେ ହଠାତ୍ କିଛି କହିଲା ପରି ଲାଗିଲା । କେ-ବି-କେ ଅଟକିଗଲେ ଏବଂ କାନ ଡେରିଲେ କଥାଟାକୁ ସ୍ପଷ୍ଟ ଭାବରେ ଶୁଣିବାଲାଗି । ନୀଲ୍ ଆଉ ଥରେ କହିଲେ ଏବଂ କେ-ବି-କେ ଶୁଣିଲେ,

"ହୋଲି ଆଉ କେତେ ଦିନ ରହିଲା ?"

"ହୋଲି ? ୟୁ ମିନ୍ ହୋଲି ?" କେ-ବି-କେ ଅଯଥାରେ ଫଟ୍‌ରେଇ ହେଲେ । କାରଣ ତାଙ୍କର ସନ୍ଦେହ ହେଲା ଯେ ନୀଲ୍ ଦିଆଲୀକୁ ହୋଲି ବୋଲି ମଣୁଛି । ମତିଭ୍ରମ । ଦିଆଲୀ ସାଙ୍ଗରେ ଆମର ଘନିଷ୍ଠ ସମ୍ପର୍କ, କିନ୍ତୁ ହୋଲିଟା ଆମର କଅଣ ? କିନ୍ତୁ ନୀଲ୍ ବାରମ୍ବାର ମୁଣ୍ଡ ଟୁଙ୍ଗାରି ଜଣାଇଦେଲେ ଯେ ହଁ, ସେ ହୋଲି ବିଷୟରେହିଁ ଜାଣିବାକୁ ଚାହାଁନ୍ତି । ଆଉ ପ୍ରାୟ ମାସେ ରହିଲା ବୋଲି କେ-ବି-କେ ଉତ୍ତର ଦେଲେ ଏବଂ ନୀଲ୍ ସନ୍ତୁଷ୍ଟ ହେଲାପରି ଦିଶିଲେ ।

କିନ୍ତୁ ନୀରବ ଏବଂ ଅନ୍ତରଙ୍ଗ ଆଳାପର ଖିଅ ତୁଟିଯାଇଥିଲା । ରାତି ମଧ ବଢ଼ିଲାଣି । ତେଣୁ କେ-ବି-କେ ଶୀଘ୍ର ବିଦାୟ ନେଲେ ନୀଳିମାଙ୍କଠାରୁ, ତାଙ୍କ କପାଳରେ ଚୁମାଟିଏ ଦେଇ ।

ତେବେ ନୀଲ୍ କାହିଁକି ପଚାରିଲା ହୋଲି ବିଷୟରେ, ଏଇ ରହସ୍ୟଟିକ ତାଙ୍କ ମନରୁ ଉଭେଇ ଗଲା ନାହିଁ । ହୋଲି ବେଳକୁ କ'ଣ ଘଟିବାର ଅଛି ? ନା ସେ କିଛି ଗୋଟାଏ କରିବାକୁ ଚାହେଁ ସେତେବେଳକୁ ?

ହେଲେ ଯେତେକ ପ୍ରଶ୍ନ ଓ ରହସ୍ୟ ଅବାନ୍ତର ହୋଇଗଲା, ଯେତେବେଳେ ନୀଳିମାଙ୍କ ଅବସ୍ଥା ହଠାତ୍ ତଳେଇଗଲା ମାସେ ନ ଯାଉଣୁ, ମହାଶିବରାତ୍ରିର ଦି'ଦିନ ପରେ । ସେ ଆଉ କିଛି କଥା କହିବାର କି ଶୁଣିବାର ଅବସ୍ଥାରେ ନ ଥିଲେ । ଯଦିଓ କେ-ବି-କେ ବାରମ୍ବାର ତାଙ୍କ ପାଖକୁ ଯାହାନ୍ତି, ତାଙ୍କ ଦେହକୁ ଆଉଁଶି ଦିଅନ୍ତି, ତାଙ୍କ ହାତକୁ ଚାପି ଧରନ୍ତି ଏବଂ ମନେ ମନେ (ବେଳେ ଅର୍ଦ୍ଧସ୍ଫୁଟ କଣ୍ଠରେ, ଯେତେବେଳେ ପାଖରେ କେହି ନ ଥାଆନ୍ତି) କୁହନ୍ତି—ଆଇ ଲଭ୍ ୟୁ ନୀଲ୍ ! ଆଇ ରିଏଲି ଲଭ୍ ୟୁ !

ଏହି ପରିସ୍ଥିତିରେ ଯେତେବେଳେ ଦ୍ୱିତୀୟବାର ଫୋନ୍. ଆସିଲା ଓଡ଼ିଶାରୁ ଏବଂ ପରିଚିତ ନାରୀକଣ୍ଠ ଆତୁର ହୋଇଉଠିଲା ଜାଣିବାପାଇଁ ଯେ ଦିଦି ଯେଉଁଠିକି ଯାଇଥିଲେ, ସେଠୁଁ ଫେରିଲେଣି କି ନାହିଁ, କେ-ବି-କେ ତା'କୁ ଆଉ ଏଡ଼ାଇ ଦେଇପାରିଲେ ନାହିଁ । ଦାରୁଣ ସତ କଥାଟିକୁ ନ କହି ରହିପାରିଲେ ନାହିଁ । କହିଲେ —

"ସେ ଅଛନ୍ତି ଏଠି । କିନ୍ତୁ ଭାରୀ ସିରିୟସ୍ ବେମାର..."

"କ'ଣ ହୋଇଛି ଦିଦିଙ୍କର ?"

"ଓ୍ୱେଲ୍—ଭଗବାନଙ୍କ ବରାଦ୍ କ'ଣ ମୁଁ ଜାଣେ ନାହିଁ । କିନ୍ତୁ ..."

"ନୋ !!"

"ଆପଣମାନଙ୍କ ପ୍ରାର୍ଥନା ଲୋଡ଼ା ମିସେସ୍ ପଣ୍ଡା ।"

"ମୁଁ ଆସୁଛି, ଯେତେ ଶୀଘ୍ର ପାରେ । ଟ୍ରେନ୍‌ରେ ଟିକେଟ୍ ନ ମିଳିଲେ ପ୍ଲେନ୍‌ରେ ଆସିବି । ଏମିତି ତ ଆସିଥାଆନ୍ତି ହୋଲି ବେଳକୁ, ପୁରସ୍କାର ନେବାପାଇଁ । ଓ-କେ, ଥ୍ୟାଙ୍କ୍ସ ।"

"ଥ୍ୟାଙ୍କ୍ସ..."

ସେଇଠୁଁ ଯାଇଁ କେ-ବି-କେ ବୁଝିଲେ ନୀଲ୍ କାହିଁକି ପଚାରୁଥିଲା ହୋଲି ବିଷୟରେ । ହୋଲି କାହିଁକି ହଠାତ୍ ଏତେ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା ତା'ପାଇଁ । ପୁଣି ତା'ର ଏଇ ଅବସ୍ଥାରେ, ଯେତେବେଳେ ତା' ମନ ମାତ୍ର କେତୋଟି ଉପସ୍ଥିତ ଜରୁରୀ କଥାକୁ ମୁଠେଇ ଧରୁଥିବ, ବାକୀ ସବୁକୁ ବାତିଲ୍ କରିଦେଇ । କାହିଁକିନା ଶୈଳର ଦିଲ୍ଲୀକୁ ଆସିବାର ଅଛି ସେତେବେଳକୁ, ପୁରସ୍କାର ନେବାଲାଗି । ହଁ, ମନେପଡୁଛି, ସେଇ ହେଉଛି ଦିବ୍ୟଜ୍ୟୋତିର ପରମ୍ପରା, କାହିଁକି ଭଗବାନ୍ ଜାଣନ୍ତି । ହୋଲିର ପରଦିନ ଏଇ ଉତ୍ସବ ଅନୁଷ୍ଠିତ ହୁଏ, ବସନ୍ତର ସମାବର୍ତ୍ତନ କଳାପରି ।

ଏତେ ଜରୁରୀ ଏଇ ଘଟଣା ନୀଲ୍‌ପାଇଁ ? ଏତେ ବ୍ୟାକୁଳ ସେ ତା'କୁ ଦେଖିବ ବୋଲି ? ଦେଖିବ ସେ କେମିତି ପୁରସ୍କାରଟିକୁ ଗ୍ରହଣ କରୁଛି ଭାଇସ୍ ପ୍ରେସିଡେଣ୍ଟଙ୍କ ହାତରୁ ଓ ସେଇଥିରେ ତା'ର ଆତ୍ମା ତୃପ୍ତ ହୋଇଯିବ ?

ନୀଲ୍, ୟୁ ଆର୍ ରିଏଲି...କୋଟିକରେ ଗୋଟିଏ !

କିନ୍ତୁ ଶୈଳ ଆସି ଦିଲ୍ଲୀରେ ପହଞ୍ଚିବା ବେଳକୁ ସବୁ ସରିଯାଇଥିଲା । ନୀଲିମାଙ୍କ ଶେତା ଦେହର ଅବଶେଷ ପ୍ରଚଣ୍ଡ ତେଜରେ ଜଳି ଉଠିଥିଲା, ମୁଠାଏ ପାଉଁଶ ହୋଇଯିବାପାଇଁ । କେ-ବି-କେ ମଧ ଯଥେଷ୍ଟ କାନ୍ଦି ସାରିଥିଲେ ଏବଂ ଜଣାଶୁଣା କଥାଟାକୁ ଆହୁରି ଭଲ ଭାବରେ ଜାଣିଲେ, ସାନ୍ତ୍ୱନା ଦେବାକୁ ଆସିଥିବା ବନ୍ଧୁମାନଙ୍କ ଗହଳିରୁ, ଯେ ତାଙ୍କ ପନ୍ଦରବର୍ଷର ପତ୍ନୀଜଣକ କେତେ ଲୋକପ୍ରିୟ ଥିଲା । ବିଶେଷତଃ ଗୁଣୀଜ୍ଞାନୀ ଓ କଳାକାରମାନଙ୍କ ମହଲରେ । ତଦ୍ୱାରା ତାଙ୍କ ଶୋକର ଲାଘବ ହେଲା ବୋଲି କହିଲେ ଭୁଲ୍ ହେବ । ତେବେ ସେ ଏକ ନ୍ୟାଯ୍ୟ ଗର୍ବ କରୁଥିଲେ । ତୁମେ ସମସ୍ତେ ତା'ର ବିଶିଷ୍ଟ ବନ୍ଧୁ ହୋଇପାର । ସେନ୍‌ସୁଆଲ୍ ଓ ସେନ୍‌ସୁଅସ୍ ଭିତରେ ପ୍ରଭେଦ କଅଣ କିମ୍ବା ଆବ୍‌ଷ୍ଟ୍ରାକ୍ଟ ରିଏଲିଜ୍‌ମ୍ କେଉଁ ଧାତୁରେ ଗଢ଼ା, ସେ ବିଷୟରେ ବେଶି ବୁଝାମଣା ଥାଇପାରେ ନୀଲ୍ ଓ ତୁମମାନଙ୍କ ମଧରେ, କିନ୍ତୁ ମାନିବାକୁ ପଡ଼ିବ ଯେ ତୁମର ଏଇ ମହୀୟସୀ ନାରୀଜଣକ କେବଳ ମୋରି ଅନ୍ତରଙ୍ଗ ଥିଲା । ଯଥାର୍ଥରେ ଅନ୍ତରଙ୍ଗ ।

ଧ୍ୟାତ୍, କିଏ କହିଲା ଆମ ମିଳନଟା ନିରଚ୍ଛିଆ ଥିଲା ? ହେଲା ଏବେ ସେଇଆ, କିନ୍ତୁ ସେଥିରେ ଯାଏ କେତେ, ଆସେ କେତେ ? ଦେହର ଯାନ୍ତ୍ରିକ ପ୍ରକ୍ରିୟାଟାକୁ ମିଳନର ପତିଆରା ବୋଲି କହିପାର, ସାମାନ୍ୟ ସୂଚନା ଅଥବା ଏକ ଆନନ୍ଦବର୍ଦ୍ଧକ ଭଗ୍ନାଂଶ, କିନ୍ତୁ 'ମିଳନ' ଜିନିଷଟାର ଅର୍ଥ ଭିନ୍ନ । ପୂରାପୂରି ଭିନ୍ନ । ମୋର ଯଥେଷ୍ଟ ଗର୍ବ କରିବାର ଅଛି ଏଭଳି ଗୋଟିଏ ପତ୍ନୀକୁ ପାଇଛି ବୋଲି । ପାଇଥିଲି ବୋଲି ତ ସେ ଆଜି ମୋତେ ଏମିତି ଶୂନ୍ୟ କରି ଚାଲିଯାଇଛି !...

ନୀଲ୍‌ଙ୍କ ମୃତ୍ୟୁର ଚାରିଦିନ ପରେ, ସେ ଯେତେବେଳେ ତାଙ୍କର ଷ୍ଟଡି ଟେବୁଲ୍ ପାଖରେ ବସିଥିଲେ ଏବଂ ଦିଲ୍ଲୀର ପହିଲି ଧୂଳିଝଡ଼ ଓ ତା'ପରେ ପରେ ଦି'ବୁନ୍ଦା ବର୍ଷାର ବେକାର ପରାକ୍ରମକୁ ଉପଭୋଗ କରୁଥିଲେ ଝରକା ବାଟେ, ତାଙ୍କର ଉପଭୋଗୀ ଚେହେରା ଅନେକ ଦିନର ବୋଲି ମନେ ହେଉଥିଲା । ସତେକି ଶୂନ୍ୟତା ବାଟ ଦେଇ ସେ କେବେଠୁଁ ମୁକ୍ତି ଲଭିଲେଣି । ଯେଉଁ ମୁକ୍ତିଟା ହାତଛଡ଼ା ହୋଇଯାଇଥିଲା ଏଇ ପନ୍ଦର ବର୍ଷ ହେଲା । ବର୍ତ୍ତମାନ ସେ ଯେତିକି ବିରହୀ, ମଧ ସେତିକି ଶାନ୍ତ ଏବଂ ସମାହିତ । ଶୁଦ୍ଧିକ୍ରିୟାର ଉଦ୍‌ଯାପନ ଦିନ ଯେଉଁ ପ୍ରାର୍ଥନାସଭା ଅନୁଷ୍ଠିତ ହେବ, ତା'କୁ କିପରି ଭାବରେ ସାଫଲ୍ୟମଣ୍ଡିତ କରିବାକୁ

ହେବ, ଯେଉଁଥିରେ ନୀଲ୍‌ର କଳାତ୍ମକ ଆତ୍ମା ମହାନନ୍ଦ ଲାଭ କରିବ ଏବଂ ତଳେ ଛାଡ଼ିଦେଇ ଆସିଥିବା ସ୍ୱାମୀକୁ ବିଶେଷ ଧନ୍ୟବାଦ ନ ଦେଇ ରହିପାରିବ ନାହିଁ, ସେ ତା'ରି ଚିଠା ପ୍ରସ୍ତୁତ କରୁଥିଲେ ।

ଏହି ସମୟରେ କଲିଙ୍ଗ୍ ବେଲ୍ ବାଜିଉଠିଲା ଏବଂ କେ-ବି-କେ କବାଟ ଖୋଲି ଯାହାକୁ ଦେଖିଲେ, ସେ ହେଉଛି ଶୈଳଜା ପଣ୍ଡା । ବଲବଲ ହୋଇ ଅନେଇଛି ତାଙ୍କ ମୁହଁକୁ, ପାଟିରୁ କଥା ବାହାରୁ ନାହିଁ । ଶାଢ଼ି ଠାଏ ଠାଏ ଓଦା, ମୁହଁରେ ବି' ପାଣିଛିଟିକାର ଦାଗ...ସତେକି ସେ ପୁଣି ଥରେ ବର୍ଷାକୁ ସାଙ୍ଗରେ ନେଇ ଆସିଛି ! ଆଗଥର ବର୍ଷା ସରିଯାଇଥିଲା ଦିଲ୍ଲୀରେ ପହଞ୍ଚିଥିଲା ବେଳକୁ, ତେଣୁ ଆଜି ସେ ତା'ର ଅରମାନ ପୂରା କରିଦେଇଛି । ଆମୋଦର ହସ ଟିକେ ଫୁଟି ଉଠିଲା କେ-ବି-କେଙ୍କ ଓଠରେ, ତାଙ୍କ ଅଜାଣତରେ । ତା'କୁ ସେ ତତ୍‌କ୍ଷଣାତ୍ ଦବେଇଦେଲେ ଅବଶ୍ୟ, କିନ୍ତୁ ତାହା ଶୈଳର ଆଖିରେ ପଡ଼ି ନ ଥିବ ବୋଲି କହି ହେବ ନାହିଁ ।

''ଦିଦି କେମିତି ଅଛନ୍ତି ?''

କେ-ବି-କେ ନୀରବ ଏବଂ ଗମ୍ଭୀର । କହିଲେ, ''ଆସ, ଆସ, ଭିତରକୁ ଆସ ।''

''କିନ୍ତୁ ଆପଣ କିଛି କହୁ ନାହାନ୍ତି କାହିଁକି ?''

''ଆଇ ଆମ୍ ସରି...'' । କେ-ବି-କେ ଶୈଳଆଡ଼କୁ ହାତ ବଢ଼େଇଲେ, ମୁଁ ନାଚାର ବୋଲି କହିଲାପରି । କିନ୍ତୁ ଅଟକିଗଲେ ସେବକାର ମିଛ ଘଟଣାକୁ ମନେପକେଇ ଏବଂ କହିଲେ, ଥଙ୍ଗେଇ ଥଙ୍ଗେଇ, ''ନୀଲ୍ ନାହିଁ । ଆମକୁ ଛାଡ଼ିଦେଇ ଚାଲିଯାଇଛି ।''

ଶୈଳ ଲଥ୍‌କିନି ବସିପଡ଼ିଲା ପାଖ ଚଉକିରେ । ଘର ଭିତରେ ପଶିଲାକ୍ଷଣି ଓ ହଲ୍‌କୁ ଯିବା ପୂର୍ବରୁ ଯେଉଁ ଅଣଓସାରିଆ ପିଣ୍ଡାଟିଏ ଅଛି, ସେଠି ଗୋଟାଏ ଅନାଧୁନିଆ ଚଉକି ପଡ଼ିଥାଏ, ଏଣୁତେଣୁ ବାହାର ଲୋକଙ୍କପାଇଁ, ତା'ରି ଉପରେ । କେ-ବି-କେ ତା'ର ସୁଟ୍‌କେଶ୍ ଖଣ୍ଡକ ତା' ହାତରୁ ନେଇ ଆସିଲେଣି ଓ ତା'କୁ ଇସାରା କରୁଛନ୍ତି, ଭିତରକୁ ଯିବାଲାଗି । କିନ୍ତୁ ସେ ସେଠୁଁ ଚଳିବାକୁ ନାରାଜ ।

ଶୈଳର ଭାବହୀନ ଦୃଷ୍ଟି ଯେତେବେଳେ ପୁଣି ସଜାଗ ହୋଇଉଠିଲା, ସେଥିରେ କେବଳ ଗୋଟିଏ ଭାବର ପ୍ରାଦୁର୍ଭାବ ଥିଲା । କ୍ରୋଧ । ଏବଂ କେ-ବି-କେଙ୍କର ସାହସ ହେଲା ନାହିଁ, ତା'ର ଏଇ ଅଦୃଷ୍ଟପୂର୍ବ କ୍ରୋଧାଗ୍ନିକୁ 'ଥାଉ' ବୋଲି କହିବାପାଇଁ ।

"କାହିଁକି—କାହିଁକି—ଆପଣ ମୋତେ ଖବର ଦେଲେ ନାହିଁ ଆଗରୁ ? ମୁଁ ଯେତେବେଳେ ପ୍ରଥମେ ଫୋନ୍ କଲି—"

"ଶୁଣ—ଶୁଣନ୍ତୁ ମିସେସ୍ ପଣ୍ଡା, ଆମେ କେହି ଭାବି ନ ଥିଲୁ, ଡାକ୍ତର ବି' ଭାବି ନ ଥିଲେ, ସେ ଏତେ ଶୀଘ୍ର ଚାଲିଯିବ ବୋଲି । ତେଣୁ ମୁଁ ଚାହିଁଲି ନାହିଁ ଆପଣଙ୍କୁ କଷ୍ଟ ଦେବାଲାଗି...ଆଇ ମିନ୍...କାହିଁକିନା ମୁଁ ଜାଣେ ଆପଣ କେତେ ଆଟାଚ୍‌ଡ୍ ଥିଲେ ତା' ପ୍ରତି..."

"ଆଟାଚ୍‌ଡ୍ ! ରିଏଲି ? ୟୁ ଥିଙ୍କ୍ ସୋ ?" ଶୈଳ ଗୋଟାଏ ତିକ୍ତ ହସ ହସିଲା ଏବଂ ତା' ପରେ ପରେ ଭେଁକିନି କାନ୍ଦି ଉଠିଲା, କେ-ବି-କେଙ୍କୁ ଅବାକ୍ କରିଦେଇ ।

ଓଃ ! ଏତେ ଲୁହ କୋଉଠି ରହିଥିଲା ଏଇ ଶ୍ୟାମଳୀର ଆଖିରେ !

କେ-ବି-କେ ଗୋଟାଏ ଅଦ୍ଭୁତ କାମ କଲେ ଯାହା ତାଙ୍କ ସୁସ୍ଥ ସ୍ୱଭାବର ବହିର୍ଭୂତ । ହଁ, ସେ ମଧ୍ୟ କାନ୍ଦିଲେ । ସମ୍ମୁଖରେ ଏଭଳି କାନ୍ଦଣାକୁ ଦେଖି କାହାର ଆଖି ଶୁଖିଲା ରହିପାରିବ ? ବିଶେଷତଃ ଶୋକସନ୍ତପ୍ତ ସ୍ୱାମୀର ଆଖି, ଯାହା ଭୁଲ୍‌ରେ ଧରି ନେଇଥିଲା ଯେ ତା'ର ଯେତେକ ଲୁହ ସରିଯାଇଛି ? କିନ୍ତୁ କେବଳ ତା' ନୁହେଁ । ସେ ମଧ୍ୟ ଲଥିକିନି ବସିପଡ଼ିଲେ ସେଇ ଚଟାଣ ଉପରେ !

...ଶୈଳ, ମୋ ଦୋଷ ନୁହେଁ । ମୋତେ ବିଶ୍ୱାସ କର, ମୁଁ ତୁମକୁ ଏମିତି କନ୍ଦେଇବାକୁ ଚାହିଁ ନ ଥିଲି । ତୁମକୁ ଜାଣିଶୁଣି ଦୂରେଇଦେବାକୁ ଚାହିଁ ନ ଥିଲି ତମ ଦିଦିଙ୍କଠାରୁ । ମୋତେ ସେଥିରୁ କ'ଣ ମିଳିବ କହିଲ ? ହେଲା ଏବେ ମୁଁ ତୁମକୁ — ନା, ହେଟ୍ କରେ ବୋଲି କହୁ ନାହିଁ, କିନ୍ତୁ ଗୋଟାଏ କାରଣରୁ ମୋର ଅବଶ୍ୟ ରାଗ ଆସିଥିଲା ତୁମ ଉପରେ — ହେଲେ ମୁଁ ଏତେ ବଡ଼ ଆଘାତ ଦେବାକୁ ଚାହିଁ ନ ଥିଲି ତୁମ ମନରେ । ମାନେ, ଭାବି ନ ଥିଲି ତମେ ଏତେ ବଡ଼ ଆଘାତ ପାଇବ ବୋଲି । ସେଇ ହେଉଛି ମୋ ଦୋଷ । ଆଇ ଆମ୍ ସରି, ଆଇ ଆମ୍ ରିଏଲି ସରି...

କିନ୍ତୁ ଶୈଳ ତିଳେମାତ୍ର ତରଳି ଗଲା ନାହିଁ କେ-ବି-କେଙ୍କ ଉଦ୍ବେଳିତ ଅଶ୍ରୁସିକ୍ତ ମୁହଁକୁ ଦେଖି ।

...ହଁ, ତୁମେ ତ କାନ୍ଦିବ, ତୁମର କାନ୍ଦିବା କଥା । ସେ ତୁମର ସ୍ତ୍ରୀ ଥିଲେ । ମୁଁ ଯେତେହେଲେ ଗୋଟାଏ ବାହାର ଲୋକ । କିନ୍ତୁ ତୁମେ କୋଉଠୁ ବୁଝିବ ସେ ମୋର କେତେ ଆପଣାର ଥିଲେ ? କେତେ ବୁଝିଥିଲେ ସେ ମୋର

କବିତାକୁ, ମୋର ଆତ୍ମାକୁ ? (କେତେଜଣ ବା ବୁଝିଛନ୍ତି ଯେ ମୋର କବିତା ଓ ଆତ୍ମା ଗୋଟିଏ ସୂତାରେ ଗୁନ୍ଥା ?)

ମୁଁ କେତେ ଆଶା କରିଥିଲି ଦିଦି, ଯେ ତୁମେହିଁ ପୁରସ୍କାରଟିକୁ ବଢ଼େଇଦେବ ମୋ ହାତକୁ, ଆଉ ସେଇ ହେବ ମୋର ଯଥାର୍ଥ ସ୍ୱୀକୃତି । କିନ୍ତୁ ମୁଁ ଗୋଟାଏ ହୀନିକପାଳୀ । ... ପୁଣି ଗୋଟାଏ କୋହ ଏବଂ ଲୁହର ହାବୁକାରେ ଭାଙ୍ଗିପଡ଼ିଲା ଶୈଳ ଏବଂ ତା' ମୁହଁକୁ ଦି'ହାତରେ ଘୋଡ଼େଇଦେଲା ।

...ଓଃ ! ଏତେ କାନ୍ଦିଲେ ହେବ ? ... କେ-ବି-କେ ଏକାଧାରରେ ଅସ୍ଥିର ଏବଂ ଅସହାୟ ହୋଇଉଠିଲେ । କାରଣ ପାଖକୁ ଯାଇ ତା' ହାତରେ ହାତ ରଖି ହେବ ନାହିଁ କିମ୍ବା ସେମିତି କିଛି କରି ହେବ ନାହିଁ, ତା'କୁ ବୋଧ ଦେବାଲାଗି । ହେଲେ ସେ ଭାବିଲେ ଯେ ତାଙ୍କୁ କିଛି କରିବାକୁ ପଡ଼ିବ । ଦୋଷ ସ୍ୱୀକାର କରି କ୍ଷମା ମାଗିଲା ପରି ।

କିନ୍ତୁ ଶୈଳ ତା' ନିଜର ଅସହାୟତାରେ ଘାରି ହେଉଥିଲା ।

...କହିବାକୁ ଗଲେ ନିଜର ବୋଲି ଆଉ କିଏ ଅଛି ମୋର, ଯେ ମୋତେ ବୁଝିବ ? ହଁ, ମୋର ବାପମାଆ ଅଛନ୍ତି, କିନ୍ତୁ ସେ ଅତୀତର ଏବଂ କାଳକ୍ରମେ ଦୂରେଇ ହୋଇଯାଇଛନ୍ତି । ଅବଶ୍ୟ ମୋର ସ୍ୱାମୀ ଅଛନ୍ତି, ଯେ ମୋତେ ଭଲପାଆନ୍ତି । ଏଭଳି ଉଦାର ସୁନ୍ଦର ଭଲପାଇବା ଖୁବ୍ କମ୍ ସ୍ୱାମୀମାନଙ୍କଠାରୁ ମିଳେ । କିନ୍ତୁ ସେ ବିଚରା ଭିନ୍ନ ସ୍ତରର ଲୋକ । ମୋର କବିପ୍ରାଣକୁ ସେ ବୁଝିପାରିବେନି' କେବେହେଲେ, ମୋର କବିତ୍ୱକୁ ଯେତେ ସମ୍ମାନ ଦେଲେ ମଧ୍ୟ । କେବଳ ଜଣେ ଅଛନ୍ତି, ମୋ କବିପ୍ରାଣର ଅଧିଷ୍ଠାତ୍ରୀ ଦେବତା, ମୋର ପ୍ରେରଣା । କବି ରାମହରି । କିନ୍ତୁ ସେ କାହିଁ କେତେ ଦୂରରେ ଶୋଭା ପାଉଛନ୍ତି, ଧ୍ରୁବତାରା ପରି । ଦିଦିଙ୍କ ପରି ସେ ମୋତେ ତାଙ୍କ ପାଖକୁ ଟାଣି ଆଣିପାରିବେ ନାହିଁ—ମୁଁ ଦୈହିକ ଅର୍ଥରେ କହୁ ନାହିଁ—ଯେମିତିକି ପ୍ରାଣର ପ୍ରତ୍ୟେକ ସ୍ପନ୍ଦନକୁ ଶୁଣିହେବ । ମୋର ଆଉ କେହି ନାହିଁ କେ-ବି-କେ ସାହେବ, କେହି ନାହିଁ !...

ଲୁହବୁହାର ବ୍ୟବଧାନରେ ଶୈଳ ଅନେଇଲା କେ-ବି-କେଙ୍କୁ । ଚାହାଣିରେ ରାଶି ରାଶି ବ୍ୟଥା ।

କେ-ବି-କେ ଆଲୋଡ଼ିତ ହେଲେ । ତାଙ୍କର ମନେହେଲା, ଶୈଳର ସଂସ୍ପର୍ଶରେ ଆସିଥିବା ବିଭିନ୍ନ ଲୋକ, ବିଶେଷତଃ ପୁରୁଷମାନଙ୍କର ଯେମିତି ମନେ ହୋଇଛି ବିଭିନ୍ନ ସମୟରେ, ଆଃ ! କେମିତି ଭଲା ଏଇ ଉପଯାଚିକାଟିକୁ ଫେରାଇ ଦେଇହେବ ? ତା'ଛଡ଼ା ତାଙ୍କ ମନରେ ଆଉ ଗୋଟିଏ ଭାବର ଉଦ୍ରେକ ହେଲା । ଯେ ଏଇ ଶ୍ୟାମଳୀ ତାଙ୍କର ସ୍ତ୍ରୀ ହୋଇପାରିଥାଆନ୍ତା । ତା'ହେଲେ ସେ ତା'ର ଏଇ ସୁନ୍ଦର ଏବଂ ଅପରୂପ ବ୍ୟଥାକୁ ନିଃଶେଷରେ ଲିଭେଇଦେଇ ପାରି ଥାଆନ୍ତେ ।

ସବୁ ସ୍ୱାମୀମାନଙ୍କ ପରି, ନାନା ପ୍ରତ୍ୟକ୍ଷ ଉପାୟରେ । ଶ୍ୟାମତନୁର ଇଚ୍ଛେ ବାକୀ ରହନ୍ତା ନାହିଁ ।...

ଆରେ, ମୁଁ ଏମିତି କ'ଣ ଭାବୁଛି ? କେ-ବି-କେ ଚମକି ପଡ଼ିଲେ । ହେଲେ ସେ ନିଜକୁ ବୁଝେଇ ପାରିଲେ — ଧ୍ୟାତ୍, ଏଥିରେ ବ୍ୟସ୍ତ ହେବାର କ'ଣ ଅଛି ? ଇଏ ଗୋଟାଏ ସ୍ଥୂଳ, ଅବାସ୍ତବ ଫ୍ୟାଣ୍ଟାସି । ଯାହାର କୌଣସି ସମ୍ପର୍କ ନାହିଁ ନୀଲ୍‌ଗତ ପ୍ରେମ, ସତସତିକା ପ୍ରେମ ସାଙ୍ଗରେ ।

ତେଣୁ ଗ୍ଲାନିର କାରଣ ନାହିଁ । ଅପରନ୍ତୁ ନୀଲ୍ ଯା'କୁ ଏତେ ଭଲ ପାଉଥିଲା, ଯେ ଯା'ପାଇଁ କିଛି କରିପାରିଲେ ନୀଲ୍‌ର ଆତ୍ମା ହିଁ ଖୁସି ହେବ ସବୁଠୁଁ ବେଶି । ସେବେଠୁଁ ସେ ଆଉ ଚୁପ୍ ହୋଇ ରହିପାରିଲେ ନାହିଁ । କହି ପକେଇଲେ —

"ଶୁଣ, (ଶୁଣନ୍ତୁ ବୋଲି ଆଉ କହି ହେଲା ନାହିଁ) ମୁଁ କଥା ଦେଉଛି ତୁମକୁ, ନୀଲ୍ ଯାହା ଚାହିଁଥିଲା ମୁଁ ତା'କୁ ପୂରା କରିବି । ମରିବାର କିଛି ଦିନ ପୂର୍ବରୁ କହିଥିଲା ମୋତେ, ଯେତେବେଳେ ସେ ଜାଣିଲା ଯେ ତମେ ଆସିବ ହୋଲି ବେଳକୁ, ଆଉ ସେ ନ ଥାଇପାରେ ସେତେବେଳେ...କହିଲା ମୋ ହାତକୁ ଧରିପକେଇ— "ତମେ ବୁଝିବ ତା' କଥା ।" ମୁଁ ବୁଝିବି ତୁମ କଥା ଶୈଳ । ଜୀବନଟା ଯାକ, ଯେଉଁଥିରେ ତୁମ ମନସ୍କାମନା ପୂର୍ଣ୍ଣ ହେବ । ଆଉ ତୃପ୍ତ ହେବ ତା'ର ଆତ୍ମା..."

ବିଶ୍ୱାସ କରି ହେବ ନାହିଁ, ଶୈଳର ପାଟିରୁ ଯାହା ବାହାରିପଡ଼ିଲା —

'ୟୁ ଗୋ ଟୁ ହେଲ୍ !"

ତେବେ ସ୍ତମ୍ଭିତ କେ-ବି-କେଙ୍କର ବୁଝିବାର ବିଳମ୍ବ ହେଲା ନାହିଁ ଯେ ଇଏ ଥିଲା ତା' ଶୋକାଭିମାନର ଶେଷ କଥା । ତେଣୁ ସେ ତା'କୁ ସହାସ୍ୟ ବଦନରେ କ୍ଷମା କରିଦେଲେ, ଯେତେବେଳେ ଶୈଳ କ୍ଷଣକ ପରେ "ଆଇ ଆମ୍ ସରି, ଭେରି ସରି, ମୋତେ କ୍ଷମା କରନ୍ତୁ" ବୋଲି ଦୋହରେଇ ହେଲା । ଘୋର ଲଜ୍ଜା ଏବଂ ଅନୁତାପରେ ମ୍ରିୟମାଣ ହୋଇ । କେବଳ ସେତିକି ନୁହେଁ । କେ-ବି-କେ ଏକ ଅପୂର୍ବ 'ଆଧ୍ୟାତ୍ମିକ' ଭାବରେ ଉଜ୍ଜୀବିତ ହେଲେ । ଇଚ୍ଛା କରିଥିଲେ ସେ ତା'ର ଦୁର୍ବଳତାର ସୁଯୋଗ ନେଇପାରି ଥାଆନ୍ତେ । କ୍ଷମା ଲୋଡୁଥିବା ରମଣୀକୁ କୋଳକୁ ନେଇ ଆସିପାରି ଥାଆନ୍ତେ, ତା'କୁ ଦଣ୍ଡ ଦେଲାପରି । କିନ୍ତୁ ସେଭଳି କିଛି କରିବା ଦୂରର କଥା, ସେ ପଣ କଲେ ଯେ ସେ କେବେହେଲେ ତା'ର ଅଙ୍ଗ ସ୍ପର୍ଶ କରିବେ ନାହିଁ, କଦାପି ପ୍ରଶ୍ରୟ ଦେବେ ନାହିଁ ସେଭଳି ଦୁଷ୍ଟ କାମନାକୁ, କିନ୍ତୁ ସେ 'ତା'କଥା ବୁଝିବେ' ତାଙ୍କ ଜୀବନର ଶେଷନିଃଶ୍ୱାସ ଯାଏଁ । ପାରୁପର୍ଯ୍ୟନ୍ତ ଚେଷ୍ଟା କରିବେ ତା'ର ମନୋବାଞ୍ଛା ପୂର୍ଣ୍ଣ କରିବାପାଇଁ । ସେଇଥିରେ ତାଙ୍କ ମୋକ୍ଷ ।

# ଦ୍ୱିତୀୟ ଭାଗ

# ଗଂଗୋତ୍ରୀ

## ନଅ

ଦଶ ବର୍ଷ ପରେ...

ପ୍ରିୟା ବାଗ୍‌ଚୀ ସହପାଠିନୀ ତନୁଶ୍ରୀ ପଣ୍ଡାକୁ ଗୋଟାଏ ପ୍ରଶ୍ନ ପଚାରିଲା, ତା'ର କୌତୂହଳକୁ ଚରିତାର୍ଥ କରିବାପାଇଁ— ‘‘ତନୁ, ଆଜିକାର ଟେଲିଗ୍ରାଫ୍ ଦେଖିଛୁ ? ସିଟିରେ ଯେଉଁସବୁ ନାଟ ତାମସା ହେଉଛି ଆଜି, ଆଇ ମିନ୍ ପ୍ରକୃତ ନାଟତାମସାକୁ ଛାଡ଼ି ବାକୀ ଯେତେକ ଆବୋଲ୍ ତାବୋଲ୍‌ର କ୍ୟାଲେଣ୍ଡର୍ ?’’

‘‘ନୋପ୍ ।’’

‘‘ଦେଖିନୁ ? ବାହାରିଛି, ଗୋଲ୍ ପାର୍କର ସଚ୍ଚିଦାନନ୍ଦ ହଲ୍‌ରେ ପୁସ୍ତକ ଉନ୍ମୋଚନ ହେବ, ସନ୍ଧ୍ୟା ଛଅଟାବେଳେ । ପୁସ୍ତକର ନାଆଁ ‘ଗର୍ଭିଣୀ ଗଙ୍ଗା’, କବିତା ସଙ୍କଳନ । ରଚୟିତା ଉଡ଼ିୟା କବି ଶୈଳଜା ପଣ୍ଡା ଏବଂ ତା'କୁ ଉନ୍ମୋଚନ କରିବେ...’’

‘‘ହୋଇଥିବ ! କିନ୍ତୁ ମୁଁ ତୋତେ ସ୍ମରଣ କରେଇଦେଇପାରେ କି ଯେ ‘ଉଡ଼ିୟା’ ବୋଲି କୌଣସି ଶବ୍ଦ ନାହିଁ ? ତେଣୁ ଖବରକାଗଜରେ ଭୁଲ୍ ବାହାରିଛି କିମ୍ବା ତୋର ଉଚ୍ଚାରଣ ତଥାପି ଶୁଦ୍ଧ ହୋଇପାରିଲା ନାହିଁ ।’’

‘‘ଓକେ—ଓକେ—ଆଇ ଆମ୍ ସରି ।’’ ପ୍ରିୟା ତନୁର ଦେହରେ ହାତ ଗୁଡ଼େଇ ଆଣିଲା ତା'କୁ ମନେଇଲା ପରି ଏବଂ ପୁଣି ପଚାରିଲା, ‘‘ଯାହାହେଉ, ଏଇ ଶୈଳଜା ତୋ'ର ମାଆ—ନା ? ଗୋଟାଏ ବଡ଼ କବି ହୋଇଥିବେ ନିଶ୍ଚୟ, ନ ହେ଼ଲେ ଏତେ ବଡ଼ ବଡ଼ ଲୋକ ଆସନ୍ତେ ନାହିଁ ସଭାର ଅତିଥି ହୋଇ । କେତେଖଣ୍ଡ ବହି ଲେଖିଲେଣି ସେ ? ବଙ୍ଗଳା କି ଇଂରେଜୀ ଅନୁବାଦ ହୋଇଛି କି କୋଉ ବହିର ? ଏଠିକାର ମ୍ୟାଗାଜିନ୍‌ରେ ବାହାରିଛି କି ତାଙ୍କ କବିତା ...’’ ପ୍ରିୟା ତା'ର ପ୍ରଶ୍ନବାଣ ପେଷୁଥିଲା ଗୋଟିକ ପରେ ଗୋଟିଏ, ତନୁଠାରୁ କୌଣସି ଉତ୍ତର ନ ପାଇବା ସତ୍ତ୍ୱେ । ଶେଷକୁ ସେ ଲକ୍ଷ୍ୟ କଲା ଯେ ତନୁ ଯେ କେବଳ ନିରୁତ୍ତର, ତା' ନୁହେଁ, ମନେ ହେଉଛି ସେ ଏକାନ୍ତ ନିସ୍ପୃହ ଏ ବିଷୟରେ । ସତେକି ଏଇ ସମ୍ବାଦରେ କିଛି ନୂତନତ୍ୱ ନାହିଁ ଅଥବା

ଏଇ କବି କିମ୍ବା ତାଙ୍କର କବିତା ସହିତ ତା'ର କୌଣସି ସମ୍ପର୍କ ନାହିଁ । ଯଦିଓ ସେ ତା'ର ମାଆ ହୋଇପାରନ୍ତି । ସେହେତୁ ପ୍ରିୟାର ପରବର୍ତ୍ତୀ ସନ୍ଦିଗ୍ଧ ପ୍ରଶ୍ନ—

"ତୁ ଯିବୁ ନା ସେଠିକି ?"

"ଆଇ ଡୋଣ୍ଟ୍ ନୋ, ଏବଂ ତୋ'ର ନାନା ପ୍ରଶ୍ନ ଭିତରୁ ମୁଁ କେବଳ ଗୋଟିକର ଉତ୍ତର ଦେଇପାରିବି । ଶୈଳଜା ପଣ୍ଡା ମୋର ମାଆ । ପୂର୍ଣ୍ଣଚ୍ଛେଦ । ବାକୀ ସବୁ ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ତୁ ଖଣ୍ଡେ ଚିଠି ଲେଖିପାରୁ ତାଙ୍କ ପାଖକୁ । ଆମ ଠିକଣା ତ ଜଣା ଅଛି ତୋତେ । ଭୁଲିଯାଇଥିଲେ ମୁଁ କହିଦେଉଛି ଶୁଣ୍ —"

"ୟୁ ଆର୍ ଇଂପସିବଲ୍ !" କହି ପ୍ରିୟା ତନୁକୁ ମିଛିମିଛିକା ବିଧାଟିଏ ମାରିଲା ଏବଂ ଦିହେଁ ସଙ୍ଗିନୀସୁଲଭ ହସଖୁସି ହୋଇ ଆଗେଇ ଚାଲିଲେ । ପ୍ରିୟା ଯିବ ବାହାରକୁ, କେଉଁ ରେସ୍ତୋରାଁରେ ଚା' ଖାଇବାଲାଗି ଏବଂ ତନୁ ଯିବ ଲାଇବ୍ରେରୀକୁ, ଯାହା ସେ ଆଗରୁ ଜଣେଇଦେଇଛି । ପ୍ରିୟା ତନୁକୁ ବଳେଇଲା ନାହିଁ ତା' ସାଙ୍ଗରେ ଯୋଗ ଦେବାପାଇଁ । ସମସ୍ତେ ଜାଣନ୍ତି ଯେ ତନୁକୁ ବଳେଇବା ନିରର୍ଥକ । ସେ ଯାହା ବୁଝିଥିବ ସେଇଆ ।

ତଥାପି ସେ ଲୋକପ୍ରିୟ, ଏଥିରେ ସନ୍ଦେହ ନାହିଁ । କଲିକତାର ବ୍ରାବୋର୍ଣ୍ଣ କଲେଜର 'ପ୍ଲସ୍ ଥ୍ରି' ତୃତୀୟ ବର୍ଷରେ ପଢୁଥିବା ଏଇ ଛାତ୍ରୀଟି ଅନ୍ୟତମ ସୁନ୍ଦରୀ ଓ ତା'ର ବି.ଏ.ରେ ଫାଷ୍ଟ କ୍ଲାସ୍ ପାଇବା ପ୍ରାୟ ସୁନିଶ୍ଚିତ । କିନ୍ତୁ କେବଳ ସେଇଥିପାଇଁ ତା'ର ଏକାଧିକ ସ୍ତାବକ ଥିବା ସ୍ୱାଭାବିକ, ସେ ଯେତେ ଅବାଗିଆ ହେଉ ପଛକେ, ତା' ନୁହେଁ । କଥା ହେଉଛି ସେ ଅବାଗିଆ ସିନା, ଗର୍ବୀ ନୁହେଁ ଏବଂ ତା' ହସରେ ଯେଉଁ ସରଳତା ପରିଲକ୍ଷିତ ହୁଏ, ତାହା ଆକୃଷ୍ଟ କରେ ଅନ୍ୟମାନଙ୍କୁ ଓ ସେମାନେ ଭୁଲିଯାଆନ୍ତି ଯେ ସରଳା ମଧ୍ୟ ମନସ୍ୱିନୀ । ମଝିରେ ମଝିରେ ନିଜକୁ ଦୂରେଇ ନେବା ତା'ର ଗୋଟାଏ ବଦଭ୍ୟାସ ।

ଯଥା ସେ ଆଜି କାହାରିକୁ ପ୍ରଶ୍ରୟ ଦିଅନ୍ତା ନାହିଁ, ଲାଇବ୍ରେରୀରେ ତା' ପାଖରେ ଆସି ବସିବାପାଇଁ । କାରଣ ତା'କୁ ନାନା କଥା ଭାବିବାକୁ ପଡ଼ିବ ନିଜ ବିଷୟରେ । ପ୍ରିୟା ଯେଉଁ ଖବରଟି ଦେଲା, ଯାହା ସେ ଆଜି ସକାଳେ ପଢ଼ିଥିଲା ଖବରକାଗଜରେ, ତା'ରି ପରିପ୍ରେକ୍ଷୀରେ ।

...ବୋଉ କହୁଥିଲା କେବେ, ମନେ ପଡୁଛି, ଯେ ତା'ର ଗୋଟାଏ ବହି ରିଲିଜ୍ ହେବ ଏଇ କଲିକତାରେ । ନିଜକୁ ଶୁଣେଇଲା ପରି କହୁଥିଲା । କିନ୍ତୁ ତା'ର କ'ଣ ଉଚିତ ନ ଥିଲା କହିବା ଯେ ଏଇଦିନ ଏବଂ ଏଇ ଜାଗାରେ

ହେବ, ଏଇ ସମୟରେ ? କାଗଜରେ ବାହାରିବା ପୂର୍ବରୁ ମୋତେ ଜଣେଇବା ଉଚିତ ନ ଥିଲା ? ହୋଇପାରେ ଯେ ମୁଁ ତଥାପି ଯାଇ ନ ଥାଆନ୍ତି ସେଠିକି । ଆଇ ହେଟ୍ ଅଲ୍ ଦ୍ୟାଟ୍ ଶୋ' ! କିନ୍ତୁ ଝିଅ ହୋଇ କ'ଣ ମୋର ଜାଣିବା କଥା ନୁହେଁ, ବାହାର ଦୁନିଆଁର ପ୍ରିୟାପ୍ରିୟା ଟମ୍ ଡିକ୍ ହ୍ୟାରୀ ଜାଣିବା ଆଗରୁ ?... ଏହି ଅଭିଯୋଗ ଥିଲା ତା' ଉପସ୍ଥିତ ଭାବନାର ବିଷୟବସ୍ତୁ । ଯାହାକୁ ସେ ମନ ଭିତରେ ଖେଳାଉଥିଲା ଲାଇବ୍ରେରୀରେ ବସି, ନାମମାତ୍ର ବହି ପଢ଼ାରୁ ଓହରିଯାଇ ।

...ମୋତେ କିଛି ନ କହିଲା ନାହିଁ, ବାପାଙ୍କୁ ମଧ୍ୟ ଜଣେଇ ନ ଥିବ । ଆଇ ନୋ ଇଟ୍ ! ଇଏ କିଛି ନୂଆ କଥା ନୁହେଁ । କିଛି ବଦଳି ନାହିଁ ସେଦିନୁଁ ଆଜିଯାଏଁ । ଇଚ୍ଛାପୁରୀ କଲୋନୀରୁ କଲିକତା ଯାଏଁ । ସ୍ୱଦେଶୀ ଇଷ୍ଟର୍ଣ୍ଣ ସିରାମିକ୍ସରୁ ପ୍ରଖ୍ୟାତ ମଲ୍‌ଟି ନ୍ୟାସନାଲ୍ ସିଂଥିଆ ସିରାମିକ୍ସ କର୍ପୋରେସନ୍‌ର ବାତାବରଣ ଓ ଛୋଟ କମ୍ପାନୀର ମ୍ୟାନେଜରିଆଣୀ ପଦରୁ ବଡ଼ କମ୍ପାନୀର ସିନିୟର ଏକ୍‌ଜିକିଉଟିଭ୍‌ଙ୍କର ମିସେସ୍ ପଦକୁ ଆସିବା ଯାଏଁ । ଏ ସବୁ ପରିବର୍ତ୍ତନର କିଛି ମୂଲ୍ୟ ନାହିଁ, କବି ଶୈଳଜାପାଇଁ । ଆମେ ତା' ଝିଅ କି ସ୍ୱାମୀ ହୋଇପାରୁ, କିନ୍ତୁ ଆମେ ତା' ନିଜ ସ୍ୱର୍ଗର ବାସିନ୍ଦା ନୋହୁଁ । ତେଣୁ ଆମକୁ ଜଣାଇବା ଅନାବଶ୍ୟକ । ପଚାରିଲେ ଅବଶ୍ୟ ଆକାଶରୁ ଖସିଲାପରି ଢଙ୍ଗ ଦେଖେଇବ । କହିବ— ଆଚ୍ଛା ? ମୁଁ ତୁମକୁ କହି ନ ଥିଲି ଆଗରୁ ? ତା' କେମିତି ହେବ ମ ? ତମେ ସବୁ ଭୁଲିଯାଇଥିବ ।

ବାପା ତା'ର ପ୍ରତିବାଦ କରିବେ ନାହିଁ । ଓଠଚିପା ହସଟିଏ ଦେଇ ଅନ୍ୟ କଥା ପକେଇବେ । ସେ ଜାଣନ୍ତି ସତକଥା କ'ଣ । ଅନେକ ଦିନୁ ଜାଣିଛନ୍ତି ।

ମୁଁ ମଧ୍ୟ ଜାଣିଛି । ତନୁ କିଛି ଭୁଲି ନାହିଁ । ହେଲେ ସେ ବଡ଼ ହେଲାଣି, ଯଥେଷ୍ଟ ବଡ଼ ହେଲାଣି ତା' ନିଜ ଭବିଷ୍ୟତକୁ ଠିକଣା କରିବାଲାଗି । ସେ ବି' କୌଣସି ପ୍ରଶ୍ନ ପଚାରିବ ନାହିଁ ଏଣିକି । ତା'ର ଗରଜ ପଡ଼ିଛି ଏଇ ସବୁ ବାଜେ କଥାରେ ମୁଣ୍ଡ ଘୂରେଇବ !

କିନ୍ତୁ ମୁଁ ଲେଖିଦେଉଛି ଯେ ସେ ଜଣେ ଭଦ୍ରଲୋକଙ୍କୁ ଜଣାଇବ ଏ ବିଷୟରେ, ଯଦିଓ ସେ କଲିକତାରେ ନାହାନ୍ତି । ୱେଲ୍, ୟୁ ନେଭର୍ ଯେ, ବୁଢ଼ା ଭୁବନେଶ୍ୱରରୁ ଆସି ପହଞ୍ଚିଯାଇପାରି ଥାଆନ୍ତି ଆଜି, ପୁରୀ ଏକ୍ସପ୍ରେସ୍‌ରେ । କାହିଁକିନା ସେ ବୋଉର ଗୁରୁ । ଗୁରୁଠାରୁ ବଳି ଆଉ କଅଣ ? ସେଇ ଚେପ୍‌ଟାନାକା, ଭୁରୁଙ୍ଗା ମୁହାଁ, ଅପରଛନିଆ ଲୋକଟା । ମହାକବି ରାମହରି ଦାସ । ହାଓ ଆଇ ହେଟ୍ ଦ୍ୟାଟ୍ ଫେଲୋ !...

ଆଲୋ, ବୁଢ଼ା ରାମହରି କ'ଣ ଏମିତି କ୍ଷତି କରିଛନ୍ତି ତୋର, ଯେ ତୁ ତାଙ୍କୁ ହେଟ୍ କରୁ ? ବୋଉର ଗୁରୁ ହେଲେ ତୋର ସେଥିରେ ଯାଏ ଆସେ କଅଣ ? ତାଙ୍କ ଯୋଗୁଁ ବୋଉ କ'ଣ ତୋର ଅବହେଳା କରିଛି ? ବିଶେଷତଃ ତିନି ଚାରିବର୍ଷ ହେଲା କଲିକତାକୁ ଆସିଲା ପରେ, ସେ ତ ଯାଇଁ ଅଛନ୍ତି କାହିଁ କେତେ ଦୂରରେ । ତଥାପି ତୋର ଏତେ ରାଗ ତାଙ୍କ ଉପରେ ? ଏଭଳି ପ୍ରଶ୍ନ ଯେତେବେଳେ ଉଠେ ତନୁର ମନରେ ସେ ତା'ର ଠିକଣା ଜବାବ୍ ଦେଇପାରେ ନାହିଁ । ଖାଲି ତା'ର ଆଖି ଦି'ଟାକୁ ବୁଜିଦିଏ ଓ ତାଙ୍କ ଚେହେରାକୁ ମନେ ପକାଏ ଏବଂ କୁହେ, ହଁ, ମୋର ଲୋକଟାକୁ ହେଟ୍ କରିବା କଥା । କାହିଁକି ବୋଲି ପଚାର ନାହିଁ ।

ମାତ୍ର ଥରୁଟାଏ ସେ ଦେଖିଛି ତାଙ୍କୁ । ଯେତେବେଳେ ଶୈଳ ଛୋଟ ଝିଅର ଅଯଥା ଆପତ୍ତିକୁ ନ ମାନି ତା'କୁ ନେଇଯାଇଥିଲା ରାମହରିବାବୁଙ୍କ ପାଖକୁ, ତା' ନିଜର ସେଇ ସ୍ମରଣୀୟ ସାକ୍ଷାତ୍କାର ପରେ ପରେ । ଭାବିଲା ଯେ ସ୍ୱାମୀଙ୍କ ସାଙ୍ଗରେ ଚିହ୍ନା ନ ହେଲା ନାହିଁ (ସେ ତା' କଥାରେ କାନ ଦେଉ ନାହାଁନ୍ତି, କେଉଁଥିପାଇଁ ଭଗବାନଙ୍କୁ ଜଣା), ଝିଅକୁ ତାଙ୍କ ସାଙ୍ଗରେ ପରିଚୟ କରେଇଦେବା ତା'ର କର୍ତ୍ତବ୍ୟ । ଯେମିତିକି ସେ ଖାଲି ଶୈଳର ନୁହେଁ, ପରିବାରର ଜଣେ ବିଶିଷ୍ଟ ବନ୍ଧୁ ହୋଇ ରହିବେ ।

କିନ୍ତୁ ଇଏ କ'ଣ ହେଲା ? ଶୈଳର ବୁଝିବାରେ ବାକୀ ରହିଲା ନାହିଁ ଯେ ଦିହିଁଙ୍କ ଭିତରୁ ଜଣେ ହେଲେ ଆଗେଇବାକୁ ନାହିଁ, ସ୍ନେହସରାଗର ବାଟ ଦେଇ । ଟୋକୀଟା ଗୁମ୍ ହୋଇ ବସି ରହିଛି, ଟିକିଏ ହେଲେ ହସୁ ନାହିଁ ଏବଂ ସାର୍ ତା'କୁ 'ତୁମ ନାଆଁ କଅଣ ?' 'କେଉଁ କ୍ଲାସ୍‌ରେ ପଢ଼ ?' ଇତ୍ୟାଦି କେଇଟା ଇତର ସାଧାରଣ ପ୍ରଶ୍ନ ପଚାରିବା ଛଡ଼ା କୌଣସି ପ୍ରଯତ୍ନ କରୁ ନାହାନ୍ତି, ତା' ସାଙ୍ଗରେ ଟିକିଏ ହସଖୁସି ହେବାଲାଗି । ଅବଶ୍ୟ ସେ ସେତେବେଳେ ତା' ଝିଅକୁ ହିଁ ଦୋଷ ଦେଇଥିଲା । ଯେ ତୁ ଜାଣିଛୁ ମୁଁ ତାଙ୍କୁ କେଉଁ ଦୃଷ୍ଟିରେ ଦେଖେ । କେତେ ସମ୍ମାନ ଦିଏ । ଅନ୍ତତଃ ସେଇଥିପାଇଁ ତୋ'ର ଏମିତି ହାଣ୍ଡିମୁହଁ କରି ବସିବା ଉଚିତ ନ ଥିଲା । ସତେକି ସେ ତୋତେ ଦଣ୍ଡ ଦେବାକୁ ଚାହାଁନ୍ତି !

ହେଲେ ହାଣ୍ଡିମୁହାଁକୁ ତା'ର କାରଣ କ'ଣ ବୋଲି ପଚାରିଥିଲେ ସେ କେବଳ ସେଇଆ କହିଥାଆନ୍ତା, ଯାହା ସେ ଆଜି କହୁଛି ଦଶବର୍ଷ ପରେ । ଯେ ସେଇଟା ଚେପ୍‌ଟାନାକା, ଭୁରୁଙ୍ଗାମୁହାଁ, ଅପରଛନିଆ । କିଏ କେମିତି ହସଖୁସି ହେବ ମ ତା' ସାଙ୍ଗରେ ?

ସେତେବେଳେ ସେ କହିପାରି ନ ଥାଆନ୍ତା ଏବଂ ଆଜି ମଧ୍ୟ ସେ କହିପାରୁ ନାହିଁ ଯେ ତାଙ୍କ କୁତ୍ସିତପଣର ଉପାଦାନ ଖାଲି ଏଇଆ ନୁହେଁ, ଆହୁରି କିଛି । କିନ୍ତୁ ତା'କୁ ବୁଝେଇ ହେବ ନାହିଁ । ସେଦିନ ସେ ଗୋଟାଏ ବିଚିତ୍ର ହିଂସାର ଆବିଷ୍କାର କଲା ତାଙ୍କ ଚେହେରା ଓ ଚାହାଣିରେ, ଯାହା ବାଘ ପରି ନୁହେଁ କି ରାକ୍ଷସ ପରି । ଆଦୌ ଜଳିଲା ପରି ନୁହେଁ, ବରଂ କୁନ୍ଥେଇଲା ପରି । ଆଦୌ ଖୋଲାଖୋଲି ନୁହେଁ; ଗହୀର, ଅତି ଗହୀର । ଗୋଟାଏ କ୍ଲିଷ୍ଟ ଏବଂ ଭୟାବହ ଅପ୍ରକାଶ, ଯାହାକୁ କୌଣସି ଉନ୍ମୁଖ ଆନନ୍ଦକାମୀ ପ୍ରାଣୀ ବୁଝିପାରିବ ନାହିଁ । କିଶୋରୀ ତନୁଶ୍ରୀ ତା'କୁ ବୁଝି ନ ପାରି ଶଙ୍କିଯାଇଥିଲା । ଆଜି ଯୁବତୀ ତନୁଶ୍ରୀ କହୁଛି ମୁଁ ତା'କୁ ହେଟ୍ କରେ, ଯାହାକି ସେହି ବିରାଗର ଅଭିବୃଦ୍ଧି । ହେଲେ ତାହା ଏତେ ବଳିଷ୍ଠ ହୋଇପାରି ନ ଥାଆନ୍ତା, ଯଦି ତା'କୁ ବାରମ୍ବାର ଗୋଟିଏ ଧାରଣା ବ୍ୟତିବ୍ୟସ୍ତ କରୁ ନ ଥାଆନ୍ତା —

ଏମିତି ଗୋଟାଏ ଲୋକ ହେଉଛି ବୋଉର ଗୁରୁ, ଯାହା ପାଖକୁ ସେ ଦୌଡୁଛି ଥରକୁ ଥର, ତା' ସାହିତ୍ୟ କାମରେ ଏବଂ ସେଇଥିପାଇଁ ତା'ର ଏତେ ସମୟ ବରବାଦ୍ ହେଉଛି । ଆଉ ତା'ର ମନେପଡୁ ନାହିଁ ମୋ କଥା, ମୋ ବାପାଙ୍କ କଥା ।

ଅବଶ୍ୟ ଏଇ ଅଭିଯୋଗସିକ୍ତ ବିରାଗ କ୍ରମଶଃ ଶୁଖି ହାଲୁକା ହୋଇ ଯାଆନ୍ତାଣି କଲିକତାକୁ ଆସିଲା ପରେ, ବୋଉ ଓ ତାଙ୍କ ଭିତରେ ଭୌଗୋଳିକ ଦୂରତ୍ୱ ହେତୁ । କିନ୍ତୁ ଏହି ପ୍ରକାର ଗୋଟିଏ ଗୋଟିଏ ଘଟଣା ଯେତେବେଳେ ଆସି ପହୁଞ୍ଚିଯାଏ, ସେତେବେଳେ ରାମହରି ଦାସ ହଠାତ୍ ତା'ର ମନେ ପଡ଼ିଯାଆନ୍ତି ଏବଂ ସେ ତାଙ୍କୁ 'ହେଟ୍' କରେ । ସତେକି ସେଇ ହେଉଛନ୍ତି ସବୁ ନାଟର ଗୋବର୍ଦ୍ଧନ, ସବୁ ଅନର୍ଥର ମୂଳ ! ତନୁ ରାଗି ଚାଲିଥିଲା ।

...ଉନ୍ମୋଚନ ! 'ବୋଉ ମୋତେ ଡାକିଥିଲେ ବି' ମୁଁ ଯାଇ ନ ଥାଆନ୍ତି ସେମିତିକା ବେକାର ହଡ଼ାକୁ । ପରସ୍ପରର ତଥାକଥିତ କାମକୁ ନେଇ ଥେଇ ଥେଇ ହେବା ଛଡ଼ା ସେମାନେ କ'ଣ କରନ୍ତି ସେଠି ? ଆଜି ମୁଁ ତୋତେ ଚିହ୍ନେଇଲି ରାଜ ଦରବାରରେ, କାଲି ତୁ ବି' ମୋତେ ଚିହ୍ନେଇବୁ ଆଉ କେଉଁଠି, ଆଉ ଖବରକାଗଜରେ ବାହାରିବ ସେ କଥା, ରେଡ଼ିଓ, ଟେଲିଭିଜନରେ ବି' ଦି'ପଦ କୁହାଯିବ, ଅନ୍ତତଃ ସ୍ଥାନୀୟ ସମ୍ବାଦରେ ଏବଂ ଆମେ କୃତକୃତ୍ୟ ହେବୁ । ନୋ, ଥ୍ୟାଙ୍କ୍ସ ! ତନୁଶ୍ରୀ ପଣ୍ଡା ଭିନ୍ନ ଧାତୁରେ ଗଢ଼ା । କିଛି ଗୋଟାଏ ସତସତିକା କାମ, ଲୋକହିତକର କାମ କିମ୍ବା ସାରଗର୍ଭକ ଆଲୋଚନାର ସମ୍ଭାବନା ଥିଲେ, ସେ ନିଶ୍ଚୟ ଯାଇଥାଆନ୍ତା ସେଠିକି । କିନ୍ତୁ ଏମିତିକା ବଡ଼ଲୋକୀ, ପୋଷାକୀ,

ଉତ୍ସବପାଇଁ ନୁହେଁ । ସେଥିରେ ବୋଉ ଥାଉ କି କୋଉ ପ୍ରସିଦ୍ଧ ଫିଲ୍ମ 'ଡାଇରେକ୍ଟର୍ । ନୋ, ଥ୍ୟାଙ୍କ୍ସ !... ଯେଉଁ କୌତୂହଳଟି ତା' ମନରେ ଜାଗି ଉଠୁଥିଲା, ଯେ ସେଠି ଟିକିଏ ମୁହଁ ମାରିଦେଇ ଆସିଲେ ମନ୍ଦ ହୁଅନ୍ତା ନାହିଁ, ତନୁ ତା'କୁ ଦୃଢ଼ତାର ସହିତ ଦବେଇଦେଲା ଏବଂ ନିଜକୁ ଦୋହରେଇ ହେଲା ଯେ ବୋଉ ତା'କୁ ଡାକିଥିଲେ ବି' ସେ ଯାଇ ନ ଥାଆନ୍ତା ସେଠିକି ।

ସେ ଆଉ ଗୋଟାଏ କାରଣ ମଧ ଖଞ୍ଜିଦେଲା ତା' ସଫେଇରେ । ...ପବନ ସରକାର କହିଛି ଆଜି ଆସିବ ଆମ ଘରକୁ । କଅଣ ନୂଆ ତଥ୍ୟ ସଂଗ୍ରହ କରିଛି 'ଗ୍ରୀନ୍ ମୁଭ୍‌ମେଣ୍ଟ' ବିଷୟରେ, ତା'କୁ ମୋତେ ଶୁଣେଇବ ବୋଲି । ସେଭଳି ଆଳାପ-ଆଲୋଚନାକୁ ଛାଡ଼ିଦେଇ ମୁଁ ଯିବି ଏଇ ଉନ୍ମୋଚନ ଉତ୍ସବକୁ ? ମୋର ମୁଣ୍ଡ ଖରାପ ?

ଆଃ ! ଗ୍ରୀନ୍ ମୁଭ୍‌ମେଣ୍ଟ୍ ! କେତେ କ'ଣ ଉଦ୍ୟମ, ଆନ୍ଦୋଳନ ଚାଲିଛି ବିଶ୍ୱର ଯୁବ ସମାଜରେ, ମଣିଷକୁ ସବୁଦିନିଆ ସୁଖଶାନ୍ତି ଆଣିଦେବାପାଇଁ । ତନୁଶ୍ରୀ ପଣ୍ଡା ସେଥିରେ ସାମିଲ୍ ହୋଇପାରନ୍ତା ନାହିଁ ? କାଲିଫର୍ଣ୍ଣିଆ କି କୋପାକାବାନାର ଚିର ବସନ୍ତରେ ?...

କିନ୍ତୁ ଆଶ୍ଚର୍ଯ୍ୟ କଥା ଯେ ଏମିତି ଭାବୁ ଭାବୁ ତା'ର ମନକୁ ଆସିଲା ଯେ ଯଦିଓ ସେ ସେଇ ସଭାକୁ ଯିବାପାଇଁ ଚାହେଁ ନାହିଁ, ଆଦୌ ଚାହେଁ ନାହିଁ, ତା'ର ଜାଣିବା ଉଚିତ ଯେ ରାମହରି ଲୋକଟା ପ୍ରକୃତରେ ସେଠିକି ଆସିଛି କି ନାହିଁ ।... ଯେତେହେଲେ ମୋର ବି ଗୋଟାଏ ଦାୟିତ୍ୱ ଅଛି ମୋ ବୋଉ ପ୍ରତି । ଯେମିତିକି ସେମାନେ ତା'କୁ ଏକ୍ସପ୍ଲଏଟ୍ ନ କରନ୍ତି, ନିଜର ଫାଇଦା ପାଇଁ । ମୋ କବି-ବୋଉଟା ଅଦ୍ଭୁତ ହୁଣ୍ଡୀ ନୁହେଁ କି ?...

ଶେଷକୁ ତନୁ ଗଲା ନାହିଁ ସେଇ ସଭାକୁ । ରାମହରିବାବୁ ମଧ ସେଠିକି ଆସି ନ ଥିଲେ । ଆସିବାର ପ୍ରଶ୍ନ ଉଠୁ ନ ଥିଲା, କାରଣ ଶୈଳ ତାଙ୍କୁ ଡାକି ନ ଥିଲା । ଅବଶ୍ୟ ଆମନ୍ତ୍ରିତ ହୋଇଥିଲେ ଯେ ସେ ଆସିଥାଆନ୍ତେ ତା' ନୁହେଁ, ତେବେ ସେ କଥା ଭିନ୍ନ ।

ଯାହାହେଉ ସଭାକାର୍ଯ୍ୟ ଚାଲିଥିଲା କାର୍ଯ୍ୟସୂଚୀ ଅନୁଯାୟୀ । ଯଦିଓ ନିର୍ଦ୍ଧାରିତ ସମୟର ପ୍ରାୟ ପଇଁଚାଳିଶ ମିନିଟ୍ ପରେ ତା'କୁ ଆରମ୍ଭ କରିବାକୁ ପଡ଼ିଥିଲା, କାରଣ କଲିକତା କର୍ପୋରେସନ୍‌ର ଡେପୁଟି ମେୟର୍ ଶ୍ରୀଯୁକ୍ତ ମୀନକେତନ ବସାକ୍, ଯାହାଙ୍କୁ ଉନ୍ମୋଚକ ତଥା ମୁଖ୍ୟ ଅତିଥି ଭାବରେ ଆମନ୍ତ୍ରଣ କରାଯାଇଥିଲା, ସେ ଯଥାସମୟରେ ଆସିପାରିଲେ ନାହିଁ । ତେବେ ଉଦୀୟମାନ ବଙ୍ଗଳା କବି ପଲ୍ଲବୀ ମିତ୍ର ଯାହା କହିଲେ ବନ୍ଧୁ ଶୈଳଜାକୁ, ମିନୁଦା'ଙ୍କ ଆଗ୍ରହର ତୁଳନା

ନାହିଁ । କୁଆଡ଼େ ସେ ଯେତେବେଳେ ତାଙ୍କ ପାଖକୁ ଗଲେ ଏଇ ଉନ୍ମୋଚନର ପ୍ରସ୍ତାବ ନେଇ, ସେ ତତ୍‌କ୍ଷଣାତ୍ ରାଜି ହୋଇଗଲେ । ଉଡ଼ିଶ୍ୟା ଏବଂ ବଂଗଦେଶ ଭାଇଭଉଣୀ, ତେଣୁ ମୋର ହଜାରେ କାମ ଥିଲେ ବି' ମୁଁ ସେଠିକି ଯିବି, ନିଶ୍ଚୟ ଯିବି ବୋଲି କହି ପଲ୍ଲବୀଙ୍କୁ ଧନ୍ୟବାଦ ଜଣାଇଲେ । ହେଲେ ଭାଇ କିଏ ଓ ଭଉଣୀ କିଏ, ତାହା ସ୍ପଷ୍ଟ ଭାବରେ ଜଣାପଡ଼ିଲା ନାହିଁ ତାଙ୍କ କଥାରୁ । ବରେଣ୍ୟ ଅତିଥି ଫିଲ୍ମ୍ ଡାଇରେକ୍ଟର୍ ଅପ୍ରତିମ ସେନ ଯଥାସମୟରେ ଆସିଥିଲେ । କିନ୍ତୁ ପଲ୍ଲବୀ ତାଙ୍କର ଆଗ୍ରହ ବିଷୟରେ କିଛି କହି ନ ଥିଲେ ବନ୍ଧୁକୁ । ଭାବିଲେ ଯେ କହିବା ଅନାବଶ୍ୟକ, କାରଣ ଶୈଳ ନିଶ୍ଚୟ ଜାଣିଥିବ ଯେ ସେ ମୋର ଭିଣେଇ ।

ମିନୁଦା' 'ଗର୍ଭିଣୀ ଗଂଗା'ର ଉନ୍ମୋଚନ କଲେ ସହାସ୍ୟ ବଦନରେ ଏବଂ ସେଇଠୁଁ ପ୍ରାୟ ପନ୍ଦର ମିନିଟ୍ ଯାବତ୍ କବିଙ୍କର ଉଦ୍ୟମକୁ ପ୍ରଶଂସା କରି ଚାଲିଥିଲେ । ଯେ ସେ ପ୍ରଖ୍ୟାତ ସିନ୍ଥିଆ ସିରାମିକ୍ସ କର୍ପୋରେସନ୍‌ର ସୁଦକ୍ଷ ଡେପୁଟି ଜେନେରାଲ୍ ମ୍ୟାନେଜର୍ ସନାତନ ପଣ୍ଡା ମହାଶୟଙ୍କ ସ୍ତ୍ରୀ ଏବଂ ତାଙ୍କ ଲେଖନୀକୁ ଧନ୍ୟ କହିବ ଯେ ସେ ତାଙ୍କର ନାନା ସାମାଜିକ ଓ ପାରିବାରିକ ଦାୟିତ୍ୱ ସତ୍ତ୍ୱେ ଏଭଳି ଏକ ଉପାଦେୟ ପୁସ୍ତକ ରଚନା କରିପାରିଛନ୍ତି । ବହିଟି କେଉଁ ଭାବରେ ଉପାଦେୟ, ସେ ବିଷୟରେ ଅବଶ୍ୟ କିଛି କହିଲେ ନାହିଁ । ପୁଣି କହିଲେ ଯେ କଲିକତା କର୍ପୋରେସନ୍ ଓ ସିନ୍ଥିଆ ସିରାମିକ୍ସ କର୍ପୋରେସନ୍ ପରସ୍ପରର ବିଶେଷ ଆତ୍ମୀୟ ଏବଂ ତାଙ୍କର ଆଶା ଓ ବିଶ୍ୱାସ ଯେ ଏହି ଆତ୍ମୀୟତା କଦାପି କ୍ଷୁଣ୍ଣ ହେବ ନାହିଁ । ତାଙ୍କ ଭାଷଣ କେତେ ଦୂରକୁ ଏବଂ ଉର୍ଦ୍ଧ୍ୱକୁ ଯାଇଥାଆନ୍ତା କହି ହେବ ନାହିଁ, ତେବେ ତାଙ୍କ କାନରେ ଜଣେ ଉଦ୍ୟୋକ୍ତା ଫୁସ୍ ଫୁସ୍ ହେଲେ ଯେ ଅପ୍‌ଦା' ବ୍ୟସ୍ତ ହୋଇ ଉଠିଲେଣି ଯିବାପାଇଁ, କାରଣ ଆଠଟା ପୂର୍ବରୁ ତାଙ୍କୁ ଷ୍ଟୁଡ଼ିଓରେ ପହଞ୍ଚିବାକୁ ହେବ ସୁଟିଂପାଇଁ । ଅଗତ୍ୟା ଡେପୁଟୀ ମେୟର୍ ମହାଶୟ ବାଧ ହେଲେ ତାଙ୍କ ବକ୍ତବ୍ୟ ଶେଷ କରିବାକୁ ।

ବରେଣ୍ୟ ଅତିଥି ଅପ୍ରତିମ ରାୟଙ୍କର ସ୍ମିତହାସବିବର୍ଜିତ ଚେହେରାରୁ ମନେ ହେଉଥିଲା ଯେ ସେ କେବଳ ବିଳମ୍ବପାଇଁ ଦୁଃଖିତ ନୁହଁନ୍ତି । ତାଙ୍କର ଉନ୍ମୋଚକ ତଥା ମୁଖ୍ୟ ଅତିଥି ହେବା ଉଚିତ ଥିଲା ଏବଂ ଏହା ଘୋର ଅନ୍ୟାୟ, କେବଳ ତାଙ୍କ ପ୍ରତି ନୁହେଁ, କଳା ଓ ସଂସ୍କୃତିର ମର୍ଯ୍ୟାଦା ପ୍ରତି । ହେଲେ ସେ ମଧ 'ଗର୍ଭିଣୀ ଗଂଗା'ର ପ୍ରଶଂସା କଲେ ଏବଂ କହିଲେ ଯେ ଏହି ଗର୍ଭାଧାନର ଆଦି ନାହିଁ, ଅନ୍ତ ନାହିଁ ଏବଂ ଶୈଳଜା ତା'ର ଯଥାର୍ଥ ମହତ୍ତ୍ୱ ବୁଝିପାରିଛନ୍ତି । ଯଦିଓ ସେ ଗଂଗାର ନୁହେଁ, ମହାନଦୀର ସଂତାନ । ଏବଂ ସେ ମଧ ସିନ୍ଥିଆ

କର୍ପୋରେସନ୍‌ର ଉଲ୍ଲେଖ କରି କହିଲେ ଯେ ଏହି କମ୍ପାନୀର ଯେଉଁ ଶ୍ରଦ୍ଧା ଓ ଆଗ୍ରହ ରହିଛି ଭାରତୀୟ କଳା ଓ ସଂସ୍କୃତି ପ୍ରତି, ତାହା ଅମଳିନ ରହୁ, ଏହା ହିଁ ତାଙ୍କର କାମନା ।

ଉଗ୍ରପନ୍ଥୀ କବି ମୁସ୍ତାକ୍ ଆଲୀ କହିଲେ ଯେ ବଂଗଦେଶର ଗୋଳିଆ ଗଙ୍ଗା କେବେହେଲେ ଶାନ୍ତ ନୁହେଁ କି ଶିଷ୍ଟ ନୁହେଁ, ହେଲେ କେହି ତା'ର ଗର୍ଭପାତ କରାଇପାରିବ ନାହିଁ । ତା'ର ସଫଳ ପ୍ରସବକୁ କେହି ରୋକିପାରିବ ନାହିଁ । ବିପ୍ଳବ ଦୀର୍ଘଜୀବୀ ହେଉ !

ଶେଷକୁ ସଂଯୋଜିକା ପଲ୍ଲବୀ ମିତ୍ର ଅତିଥିବର୍ଗଙ୍କୁ ଧନ୍ୟବାଦ ଦେଇ କହିଲେ ଯେ ଏହା ଶୈଳଜାଙ୍କ ସପ୍ତମ କବିତା ସଙ୍କଳନ । ସେ ଓଡ଼ିଶାର ଜଣେ ମହାନ୍ କବି । ସେ ଦଶ ବର୍ଷ ତଳେ ମର୍ଯ୍ୟାଦାସମ୍ପନ୍ନ 'ଦିବ୍ୟଜ୍ୟୋତି' ପୁରସ୍କାର ପାଇଥିଲେ ଏବଂ ବର୍ତ୍ତମାନ ତାଙ୍କର ସମୟ ଆସିଛି ତା'ଠାରୁ ଅଧିକ ଜ୍ୟୋତିର୍ମୟ ପୁରସ୍କାର ପାଇବାପାଇଁ । ଯଥା ଗଂଗୋତ୍ରୀ । ଯେଉଁ କବି ଅନାୟାସରେ ଗଂଗାର ଗର୍ଭାଧାନ କରାଇପାରିଛି, ସେ ଗଂଗୋତ୍ରୀର ଯୋଗ୍ୟ ନୁହେଁ ତ ଆଉ କିଏ ହୋଇପାରିବ ? (ଘନ ଘନ କରତାଳି ବାଜିଉଠିଲା, ଯେଉଁଥିରେ ମିନୁଦା' ଓ ଅପୁଦା' ମଧ୍ୟ ଯୋଗଦେଲେ ଉତ୍ସାହର ସହ) ମୁଁ ଶୈଳଜାଙ୍କ ବନ୍ଧୁ ବୋଲି କହୁ ନାହିଁ ଏ କଥା, କହୁଛି ଜଣେ ସାମାନ୍ୟ ଲେଖିକା ହିସାବରେ...

ଶୈଳ ମୁଣ୍ଡ ତଳକୁ କଲା । ... ହେ ଭଗବାନ୍ ! କହୁ କହୁ କ'ଣ କହିଯାଉଛି ଏ ଝିଅଟା ? ଏମିତି କହିବ ବୋଲି ଜାଣିଥିଲେ ମୁଁ ତା'କୁ କେବେହେଲେ ଅନୁମତି ଦେଇ ନ ଥାଆନ୍ତି ଏଇ ସଭାର ଆୟୋଜନ କରିବାଲାଗି । କ'ଣ ଭାବୁଥିବେ ଏମାନେ ସବୁ ?

କିନ୍ତୁ — କିନ୍ତୁ — ଦେଖିବାକୁ ଗଲେ କ'ଣ ଏମିତି ଆବ୍‌ସର୍ଡ୍ କଥାଟାଏ କହିଲା କି ପଲ୍ଲବୀ ? ମୁଁ କ'ଣ ଏମିତି ଅଯୋଗ୍ୟ, ଗଂଗୋତ୍ରୀ କିମ୍ବା ସେଭଳି କୌଣସି ପୁରସ୍କାର ପାଇବାଲାଗି ? କଥା ହେଉଛି ମୁଁ ଅତି ମାତ୍ରାରେ ବିନୟୀ, ସେହି ହେଉଛି ମୋର ଅସୁବିଧା ... ଶୈଳ ଧୀରେ ଧୀରେ ମୁଣ୍ଡ ଟେକିଲା ଏବଂ ସଭାସଦ୍‌ମାନଙ୍କ ଆଡ଼କୁ ଅନେଇଲା ଲାଜଲାଜ ହୋଇ । ଏକାଧାରରେ ଅପ୍ରତିଭ ଏବଂ କୃତଜ୍ଞ ହେଲା ପରି ।

ଶୈଳଜା ମନେ ପକାଇଲା ଏଇ ସଭାର ଇତିବୃତ୍ତ ।... ପଲ୍ଲବୀ ହେଉଛି ଯା'ଙ୍କର ଜଣେ ସହକର୍ମୀ, ସିଛିଆ କର୍ପୋରେସନ୍‌ର ପର୍ସନେଲ୍ ମ୍ୟାନେଜର୍ ମନତୋଷ ମିତ୍ରଙ୍କ ସ୍ତ୍ରୀ । କିନ୍ତୁ ସେ ମଧ୍ୟ କବିଟିଏ, ସେଇଥିପାଇଁ ସେ ମୋର ବନ୍ଧୁ । ବହୁତ ଦିନୁ ଲଗେଇଥିଲା ମୋ ସାଙ୍ଗରେ ଏଭଳି ଗୋଟିଏ ସଭାର

ଆୟୋଜନ କରିବାଲାଗି । କହିଲା, ତମେ ଖାଲି ଅନୁମତି ଦେଲେ ହେଲା । ବାକୀ ସବୁକଥା ମୁଁ ବୁଝିବି । ଶୁଣ ଶୈଳଦି', କଲିକତାରେ ମଧ୍ୟ ପାଞ୍ଚଲୋକ ଜାଣିବା ଦରକାର ଯେ ତମେ ଏତେ ବଡ଼ କବି । କେବଳ ଓଡ଼ିଶାର ନୁହେଁ, ସାରା ଦେଶର । ମୁଁ କିନ୍ତୁ ରାଜି ହେଉ ନ ଥିଲି । କହୁଥିଲି ମୁଁ ଏଇସବୁ ଆଡ଼ମ୍ବର ଓ ପ୍ରଚାରର ବିରୋଧୀ । ମୁଁ ନିରୋଳାରେ କବିତା ଲେଖିବାକୁ ଭଲପାଏ ଏବଂ ସେଇଟି ମନଲାଖି ହେଲେ ସେଇ ଲକ୍ଷେ ଟଙ୍କା ମୋ ପାଇଁ । ପୂରାପୂରି ସତ କଥା । କିନ୍ତୁ ହଠାତ୍ ଦିନେ ମୋ ମନକୁ ଗୋଟାଏ ଧାରଣା ଆସିଲା । ଅନୁବାଦ ପ୍ରଚାର ନୁହେଁ, ସଞ୍ଚାର । ଅନ୍ୟ ଭାଷାଭାଷୀ ଆଉ କେତେକ ପାଠକପାଠିକାମାନଙ୍କର ଅନ୍ତରକୁ ଛୁଇଁବାର ପ୍ରୟାସ ଏବଂ ଯେହେତୁ ପଲ୍ଲବୀ ଜଣେ କବି ଏବଂ ଓଡ଼ିଆ ଭାଷା ମଧ୍ୟ ଅଳ୍ପ ବହୁତ ଶିଖି ନେଇଛି, ସେ ମୋର କେଇଟା କବିତାର ବଙ୍ଗଳା ଅନୁବାଦ କରିଦିଅନ୍ତା ନାହିଁ ? ଯାହାକୁ ମୁଁ ପରେ ଏକାଠି କରି ଗୋଟାଏ ବହି ଆକାରରେ ଛପେଇ ଦେଇପାରନ୍ତି ? ମୁଁ କ'ଣ ଜାଣିଥିଲି ସେ ଏତେ ଶୀଘ୍ର ରାଜି ହୋଇଯିବ ମୋ ପ୍ରସ୍ତାବରେ ? ତା'ପରେ ସେ କହିଲା — 'ହଉ, ମୁଁ ତମର ଆଦେଶ ପାଳନ କରିବି । କିନ୍ତୁ ଏଇ ସଭା କଥା କଅଣ ହେଲା ? ଯେଉଁଠି ତମର ସଦ୍ୟତମ ବହି ଉନ୍ମୋଚନ ହେବ, ଧର ଗଂଗା ଉପରେ ଯେଉଁ କବିତାଗୁଡ଼ିକ ଲେଖିଛ ବୋଲି କହୁଥିଲ, ସେଇ ବହିଟି, ଆଉ ମୁଁ ସେଇଠି ଘୋଷଣା କରିବି ଯେ ମୁଁ ତମ କବିତାର ଅନୁବାଦ କରିବି, ଆଉ ତମକୁ ଚିହ୍ନେଇବି ଆମ ବଂଗବାସୀ ଭାଇଭଉଣୀଙ୍କୁ ... ହାଓ ଡୁ ୟୁ ଲାଇକ୍ ଦି' ଆଇଡ଼ିଆ ?' ଏହା ପରେ ମୁଁ କେମିତି ଭଲା ତା'କୁ ମନା କରିପାରି ଥାଆନ୍ତି ?

କିନ୍ତୁ ସେଇଠୁଁ ମୋର ଚେତା ପଶିଲା ଯେ ମୁଁ ଗୋଟାଏ ଅନ୍ୟାୟ କରିବାକୁ ଯାଉଥିଲି । ମୋର ଅନୁବାଦ କରେଇବା ଆଗରୁ, ଆଉ ଜଣଙ୍କର ଅନୁବାଦ କରେଇବା ମୋର କର୍ତ୍ତବ୍ୟ । ଥରେ କହୁଥିଲେ ଯେ ତାଙ୍କର ଅନେକ କବିତାର ଇଂରେଜୀ ଅନୁବାଦ ହୋଇଛି, କିନ୍ତୁ ଭାରତୀୟ ଭାଷାରେ ବିଶେଷ କିଛି ହୋଇ ନାହିଁ । ତେଣୁ ମୁଁ ଭୁସ୍‌କିନି ପଚାରିଲି ପଲ୍ଲବୀକୁ ତା' କଥା ମଝିରେ —

"ଏକ୍ସକିଉଜ୍ ମି, ମୋର କିନ୍ତୁ ଆଉ ଗୋଟାଏ ଅନୁରୋଧ ଅଛି । ଆଗେ ଆଉ ଜଣଙ୍କର ଅନୁବାଦ ହେବା ଦରକାର, ତା' ପରେ ଯାଇଁ ମୋର । ସେ ହେଉଛନ୍ତି ଆମର ଜଣେ ବିଶିଷ୍ଟ କବି, ବିରାଟ କବି, ଯାହାଙ୍କୁ ଆମ ଦେଶ ଚିହ୍ନି ନାହିଁ ଆଜିଯାଏଁ ଭଲ ଭାବରେ । ସେ ହେଉଛନ୍ତି କବି ରାମହରି ଦାସ ।"

"ହୁ ଇଜ୍ ଦ୍ୟାଟ୍ ?"

ମୁଁ ତା'ର ଅବଜ୍ଞାସୂଚକ ପ୍ରଶ୍ନକୁ ଏଡ଼ାଇଦେଇ ଦୋହରେଇ ହେଲି, ଅଡ଼ି ବସିଲି, ଯେ ଆଗେ ତାଙ୍କର ଅନୁବାଦ ହେବ, ତା'ପରେ ଯାଇଁ ମୋର । ଶେଷକୁ ସେ ରାଜି ହେଲା । ହସି ହସି କହିଲା— "ଯାହା ଆଜ୍ଞା । ଆଗେ ରାମ ଦାସଙ୍କର, ତା'ପରେ ତମର ।"

"ରାମ ଦାସ ନୁହଁନ୍ତି, ରାମହରି ଦାସ", ମୁଁ ତାକୁ ଚେତେଇଦେଲି, ଟିକିଏ ଚିଡ଼ିଲା ପରି ହୋଇ । "ତାଙ୍କ କବିତା ପଢ଼ିଲେ ତମେ ଦେଖିବ କେତେ ବଳିଷ୍ଠ ତାଙ୍କ ଲେଖା, କେତେ ନିଗୂଢ଼, କେତେ ଆଧ୍ୟାତ୍ମିକ..."

"ଓକେ—ଓକେ..." । ପଲ୍ଲବୀ ଘନଘନ ମୁଣ୍ଡ ଟୁଙ୍ଗାରିଲା । ଯେତେ ଆଙ୍କେ ବାଙ୍କେ କଥା କହୁ ପଛେ ଏଇକ୍ଷଣି, ଗଂଗୋତ୍ରୀକୁ ନେଇ କି ଆଉ ଯାହା, ଏହାହିଁ ଥିଲା ଏଇ ସଭାର ମୂଳ ଉଦ୍ଦେଶ୍ୟ ଏବଂ ତାହା ସାଧିତ ହୋଇଛି । ମୁଁ ଖାଲି ଅନେଇ ବସିଛି ତା'ର ଘୋଷଣା ଶୁଣିବାପାଇଁ...

କିନ୍ତୁ ଯେତେବେଳେ ପଲ୍ଲବୀ ମିତ୍ର ଘୋଷଣା କଲେ ଯେ ସେ ଶୈଳଜାକୁ ଶୀଘ୍ର ଅନୁବାଦ କରି ପହୁଞ୍ଚେଇବେ ବଙ୍ଗଳାର ପାଠକପାଠିକାମାନଙ୍କ ପାଖରେ, ସେ ରାମହରି ଦାସଙ୍କର ନାଆଁ ଉଲ୍ଲେଖ କରିବାର ଶୁଣାଗଲା ନାହିଁ, ଏବଂ ଶୈଳ ମଧ୍ୟ ସେହି ତ୍ରୁଟି ପ୍ରତି ଧ୍ୟାନ ଦେଇପାରିଲା ନାହିଁ । ମନେହେଲା ଯେ ସାମାନ୍ୟ ତ୍ରୁଟିଟା ହଜିଯାଇଥିବ କେଉଁଠି, ସମବେତ କରତାଳିର ବିରାଟ ନିର୍ଘୋଷ ଭିତରେ ।

ସଭା ସରିଲା ଏବଂ ଶୈଳଜା ପଣ୍ଡା ତା'ପାଇଁ ଅପେକ୍ଷା କରି ରହିଥିବା ଫିଆଟ୍ କାର୍‌ରେ ଘରକୁ ଫେରିଲା । ପଲ୍ଲବୀ ଓ ଶୈଳଜା କୋଳାକୋଳି ସହ ବିଦାୟ ନେଲେ ପରସ୍ପରଠାରୁ । ଦିହିଁଙ୍କ ଉତ୍‌ଫୁଲ୍ଲ ବଦନରୁ ମନେ ହେଉଥିଲା ଯେ ସଭା ସଫଳ ହୋଇଛି । ଆମ ସଭା ସଫଳ ହୋଇଛି । ଧନ୍ୟବାଦ ।

ସଭା ସଫଳ ହୋଇଛି, ଧନ୍ୟବାଦ । କିନ୍ତୁ କାର୍‌ର ପଛ ସିଟ୍‌ରେ ଆଉଜି ଆଖି ବୁଜି ରହିବାର ଆରାମଦାୟକ ଅନୁଭବ ତା'କୁ ଗୋଟାଏ ବିଚିତ୍ର ଟିପ୍‌ପଣୀ ଶୁଣାଉଥିଲା ଯାହାକୁ ବିଦ୍ରୂପ ବୋଲି କୁହାଯିବ—

"ୱେଲ୍, ତୋର କୋଉ ସଭା ବିଫଳ ହେବ ନାହିଁ କହିଲୁ, ଯେତେଦିନ ଯାଏଁ ପଲ୍ଲବୀ ମିତ୍ରମାନେ ତା'ର ଆୟୋଜନ କରିପାରିବେ, ସଂସ୍କୃତି-ରାଜନୀତିର ପ୍ରତିଷ୍ଠାବାନ୍ ରାଜାମାନେ ସେଠିକି ଆସିପାରିବେ ଏବଂ ସଭା ଶେଷରେ ତୁ ଆପଣା ଡ୍ରାଇଭର୍-ଚାଳିତ ଫିଆଟ୍ କାର୍‌ର ପଛ ସିଟ୍‌ରେ ଲମ୍ବିଯାଇ ଆରାମରେ ଆଖି ବୁଜି ଦେଇପାରିବୁ ?

କହିପାରିବୁ କି ଶୈଳ, ଯେ ଓଡ଼ିଆ ହୁଅନ୍ତୁ କି ବଙ୍ଗାଳୀ ସେମାନେ କାହିଁକି କିଛି କହିଲେ ନାହିଁ ତୋ ବହି ବିଷୟରେ ? ସ୍ୱାଭାବିକ ବୋଲି ତୁ ଯୁକ୍ତି କରିପାରୁ, କାରଣ ସେମାନେ ତା'କୁ ପଢ଼ିବାର ସୁଯୋଗ ପାଇ ନାହାଁନ୍ତି । ବେଶ୍, କିନ୍ତୁ ତୁ ନିଜେ ତ କିଛି କହିପାରୁଥାଆନ୍ତୁ, ତୋର ସଂକ୍ଷିପ୍ତ ବକ୍ତବ୍ୟ ଭିତରେ ? ତା' ବି ହେଲା ନାହିଁ, କାରଣ ତୋର ଅଭ୍ୟାସ ଚାଲିଗଲାଣି ନିଜର ସାହିତ୍ୟ ଓ ସାହିତ୍ୟ-ମାନସ ବିଷୟରେ କିଛି କହିବାର । ବସ୍ତୁତଃ ଇଏ କୋଉ ସାହିତ୍ୟ ସଭା ନ ଥିଲା । ଥିଲା ପ୍ରଚାର ସଭା । ହଁ, ସଭାଟି ସଫଳ ହୋଇଛି, ଧନ୍ୟବାଦ ।

ମନେପଡୁଛି କି ଶୈଳ ତୁ କେତେ ବର୍ଷ ତଳେ କିଛି କହିଥିଲୁ କହିଲା ଭଳିଆ, ତୋ ସାହିତ୍ୟର ପ୍ରକୃତି କି ପ୍ରକୃତିର ସାହିତ୍ୟ ବିଷୟରେ ? ଏଇ ଦଶବର୍ଷ ଭିତରେ ତୁ ସାତଖଣ୍ଡ ବହି ଛପେଇ ସାରିଲୁଣି, ସଭାସମିତିରେ ଭାଷଣ ଦେବାର ଅଭ୍ୟାସଟି ବେଶ୍ ଗଢ଼ି ହୋଇଗଲାଣି, ତରୁଣ-ତରୁଣୀଙ୍କ ସମାବେଶରେ ମହା ମହା 'ସନ୍ଦେଶ' ମଧ୍ୟ ଦେଇପାରୁଛୁ, କିନ୍ତୁ ଏଇ କ୍ରମରେ ତୋ ଦିଅଁ, ତୋର ସାରସ୍ୱତ ଆତ୍ମା ମଧ୍ୟ ନିଜକୁ ଛୁଟି ନେଇ ଚାଲିଗଲାଣି କୁଆଡ଼େ, ଏ ବିଷୟରେ ତୋ'ର କିଛି ଧାରଣା ଅଛି କି ନାହିଁ ?

ଯାହାହେଉ ସଭାଟି ସଫଳ ହୋଇଛି, କିଛି ସନ୍ଦେହ ନାହିଁ ଏଥିରେ । ଅନ୍ତତଃ ଆଜି ଏଇ ସଭାରେ ଜାଣିଲେ ତ ସେମାନେ, ଯେ ତୁ ଗଂଗୋତ୍ରୀ ପୁରସ୍କାରର ଯୋଗ୍ୟ ହୋଇଗଲୁଣି ?

...ଷଟ୍ ଇଟ୍ ! ଏଇଆକୁ କୁହନ୍ତି ହୀନମ୍ମନ୍ୟତା ! ଇନ୍‌ଫିରିଅରିଟି କମ୍ପ୍ଲେକ୍ସ । ଯାହାକୁ ମୁଁ ଅନେକଦିନୁ ତଡ଼ିଦେଇଛି ବୋଲି ମୋର ଧାରଣା ଥିଲା । କିଓ, କୋଉ ଶାସ୍ତ୍ରରେ ଅଛି ଯେ କବିମାନେ କେବେହେଲେ ବଡ଼ଲୋକ କିମ୍ବା ବଡ଼ଲୋକର ସ୍ତ୍ରୀ ହେବା ଉଚିତ ନୁହେଁ ? ଆଉ ଗଂଗୋତ୍ରୀପାଇଁ ମୋର ତିଳେ ହେଲେ ଲୋଭ ନାହିଁ ସତ, କିନ୍ତୁ କୋଉ ହିସାବରେ କହିବ ଯେ ମୁଁ ତା'ର ଯୋଗ୍ୟ ନୁହେଁ ? ... ଶୈଳ ଆଖି ଖୋଲିଲା ଏବଂ ରାଗିମାଗି ତା' ଦିଅଁକୁ ପଚାରିଲା ପରି ହେଲା — ''ତମେ କ'ଣ ସତରେ ମୋଠୁଁ ଚାଲିଯାଇଛ ନା ଚାଲିଯାଇ ପାରିବ ? ଜବାବ୍ ଦିଅ !''

...ଖାଲି ଏଇ ସଭା ଗୋଟିକ ସଫଳ ହୋଇ ନାହିଁ । ମୋର ଗତ ଦଶବର୍ଷର କାବ୍ୟିକ ଜୀବନ ମଧ୍ୟ ଠିକଣା ବାଟରେ ଚାଲିଛି । ମୋର ଦିଅଁ କେଉଁ ହିସାବରେ ଦରିଦ୍ର ନୁହନ୍ତି ଯେ ମୋର ଏଇ ତଥାକଥିତ ବଡ଼ଲୋକୀରେ ଶଙ୍କିଯିବେ । ସେ ଜାଣନ୍ତି ଯାହା ଜାଣିବା କଥା ।

ଜାଣନ୍ତି ଯେ ମୁଁ ଯଥେଷ୍ଟ କବିତା ଲେଖୁଛି ଏବଂ ଆହୁରି ଲେଖିବି । କହିବାକୁ ଗଲେ ମୁଁ ଏମିତି ମଗ୍ନ ହୋଇଯାଇଛି ମୋ କାବ୍ୟଜଗତରେ, ଯେ ମୋ ସ୍ୱାମୀ ଓ ଝିଅ ବି' ମୋତେ ଭୁଲ୍ ବୁଝନ୍ତି ବେଳେବେଳେ । ଦିହେଁ ମୋତେ ଭଲ ପାଆନ୍ତି । ହେଲେ

ସେତେବେଳେ ମୋ ଉଦାର ସ୍ୱାମୀ ଟିକିଏ ଉଦାସୀନ ହେଲା ପରି ମନେ ହୁଅନ୍ତି ଏବଂ ଝିଅଟା ରୀତିମତ ଫଣଫଣ ହୁଏ । ମୋର ଏଇ ପରାଭବ, ତାହା ଯେତେ ସାମୟିକ ହେଉ ପଛେ, କ'ଣ ତାଙ୍କ ନଜରରେ ପଡ଼ି ନାହିଁ ? ମୋର ଦିଅଁ, ମୋର ଦେବୀ, ମୋର ମାଲିକାଣୀ, ସବୁ ବୁଝନ୍ତି ସେ । ବୁଝନ୍ତି ତାଙ୍କ କ୍ରୀତଦାସୀର ଦୁଃଖ । ଆରେ, କିଏ ଛୁଟି ଦେବ ମ କାହାକୁ ? ଇଏ ପରା ଜନ୍ମଜନ୍ମାନ୍ତରର କଣ୍ଟ୍ରାକ୍ଟ ?...

ଘର ପାଖ ହୋଇ ଆସିଲାରୁ ଶୈଳ ପ୍ରମାଦ ଗଣିଲା, କିନ୍ତୁ ଖୁସି ହେଲା ପରି । ସତେକି ତା'ର ଦୁଃଖ ଓ ସ୍ୱାର୍ଥତ୍ୟାଗର ଆଉ ଗୋଟାଏ ପ୍ରମାଣ ମିଳିଯିବ ଏଇକ୍ଷଣି । ସ୍ୱାମୀଙ୍କୁ କୁହାଯାଇଛି ପୁସ୍ତକ ଉନ୍ମୋଚନ କଥା, କିନ୍ତୁ ସେ ସେଥିରେ ବିଶେଷ ଆଗ୍ରହ ଦେଖାଇ ନାହାଁନ୍ତି । ତେଣୁ ତାଙ୍କଠାରୁ କୌଣସି ପ୍ରତିକୂଳ ପ୍ରତିକ୍ରିୟାର ଆଶଙ୍କା ନାହିଁ । କିନ୍ତୁ ଝିଅଟା ନିଶ୍ଚୟ ମୁହଁ ଫୁଲେଇବ, ଆଉ ଛିଗୁଲେଇ ହୋଇ କହିବ କିଛି ଗୋଟାଏ, ମର୍ମକୁ ବାଧିଲାପରି । କାରଣ ମୁଁ ଭୁଲିଯାଇଛି ତା'କୁ ଜଣାଇବାକୁ । ତା'ର ବି' ସେ ସବୁଥିରେ ବିଶେଷ ଆଗ୍ରହ ନାହିଁ । କିନ୍ତୁ ତା'କୁ ଗୋଟାଏ ବାହାନା ମିଳିବ ତା' ବୋଉ ଉପରେ ରାଗିବାପାଇଁ । ପ୍ରକାରାନ୍ତରେ ଦୋଷ ଦେବ ଯେ ମୋ ସାହିତ୍ୟ ହିଁ ସବୁଠୁଁ ବଡ଼ ମୋ ସଂସାରରେ, ମୋର ଗୋଟିଏ ବୋଲି ଝିଅଠାରୁ ବଳି । ଏଡୁଟିଏ ହେଲାଣି, ପାଠରେ ଧୁରନ୍ଧର, କିନ୍ତୁ ସେମିତି ଆଣ୍ଡୋଇ ହୋଇ ରହିଯାଇଛି ।

ସେଇଲାଗି ଶୈଳ ଯେଉଁ ଦୃଶ୍ୟ ଦେଖିଲା ଘରେ ପାଦ ନ ଦେଉଣୁ, ସେଥିରେ ତା'ର ବିସ୍ମୟର ସୀମା ରହିଲା ନାହିଁ । ଦେଖିଲା ଯେ ଉଭୟ ବାପ ଓ ଝିଅ ତା'କୁ ପ୍ରଶସ୍ତ ହସର ସ୍ୱାଗତ ଜଣାଉଛନ୍ତି । ଝିଅଟା ତ ରୀତିମତ କୁରୁଳି ଖାଉଛି ! କଥା କଅଣ ?

କଥା କଅଣ ବୋଲି ବୁଝି ନ ପାରିଲେ ମଧ୍ୟ ଶୈଳ ଅନୁମାନ କଲା ଯେ ସେଥିର ସମ୍ପର୍କ ଅଛି ଆବିର୍ଭୂତ ତୃତୀୟ ବ୍ୟକ୍ତିଟି ସାଙ୍ଗରେ, ଯେ ବାପଝିଅଙ୍କ ପଛେ ପଛେ ଆସି କହୁଛି —

"ହ୍ୟାଲୋ ! ହାଓ ଆର୍ ୟୁ ?" ତାଙ୍କ ଓଠରେ ବି' ଅନୁରୂପ ହସ । କିନ୍ତୁ ସେଥିରେ ଛାମୁଦାନ୍ତ ଦୁଇଟିର ପ୍ରାଧାନ୍ୟ ରହିଛି । କେ-ବି-କେ ସାହେବ !

ଶୈଳର ମନ ହେଲା ସେ ବି' ତାଙ୍କୁ ଚମକେଇଦେବ । ତାଙ୍କୁ ଡାକିବ, ଯାହା ମନେ ମନେ ଧମକେଇ ଆସୁଛି ଡାକିବ ବୋଲି, ଅନେକ ଦିନୁ । 'କୁଳ ଭାଇନା' ବୋଲି ଡାକିବ । ସେ ଅବଶ୍ୟ ତା'ର ଯୋଗ୍ୟ, ଶତକଡ଼ା ଶହେ ମାର୍କ ପାଇବେ କି ତା'ଠୁଁ ବେଶି ।

କିନ୍ତୁ ଏଥର ମଧ୍ୟ ସେ ଫେଲ୍ ମାରିଲା । ଖାଲି ନମସ୍କାରଟିଏ ପକେଇ କହିଲା, "କେତେବେଳେ ଆସିଲେ ? ଏଠି ରହିବେ ତ କିଛି ଦିନ ? ନା ଦି'ପଦ କଥା ନ ହେଉଣୁ ପୁଣି ପଳେଇଯିବେ କୁଆଡ଼େ, ଆଉ ଚିଠି ଖଣ୍ଡେ ମଧ୍ୟ ଦେବାକୁ ଭୁଲିଯିବେ ?"

କେ-ବି-କେ ତାଙ୍କ ଦୋଷ ସ୍ୱୀକାର କଲାପରି କହିଲେ ହସି ହସି, ''ସରି !'' ଏଥର କିନ୍ତୁ ଅନେକ ଦୂରକୁ ପଳେଇଯିବା ପୂର୍ବରୁ ଆସିଛି ଏଠିକି, ତମ ଦିହିଁଙ୍କ ସାଙ୍ଗରେ କଥା ହେବାଲାଗି ଏବଂ ଏଇ ୟଙ୍ଗ୍ ଲେଡ଼ିଙ୍କ ସାଙ୍ଗରେ ସାଙ୍ଗ ହେବାପାଇଁ (ତନୁର ଉଦ୍ଭାସିତ ବଦନକୁ ଦେଖିବା କଥା ସେତେବେଳେ) । ମୁଁ ଜେନେଭା ଯାଉଛି, ୟୁନେସ୍କୋର ଗୋଟାଏ ଆସାଇନ୍‌ମେଣ୍ଟ୍‌ରେ । କିନ୍ତୁ ମୁଁ ମାତ୍ର ଦି'ପଦ କଥା କହିବାକୁ ଆସି ନାହିଁ । ମୋର ଅନେକ ଅନେକ କିଛି କହିବାର ଅଛି...''

''ଧନ୍ୟବାଦ !''

ଯେଉଁ ବିତର୍କ ତା' ମନ ଭିତରେ ଚାଲିଥିଲା ଏବଂ ଯେଉଁ ବିଷାଦକୁ ସେ ଟାଣୁଆ ଯୁକ୍ତି ଓ ତଥ୍ୟ ସାହାଯ୍ୟରେ ଘଉଡ଼େଇ ଦେବାପାଇଁ ଚେଷ୍ଟା କରୁଥିଲା, ତା'ର ଅବସାନ ଘଟିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନ୍ତତଃ ବର୍ତ୍ତମାନପାଇଁ ।

...ଯେଉଁ ପରିବାରରେ ବାପଝିଅ ଏତେ ଖୁସି ମୋର ଜଣେ ବନ୍ଧୁ, ପୁଣି ପୁରୁଷ ବନ୍ଧୁର ଆବିର୍ଭାବରେ, ସେଠି ମୁଁ କାହିଁକି ତୁଚ୍ଛାଟାରେ ଫଟରେଇ ହେଉଛି ମୋ ଦିଅଁଙ୍କ ସାଙ୍ଗରେ, କି ଭାବୁଛି ଯେ ମୁଁ ତାଙ୍କପାଇଁ କିଛି ଗୋଟାଏ କଷ୍ଟ ସହୁଛି ମାଆ କି ପତ୍ନୀ ହିସାବରେ ?

ତା'ଛଡ଼ା ଦିଦି ସିନା ଗଲେଣି କେବେଠୁଁ, ତାଙ୍କର ଏଇ ବିରହୀ ସ୍ୱାମୀ ତଥାପି ମୋର ଏତେ ନିଜର ହୋଇ ଅଛନ୍ତି ଏବଂ ଯେଉଁ କଥା ଦେଇଥିଲେ ସେଦିନ ଯେ ସେ ମୋର ହାନିଲାଭ ବୁଝିବେ ସେଥିରେ ତିଳେ ମାତ୍ର ହେଳା କରି ନାହାନ୍ତି, ଇଏ କ'ଣ ମୋର ପରମ ସୌଭାଗ୍ୟ ନୁହେଁ ? ପୁଣି ସେ ମୋ ଝିଅ ଓ ସ୍ୱାମୀଙ୍କ ସାଙ୍ଗରେ ବି' ଏମିତି ମିଶି ଯାଇପାରିବେ, ଏ କଥା କିଏ କଳ୍ପନା କରିଥିଲା ? ଏଭଳି ଏକ କବଚ ଥାଉଁ ଥାଉଁ ମୋର ଦୁଃଖ କରିବା ଅନ୍ୟାୟ, ଏକାନ୍ତ ଅନ୍ୟାୟ । କ୍ଷମା ପ୍ରାର୍ଥନୀୟ ।

ହେଲେ ମୁଇଁ ତାଙ୍କୁ କହିଥିଲି ସେଦିନ, 'ୟୁ ଗୋ ଟୁ ହେଲ୍' ! ହେ ଭଗବାନ୍ ! ହେଉ, କହିଛି ବେଶ୍ କରିଛି । ଏତେ ସହଜରେ କେହି ମୋ ଦିଦିଙ୍କ ପ୍ରତିନିଧି ହୋଇପାରିବ ନାହିଁ । ଇଏ ହେଉଛନ୍ତି ମାତୁଆ ମହାଦେବଟିଏ । କହିଥିଲି ବୋଲି ସିନା ସେ ଏମିତି ଲାଖି ଯାଇଛନ୍ତି ମୋ ସାଙ୍ଗରେ, ମୋ ପରିବାର ସାଙ୍ଗରେ, ଆଉ ମୋ ସାହିତ୍ୟ ସାଙ୍ଗରେ ? ଯଦିଓ ଭଦ୍ରଲୋକ ସାହିତ୍ୟର ଧାର ଧାରନ୍ତି ନାହିଁ... ଶୈଳ ଉତ୍କଣ୍ଠାର ସହ ଅପେକ୍ଷା କଲା କେ-ବି-କେଙ୍କର 'ଅନେକ ଅନେକ କଥା' ଶୁଣିବାପାଇଁ ଯେଉଁଥିରେ ତା'ର ସୌଭାଗ୍ୟବୋଧ ଆହୁରି ବଳିଷ୍ଠ ହୋଇଉଠିବ ।

ଅବିଳମ୍ବେ ବାପଝିଅଙ୍କ, ବିଶେଷତଃ ତନୁର ଉଚ୍ଛ୍ୱସିତ ଆନନ୍ଦର କାରଣ ସ୍ପଷ୍ଟ ହୋଇଗଲା । ଜଣାପଡ଼ିଲା ଯେ ଅତିଥି ଅନେକ ଆଗରୁ ଆସିଲେଣି ଏଠିକି ଏବଂ ତନୁଶ୍ରୀ ନାମକ ୟଙ୍ଗ୍ ଲେଡ଼ିଙ୍କ ସାଙ୍ଗରେ ଦୀର୍ଘ ଆଳାପ ଆଲୋଚନା କରି ସାରିଛନ୍ତି । ଯେଉଁଥିରେ କେବଳ ତା'ର ଉପସ୍ଥିତ ପଢ଼ାଶୁଣା କଥା ପଡ଼ି ନ ଥିଲା; ସେଥିରେ ମଧ

ଥିଲା ତା' ଭବିଷ୍ୟତର ସ୍ୱପ୍ନ, ଯାହାର ରୂପରେଖକୁ ଅନାୟାସରେ ଟିପି ନେଇପାରିଥିଲେ କେ-ବି-କେ ସାହେବ । ...ବାହାଦୁରୀ ଦି'ଜଣଙ୍କର ନିଶ୍ଚୟ । ମୋ ଝିଅର ଯେମିତି ଲାଜ ସଙ୍କୋଚ ବୋଲି କିଛି ନାହିଁ, ୟା'ଙ୍କର ପଦ୍ମତୋଳା ବି' କିଛି କମ୍ ନୁହେଁ ! ...ଶୈଳ ଯଥାର୍ଥ ଆନନ୍ଦ ଓ ଗର୍ବର ସହିତ ଶୁଣୁଥିଲା ସ୍ୱାମୀ ଯାହା ବଖାଣିଲେ ଅଙ୍କଲ୍ ଓ ୟଙ୍ଗ୍ ଲେଡ଼ିଙ୍କ ଆଳାପ-ଆଲୋଚନା ବିଷୟରେ । ଶେଷକୁ କୁଆଡ଼େ କେ-ବି-କେ ସାହେବ ତା'କୁ ଆଶ୍ୱାସନା ଦେଇଛନ୍ତି, ଯେ ସେ ତା'ର ସ୍ୱପ୍ନକୁ ସାକାର କରିବାପାଇଁ ଚେଷ୍ଟା କରିବେ । ବିଶେଷ ଚେଷ୍ଟା କରିବେ । ସେ ନିଶ୍ଚୟ ବିଦେଶକୁ ଯିବ ତା'ର ପୋଷ୍ଟ-ଗ୍ରାଜୁଏଟ୍‌ପାଇଁ ଏବଂ ଜର୍ଣ୍ଣାଲିଜ୍‌ମ୍ ପଢ଼ିବ । କହିଲେ ସ୍କଲାରଶିପ୍ ନ ମିଳିଲେ ବି' ଚିନ୍ତା ନାହିଁ, ତୋର ଡ୍ୟାଡ଼୍‌ଡ଼ୀ ଯାହା ଦେଇପାରିବେ ଦିଅନ୍ତୁ, ବାକୀତକ ମୁଁ ଯୋଗାଡ଼୍ କରିଦେବି । ନୋ ଫିଅର୍ସ୍ ! 'କାହାକୁ ମିଳିବ ଏମିତି ଗୋଟିଏ ୱାଣ୍ଡରଫୁଲ୍ ଅଙ୍କଲ୍ ?' —ସନାତନବାବୁ କହିଲେ ଗଦ୍‌ଗଦ ହୋଇ ।

ୱାଣ୍ଡରଫୁଲ୍ କ'ଣ ହୁଅନ୍ତେ ନାହିଁ ? ମୋ ଫ୍ରେଣ୍ଡ୍‌ମାନେ କ'ଣ ଏମିତି ସେମିତି ହୋଇଛନ୍ତି ? ଶୈଳ ସ୍ୱାମୀଙ୍କୁ ଥଟ୍ଟା କଲା ମନେ ମନେ । କିନ୍ତୁ ପରେ ପରେ ତା'ର ମନକୁ ଆସିଲା ଯେ ତା'ର ସବୁ ଫ୍ରେଣ୍ଡ ଏହି ପ୍ରକାର ଭାଗ୍ୟଶାଳୀ ନୁହଁନ୍ତି । ଯଥା, କବି ରାମହରି ଦାସ । ତାଙ୍କ କଥା ପଡ଼ିଲେ ଇଏ ଏକ୍‌ଦମ୍ ଚୁପ୍ ହୋଇଯାଆନ୍ତି । ଆଉ ଝିଅଟାର ଭୂରୁ କୁଞ୍ଚେଇ ହୋଇଯାଏ । ଠିକ୍ ଅଛି । ଶୈଳ ଦମ୍ଭ ଦେଲା ନିଜକୁ, ତା'ର ନବଜାଗ୍ରତ ସୌଭାଗ୍ୟବୋଧକୁ ମୁଠେଇ ଧରି, ଯେ ଇଏ ବି' ବଦଳିଯିବ । ଏମାନେ ବୁଝିବେ, ଅବଶ୍ୟ ବୁଝିବେ କେବେହେଲେ, ଯେ ସେ କେତେ ମହାନ୍ । କେତେ ଉଚ୍ଚରେ ତାଙ୍କର ଆସନ ।

କିନ୍ତୁ 'ଅନେକ ଅନେକ କଥା'ର ତାତ୍ପର୍ଯ୍ୟ ଭିନ୍ନ ଥିଲା । ସେଥିରେ ଶୈଳଙ୍କ ଭିନ୍ନ ପଣ୍ଡାପରିବାରଙ୍କର କୌଣସି ଭୂମିକା ନାହିଁ ବୋଲି କେ-ବି-କେ ସ୍ପଷ୍ଟ କରିଦେଲେ, କୁଶଳୀ ଓ ବିନମ୍ର ଭଦ୍ରତାର ସହ । ଭୋଜନାନ୍ତ ବିଶ୍ରାମ କଲାବେଳେ ଘୋଷଣା କଲେ —

"ପଣ୍ଡା ସାହେବ, ଇଫ୍ ୟୁ ଡୋଣ୍ଟ୍ ମାଇଣ୍ଡ, ମୋର କେତୁଟା କଥା କହିବାକୁ ଅଛି ଆପଣଙ୍କର ଷ୍ଟୀଙ୍କୁ, ଏଇ ସାହିତ୍ୟ ଫାହିତ୍ୟ ବିଷୟରେ । ଅବଶ୍ୟ ୟୁ ଆର୍ ୱେଲ୍‌କମ୍ ଟୁ ଜଏନ୍ ଅସ୍, କିନ୍ତୁ ଆପଣଙ୍କୁ ହାଇ ନ ଆସିଲେ ହେଲା (ହିଁ ହିଁ ହସ)..."

ସନାତନବାବୁ ସହଜେ ବୁଝିଲେ ତା'ର ଅର୍ଥ କଅଣ । ଯେ ଆପଣ ଦୂରେଇ ରହିଲେ ଭଲ ହେବ । ସେହେତୁ ସେ 'ନୋ ଥ୍ୟାଙ୍କ୍‌ସ' କହି ପ୍ରସ୍ଥାନ କଲେ । ତନୁ ଟିକିଏ ନିରାଶ ହେଲା, ଯେ ଅଙ୍କଲ୍‌ଙ୍କ ସାଙ୍ଗରେ ଆଉ କେତୁଟା ପରାମର୍ଶ

କରିବାର ଥିଲା, ଯାହା ଆଜି ସମ୍ଭବ ହେବ ନାହିଁ । କିନ୍ତୁ ସେ ମଧ ତା' ପଢ଼ାଘରକୁ ବାହାରିଗଲା, ତା' ସ୍ୱପ୍ନ ସାଙ୍ଗରେ ବିସ୍ତୃତ କଥାଭାଷା ହେବାପାଇଁ ।

ବର୍ତ୍ତମାନ କେ-ବି-କେ ଶୈଳଜାର ଆଖିରେ ଆଖି ରଖି ତାଙ୍କ ବକ୍ତବ୍ୟ ବାଢ଼ିବାର ସୁବିଧା ପାଇଲେ ଏବଂ ସିଛିଆ କର୍ପୋରେସନ୍‌ର ଡେପୁଟି ଜେନେରାଲ୍ ମ୍ୟାନେଜର୍‌ଙ୍କ ସୁସଜ୍ଜିତ ଡ୍ରଇଂରୁମରେ ବସି ତାଙ୍କ ପତ୍ନୀ ଓରଫ୍ କବି ଶୈଳଜା ପଣ୍ଡାଙ୍କୁ ଆକ୍ରମଣ କଲେ, ପୂର୍ବ ଯୋଜନା ଅନୁଯାୟୀ —

"ଶୈଳ, ମୁଁ ଶୁଣିଲି ତୁମେ ଆଜି ଯାଇଥିଲ ତମର କୋଉ ବହିର ଉନ୍ମୋଚନ କରାଇବାପାଇଁ ?"

"ହଁ, ତା'କୁ ଉନ୍ମୋଚନ କଲେ କଲିକତା କର୍ପୋରେସନ୍‌ର ଡେପୁଟି ମେୟର୍ ମୀନକେତନ ବସାକ୍, ଆଉ ଫିଲ୍ମ ଡାଇରେକ୍ଟର..."

"ମୁଁ ଜାଣିଛି, ସବୁ ଜାଣିଛି । କିନ୍ତୁ ତମର କ'ଣ ଲାଭ ହେଲା ସେଥିରେ, ଜାଣିପାରେ କି ?"

"ଆରେ, ଆପଣ ଜାଣନ୍ତି ନାହିଁ ମୋର ଉଦ୍ଦେଶ୍ୟ କ'ଣ ଥିଲା ? ଉଦ୍ଦେଶ୍ୟ ଥିଲା ମୋ ବହିର ବଙ୍ଗଳା ଅନୁବାଦ, ଯାହାକି ମୋର ବନ୍ଧୁ ପଲ୍ଲବୀ ମିତ୍ର କରିବ ବୋଲି ରାଜି ହୋଇଛି । ଆଉ ସେ ସଭାରେ ଘୋଷଣା କଲା ସେ କଥା —"

"ଉତ୍ତମ । କିନ୍ତୁ ତା'ପରେ ?"

"ହ୍ୱାଟ୍ ଡୁ ୟୁ ମିନ୍ — 'ତା'ପରେ' ?"

"ମାଇ ଡିଅର୍ ଗାର୍ଲ, ତମର ବୁଝିବା ଉଚିତ ଯେ ତମେ ଆଉ ଇତର ସାଧାରଣ ଝିଅଟିଏ ହୋଇ ନାହଁ, ଯାହାକୁ ଡରିମରି 'ତୁହି ମା ଜନମଭୂମି' ଗାଇବାକୁ ପଡ଼ିଥିଲା ମଦ୍ୟପାୟୀ ବରିଷ୍ଠ ସାହିତ୍ୟିକମାନଙ୍କ ଆଗରେ । ତମେ ଆସି ଅଧାବୟସୀ ହେଲଣି, 'ଦିବ୍ୟଜ୍ୟୋତି' ଛଡ଼ା ଆଉ କେତେ ଛୋଟ ବଡ଼ ପୁରସ୍କାର ପାଇସାରିଲଣି ଏବଂ ଅଧ ଡଜନେ କି ତା'ଠୁଁ ବେଶି ବହି ଛପେଇ ସାରିଲଣି... (ସ୍ୱଳ୍ପ ବିରାମ ନେଲା ପରେ) ତେଣୁ ତମର ବର୍ତ୍ତମାନ ପାଇବା ଉଚିତ କେତୋଟି ବିଶିଷ୍ଟ ପୁରସ୍କାର । ଦିବ୍ୟଜ୍ୟୋତିଠାରୁ ଆହୁରି ପ୍ରେଷ୍ଟିଜିୟସ୍, ସର୍ବଭାରତୀୟ । ଯଥା — ଗଂଗୋତ୍ରୀ । ୟୁ ଅଣ୍ଡରଷ୍ଟାଣ୍ଡ ?"

ଶୈଳର ପାଟି ଈଷତ୍ ମେଲା ହୋଇଗଲା । ତା' ପାଟିରୁ ବାହାରୁଥିଲା ଯେ ପଲ୍ଲବୀ ବି' ସେଇଆ କହି ତା'କୁ ଚମକେଇଦେଲା ଆଜି । କିନ୍ତୁ ସେ କହିଲା ନାହିଁ ସେ କଥା । କାଳେ ବକ୍ତାଙ୍କୁ ବାଧା ହେବ ଯେ ତାଙ୍କ ବକ୍ତବ୍ୟରେ

କିଛି ନୂତନତ୍ୱ ନାହିଁ । କିନ୍ତୁ ତା'କୁ କହିବାକୁ ପଡ଼ିଲା ଯାହା ତା'ର କହିବା ଉଚିତ ।

''ଶୁଣନ୍ତୁ କେ-ବି-କେ ସାହେବ, ମୋର କୋଉ ପୁରସ୍କାରକୁ ଲୋଭ ନାହିଁ, ମୋତେ ବିଶ୍ୱାସ କରନ୍ତୁ...''

''କିନ୍ତୁ ମୋର ଲୋଭ ଅଛି, ଶୈଳ । ଆଉ ତମେ ଜାଣିଛ ଯେ ନୀଲ୍ ବଞ୍ଚିଥିଲେ ସେ ବି' ଚାହିଁଥାଆନ୍ତା ସେଇଆ । ତା'ହେଲେ ତମେ କ'ଣ ପ୍ରସ୍ତୁତ ନୁହଁ, ତମ ଦିଦିଙ୍କର ଆତ୍ମାକୁ ଏଇ ଟିକିଏ ସୁଖ ଆଣିଦେବା ଲାଗି ?''

ଓଃ ! କ'ଣ କହୁଛନ୍ତି ମ ଇଏ ? ମୋତେ କନ୍ଦେଇବାକୁ ଚାହାନ୍ତି ନା କ'ଣ ? ଶୈଳ ଅଦୃଶ୍ୟ ଲୁହ ଟୋପାଏ ପୋଛିଦେଲା ତା' ଆଖିରୁ ଏବଂ କହିଲା, ହାରିଗଲା ପରି — ''ହଉ କୁହନ୍ତୁ ଯାହା କହିବାକୁ ଚାହାନ୍ତି ।'' ତେବେ ଦାୟିତ୍ୱ ସେଇ ପବିତ୍ର ଆତ୍ମାର, ମୋର ନୁହେଁ, ଏହି ଭାବରେ ତା'କୁ ଖଲାସ ହେଲାପରି ଲାଗିଲା । ଶୈଳ ନିଜକୁ ବ୍ୟକ୍ତ କରିସାରିଛି ।

''ଶୁଣ'', କେ-ବି-କେ ଆରମ୍ଭ କଲେ ମାଷ୍ଟରିଆ ଠାଣିରେ, ''ଏଇ ସବୁ ସଭାସମିତି, ଭାଷଣ, ଉନ୍ମୋଚନ ଇତ୍ୟାଦି ଇତ୍ୟାଦି ପ୍ରତି ମୋର କୌଣସି ବିରୋଧ ନାହିଁ । ସ୍ୱାର୍ଥସାଧିତ ହେଉ କେଉଁ ପଲ୍ଲବୀ ମିତ୍ର କିମ୍ବା ଡେପୁଟି ମେୟରଙ୍କର । ସିଛିଆ କର୍ପୋରେସନ୍‌ର କିଛି ଫାଇଦା ହେଉ, ଅଥବା ସିଛିଆର କୃପାଦୃଷ୍ଟି ପଡୁ ତାଙ୍କ ଉପରେ । କିନ୍ତୁ ପ୍ରଶ୍ନ ହେଉଛି ତମକୁ କ'ଣ ମିଳିଲା ସେଥିରୁ ? ହଁ, ଅନୁବାଦର ମୂଲ୍ୟ ଅଛି, ତଥା ପବ୍ଲିସିଟିର । କିନ୍ତୁ କେବଳ ଯଦି ତାହା ବାଏଁ ବାଏଁ ଉଡ଼ି ନ ଯାଇ, ସୁନିର୍ଦ୍ଦିଷ୍ଟ ଲକ୍ଷ୍ୟ ଆଡ଼କୁ ଗତି କରେ । କ'ଣ ବୁଝୁଛ ନା ମୁଁ ଯାହା କହୁଛି ? ପ୍ରତ୍ୟେକ ତୀର ଲକ୍ଷ୍ୟଭେଦୀ ହେବା ଆବଶ୍ୟକ । କୋଉ ନଈ ଯେମିତି ମରୁପଥରେ ହଜି ନ ଯାଏ, ଆହୁରି ଆହୁରି ପାଖ ହୋଇ ଆସେ, ଈପ୍ସିତ ସାଗର ସଙ୍ଗମର...''

''ବାଃ, କିଏ କହିଲା ଆପଣ କବି ନୁହନ୍ତି ?'' ଶୈଳ କହିଲା ପରିହାସ ଛଳରେ ।

''ତମ ଦିଦିଙ୍କ ଦୟା'', କେ-ବି-କେ ଉତ୍ତର ଦେଲେ, ''ସେ ଯେଉଁ ପ୍ରାଣୀମାନଙ୍କୁ ଜୁଟେଇଛନ୍ତି ମୋତେ —''

''ମୁଁ ବି' ଯାହାଙ୍କ ଭିତରୁ ଜଣେ ।''

''ଏକ୍‌ଜାକ୍ଟ୍‌ଲି । କିନ୍ତୁ କେବଳ ଜଣେ ନୁହେଁ, ଅସଲ ଜଣେ । ...ଏବେ ଓ୍ୱେ, ଶୁଣ ମୁଁ କ'ଣ କହୁଛି । ତମର ଜାଣିବା ଉଚିତ କାହା ପାଖରେ ତମର

ବହି ସବୁ ପହୁଞ୍ଚିବା କଥା । କେଉଁ ଭାଷାରେ କିଏ ଅନୁବାଦ କରିବ ଏବଂ ଅନୁବାଦ ହୋଇଥିବା ବହି ପ୍ରଥମେ କାହାକୁ ଦିଆଯିବ ଏବଂ କେଉଁମାନଙ୍କ ଦ୍ୱାରା ତା'ର ରିଭିଉ ହେବା ଉଚିତ, ଓ କେଉଁ ପ୍ରକାର ପତ୍ରିକାରେ ତାହା ପ୍ରକାଶିତ ହେବା ଆବଶ୍ୟକ । ଯେମିତିକି ଯେଉଁମାନେ 'ଗଂଗୋତ୍ରୀ'ର ଦାୟିତ୍ୱରେ ଅଛନ୍ତି—ଯେତେକ ପରାମର୍ଶଦାତା, ପ୍ରତ୍ୟକ୍ଷ ଓ ପରୋକ୍ଷ, ଏବଂ ଯେତେକ କର୍ତ୍ତା, ପ୍ରତ୍ୟକ୍ଷ ଓ ପରୋକ୍ଷ—ସେମାନେ ସମସ୍ତେ ତା'କୁ ପଢ଼ିବେ ଏବଂ ବାଧ ହେବେ ମୁଗ୍ଧ ହେବାପାଇଁ...''

''ମାଇ ଗଡ୍ !''

''ତରକିବାର କାରଣ ନାହିଁ । ସବୁର୍ କର । ମୁଁ ତା'ର ଉପାୟ ବତେଇଦେଉଛି ତମକୁ । ନାଆଁ ଗାଆଁ ଠିକଣାର ସମ୍ପୂର୍ଣ୍ଣ ତାଲିକା ଦେଇଯିବି ତୁମକୁ, ଯେଉଁମାନଙ୍କ ସାଙ୍ଗରେ ତମେ ଯୋଗାଯୋଗ କରିବ । ଭୁସ୍‌କିନି ମୁଁ ଏତେ ବଡ଼ ବୋଝ ଲଦିଦିଅନ୍ତି ନାହିଁ ତମ ଉପରେ । କିନ୍ତୁ ଦୁଇଟି କାରଣରୁ ମୁଁ ଏଭଳି ଦୁଃଖ ଦେଉଛି ତମକୁ । ପ୍ରଥମ କଥା, 'ଗଂଗୋତ୍ରୀ'ର ବେଳ ଆସିଗଲାଣି ତମପାଇଁ । ଦ୍ୱିତୀୟରେ ମୁଁ ଭାରତ ଛାଡ଼ି କରି ଯାଉଛି ଦି'ତିନି ବର୍ଷ ୟୁନେସ୍କୋର ଗୋଟାଏ ଡେପୁଟେସନ୍‌ରେ । ଏଇ ଯେଉଁ ଆସୁଥିଲି ତମ ପାଖକୁ ମଝିରେ ମଝିରେ, ବୁଝୁଥିଲି ତମେ କ'ଣ ସବୁ ଲେଖୁଛ ଆଉ କୋଉ ବାଟରେ ଚାଲୁଛ, ଏଣିକି ତା'ର ସୁଯୋଗ ଆଉ ମିଳିବ ନାହିଁ ମୋତେ । ସେଇଲାଗି ଏକାସାଙ୍ଗରେ ଏତେ ହୋମ୍‌ଓ୍ୱାର୍କ୍, ଯାହା ତମକୁ ତୁଲେଇବାକୁ ହେବ । ଆଇ ଆମ୍ ସରି !''

ଶୈଳର ପାଟିରୁ କଥା ବାହାରିଲା ନାହିଁ ।

''କିନ୍ତୁ ମୁଁ ବି' ଚୁପ୍‌ଚାପ୍ ବସିଯିବି ନାହିଁ । ମୁଁ ଦୂରରେ ଥାଇ ତଦାରଖ କରିବି, ତମେ କ'ଣ କରୁଛ ନ କରୁଛ । ତା'ଛଡ଼ା ମୋ ପାଖରେ କିଛି ଉପାୟ ଅଛି ସେମାନଙ୍କୁ ମୁଗ୍ଧ କରିବାଲାଗି ।''

ଶୈଳ ଢଳଢଳ ହୋଇ ଅନେଇଲା ତାଙ୍କ ଆଡ଼କୁ ବିମୁଗ୍ଧ ଚାହାଣିରେ ।

''(ହସିଦେଇ) ଖାଲି ତମ ଲେଖା କି ରିଭିଉକୁ ପଢ଼ିଲେ ଯେ ଜଣେ ମୁଗ୍ଧ ହେବ, ତା' ନୁହେଁ । ପ୍ରଭାବ ବୋଲି ମଧ୍ୟ ଗୋଟାଏ ଜିନିଷ ଅଛି । ଇନ୍‌ଫ୍ଲୁଏନ୍ସ ଏବଂ ଅନେକ କିସମର ପ୍ରଭାବ ଅଛି, ସେ ବିଷୟରେ ଆଉ କିଛି ପଚାର ନାହିଁ ମୋତେ ।''

"କିନ୍ତୁ —"

"ତମେ ଭାବୁଥିବ ଯେ ମୁଁ ତ କବିତା ଫବିତା କିଛି ବୁଝେ ନାହିଁ, ସାହିତ୍ୟର ଧାର ଧାରେ ନାହିଁ, ମୋତେ ଏତେ କଥା ଜଣା ହେଲା କେମିତି ଯେ ଏଇମାନେ ହେଉଛନ୍ତି ଠିକଣା ଲୋକ । ଦ୍ୱିତୀୟରେ ମୁଁ ଭଲା କେମିତି ତାଙ୍କୁ ମୁଗ୍ଧ କରିପାରିବି (ହୋ-ହୋ-ହୋ)... ମାଇ ଡିଅର୍‌, ମୋର ଜ୍ଞାନଭଣ୍ଡାରପାଇଁ ପୁଣି ତମ ଦିଦିଙ୍କୁ ଦାୟୀ କରିବାକୁ ପଡ଼ିବ । ତାଙ୍କରି କୃପାରୁ ମୁଁ ଏହି ପ୍ରକାର ଜ୍ଞାନ ହାସଲ କରିପାରିଛି, ଅଳ୍ପବହୁତ । କିଏ କେଉଁ ସଂସ୍ଥାରେ ଅଛି, କେଉଁ ସାହିତ୍ୟିକ କାରବାରରେ ଲିପ୍ତ ଏବଂ କେଉଁ ପୁରସ୍କାରର କିଭଳି ଚାବିକାଠି ଅଛି ତା' ପାଖରେ । ବାକୀ ରହିଲା ଏଇ ଇନ୍‌ଫ୍ଲୁଏନ୍ସ କଥାଟା । ତମକୁ ଭୁଲିଯିବାକୁ ହେବ ନାହିଁ ଯେ ରାଜା ମୂର୍ଖ ହୋଇପାରେ, କିନ୍ତୁ ଯେତେହେଲେ ସେ ରାଜା । ଖାଲି ଚାଷୀ ମୂଲିଆର ରାଜା ନୁହେଁ । ମଧ ଭାଟର, କବିର, ବିଦୂଷକର । ତା'ଛଡ଼ା ଭଗବାନ୍‌ଙ୍କ କୃପାରୁ ମୁଁ ଗତ ପାଞ୍ଚବର୍ଷହେଲା ଯେଉଁସବୁ ବିଭାଗରେ ପଣ୍ଡାଗିରି କରିଛି, ତା'ର ବେଶି ଭାଗ ସାହିତ୍ୟ ଆଉ ସଂସ୍କୃତି, ବଡ଼ ହରଫ୍‌ରେ ଲେଖା 'କଲ୍‌ଚର୍‌' ଏବଂ ତା'ର ପ୍ରାଙ୍ଗଣରେ ଭେଲା ଭେଲା କବି, କଳାକାର, ନାଟୁଆ, ସୁଆଙ୍ଗିଆ ଓଗେର, ଯେଉଁମାନେ ଚାହିଁ ରହିଛନ୍ତି କେମିତି ବକଟେ ସ୍ୱୀକୃତି, ଯତ୍‌କିଞ୍ଚିତ୍ ଅନୁଦାନ କିମ୍ବା ନିଯୁକ୍ତି ମିଳିଯିବ ରାଜା ବାହାଦୁର ଓରଫ୍ ବ୍ୟୁରୋକ୍ରାଟ୍‌ 'ସାର୍‌'ଙ୍କ ହାତରୁ । ତାଙ୍କପାଇଁ ହେଉ କି ତାଙ୍କ ସଂସ୍ଥାପାଇଁ । କିଛି ମୁଣ୍ଡରେ ପଶୁଛି ନା ତମର ?"

ଏଥର ଶୈଳ ରୀତିମତ ଡରିଗଲା ପରି ମନେ ହେଉଥିଲା । ସତେକି ସେ ଯାହାଙ୍କୁ ଦେଖୁଛି ତା' ସାମ୍ନାରେ, ସେ କେବଳ ତା' ସ୍ୱର୍ଗୀୟା ଦିଦିଙ୍କ ସ୍ୱାମୀ ନୁହେଁ ଏବଂ ଅତି ଉପକାରୀ ବନ୍ଧୁଟିଏ । ସେ ମଧ ଗୋଟାଏ ମହାପରାକ୍ରମୀ ଜିନିଆଇ, ଯେ ଲ୍ୟାମ୍ପ୍ ଭିତରୁ ବାହାରି ଆସିଛି ଏବଂ କହୁଛି ମୋ ଇଚ୍ଛା ପୂରଣ କରିବ, ଅସାଧ୍ୟକୁ ସାଧ୍ୟ କରିବ ।

...ନା — ନା — ମୁଁ ପାରିବି ନାହିଁ । ମୋତେ ମୋ ଘର କୋଣରେ ରହିବାକୁ ଦିଅ । ମୁଁ ସାମାନ୍ୟ ବାଳିକା, ମୋର ବୟସ ଯାହା ହେଉ ନା କାହିଁକି । ଆଉ ମୋର ସବୁଠାରୁ ବଡ଼ ଆନନ୍ଦ, ଯେତେବେଳେ ମୋର ମନେହୁଏ ଯେ ଏଇ ଦୁବଘାସଟି ମୋର ମିତ ହେବାକୁ ଚାହେଁ ଏବଂ ମୁଁ ନଇଁଆସେ ତା' ସାଙ୍ଗରେ ଗେଲ ହେବାପାଇଁ । ତମେ ଜିନିଆଇ ନୁହଁ, ଉପକାରୀ ଦୈତ୍ୟ ନୁହଁ, ତମେ ହେଉଛ ଆମ କେ-ବି-କେ ସାହେବ । ମୋର ନିଜ୍ଜ ଲୋକ

ଜଣେ, ଯେ ଜାଣିଥିବ ମୋର ସାନ ମନଟା କେଉଁ ଧାତୁରେ ଗଢ଼ା । ସେଇଠୁଁ ହଠାତ୍ ତା' ପାଟିରୁ ବାହାରିଲା, —

"କ୍ଷମା କରିବେ, ମୁଁ ଆପଣଙ୍କୁ କୁଳ ଭାଇନା ବୋଲି ଡାକିପାରେ କି ?"

"ହ୍ୱାଟ୍ ??"

କିନ୍ତୁ ତା' ପରେ ପରେ କେ-ବି-କେ ଏଭଳି ଉଚ୍ଚ ସ୍ୱରରେ ହସି ଉଠିଲେ ଯେ ଘର ଭିତରେ ଥିବା ତନୁ ଓ ତା' ବାପା ମଧ୍ୟ ଚମକି ଉଠିଥିବେ । ସେଇଠୁଁ କହିଲେ,

"ଫାଇନ୍ ! ମାର୍ଭେଲସ୍ ! କିନ୍ତୁ କୁଳଭାଇନାକୁ 'ତୁମେ' ବୋଲି ଡାକିବାକୁ ପଡ଼ିବ । ଓ-କେ ?"

"ଓକେ । କିନ୍ତୁ ଗୋଟାଏ କଥା ଭାଇନା, ତମେ ଯାହା କହିବ ମୁଁ ସେଇଆ କରିବି ନିଶ୍ଚୟ । କିନ୍ତୁ ମୁଁ କେଉଁ ବଡ଼ ପୁରସ୍କାର ପାଇବା ଆଗରୁ, ଆହୁରି କେତେ ଯୋଗ୍ୟ ଓ ବରିଷ୍ଠ ଲେଖକ ଅଛନ୍ତି ଓଡ଼ିଶାରେ, ଯେଉଁମାନଙ୍କର ପାଇବା ଉଚିତ । ପ୍ରଥମେ କବି ରାମହରି ଦାସ, ତାଙ୍କ ପଛକୁ ଗାଳ୍ପିକ ରଞ୍ଜନ ମହାନ୍ତି, ଔପନ୍ୟାସିକ ରୁଦ୍ର ବଳୀୟାର ସିଂହ, କବି ଜଗନ୍ନାଥ ଘଡ଼େଇ, ସୁପ୍ରିୟା ମହାପାତ୍ର ଓଗେର —"

"ଜାଣିଛି, ଜାଣିଛି, ଅନେକ ଅଛନ୍ତି । ସେମାନଙ୍କର ମଙ୍ଗଳ ହେଉ । ଭଗବାନ୍‌ଙ୍କୁ ଡାକିପାର ସେମାନଙ୍କପାଇଁ । କିନ୍ତୁ ତମ ହୋମ୍‌ୱାର୍କ୍‌ରେ ଯେମିତି ହେଳା ନ ହୁଏ । ସେଇ ନିର୍ଭର ପ୍ରତିଶ୍ରୁତିଟିକ ନ ପାଇଲେ ମୋର ପ୍ଲେନ୍ ଛାଡ଼ିବ ନାହିଁ କଲିକତା ଏୟାର୍‌ପୋର୍ଟ୍‌ରୁ..."

ଶୈଳ ଧୀରେ ଧୀରେ ମୁଣ୍ଡ ଟୁଙ୍ଗାରିଲା ତା'ର ନଛୋଡ଼ବନ୍ଧା ଭାଇନାଙ୍କୁ ମାନିନେଲା ପରି ଏବଂ ତା' ଆଖି ଆଗରେ ଦିଶିଯାଉଥାଏ ଆଉ ଜଣକ ଚେହେରା । ଅରୁ ଭାଇନା । ଯେତିକି ହାସ୍ୟବନ୍ତ, ସେତିକି ନଛୋଡ଼ବନ୍ଧା, ଲଡ଼୍‌ଡୁ ନ ଖୋଇ ଛାଡ଼ିବେ ନାହିଁ ତମକୁ । ଯାହାଙ୍କ ଯୋଗୁଁ ତା'ର କବିତା ପ୍ରଥମେ ପ୍ରକାଶ ପାଇଲା । ପାରି ହେବ ନାହିଁ ମୋର ଏଇ ଗ୍ରେଟ୍ ଭାଇନାମାନଙ୍କୁ !

କିନ୍ତୁ କେ-ବି-କେଙ୍କ ମନରେ ଆସୁଥିଲା ଯେ ସେ ତାଙ୍କ ସଙ୍କଳ୍ପ ତୁଟ଼ିଲେ ବୋଲି କୁହାଯାଇ ନ ପାରେ, ଯଦି ସେ ଏଇ ହୁଣ୍ଡୀ ବାଳିକାଟିକୁ ଚୁମା ଦିଅନ୍ତି । କିନ୍ତୁ ଓଠରେ ନୁହେଁ, ଆଦୌ ଓଠରେ ନୁହେଁ, କେବଳ କପୋଳରେ । ତା'କୁ ବି' କ'ଣ 'ଅଙ୍ଗସ୍ପର୍ଶ' ବୋଲି କୁହାଯିବ ? ଯାହାହେଉ ଏଇକ୍ଷଣି ନୁହେଁ, ତା'ର ବେଳ ସରିଯାଇ ନାହିଁ...

## ଦଶ

ଡକ୍ଟର ରାମହରି ଦାସ ଯେଉଁଠି ଥିଲେ, ସେଇଠି ଅଛନ୍ତି । ବିଭିନ୍ନ ଅର୍ଥରେ । ଯଥା — କ୍ୟାପିଟାଲ୍‌ର ସେଇ ପ୍ରତାପରୁଦ୍ର କଲେଜରେ ପାଠ ପଢ଼ାଉଛନ୍ତି । କେବଳ ରିଡ଼ର୍‌ରୁ ପ୍ରଫେସର୍ ହେଲେଣି, ଯାହାକୁ ଏକ ସ୍ୱାଭାବିକ କ୍ରମଶୀଳତା ବୋଲି କୁହାଯାଇପାରେ, ତାଙ୍କ ଦାଢ଼ି ନିଶ ଅଳ୍ପବହୁତ ପାଚି ଆସିଲାପରି । ସେ ତଥାପି ବାହା ହୋଇ ନାହାନ୍ତି । ସେ ତଥାପି ମିଷ୍ଟିକ୍ କବିତା ଲେଖୁଛନ୍ତି ଏବଂ ସେ ତଥାପି ନାକ ଟେକନ୍ତି ସାହିତ୍ୟ-ସଂସ୍କୃତିର ମୁଖ୍ୟସ୍ରୋତବାଲାଙ୍କୁ ।

କିନ୍ତୁ ଯେ ତାଙ୍କୁ ଦେଖିଆସୁଛି ପିଲାଟି ଦିନୁ, ସେ ତାଙ୍କ ଚେହେରାକୁ ନେଇ ଏକ ମୌଳିକ ପରିବର୍ତ୍ତନ ଲକ୍ଷ୍ୟ କରିପାରିବ । କାରଣ, ହୁଏତ ତାଙ୍କୁ ଏବେ ମଧ ଅସୁନ୍ଦର ବୋଲି କୁହାଯାଇପାରେ, ହେଲେ ନିହାତି ହିଂସୁକୁଟିଆ ହୋଇ ନ ଥିଲେ କେହି କହିବ ନାହିଁ ଯେ ଇଏ ଗୋଟିଏ ବୋକା ମଣିଷର ଚେହେରା । ବରଂ ଜଣେ ଅଧେ କହିପାରନ୍ତି ଏକ ବିଶିଷ୍ଟ ଅର୍ଥରେ, ଯେ ସେ ସୁନ୍ଦର !

ନା, ଭାବନ୍ତୁ ନାହିଁ ଯେ ଦାଢ଼ି ନିଶ ବଢ଼େଇ ସେ ତାଙ୍କ ଚେପ୍ଟାନାକର ନୀଚଭାବକୁ ଘୋଡ଼େଇ ଦେଇ ପାରିଛନ୍ତି । ତାଙ୍କ ମିଞ୍ଜି ମିଞ୍ଜି ଆଖି ବେଶି ଖାଲକୁ ପଶିଯାଇଥିବା ଦ୍ୱାରା ସେଥିରୁ ଗୋଟାଏ ଅଦ୍‌ଭୁତ ଜ୍ୟୋତି ବାହାରୁଛି, ଋଷିଙ୍କ ଗୁହାରୁ ନିର୍ଗତ କେଉଁ ଦିବ୍ୟ ଆଲୁଅ, ଏଭଳି ଧାରଣାକୁ ମଧ ରୋମାଣ୍ଟିକ୍ କବିର କଳ୍ପନା ବୋଲି କୁହାଯାଇପାରେ । ଗାଲର ଗୋଲେଇ କମିଲେ କମିଥିବ ହୁଏତ, କିନ୍ତୁ ଓହଳି ଆସିବାର ଉଦ୍ୟମ କରୁଛି । ପ୍ରଶସ୍ତ କପାଳ ଓ ଚନ୍ଦାମୁଣ୍ଡ ମଧରେ ଆଉ କୌଣସି ବ୍ୟବଧାନ ନାହିଁ । ମୋଟ ଉପରେ ଏହି ସବୁ ବାହ୍ୟ ପରିବର୍ତ୍ତନ ଯୋଗୁଁ ସେ ଆଉ ନିର୍ବୋଧ ପରି ମନେ ହେଉ ନାହାନ୍ତି, ଏଭଳି ବିଚାରକୁ ଅଗଭୀର ଅର୍ଦ୍ଧସତ୍ୟ ବୋଲି କହିବା ଉଚିତ ।

ଯାହା ବଦଳେଇଦେଇଛି ରାମହରିବାବୁଙ୍କ ରୂପ, ତାଙ୍କ ସ୍ୱରୂପକୁ ଚିହ୍ନାଇଲା ପରି, ତାହା ହେଉଛି ଏକ ଆତ୍ମଗାରିମାର ସଫଳ ପରିପ୍ରକାଶ । ଯେଉଁ ସଫଳତା କେବଳ ତାଙ୍କ ସୁଦୂର ଏବଂ ଅପହୁଞ୍ଚ କଳ୍ପନାରେ ଥିଲା, ସେ ଯେତେବେଳେ ପିଲା ହୋଇଥିଲେ ଏବଂ ଭାବୁଥିଲେ — ମୁଁ ଯଦି ଗୋଟାଏ ଇମେଜ୍ ବନିଯାଏ ତା'ହେଲେ ମୋ ନାକ ଆଖି କାନର ଅବିଗୁଣ କାହାରି ଆଖିରେ ପଡ଼ନ୍ତା ନାହିଁ ଏବଂ କେହି ଗୋଡ଼ାନ୍ତେ ନାହିଁ ଧ୍ରୁବ ଚୌଧୁରୀମାନଙ୍କ ପଛରେ ।

ଏତେ ଦିନକେ ତାଙ୍କ ମନସ୍କାମନା ପୂର୍ଣ୍ଣ ହୋଇଛି ବୋଲି ମନେହୁଏ । ତାହା କେତେଦୂର ଚେଷ୍ଟାକୃତ, କେତେଦୂର ତାଙ୍କ ମିଷ୍ଟିକ୍ କବିତା-କୃତ, ଅବା କେତେଦୂର ତାଙ୍କ ସାଳିସ୍‌ବିହୀନ ଜ୍ଞାନଗମ୍ଭୀର (ତଥା କଟୁ ଓ ତିକ୍ତ, ଦରକାର ପଡ଼ିଲେ)

ମାନସିକତାର ପ୍ରତିଫଳନ, ତା'ର ବିଶ୍ଳେଷଣ କରିବା କଷ୍ଟ । ଯାହାହେଉ ସେ ଗୋଟିଏ ଅଗ୍ନିଗର୍ଭ ପାହାଡ଼ ବୋଲି ମନେ ହୁଅନ୍ତି ଆଜିକାଲି, ସଂସାରରେ ଚଳପ୍ରଚଳ ହେଲାବେଳେ । ଯାହାର ଭ୍ରୂକୁଞ୍ଚନ ହେଉ କି ଗୁହାସ୍ଥିତ ଆଖି ଆଲୁଅର କ୍ଷେପଣ, ଓଠଚିପା ହେଉ କି ଫାଳିକିଆ ସ୍ମିତହାସ, ସବୁ ସେଇ ଅବରୁଦ୍ଧ ଅଗ୍ନିର ସ୍ଫୁରଣ ପ୍ରାୟ ଦୃଶ୍ୟ ହୁଏ ସର୍ବସାଧାରଣଙ୍କ ଆଖିରେ । ଅତି-ଜ୍ଞାନ ଅତି-ଅନୁଭବର ଚେହେରା । କୋଉ ଅଗୁଆଁର ଯା'କୁ ନିର୍ବୋଧ ବୋଲି କହିବ ? ବରଂ ସେଥିରେ ଏକପ୍ରକାର ସୌନ୍ଦର୍ଯ୍ୟ ଅଛି, ପାହାଡ଼ସୁଲଭ । ତା'ର ଅସ୍ତିତ୍ୱକୁ ଅସ୍ୱୀକାର କରି ହେବ ନାହିଁ, ସେଥିରେ ଅସାଧାରଣ ଜ୍ଞାନ ଅବା ଅନନ୍ୟ କବିତ୍ୱକୁ ବୁଝ ବା ନ ବୁଝ ।

ଏକ ଭୟମିଶା ଭକ୍ତିଭାବର ଉଦ୍ରେକ ହୁଏ ତାଙ୍କୁ ଦେଖିଲେ । କେବଳ ଛାତ୍ରଛାତ୍ରୀମାନଙ୍କ ମନରେ ନୁହେଁ । ମଧ୍ୟ ଅନେକ ଅନ୍ୟମାନଙ୍କ ମନରେ । କେବଳ କେତେକ ଅନ୍ୟତମ ଗୁଣୀଜ୍ଞାନୀ, କବି ଓ ସାହିତ୍ୟିକମାନଙ୍କ ଛଡ଼ା । ଯେଉଁମାନେ ମନେ ମନେ ଏବଂ ବେଳେବେଳେ ପ୍ରକାଶ୍ୟରେ ତାଙ୍କର ସମଧର୍ମୀ ବନ୍ଧୁମାନଙ୍କୁ କୁହନ୍ତି — 'ବୁଝିଲ ? ଲୋକଟା ଫମ୍ପା । ତେଣୁ କସ୍ମିନ୍ କାଳେ ନାୟକଟିଏ ହୋଇପାରି ନ ଥାଆନ୍ତା । ଅଗତ୍ୟା ତା'ର ଏଇ ଖଳନାୟକ ଓରଫ୍ ଶଇତାନ୍‌ସୁଲଭ ପୋଜ୍ । ବିଚରା !' କିନ୍ତୁ ସେମାନେ ମଧ୍ୟ ତାଙ୍କୁ ମୁହଁରେ କିଛି ଚତୁର ଆକ୍ଷେପ କରିବା, ପରିହାସ ଛଳରେ ଉପହାସ କରିବାର ସାହସ ବାନ୍ଧିପାରନ୍ତି ନାହିଁ ।

ଏଣେ ରାମହରିବାବୁଙ୍କୁ ଡର, କାଳେ ତାଙ୍କୁ ଗୋଟାଏ ପୁରସ୍କାର ମିଳିଯିବ ! ଗଂଗୋତ୍ରୀ ଜାତୀୟ ଗୋଟିଏ ଜାତୀୟ ପୁରସ୍କାର, ଯେଉଁଥିରେ ସେ ଲୋକପ୍ରିୟ ହୋଇ ଉଠିବେ, ତଥାକଥିତ ମୁଖ୍ୟସ୍ରୋତକୁ ଆସିଯିବେ ଏବଂ ତାଙ୍କର ସ୍ୱାତନ୍ତ୍ର୍ୟ ଚାଲିଯିବ ।

ଯେମିତିକି ତାଙ୍କର ଡର ଯେ ସେଇ କାଳୀକାନୀ ଝିଅଟା ଯେ ତାଙ୍କଠୁଁ ପ୍ରେରଣା ପାଇଛି ବୋଲି ଫୁଲେଇ ହୁଏ, ସେ ତାଙ୍କୁ ଭଲପାଇ ବସିବ ! ତାଙ୍କୁ ହସ ମାଡ଼େ, କିନ୍ତୁ ମଧ୍ୟ ଭୟ ହୁଏ । ଭାବନ୍ତି ଯେ ବୁଢ଼ା ହେଲେ ମସ୍ତିଷ୍କ-ବିକୃତି ଘଟିବା ଅସମ୍ଭବ ନୁହେଁ । ସେହେତୁ ସେ ଯଦି ଭଲପାଏ, ତା'ହେଲେ ମୁଁ ତା'ର ସଦୟ ପ୍ରତିଦାନ ଦେବାକୁ ଯାଇ...ହେ ଭଗବାନ୍ ! ତା' ହେବ ନାହିଁ ! କିନ୍ତୁ ମୋର ପ୍ରାର୍ଥନା ଯେ ଯଦି ସେଭଳି ପରିସ୍ଥିତି ଦେଖାଯାଏ, ମୁଁ ଯେମିତି ସେକ୍ସ ଜରିଆରେ ତା'କୁ ନିଷ୍କାସିତ କରିଦେଇପାରେ ! ତେବେ କଥା ହେଉଛି ଯେ ବେଶି ବୁଢ଼ା ହୋଇଗଲେ ସେକ୍ସ ମଧ୍ୟ କେତେଦୂର କାମ ଦେବ, ତାହା ଭାବିବାର ବିଷୟ । ରାମହରିବାବୁ ତାଙ୍କ ଉଦ୍ଭଟ ଭାବନାକୁ ନେଇ ଖେଳନ୍ତି, ଗୋଟାଏ ମଜା କଥାକୁ ଉପଭୋଗ କଲାପରି । ପ୍ରାୟ ପ୍ରତି ମାସରେ, ଯେତେବେଳେ

ସେ ଚିଠି ଖଣ୍ଡେ ପାଆନ୍ତି ଶୈଳଜାଠାରୁ । ଯାଉଥିଲା ସେ ତମ ପରି ଅପରଛନିଆ ବୁଢ଼ାଟା ସାଙ୍ଗରେ ପ୍ରେମ କରିବାକୁ ! ଏହି ପ୍ରକାର ଆତ୍ମ-ବିଦ୍ରୂପ ମଧ୍ୟ ତାଙ୍କ ମନକୁ ଆସେ, ହେଲେ ସେ ତା'କୁ ଗୋଟାଏ ଅଟ୍ଟହାସ୍ୟରେ ଉଡ଼େଇ ଦିଅନ୍ତି ! କୁହନ୍ତି ଆରେ ଇଏ ପରା ସାରସ୍ୱତ ଭଲପାଇବା ! ଏଥିରେ ବୁଢ଼ା ହେଲେ କେତେ ନା ଅପରଛନିଆ ହେଲେ କେତେ ! ହଁ, ଭୟର କାରଣ ଅଛି ! ନ ହେଲେ ମୋ ଠାରୁ ଉତ୍ତର ନ ପାଇଲେ ମଧ୍ୟ ସେ ଗୋଟାଏ ଲେଖାଏଁ ଲମ୍ୱା ଚିଠି ଛାଡ଼ିଦେଉଛି କାହିଁକି, ପ୍ରତ୍ୟେକ ମାସରେ ?

...ଏବେ ଯାହା ଲେଖିଛି ସେ ତ ଆହୁରି ମାରାତ୍ମକ ! ଲେଖିଛି ଯେ ଜଣେ ଭଲ ବଙ୍ଗଳା ଭାଷାର କବି-ଅନୁବାଦକ ମିଳିଯାଇଛି ତା'କୁ । ତା'ର କୋଉ ସଙ୍ଗିନୀ ଏବଂ ତା'କୁ ସେ ମୋର 'ଚନ୍ଦ୍ରିକାର ଚଞ୍ଚୁ' ସଙ୍କଳନଟିକୁ ଅନୁବାଦ କରିବାକୁ ଦେଇଛି । ତା'କୁ କୁଆଡ଼େ ଧମକେଇଛି ଯେ ପ୍ରଥମେ ମୋର ଦି'ଖଣ୍ଡ ବହି ଅନୁବାଦ କଲେ ଯାଇଁ ସେ ତା'କୁ ନିଜ ବହି ଅନୁବାଦ କରିବାର ସୁଯୋଗ ଦେବ । ତା'କୁ ବାରମ୍ୱାର ଚେତେଇଦେଇଛି ଯେ 'ପ୍ରଥମେ ଆମ ମହାକବି, ତା'ପରେ ଯାଇଁ ମୁଁ । କ'ଣ ଏ ସବୁର ମାନେ ? ମୁଁ ହୁଏତ କେବେ କହିଥିବି ତା'କୁ ଯେ ଇଂରେଜୀ ଅନୁବାଦ ତୁଳନାରେ ମୋ କବିତାର ଯଥେଷ୍ଟ ଅନୁବାଦ ହୋଇ ନାହିଁ ବଂଗଳା ହିନ୍ଦୀ ଆଦି ଭାରତୀୟ ଭାଷାରେ । ତା'ବୋଲି ମୋର କ'ଣ ଗୋଟାଏ ଅଭାବ ରହିଯାଉଥିଲା, ଆଉ ମୁଁ ତୋ'ର ସାହାଯ୍ୟ ମାଗୁଥିଲି ତା'କୁ ଦୂର କରିବାଲାଗି ? ଯେତେକ ଭାଣ୍ଡାମି ! ନା, ମୋର ଭୟ ଅକାରଣ ନୁହେଁ, ଲେଖିନିଅ ମୋଠୁଁ...

ହେଲେ ଆଜି ତାଙ୍କ ଏକୁଟିଆ ରାତିରେ ଗୋଟାଏ ନୂଆ ଧରଣର ଭୟ ଆକ୍ରମଣ କରୁଛି ତାଙ୍କୁ । ଭୟ ଯେ ରାମହରି ଦାସ ସେଣ୍ଟିମେଣ୍ଟାଲ୍ ହେବାକୁ ବସିଛି । ହୁଏତ ବୁଢ଼ା ହେଲେ ଆହୁରି ସେଣ୍ଟିମେଣ୍ଟାଲ୍ ହୋଇଯାଇପାରେ । ଯାହାହେଉ ଆଖିରୁ ପାଣି ବହୁଥିବ ସେତେବେଳେ । ତା' ସାଙ୍ଗକୁ ଏମିତିକା ଲୁହ ବେଶ୍ ମିଶିଯାଇ ପାରିବ ! ରାମହରିବାବୁ ବିରକ୍ତ ହେଲେ ନିଜ ଉପରେ । ହାତ ମାରି ଦେଖିଲେ ଯେ ତକିଆଟା ତଥାପି ଓଦା ଅଛି ଏଇକ୍ଷଣି । ମାନିବାକୁ ପଡ଼ିବ ଯେ ସେ ନିଜକୁ ଆୟତ୍ତରେ ରଖିପାରି ନ ଥିଲେ । ହଁ, ଏକୁଟିଆ ଘରର ରାତିରେ, ରାତିର ଅନ୍ଧାରରେ, ସେ ଭୁସ୍‌କିନି କାନ୍ଦି ଉଠିଥିଲେ ଏବଂ ଲୁହର ଛୁଟଣକୁ ତତ୍‌କ୍ଷଣାତ୍ ବନ୍ଦ କରିପାରିଲେ ନାହିଁ ।

...ନାନୁ ଟୋକାଟାକୁ ଦେଖିଆସିଛି ଏବେ, ହସ୍‌ପିଟାଲ୍‌ରେ । ଚଣ୍ଡାଳ କାଠ ହୋଇଯାଇଛି ! ଆଖି ବୁଜିଦେଇଛି । ଆଉ କେବେହେଲେ ପଶି ଆସିବ ନାହିଁ

ଘର ଭିତରକୁ, ମୋର ଗୋଟାଏ ପୁରୁଣା ଦୋସ୍ତ ପରି ଏବଂ ଘୋଷଣା କରିବ ନାହିଁ ଯେ ଆଜି ତା' ସ୍କୁଲ୍ ଛୁଟି ଏବଂ ଆଜି ଟି.ଭି.ରେ ଅମୁକ ସିନେମା ଅଛି । ଅର୍ଥାତ୍ ତମେ ତମର କଲେଜକୁ ଯାଅ, ମୁଁ ତମ ବେଡ୍‌ରୁମ୍‌ରେ ବସି ସିନେମା ଦେଖିବି । ହେଲେ ମୁଁ ତା'କୁ ଘଉଡ଼େଇ ଦେଇପାରେ ନାହିଁ । ବାଲୁଙ୍ଗା ଟୋକା, ସ୍କୁଲ୍ ନ ଥିଲେ ବି' ତୋର କ'ଣ କିଛି ପଢ଼ାପଢ଼ି କରିବାକୁ ନାହିଁ ବୋଲି ତିଆରିଲେ ମଧ୍ୟ ଚୁପ୍‌କିନି ମୁଁ ମୋ ରୁମ୍‌ର ଚାବିକୁ ବଢ଼େଇଦିଏ ତା' ମାଆ ଆଡ଼କୁ । ଆଉ ସେ ମିଛିମିଛିକା ଅଭିଯୋଗ କରେ ଯେ ମୁଁ ତା' ପୁଅକୁ ମୁଣ୍ଡରେ ବସଉଛି । ସେ ଅଣ୍ଡା ଭଲ ପାଏ ବୋଲି ମୁଁ ବେଳେବେଳେ ଜାଣିଶୁଣି କୁହେ ଯେ ଆଜି ଏଇ ଆମ୍‌ଲେଟ୍ ନାନୁକୁ ଦେଇଦିଅ, ମୋର ଭୋକ ନାହିଁ । ତା' ମାଆ ମୁରୁକି ମୁରୁକି ହସେ, ଦୟାଳୁ ଖାମିନ୍ଦଙ୍କ ଦୟା ଦେଖି । ବୁଦ୍ଧୁବକ୍ ବୁଝେ ନାହିଁ ଯେ ତା' ପୁଅର ଚେହେରା ବଦଳି ନାହିଁ ବିଶେଷ କିଛି, ତା' ପିଲାଦିନୁଁ । ସେ କବିଫବି କିଛି ହୋଇପାରିବ ନାହିଁ ମୋ ଭଳିଆ । ଅଧାରୁ ପାଠ ବି' ଛାଡ଼ିଦେବ । ଚାକିରି କରିବ କୋଉ ଚା' ଦୋକାନରେ, ଚେପ୍‌ଟାନାକିଆ 'ଛୋଟୁ' ବୋଲେଇବ, ଯାହା ଉପରେ ସମସ୍ତେ ଚଢ଼ଉ କରିବେ । ସମବୟସୀ ଛତରୀମାନେ ବି' । ନା, ତା' ହେବ ନାହିଁ । ସେ ଯେତେ ଟି.ଭି. ଦେଖିଲେ ଦେଖୁ ମୋ ରୁମ୍‌ରେ, ଆମ୍‌ଲେଟ୍ ଖାଉ, ରସଗୋଲା ଗିଳୁ । ମୁଁ ତା'କୁଇ ମୋ ସେକ୍ରେଟେରୀ କରିବି । ଦରପାଠୁଆ ନାନୁକୁ ଘରେ ପାଠ ପଢ଼େଇବି । ଯେମିତିକି ସେ ମୋ କବିତାକୁ ଠିକଣା ଭାବରେ ଉତାରିପାରିବ, ମୋ ବହିଖାତାକୁ ଠିକଣାଭାବରେ ସଜେଇ ରଖିପାରିବ, ଆଉ ଫ୍ୟାନ୍‌ମେଲ୍‌ର ଉତ୍ତର ଦେଇପାରିବ ମୋ ତରଫରୁ । ଅବାକ୍ କରିଦେବି ସେମାନଙ୍କୁ, ଆମ ଧୋବଧାଉଳିଆ ପଣ୍ଡିତମାନଙ୍କୁ । ମଜା ହେବ ! ନାନୁକୁ ବି' କହିଥିଲି ସେ କଥା । ଆଉ ସେ 'ଗୁଡ୍ !' 'ଓ-କେ !' ବୋଲି ଦି'ପଦ ଇଂରେଜୀ ହାଙ୍କିଥିଲା ମୋ ଆଗରେ । ସତେକି ସେ ଅନୁଗ୍ରହ ଦେଖାଉଛନ୍ତି ମୋତେ । ବୃଦ୍ଧ ଚଗଲା !

କିନ୍ତୁ ସେ କାଠ ହୋଇଗଲା ଏମିତି । ଏକ୍‌ଦମ୍ ଆଖି ବୁଜିଦେଲା । ଠକଟାଏ ! ଅସଲ ଠକ...

ସେଇଠୁଁ ଲୁହ ବୋହିବାକୁ ଲାଗିଲା ତାଙ୍କ ଆଖିରୁ ଏବଂ ସେ ତା'କୁ ଅଟକେଇପାରିଲେ ନାହିଁ । ସରୁକୁ ଉପରେ ରାଗିଲେ, ଯେ ସେ ଠିକ୍ ସମୟରେ ତାଙ୍କୁ ଜଣାଇଲା ନାହିଁ ତା' ପେଟରେ ଘା' ହୋଇଛି ବୋଲି. ଡାକ୍ତର ଉପରେ ରାଗିଲେ ଯେ ସେ ଠିକ୍ ସମୟରେ ଚିହ୍ନିପାରିଲା ନାହିଁ ରୋଗଟା କ'ଣ ଏବଂ ମଧ୍ୟ ସେଇ ଟୋକାଟା ଉପରେ, ଯେ ତାଙ୍କୁ ଠକେଇଦେଇ ଚାଲିଗଲା ଏମିତି ।

ଏବଂ କାନ୍ଦଣା ସାରି ସୁସ୍ଥ ହେଲା ପରେ ତାଙ୍କୁ ଡର ଲାଗୁଛି ଯେ ସେ ସେଣ୍ଟିମେଣ୍ଟାଲ୍ ହେବାକୁ ବସିଛନ୍ତି । ହଁ, ଟିକିଏ ଦୁଃଖ କରିବା ସ୍ୱାଭାବିକ । କିନ୍ତୁ ଏଇ ଅଶ୍ରୁଧାରା ! ସତେକି ମୁଁ ତା' ବାପ କି ଅଜା ! ନନ୍‌ସେନ୍ସ !!

ଶେଷକୁ ସେ ନିଜକୁ ବଧେଇ ଦେଲେ । ...ଥ୍ୟାଙ୍କ୍ ଗଡ୍, ମୁଁ ବାହା ହୋଇ ନାହିଁ । ତେଣୁ ଏଭଳି ଏକ ବ୍ୟତିକ୍ରମ ଆସି ଚାଲିଗଲା, ଆଉ କଥାଟା ଛିଣ୍ଡିଗଲା । ନ ହେଲେ ମୋ ନିଜର କୋଉ ନାନୁ କି ନିନି ସବାର୍ ହୋଇ ବସିଥାଆନ୍ତା ମୋ ଉପରେ ଏବଂ ମୋତେ ସଦାବେଳେ ଧମକଉଥାଆନ୍ତା, ଯେ ତା'ର କେତେବେଳେ କ'ଣ ହୋଇଯିବ, ଆଉ ମୋତେ କାନ୍ଦିବାକୁ ପଡ଼ିବ । ଥ୍ୟାଙ୍କ୍ ଗଡ୍ ! ଥ୍ୟାଙ୍କ୍ ୟୁ ଭେରୀ ଭେରୀ ମଚ୍ ! ... ରାମହରିବାବୁ ଯଥାଶୀଘ୍ର ନିଜକୁ ସଜାଡ଼ିନେଲେ । ଯଦିଓ ବହୁତ ସମୟ ଯାଏଁ ତାଙ୍କ ଆଖିକୁ ନିଦ ଆସିଲା ନାହିଁ । କାରଣ ତାଙ୍କର ଭ୍ରମ ହେଲା ଯେ ସର୍‌କୁଟା କାନ୍ଦୁଛି ଏଇଠି କୋଉଠି, ଭୋ' ଭୋ' ହେଉଛି ବିଲୁଆଙ୍କ ପରି । ଇଡ଼ିଅଟ୍ ! ଯଦିଓ ତାଙ୍କର ମନେ ପଡ଼ିଥିଲା ଯେ ତା' ପୁଅର ସବୁ କାମ ସରିଗଲା ପରେ ସେ ସିଧା ତା' ଭଉଣୀଘରକୁ ଯିବ ବୋଲି କହୁଥିଲା, ତା' ମାଇପକୁ ନେଇ ।

ତା' ପରଦିନ ରାମହରିବାବୁଙ୍କୁ ପଞ୍ଚାବନ ବର୍ଷ ପୂରିଲା । ସେ ଜନ୍ମଦିନ ମନେଇବାର ଉପଚାରକୁ ହାସ୍ୟାସ୍ପଦ ବୋଲି ମନେକରନ୍ତି । ତାଙ୍କ ପିଲାଦିନ କଥା ମନେପଡ଼େ, ଯେତେବେଳେ ବୋଉ ତା'ର 'ଜାଗୁଳେଇ ମୁହାଁ' ପୁଅକୁ ନୂଆ ଲୁଗା ପିନ୍ଧେଇ ପାଖରେ ଥିବା କାଳୀ ମନ୍ଦିରକୁ ନେଇଯାଏ, ପୁଅର ଶୁଭ ମନାସିବାପାଇଁ । କିଭଳି ବର ମାଗେ ? ମୋର କାର୍ତ୍ତିକ ପରି ପୁଅପାଇଁ ସୁନ୍ଦରୀ ସ୍ତ୍ରୀଟିଏ ମିଳୁ ? ନା ବଡ଼ ହେଲାରୁ ସେ ଟିକିଏ ସୁନ୍ଦର ଦିଶୁ ବୋଲି ନେହୁରା ହୁଏ ? ରାମହରିବାବୁଙ୍କର ମନ ସହାନୁଭୂତିରେ ଭରିଯାଏ ତାଙ୍କ ସ୍ୱର୍ଗୀୟା ବୋଉପାଇଁ, ନିଜକୁ ଥଟ୍ଟା କରିବା ସହ । ବୋଉ ବଞ୍ଚିଥିଲାବେଳେ ସେ ଘରୁ ପଳେଇ ଯାଆନ୍ତି ଏଇଦିନ । ହେଲେ ଯେତେ ଉଛୁରରେ ଫେରିଲେ ମଧ୍ୟ ବୋଉ କାଳୀ ମନ୍ଦିରରେ ଭୋଗ ଲଗେଇଥାଏ ତାଙ୍କପାଇଁ ଏବଂ ସେ ବାଧ୍ୟ ହୁଅନ୍ତି ସେଥିରୁ ଟିକିଏ ପାଟିରେ ଦେବାଲାଗି । ସେହି ଅତ୍ୟାଚାର ମଧ୍ୟ ଉଭେଇଗଲାଣି କେବେଠୁଁ । ସେହେତୁ ସେ ତାଙ୍କ ଜନ୍ମଦିନଟାକୁ ଅଗ୍ରାହ୍ୟ କରିବାକୁ ଚାହାନ୍ତି ଆଜିକାଲି । କେତେଜଣ ତଥାକଥିତ ବନ୍ଧୁ ଓ ଖୋସାମତିଆ ଛାତ୍ରଙ୍କଠାରୁ ଜନ୍ମଦିନର ଗ୍ରୀଟିଂସ୍ କାର୍ଡ଼ ଆସେ ମଝିରେ ମଝିରେ । ସେ ତା'ର ଉତ୍ତର ଦିଅନ୍ତି ନାହିଁ । କିନ୍ତୁ ଏଇ ଜନ୍ମଦିନପାଇଁ ଗୋଟାଏ ଅଦ୍ଭୁତ ଇଚ୍ଛା ତାଙ୍କ ମନକୁ ଆସିଥିଲା । ଯେ ସେ ପେଟୁ ନାନୁକୁ ବଡ଼ ରସଗୋଲା ଖୁଆଇବେ ଏଇ ଦିନ । ପାଞ୍ଚଟଙ୍କିଆ

ରସଗୋଲା । ଦେଖିବା ଟୋକା କେଇଟା ଖାଇପାରୁଛି ସେଥିରୁ ! କିନ୍ତୁ ଜନ୍ମଦିନର ତିନିଟା ଦିନ ଆଗରୁ ସେ ଏଇ ଭେଳିକି ଦେଖେଇଲା । 'ମୋ ପେଟ କ'ଣ ହଉଛି ପେଟ କ'ଣ ହଉଛି' ବୋଲି ଅଥୟ କରିଦେଲା ସମସ୍ତଙ୍କୁ । ଆଉ ଠିକ୍ ମୋ ଜନ୍ମଦିନର ପୂର୍ବଦିନ ଚାଲିଗଲା । 'ବାବୁ, ଥ୍ୟାଙ୍କ୍ ୟୁ ଫର୍ ୟୋର୍ ରସଗୋଲା !' କହିଲା ପରି ।

ସେଦିନ କଲେଜରୁ ଫେରି ତାଙ୍କର ବିଧିବଦ୍ଧ ସାନ୍ଧ୍ୟଭ୍ରମଣ କଲାବେଳେ ଟୋକାଟାର ଏଇ ଶଠତା ତାଙ୍କର ମନକୁ ଆସୁଥାଏ ବାରମ୍ବାର, ଯଦିଓ କାଲିଠୁଁ ସେ ତାଙ୍କର ଶୋକ ଲୁହକୁ ପୂରାପୂରି ପୋଛିଦେଇଛନ୍ତି ଏବଂ ସେଣ୍ଟିମେଣ୍ଟାଲ୍ ହେବାର ଭୟକୁ କାଟିଦେବା ଲାଗି ସେ ଆହୁରି କେତୁଟା ଅଧା-ନିର୍ଣ୍ଣୟ ବି ନେଇସାରିଲେଣି । ଯଥା- ସର୍ଭାଣ୍ଟସ୍ କ୍ୱାର୍ଟର୍ସରେ ଏଣିକି କୋଉ ଫ୍ୟାମିଲିବାଲାକୁ ରଖା ହେବ ନାହିଁ । ସର୍‌ଜୁ ଓ ତା' ସ୍ତ୍ରୀ ଯଦି ଦି'ଜଣିଆ ହୋଇ ରୁହନ୍ତି, ନାନୁର ସ୍ମୃତିକୁ ନେଇ, ତା'ହେଲେ ଠିକ୍ ଅଛି । କିନ୍ତୁ ଯଦି କୋଉ ପୁତୁରା ଝିଆରୀକୁ ଆଣି ପୂରାନ୍ତି ସେଠି, ତାଙ୍କ ମନ ଭୁଲେଇବାପାଇଁ, ତା'ହେଲେ ମୁଁ ତାଙ୍କୁ ନୋଟିସ୍ ଦେବି । ଆଉ ତାଙ୍କ ପରେ ଯିଏ ଆସିବ, ତା'ର ଫ୍ୟାମିଲି ନ ଥିବ । ହ୍ୟାପ୍ ମାତାଲ୍ ହେଉ ପଛକେ ତା' ସାଙ୍ଗସାଥୀକୁ ଧରି, କିନ୍ତୁ କୋଉ ପିଲା କାନ୍ଦିବ କି ହସିବ ନାହିଁ ସେଠି ।

...ଭାବୁଛି ଏଇ ଆକୁଆରିୟମ୍‌ଟା ବି' ଦେଇଦେବି କାହାକୁ । ମାଛଙ୍କ ପ୍ରତି ବି' ମୋର ଗୋଟାଏ ମମତା ଆସିଗଲାଣି ଓ ମୁଁ ତା'କୁ ଡରୁଛି, ତା' ନୁହେଁ କିମ୍ବା ଯେତେ ବୁଢ଼ା ହେଲେ ମଧ ମୁଁ ଏତେ ବେଶି ଦୁର୍ବଳ ହୋଇପଡ଼ିବି ଯେ କୋଉ ମଲା 'ବ୍ଲାକ୍ ମଲୀ'ପାଇଁ ଲୁହ ଝରେଇବି, ତା' ନୁହେଁ (ରାମହରିବାବୁ ହସିଲେ ମନକୁ ମନ), କିନ୍ତୁ କ'ଣ ଦରକାର ମଣିଷ ବଦଳରେ କୋଉ ପ୍ରାଣୀକୁ ଘରେ ଆଣି ରଖିବା, କ୍ଷତିପୂରଣର ବାଟ ଖୋଜିଲା ପରି ? ନା । ବୁଢ଼ା ହେବା ଆଗରୁ ମୁଁ ପୂରାପୂରି ଏକୁଟିଆ କରିଦେବି ନିଜକୁ । ଖାଲି ମୋ ବହିଖାତାର ସମ୍ଭାର, ଆଉ କେଇଟା ଦରବାରୀ, ମାଲ୍‌କୋଷ ଆଦି ଶାସ୍ତ୍ରୀୟ ସଙ୍ଗୀତର କ୍ୟାସେଟ୍ । କଣ୍ଠସଙ୍ଗୀତ ନୁହେଁ, ଖାଲି ଟୁଂଟାଂ ଓ କେଁ କେଁର ଆଳାପ ଓ ପ୍ରଳାପ । ତା'କୁଇ ଶୁଣିବାକୁ ଭଲଲାଗେ, ଯେତେବେଳେ କିଛି ଭାବିବାକୁ ଇଚ୍ଛା ହୁଏ ନାହିଁ । ଖାଲି ଗୋଟାଏ ପ୍ରାଣୀକୁ ତଡ଼ିଦେଇ ହେବ ନାହିଁ ବୋଧହୁଏ । ସେଇ 'ହାଣ୍ଡିଖାଇ' ନାମକ ପୁଷିବିଲେଇ ଯାହାର ନାକରେ କଳା ଲାଗିଛି, ଆଉ ସେ ଠିକଣା ସମୟରେ ଆସି ପହଞ୍ଚିଯିବ ଖାଇବା ଥାଳି ପାଖରେ । ନାନୁର ପକ୍କା ଦୋସ୍ତ ଥିଲା ସିଏ ! ଧ୍ୟାତ୍—ପୁଣି ସେଇ ନାନୁ ? ରାମହରିବାବୁଙ୍କ

ଗତି ଦ୍ରୁତତର ହେଲା । ସତେକି ସେ ଏତେ ଦୂରକୁ ପଳେଇଯିବେ ଯେ କୋଉ ନାନୁ କି ହାଣ୍ଡିଖାଇ ବିଲେଇ ଗୋଡ଼େଇ ଆସିବ ନାହିଁ ତାଙ୍କ ପଛେ ପଛେ !

ସେହେତୁ ଦ୍ୱିତୀୟବାର କ୍ୟାମ୍ପସ୍‌ର ଶେଷମୁଣ୍ଡ ଯାଏଁ ଆସିଲେ ମଧ୍ୟ ସେ ଘରକୁ ଲେଉଟି ଆସିଲେ ନାହିଁ, ସବୁଥର ପରି । ସହର ବଜାର ଭିତରକୁ ପଶିଗଲେ ଏବଂ ମନଇଚ୍ଛା ଚାଲିବାକୁ ଲାଗିଲେ, କେତେବେଳେ ବାଆଁକୁ ତ କେତେବେଳେ ଡାହାଣକୁ ଏବଂ ମନକୁ ମନ ଦୋହରେଇ ହେଲେ ଯେ ଆଜି ପଞ୍ଚାବନ ବର୍ଷ ପୂରିବାର ମାଇଲ୍‌ଖୁଣ୍ଟରେ ଠିଆ ହୋଇ ସେ ଏହି ଅପରିବର୍ତ୍ତନୀୟ ନିର୍ଦ୍ଦେଶ ଦେଉଛନ୍ତି ନିଜକୁ ଓ ସଂସାରକୁ — ଆଜିଯାଏଁ ମୁଁ ଯେଉଁ ଅନନ୍ୟ ନିଜତ୍ୱଟିକୁ ଗଢ଼ି ନେଇପାରିଛି, ତା'କୁ ମୁଁ କଦାପି କ୍ଷୁଣ୍ଣ ହେବାକୁ ଦେବି ନାହିଁ । ପୂର୍ଣ୍ଣଛେଦ ।

"ସାର୍ ନମସ୍କାର । ଭଲ ଅଛନ୍ତି ?"

ରାମହରିବାବୁ ଗମ୍ଭୀରତାପୂର୍ବକ ମୁଣ୍ଡ ଟୁଙ୍ଗାରିଲେ, ଯତ୍‌ସାମାନ୍ୟ ସ୍ମିତହାସ ସହ । ମୁଁ ତୁମର ଅଭିବାଦନ ସ୍ୱୀକାର କରୁଛି, ଏହି ଭାବରେ । ... କିଏ ଏଇ ଲୋକଟି ମୁଁ ଜାଣେ ନାହିଁ । ହୋଇଥିବ କୋଉ ପୁରୁଣା ଛାତ୍ର । ଅସୁବିଧା ହେଉଛି ଯେ ମୁଁ ଅନ୍ୟତମ ଅଧ୍ୟାପକ ନୁହେଁ କି ମଞ୍ଚାସୀନ କବି । ମୁଁ ରାମହରି ଦାସ । ମୁଁ ଯେତେ ଦୂରକୁ ଯାଏ ନା କାହିଁକି, କେହି ନା କେହି ମୋତେ ଚିହ୍ନିବ ଯଦିଓ ମୁଁ ତା'କୁ ଚିହ୍ନେ ନାହିଁ ଏବଂ ମୋତେ ସଭକ୍ତି ନମସ୍କାରଟିଏ ପକେଇବ । ମୁଁ ତା'କୁ ଏଡ଼ାଇଦେଇ ପାରିବି ନାହିଁ । ପାରିବି କି ?

ଅବଶ୍ୟ ମୁଁ ଜାଣେ ଯେ ମୋର ଅନନ୍ୟ ବ୍ୟକ୍ତିତ୍ୱକୁ କେତେକେ ଅବାଗିଆପଣ ବୋଲି ଭାବୁଥିବେ । ଗୋଟାଏ ଅଭିଆଡ଼ା, ଗୋଠଖଣ୍ଡିଆ, ମିଷ୍ଟିକ୍ କବି । ଭଲ, ମୁଁ ତ ସେଇଆ ଚାହେଁ ! ଯେମିତିକି ତମେ କେହି ଚେଷ୍ଟା କରିବ ନାହିଁ ମୋ ପାଖକୁ ଘୁଞ୍ଚି ଆସିବାଲାଗି । କାରଣ ସତକଥା କହିବାକୁ ଗଲେ ମୁଁ ଘୃଣା କରେ ଏଇ ସାଧାରଣ ସଂସାରର ଇତରତା । ମୁଁ ଖାଲି ମଳିମୁଣ୍ଡିଆଙ୍କ କଥା କହୁ ନାହିଁ, ମଧ୍ୟ କହୁଛି ତଥାକଥିତ ବୁଦ୍ଧିଜୀବୀଙ୍କ କଥା, ଏମିତିକି ଆମ କଲେଜ-ୟୁନିଭର୍ସିଟୀର ମାଷ୍ଟରମାନଙ୍କ କଥା । ଯେଉଁମାନଙ୍କ ଚିନ୍ତା ଘରେ ଶୂନ୍ ! ତେଣୁ ସେମାନେ ନୂଆ କିଛି ଭାବିବେ ନା ଲେଖିବେ ନା କହିବେ ? କେଉଁ ସାହସରେ ଅବାଗିଆ ହେବେ ?

ହେଲେ ମୁଁ ମୋର ଅନନ୍ୟ ବ୍ୟକ୍ତିତ୍ୱକୁ ଲଦି ଦେଇ ନାହିଁ ଆଉ କାହା ଉପରେ । କେଉଁ ନର କି ନାରୀ ଉପରେ । ତାଙ୍କ ଭିତରୁ କିଏ ମୋତେ ତା'ର ପ୍ରେରଣା ବୋଲି ଭାବିଲା, କି ଫ୍ୟାଣ୍ଟାସୀ-ପୁରୁଷ, ସେଥିକୁ ମୁଁ ନାଚାର ।

କିନ୍ତୁ ମୁଁ ଲେଖିଚାଲିଥିବି, ଯେମିତି ଲେଖିଆସୁଛି । ହୁଏତ ଆହୁରି ଦୁର୍ବୋଧ୍ୟ ତୁମମାନଙ୍କପାଇଁ, କିନ୍ତୁ ଅଧିକରୁ ଅଧିକ ସନ୍ତୋଷଜନକ ଏଇ ପ୍ରବୀଣ କବିପାଇଁ, ଯାହାର ଘୃଣା (ଘୃଣାରୁ ବଳି ତାଚ୍ଛିଲ୍ୟଭାବ, ହେଟ୍‌ରୁ ବଳି କଣ୍ଟେଂପ୍ଟ) ତିଳେ ମାତ୍ର ଊଣା ହୋଇ ନାହିଁ ତୁମର ପିଲାଳିଆ ସୌନ୍ଦର୍ଯ୍ୟବୋଧ, ଶଠ ନୀତିବୋଧ ତଥା ତୁମର ସମସ୍ତ ଇତର ମୂଲ୍ୟବୋଧର ଇସ୍ତାହାର ପ୍ରତି । କୁହ ଯିଏ ଯାହା କହୁଛ, ଆଇ ଡୋଣ୍ଟ୍ କେୟାର ! ତା'କୁ ବିକୃତ କୁହ ଅଥବା ଆଧ୍ୟାତ୍ମିକ — ଯେତେବେଳେ ମୋର କାମାତୁରା ନାଗୁଣୀ ଜୋସ୍ନାଧୁଆ ବାଲିଗଦାରେ ଗୁଡ଼େଇତୁଡ଼େଇ ହେଉଛି ଅକାରଣରେ, ଅଥବା ମୋ ଆଣ୍ଠୁଆ ଗୋପାଳ ମାଟି ବଦଳରେ ଜଂଦାକୁ ମାରି ପାଟିରେ ପକଉଛି, ଆଉ ସେଇ 'ଆଁ'ର ବିଶ୍ୱଦର୍ଶନରେ ମୂର୍ଚ୍ଛା ହୋଇପଡୁଛି ତା'ର ସ୍ନେହମୟୀ ମାଆ — ସେଇ ମୋର ଅନୁଭୂତ ସତ୍ୟ, ବୁଝିଲ ? ଏବଂ ତାହାହିଁ ମୋ ଜୀବନର ଆଧାର...

"ସାର୍ ନମସ୍କାର । ମୋତେ ଚିହ୍ନିପାରୁଛନ୍ତି ? ମୁଁ ନକୁଳି ମିଶ୍ର..."

ରାମହରିବାବୁ ପ୍ରତିନମସ୍କାର ଜଣାଇଲେ ତାଙ୍କ ନିଜସ୍ୱ ଭଙ୍ଗୀରେ । ... କୋଉ ନକୁଳ ମିଶ୍ର ? ଫରଗେଟ୍ ଇଟ୍ ! କହିଲି ପରା, ଯେତେ ଦୂରକୁ ଗଲେ ବି' କେହି ନ କେହି ମୋତେ ନମସ୍କାର ପକେଇବ । ମୋର ଦୁର୍ଭାଗ୍ୟ !...

ଜନ୍ମଦିନ-ଉପଯୋଗୀ ଚିନ୍ତନ ନିଃଶେଷ ହେଲା ପୂର୍ବରୁ ରାମହରିବାବୁଙ୍କ ଗୋଡ଼କୁ ଥକା ଲାଗିଲା । ବୁଢ଼ା ହେବାକୁ ଅନେକ ଡେରି ଅଛି ବୋଲି ପ୍ରମାଣିତ ହୋଇ ସାରିଲାଣି । ଏଣିକି ରିକ୍ସା ଖଣ୍ଡେ କି ଗୋଟାଏ ଥ୍ରି-ହୁଇଲର୍ ଧରି ଘରକୁ ଫେରିଲେ ହେବ । କିନ୍ତୁ ଏଇ ସମୟରେ ଦୋକାନ ବଜାରର ନାନାଦି ବିଜ୍ଞାପନରୁ ସେ ଆବିଷ୍କାର କଲେ ଯେ ସେ ଆସି ସନତ୍ ନଗରରେ ପହୁଞ୍ଚିଲେଣି । ଯେଉଁଠି ସାରଙ୍ଗ ପାତ୍ରର ଘର । ତାଙ୍କର ଅନେକ ଦିନର ଅଣ-ସାହିତ୍ୟିକ ଅଣ-ଇଣ୍ଟେଲେକ୍‌ଚୁଆଲ୍ ବ୍ୟବସାୟୀ ବନ୍ଧୁ । ସିଧା ଲୋକଟା । ଭୁଲ୍‌ରେ ବି' ନିଜକୁ ବୁଦ୍ଧିଜୀବୀ ବୋଲି କୁହେ ନାହିଁ । ଖାଲି ଦେଖେଇହୁଏ ଯେ ତା'ର ଗୋଟିଏ ଶଳା ଅଛି, ଯେ କି ଦେଶର ଜଣେ ବିଶିଷ୍ଟ ନେତା ।

...ହଁ, ସେ ମୋର ଜଣେ ବନ୍ଧୁ । ମୋତେ ମୋଟେ ଲାଜ ମାଡୁ ନାହିଁ କହିବାପାଇଁ ସେ କଥା । ତା' ସାଙ୍ଗରେ କୌଣସି ଆଦାନପ୍ରଦାନର ପ୍ରଶ୍ନ ଉଠୁ ନାହିଁ । କିନ୍ତୁ ତା'ର ସାନ୍ନିଧ୍ୟ, ତା'ର ଉଚ୍ଚ ହସ ଓ ରୋକ୍‌ଠୋକ୍ କଥାରେ ମୋର ଶ୍ୱାସରୋଧ ହୋଇଯାଏ ନାହିଁ, ଯେମିତି ହୁଏ ବେଳେବେଳେ ମୋର ଜ୍ଞାନୀ ସହକର୍ମୀ କି ସମସାହିତ୍ୟିକମାନଙ୍କ ଗହଣରେ । ଆଜି ହଠାତ୍ ତା' ଘରେ ଯାଇଁ ପହୁଞ୍ଚିଗଲେ କେମିତି ହେବ ? ସେ ଅନେକ ଥର ଆସିଛି ମୋ ଘରକୁ,

ଫୋନ୍‌ରେ କଥାଭାଷା ହେବା ଛଡ଼ା । କିନ୍ତୁ ମୁଁ କ୍ୱଚିତ୍ ଯାଇଛି ତା' ଘରକୁ । ଆଜି ସେଠି ଭୁସ୍‌କିନି ଯାଇଁ ପହୁଞ୍ଚିବି, ତା'କୁ ଅବାକ୍ କରିଦେଇ ଏବଂ ତା'ର ସାନ୍ନିଧ୍ୟକୁ ଉପଭୋଗ କରିବି, ମୋର ଜନ୍ମଦିନ ଉତ୍ସବର ଉଦ୍‌ଯାପନ କଲାପରି । ... ରାମହରିବାବୁ ତାଙ୍କର ଏଇ ଖିଆଲ୍‌ଟିକୁ ମଧ୍ୟ ଉପଭୋଗ କଲେ ।

ଦଶବର୍ଷ ପୂର୍ବର ଶାରଙ୍ଗ ପାତ୍ର ତଥାପି ରାମହରିବାବୁଙ୍କୁ 'ସାର୍, ସାର୍' କୁହେ ଏବଂ ଯଥାବିଧି ଭକ୍ତି ଦେଖାଏ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ ଆଉ ଦି'ବଖୁରିଆ ଭଡ଼ାଘରେ ରହୁଥିବା ଖୁଚୁରା ବ୍ୟବସାୟୀ ନୁହଁ, ଜଣେ ଥିଲାବାଲା ବିଶିଷ୍ଟ ବ୍ୟବସାୟୀ, ଯେ ଗୋଟାଏ ପ୍ରତିଷ୍ଠିତ ଦୈନିକ ସମ୍ବାଦପତ୍ର 'ଉତ୍କଳ ଜନନୀ'କୁ ମଧ୍ୟ କିଣିନେଇ ସାରିଲାଣି । ନିନ୍ଦୁକମାନେ କୁହନ୍ତି ଯେ ଇଏ ହେଉଛି ଶ୍ୟାଳକ ରଙ୍ଗନାଥ ଦଳେଇ ଏମ୍.ପି.ଙ୍କ କୃପା, ଯେ ଅଳ୍ପ ବୟସରେ ଦେଶ ଓ ପ୍ରଦେଶର ଶାସକଦଳର ଏକ ଟାଣୁଆ କାରପଟ୍‌ଦାର୍ ହୋଇପାରିଛନ୍ତି । ତେଣୁ ଠିକଣା ସମୟରେ ବିଭିନ୍ନ ରାଜଅନୁଗ୍ରହ ଯୋଗାଇ ଦେଇପାରିଛନ୍ତି ତାଙ୍କ ଭିଣେଇଙ୍କପାଇଁ । ମଝିରେ ସେ ଟିକିଏ ଦବିଯାଇଥିଲେ, କାରଣ ପ୍ରଦେଶରେ ଶାସକଦଳର ବିପର୍ଯ୍ୟୟ ଘଟିଥିଲା । କିନ୍ତୁ ମାତ୍ର କେତୋଟି ବର୍ଷ ପରେ ସେହି ଦଳ ପୁଣି କ୍ଷମତାକୁ ଆସିଲାଣି । ଦୁର୍ନୀତି ପୋଛି ହୋଇଗଲାଣି ସେବେକାର ବିଚକ୍ଷଣ ମନ୍ତ୍ରୀମାନଙ୍କ ଚେହେରାରୁ ଏବଂ ତାଙ୍କ ଭିତରୁ କେତେକେ ପୁଣି ମନ୍ତ୍ରୀ ହୋଇ ଦେଖ ଆମେ ପୁଣି କ'ଣ କରୁଛୁ ତମପାଇଁ (ଆମପାଇଁ) ବୋଲି ଆସ୍ଫାଳନ କରିବାରେ ଲାଗିଛନ୍ତି । ସେହେତୁ ଶାରଙ୍ଗବାବୁଙ୍କ ଭାଗ୍ୟଶଶୀ ପୁଣି ଦପ୍ ଦପ୍ ହୋଇ ଜଳି ଉଠିବ, ଏହା ଆଶା କରିବା ସ୍ୱାଭାବିକ । ଯାହାହେଉ ବପୁବନ୍ତ ହାସ୍ୟବନ୍ତ ଶାରଙ୍ଗବାବୁ ସାରଙ୍କ ଅପ୍ରତ୍ୟାଶିତ ଆବିର୍ଭାବରେ ଆତ୍ମହରା ହୋଇ ଉଠିଲାପରି ମନେ ହେଲା । ଦୀର୍ଘ ଦି' ମିନିଟ୍ ଯାଏଁ ତାଙ୍କ ଦୁଇ ହାତକୁ ଧରି ନଚେଇଲେ ଏବଂ 'ୱେଲ୍‌କମ୍ ସାର୍, ୱେଲ୍‌କମ୍' ବୋଲି କହିହେଲେ । ରାମହରିବାବୁଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ନାହିଁ । କିନ୍ତୁ ସେ ପ୍ରସ୍ତୁତ ନ ଥିଲେ ଡ୍ରଇଂରୁମ୍‌ରେ ଥିବା ଆଉ ଜଣେ ଭଦ୍ରଲୋକଙ୍କ ଅଭିବାଦନପାଇଁ । ସଫାରୀ ସୁଟ୍ ପିନ୍ଧା ଭଦ୍ରଲୋକ ଜଣେ ମଧ୍ୟ ଜୁଟିଗଲେ ତାଙ୍କୁ ସ୍ୱାଗତ କରିବାଲାଗି, ଶାରଙ୍ଗବାବୁ ତାଙ୍କୁ ବିଧିବଦ୍ଧ ଭାବେ ଚିହ୍ନାଇଦେବା ପୂର୍ବରୁ । ସୁଚାରୁ ସ୍ମିତହାସ ସହ କହିଲେ, ''ଗୁଡ୍ ଇଭିନିଙ୍ଗ୍, ପ୍ରଫେସର ସାହେବ । ହାଓ ଆର୍ ୟୁ ? ମୋ ନାଆଁ ରଙ୍ଗନାଥ ଦଳେଇ, ଶାରଙ୍ଗବାବୁ ମୋର ଭିଣୋଇ —''

...ଏଇ ତା' ହେଲେ ସ୍ୱନାମଧନ୍ୟ 'ରଙ୍ଗିନ୍' ଦଳେଇ, ପୂର୍ବତନ ଏମ୍.ପି. ? ଯେ ବର୍ତ୍ତମାନ ପ୍ରଦେଶର ଜଣେ ନୂତନ ବିଧାୟକ ଏବଂ ଯଥାଶୀଘ୍ର ଏଠିକାର

ଅନ୍ୟତମ କ୍ୟାବିନେଟ୍ ମନ୍ତ୍ରୀ ହେବେ ବୋଲି ଶୁଣାଯାଉଛି ? କିନ୍ତୁ ସିଏ କେମିତି ମୋତେ ପ୍ରଫେସର ସାହେବ ବୋଲି ସମ୍ବୋଧନ କଲେ ? ... ତେବେ ରାମହରିବାବୁଙ୍କର ବୁଝିବାରେ ଡେରି ହେଲା ନାହିଁ, ଯେ ସେ ନିଜେ ମଧ୍ୟ ସ୍ୱନାମଧନ୍ୟ ଏବଂ ଶାରଙ୍ଗ ପାତ୍ର ତାଙ୍କ ରୂପଗୁଣର ବିସ୍ତୃତ ବର୍ଣ୍ଣନା କରିଥିବ ତାଙ୍କ ଆଗରେ, ଏଭଳି ଜଣେ ବ୍ୟକ୍ତିର ବନ୍ଧୁ ବୋଲି ନିଜର ବଡ଼େଇ କରିବାଲାଗି ।

ଆଗନ୍ତୁକଙ୍କ ମନକଥା ପଢ଼ିନେଲା ପରି ଦଳେଇ ସାହେବ କହିଉଠିଲେ,

"ମୁଁ ଅନେକ କଥା ଶୁଣିଛି ଆପଣଙ୍କ ବିଷୟରେ, ଶାର ଭାଇଙ୍କଠାରୁ । ସୋ, ହାଓ ଇଜ୍ ଲାଇଫ୍ ?"

ବେଶଭୂଷା, କଥା କହିବାର ଠାଣି ଏବଂ ଏଇ 'ହାଓ ଇଜ୍ ଲାଇଫ୍ ?'ର ଉଦାରିଆ ପାର୍ଟିସୁଲଭ କୁଶଳ ସମ୍ଭାଷଣ । ରାମହରିବାବୁ ଶଳା-ବିଣୋଇଙ୍କ ବୈଷମ୍ୟକୁ ଲକ୍ଷ୍ୟ ନ କରି ରହିପାରିଲେ ନାହିଁ । ଶାରଙ୍ଗ ବଡ଼ଲୋକ ହେଲାଣି ସତ, କିନ୍ତୁ ତା' ପରିଧାନରେ ସେଇ ଧୋତୀ ପଞ୍ଜାବି ଏବଂ କପାଳରେ ଚନ୍ଦନଟିକା । ତା'ଛଡ଼ା ସେ ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ଚାହେଁ ଯେ ମାଆ ଲକ୍ଷ୍ମୀ କୃପା କରିଛନ୍ତି ତା' ଉପରେ ଏବଂ ଇଏ ହେଉଛି ଜଣେ ବ୍ୟବସାୟୀର ଘର । ଶ୍ରୀଲକ୍ଷ୍ମୀଙ୍କର ଗୋଟିଏ ବିରାଟ ଚନ୍ଦନସିନ୍ଦୂର ମଖା ଫଟୋ କାନ୍ଥରେ ଟଙ୍ଗା ହୋଇଛି । ମାର୍ବଲ୍ ଚଟାଣରେ ନାଲିନେଳି ଚତୁଷ୍କୋଣ । କାନ୍ଥରେ ଆରପାଖରେ ମଧ୍ୟ କେଉଁ ପୂର୍ବଜଙ୍କର କାଗଜଫୁଲ ମାଳା ପରିହିତ ଫଟୋ, ଶାରଙ୍ଗର ଜେଜେ ହୋଇଥିବେ ପରା । ମୋଟା ନାଲି ପରଦାରେ ଢବା ଢବା ନାଲି ଫୁଲ । ଇତ୍ୟାଦି । ଲକ୍ଷ୍ମୀଙ୍କ ପ୍ରସାଦର ଢୋଲ ପିଟିଲା ପରି । କିନ୍ତୁ ଏଇ ସଫାରିସୁଟ୍ ନେତା ଜଣକ ହେଉଛି ଲକ୍ଷ୍ମୀଦେବୀଙ୍କର ଆଧୁନିକ ଭକ୍ତ, ରସିକ ରାଜଦରବାରୀ । ଏକ ଭିନ୍ନ ସୌଦାଗର, ଯେ ଇଚ୍ଛା କଲେ କେଉଁଠି ବୋଲି କେଉଁଠି ପହଞ୍ଚିପାରିବ, ଯାହା ତା' ଭିଣୋଇ ସ୍ୱପ୍ନରେ ସୁଦ୍ଧା ଭାବିପାରିବ ନାହିଁ । ଇଣ୍ଟରେଷ୍ଟିଙ୍ଗ୍ !

ଆରେ, ଏଇ ସର୍ବଜାଣ ନେତା କ'ଣ ଜଣାଇ ନ ଥିଲେ କି ତାଙ୍କ ଭିଣେଇକୁ, ସରକାରୀ ଘୋଷଣା ପୂର୍ବରୁ, ଯେ ଓଡ଼ିଶାର ଜଣେ କିଏ ଶୈଳଜା ପଣ୍ଡାକୁ ମିଳିଛି ଏ ବର୍ଷର 'ଦିବ୍ୟଜ୍ୟୋତି' ପୁରସ୍କାର ? ରାମହରିବାବୁଙ୍କର ମନେ ପଡ଼ିଲା । ଇଏ କୁଆଡ଼େ ପୁରସ୍କାର ପାଣ୍ଠିର ଦାତା ଜ୍ୟୋତିପ୍ରକାଶଜୀଙ୍କୁ ଭଲ ଭାବରେ ଜାଣନ୍ତି, ସେଇଲାଗି ଖବରଟା ଆଗତୁରା ପହୁଞ୍ଚିଲା ତାଙ୍କ ପାଖରେ ।

ରାମହରିବାବୁ ଏହି ମର୍ମରେ ଭାବୁଥିଲେ ତାଙ୍କ ବିଷୟରେ, ତାଙ୍କର ବ୍ୟାପକ କରାମତିକୁ ନେଇ, ଏହି ସମୟରେ ଦଳେଇ ସାହେବ ହଠାତ୍ ସାଧାରଣ କୁଶଳ ବାର୍ତ୍ତାଳାପର ମୋଡ଼ ବଦଳେଇ ପଚାରିଲେ,

"ଚନ୍ଦ୍ରିକାର ଚଞ୍ଚୁ' ପରେ ଯେଉଁ ନୂଆ ବହି ବାହାରିଛି ଆପଣଙ୍କର, ତା' ନାଆଁ କ'ଣ କହିଲେ ? 'ପାଂଶୁଳା ପ୍ରିୟା' ନା ? ଯାହାର ନାୟିକା ହେଉଛି ଗୋଟିଏ ମାଈ ଗଧ ? ଫାଷ୍ଟ୍ କ୍ଲାସ୍ ! କେହି ଓଡ଼ିଆ ଲେଖକ ନାହିଁ ଯାହାର ସାହସ ଅଛି, ଲେଖିବ ଆପଣଙ୍କ ପରି..."

ରାମହରିବାବୁ ଆପ୍ୟାୟିତ ହେଲେ ନାହିଁ । ବରଂ କୁହୁଳିଲେ ମନେ ମନେ । ...ଇଏ ପ୍ରଶଂସା ନୁହେଁ ମୋପାଇଁ । ଭିତିରିଆ ବିଦ୍ରୂପ ବି' ନୁହେଁ । କାରଣ ତମେ ନେତା ହୋଇପାର, କିନ୍ତୁ ତମର କୌଣସି ଯୋଗ୍ୟତା ନାହିଁ ରାମହରି ଦାସର କବିତାକୁ ନିନ୍ଦା କି ପ୍ରଶଂସା କରିବ । ...କିନ୍ତୁ ଦଳେଇ ସାହେବ ଯେଉଁ ସମ୍ବାଦ ଶୁଣେଇଲେ ତା' ପରେ ପରେ, ତାଙ୍କୁ ଅବାକ୍ କରିଦେଇ, ସେଥିରେ ତାଙ୍କର ମନେ ହେଲା ଯେ ଲୋକଟାର ଯୋଗ୍ୟତା ଥାଉ ବା ନ ଥାଉ, ଅଧିକାର ଅଛି । ସେ କେବଳ ବନ୍ଧୁ ନୁହେଁ ପୁରସ୍କାରଦାତାମାନଙ୍କର, ସେ ତାଙ୍କର ବଡ଼ବାପ ।

"ଶ୍ରୀବାସ୍ତବ୍‌ଜୀ କହୁଥିଲେ ଆପଣଙ୍କ କଥା ।"

"କୋଉ ଶ୍ରୀବାସ୍ତବ ?"

"ଆରେ, ଆପଣଙ୍କର ପ୍ରଫେସର ରଞ୍ଜନ ଶ୍ରୀବାସ୍ତବ, ବାଣୀସନ୍ତାନ ରଞ୍ଜନ ଶ୍ରୀବାସ୍ତବ, 'ଗଂଗୋତ୍ରୀ' ବୋର୍ଡ଼ର ଚେୟାରମ୍ୟାନ୍ । ଆଜ୍ଞା, ରୋମୀ ସେନ୍ ଯାହାକୁ ରଖିଛି ମ ! (ହୋ-ହୋ-ହୋ) ..." । ସେଇଠୁଁ କଣ୍ଠସ୍ୱରକୁ ଟିକିଏ ତଳକୁ ଖସେଇଦେଇ,

"ଯା'କୁ ସିକ୍ରେଟ୍ ରଖିବେ, ପ୍ଲିଜ୍ । ବିଚାର କରାଯାଉଛି ଯେ ଏ ବର୍ଷର ଗଂଗୋତ୍ରୀ ପୁରସ୍କାର, ମାନେ ଯେଉଁ ଗୋଟାଏ କାବ୍ୟ-କବିତାପାଇଁ ଦିଆଯାଏ, ତା'କୁ ଆପଣ ପାଇବେ । ପାଇବା ଉଚିତ । ଓଡ଼ିଶା ଅନେକ ଦିନୁ ବାଦ୍ ପଡ଼ିଛି । ନା କ'ଣ କହୁଛ ଶାର ଭାଇ ?"

ରାମହରିବାବୁ ନିର୍ବୋଧଙ୍କ ପରି ଦିଶିଲେ ନିମେଷକପାଇଁ, ଥରେ ଶଳା ଓ ଥରେ ଭିଣେଇଙ୍କ ମୁହଁକୁ ଅନେଇ ଏବଂ ତାଙ୍କର ମନେ ହେଲା ଯେ ସେ ଅତୀତର ସେଇ ବେଶ୍ୟାଘରେ ଆସି ପହୁଞ୍ଚିଛନ୍ତି, ଯେଉଁଠି ତାଙ୍କୁ ଶୁଣିବାକୁ ପଡୁଛି— 'ହମ୍ ତୁମକୋ ଭାଲୋ ବାସ୍‌ତା ହୈ ବାବୁ ସାହେବ..."

...ଅସମ୍ଭବ ! ତମେ ସବୁ ଦବ ମୋତେ ତମର ଚୋପାଛଡ଼ା ଗଂଗୋତ୍ରୀ ପୁରସ୍କାର ? କବି ରାମହରି ଦାସକୁ ? କ୍ଷମା କର, ତମେ ବାଣୀସନ୍ତାନ ହୁଅ

କି ପ୍ରଖ୍ୟାତ ଲେଖିକା ରୋମୀ ସେନ୍‌ର ପ୍ରେମିକ, ୟୁ ଲିଟ୍‌ଲ୍ ଅର୍ଡ଼ିନାରୀ ଫେଲୋଜ୍, ତମେ ମୋତେ ଟାଣି ଆଣିବ ବୋଲି ଭାବିଛ ତମର ମୁଖ୍ୟସ୍ରୋତକୁ, ଭେଳା ଭେଳା କୁଟାପତର କି କାଠଗଡ଼ ସାଙ୍ଗରେ ସାଙ୍ଗ ହେବାପାଇଁ ? ସତେ ?...

ରାମହରିବାବୁ କହିଲେ, କୌଣସିମତେ ନିଜକୁ ସଂଯତ କରିସାରିଲା ପରେ,

"ଏକ୍ସକିଉଜ୍ ମି, ମିଷ୍ଟର ଦଲେଇ । ଆଇ ଆମ୍ ନଟ୍ ଇଣ୍ଟରେଷ୍ଟେଡ୍ । ମୋର ଦରକାର ନାହିଁ ସେଇ ପୁରସ୍କାର, ମୋତେ ବିଶ୍ୱାସ କରନ୍ତୁ—"

ମିଷ୍ଟର ଦଲେଇ ହସିଦେଲେ ଟିକିଏ । ବ୍ୟଙ୍ଗାତ୍ମକ ଉଦାର ହସ, ଯାହାକୁ ନେତାସୁଲଭ ବୋଲି କୁହାଯାଇପାରେ । ଯଦ୍ୱାରା ସେ ଜଣାଇବାକୁ ଚାହୁଁଥିଲେ ଯେ ସେ ଏହି ଲେଖକବର୍ଗଙ୍କୁ ବେଶ୍ ଚିହ୍ନିଛନ୍ତି । ତାଙ୍କ 'ନାହିଁ, ନାହିଁ'ର ସତୀପଣ, ତଥା ତାଙ୍କର ଭିତିରିଆ ବ୍ୟାକୁଳ କାମନା । ସେହେତୁ ସେ କ୍ଷମା କରିଦେଇପାରିବେ ଶାର ଭାଇଙ୍କର ଏଇ 'ସାର୍' ଚରିତ୍ରଟିକୁ । ଶାରଙ୍ଗବାବୁ 'ଓ-କେ' 'ଓ-କେ' ବୋଲି କହିଲେ ଏବଂ ଅନ୍ୟ କଥା ପକେଇଲେ ।

କିନ୍ତୁ ରାମହରି ଦାସ ଓହରି ଆସିପାରିଲେ ନାହିଁ ଗଂଗୋତ୍ରୀର ଉଚ୍ଛୁଳା ଅସମ୍ଭାବିତ ସୁଅରୁ ଏବଂ ଚିତ୍କାର କରିଉଠିଲେ ମନେ ମନେ—ଫର୍ ଗଡ୍‌ସ୍ ସେକ୍ ହେଲ୍‌ପ୍ ମି ! ମୋତେ ଉଦ୍ଧାର କର !

...କାହାକୁ ଡାକୁଛ ରାମହରିବାବୁ ? ଗୋଟାଏ ସୁସମ୍ବାଦ ଶୁଣିଲ ଆଜି । ଜନ୍ମଦିନର ଭେଟି । ଏଭଳି ଗୋଟିଏ ଭେଟି, ଯାହା ତମ ଇହଜୀବନର ତଥା ପରଜୀବନର ପାଥେୟ ହୋଇ ରହିବା ଉଚିତ । ଯାହାକୁ ପାଇବାପାଇଁ କେତେ ସାଧନା, କେତେ ତପସ୍ୟା ଓ କେତେ ଲୀଳାଖେଳା ରଚିଥାଆନ୍ତି ତମ ଭାଇ ବିରାଦରି । ସକଳ ସନ୍ତାନ ସରସ୍ୱତୀଙ୍କର । ଆଉ ତମେ କହୁଛ କ'ଣ ନା ତମର ଦରକାର ନାହିଁ ଜିନିଷଟା ? କେତେ ଆଦର ଅଭ୍ୟର୍ଥନା, ସର୍ବଭାରତୀୟ ଜାତୀୟ ଖବରକାଗଜମାନଙ୍କରେ ତମର ଗାରିମାନ୍ୱିତ ମୁଖମଣ୍ଡଳ, ଫିଚର୍ ଆର୍ଟିକ୍‌ଲ୍ ତମ ଉପରେ ଯେ ତମେ ଏକ 'ସାଇଲେଣ୍ଟ୍ ଜିନିୟସ୍', ବିନୟରେ ନୀରବ ହୋଇ ରହିଥିବା ଏକ ପ୍ରଚଣ୍ଡ ପ୍ରତିଭା, ଯାହା ଏତେଦିନକେ ବାହାରକୁ ଜଣାପଡ଼ିଲା—ତମେ କ'ଣ ଦେଖି ନା' କିଭଳି ପୁଷ୍ପବୃଷ୍ଟି ହୁଏ ଗଂଗୋତ୍ରୀର ବିଜେତା ଉପରେ ? ତମେ କ'ଣ ଶୋଇପଡ଼ିଥିଲ ଯେତେବେଳେ ଓଡ଼ିଶାର ଗାଳ୍ପିକ ପବିତ୍ର ପାଣିଗ୍ରାହୀଙ୍କୁ ଏଇ ପୁରସ୍କାର ମିଳିଥିଲା ଆଜିକୁ ଛଅବର୍ଷ ତଳେ ? ରାମହରିବାବୁ, ତମେ ଟିକିଏ ମିଛ କହୁଛ । ନା ଇଏ ତମ ଅଭିମାନ ଯେ ଏତେଦିନକେ ମନେପଡ଼ିଲା ସେମାନଙ୍କର, ତମକୁ ପଞ୍ଚାବନ ବର୍ଷ ପୂରିବାଯାଏଁ ?

ନା !!! ମୁଁ ପ୍ରକୃତରେ ଚାହେଁ ନାହିଁ ଏଇ ପୁରସ୍କାର । ମୁଁ କେବଳ ଚାହେଁ ନାହିଁ ନୁହେଁ, ମୋତେ ଭୀଷଣ ବାଧା ହେବ, ଯଦି ତମେ ତା'କୁ ଲଦିଦିଅ ମୋ ଉପରେ । କାରଣ ତମର ଜାଣିବା ଉଚିତ ଯେ ମୁଁ କୋଉ ଭାଇ ବିରାଦରିର ଅନ୍ୟତମ ସଭ୍ୟ ନୁହେଁ । ମୁଁ ଅନନ୍ୟ । ଅସାଧାରଣ । ଏଇ ସାରତତ୍ତ୍ୱଟିକ କାହିଁକି ବୁଝିପାରୁ ନାହଁ ତମେ ସବୁ ?''

ଏହି ତୁମୁଳ ତର୍କବିତର୍କକୁ କୌଣସିମତେ ବହିଷ୍କାର କରିହେଲା ନାହିଁ ତାଙ୍କ ମନ ଭିତରୁ, ଯେତେବେଳେ ସେ ଶାରଙ୍ଗବାବୁଙ୍କ ଡ୍ରଇଂରୁମ୍‌ରେ ବସି ସୁଗନ୍ଧିଯୁକ୍ତ ବାଦାମ ସରବତ୍ ପିଉଥିଲେ (କୁଣ୍ଠା ସତ୍ତ୍ୱେ), ଅଥବା ଅନ୍ୟ କେଉଁ ଆଳରେ ଅନ୍ୟମନସ୍କ ହେବାର ସୁଯୋଗ ପାଉଥିଲେ । ଯାହାହେଉ ସେ ଯଥାଶୀଘ୍ର ବିଦାୟ ମାଗିଲେ ତାଙ୍କ ବନ୍ଧୁମାନଙ୍କଠାରୁ । ଶାରଙ୍ଗ ପାତ୍ର ନିଜେ ତାଙ୍କୁ ତାଙ୍କ କାର୍‌ରେ ଛାଡ଼ିଦେଇ ଆସିଲେ ଏବଂ ବାଟଯାକ ବକରବକର ହେଉଥିଲେ ଏବଂ ଘର ପାଖରେ ପହୁଞ୍ଚିଲା ବେଳକୁ 'ସାର୍'ଙ୍କୁ ଚେତାଇଦେଲେ ଯେ ପୁରସ୍କାର ପାଇଲା ପରେ ଗୋଟାଏ ସ୍ପେଶାଲ୍ ପାର୍ଟି ଚାହି ବିଜେତାର ଏଇ ବିଶିଷ୍ଟ ବନ୍ଧୁଟିପାଇଁ । ମମ୍‌ତାଜ୍ ହୋଟେଲ୍‌ର ପ୍ରସିଦ୍ଧ ଚିଙ୍ଗୁଡ଼ି କଟ୍‌ଲେଟ୍ ।

ସେଇ କ'ଣ ହେଲା ଶେଷ କୁଟାଖିଅଖଣ୍ଡକ ଯେଉଁଥିର ଓଟପିଠିର ବୋଝ ଅସହ୍ୟ ହୋଇଉଠିଲା ? ଏବଂ ସମସ୍ତ ତର୍କବିତର୍କକୁ କାଟିଦେଇ ରାମହରିବାବୁ ଗୋଟାଏ ସୁସ୍ପଷ୍ଟ ଘୋଷଣା କଲେ ତାଙ୍କ ଷ୍ଟଡ଼ିରୁମ୍‌ର ଚାରି କାନ୍ଥ ଉଦ୍ଦେଶ୍ୟରେ, ସେ ପହୁଞ୍ଚିଲା ମାତ୍ରେ ? କହିଲେ,

''ନା । ମୁଁ ସେ କଥା କରେଇଦେବି ନାହିଁ । ଗଂଗୋତ୍ରୀ ନାମକ ବିପଦ କଦାପି ପଡ଼ିବ ନାହିଁ ମୋ ଉପରେ । ମୁଁ ବିରାଦରିର ସଭ୍ୟ ନୁହେଁ ସତ, କିନ୍ତୁ ମୋର ବି' ଗୋଟାଏ ପ୍ରଭାବ ଅଛି, ପାୱାର୍ ଅଛି, ସୀମା ସେ ପାରିର ଜ୍ଞାନୀ ହିସାବରେ । ମୁଁ ତା'କୁ ଖଟେଇବି, ଛାଡ଼ିବି ନାହିଁ ।''

ନାନାଦି ଉପାୟ ତାଙ୍କ ମନକୁ ଆସିଲା । ସେଥି ମଧ୍ୟରୁ ମୁଖ୍ୟ କେତୋଟି ଏହିପ୍ରକାର :

—ଧର ଓଡ଼ିଶାରୁ ଜଣେ କେହି ପାଇବା ଉଚିତ ଏ ବର୍ଷ । କିନ୍ତୁ ଲେଖା ହୋଇ ନାହିଁ ଯେ ଜଣେ କବିଙ୍କୁ ମିଳିବ । ପ୍ରତିବର୍ଷ ଭାରତର ତିନିଜଣ ଲେଖକ-ଲେଖିକାଙ୍କୁ ଏଇ ପୁରସ୍କାର ଦିଆଯାଏ । ପ୍ରଧାନମନ୍ତ୍ରୀଙ୍କ ହାତରୁ ମିଳେ, ଭାରତୀୟ ବାଣୀ ପରିଷଦ ତରଫରୁ । ଗଳ୍ପ-ଉପନ୍ୟାସପାଇଁ ଜଣକୁ, କାବ୍ୟ-କବିତାପାଇଁ ଜଣକୁ ଏବଂ ନାଟ୍ୟ-ନାଟିକା ପାଇଁ ଜଣକୁ । ତେଣୁ ମହା ମହା ଐତିହାସିକ ଉପନ୍ୟାସ ଲେଖୁଥିବା ରୁଦ୍ର ବଳୀୟାରସିଂହଙ୍କୁ କାହିଁକି ମିଳିବ ନାହିଁ ଏଇ ପୁରସ୍କାର ? ମୁଁ ଯାଉଛି ଲେଖିବି

ମୋର କେତେଜଣ ସାହିତ୍ୟିକ ବନ୍ଧୁମାନଙ୍କୁ ତା'ର ପ୍ରଚାର କରିବାଲାଗି । କିନ୍ତୁ... କିନ୍ତୁ... ଯେତେ ବଡ଼ ସାହିତ୍ୟିକ ହୁଅନ୍ତୁ ନା କାହିଁକି, ସେମାନେ କ'ଣ ଅଛନ୍ତି 'ଗଂଗୋତ୍ରୀ'ର ବୋର୍ଡ଼ରେ ? କିଏ କେଉଁ ପ୍ରକାର ଚାପ ପକେଇପାରିବ ବୋର୍ଡ଼ର ସଭ୍ୟମାନଙ୍କ ଉପରେ ? କାହାଠୁଁ ବୁଝିବି ସେ କଥା ? ...ଧ୍ୟାତ୍ ! ନିହାତି ନିଉଛୁଣା ବ୍ୟାପାର ! ମୁଁ ନାହିଁ ସେ ସବୁଥିରେ...

—ଧର କାବ୍ୟକବିତାକୁ ହିଁ ଦେବାକୁ ପଡ଼ିବ । ତା'ହେଲେ ନିଜକୁ ଭଞ୍ଜଭକ୍ତ, ହେଲେ ଆଧୁନିକ, ବୋଲି ଦାବୀ କରୁଥିବା ଜଗନ୍ନାଥ ଘଡ଼େଇକୁ ବିଚାରାଧୀନ କରାଯାଇପାରେ । କିନ୍ତୁ ପ୍ରକୃତରେ ତା' କବିତାରେ ଛତୁଟା ଅଛି, ଛନ୍ଦକୁ ଛାଡ଼ିଦେଲେ ! ମୋ କାନରେ ବି' ପଡ଼ିଛି ସେ କେମିତି ଛିଗୁଲେଇ କରି କୁହେ ମୋ କବିତା ବିଷୟରେ । କିନ୍ତୁ ସେଥିପାଇଁ ନୁହେଁ, ମୁଁ ବଡ଼ ଥାଉଁ ଥାଉଁ ସେମାନେ କେମିତି ମଙ୍ଗିବେ ସାନକୁ ଦେବାଲାଗି ? ନା, ଜଗନ୍ନାଥ ଘଡ଼େଇ ଇଜ୍ ଆଉଟ୍ !

—ମୁଁ ଯାଉଛି ଓଡ଼ିଆ ସାହିତ୍ୟ ଉପରେ ଲମ୍ବା ଲମ୍ବା ନିବନ୍ଧ ଲେଖି ଛପେଇବି ପତ୍ରପତ୍ରିକାମାନଙ୍କରେ । ମୋର ଦୃଢ଼ ମତ ଦେବି ଯେ ଆମ ସାହିତ୍ୟ ଅନେକ ପଛରେ ପଡ଼ିଛି, ସର୍ବଭାରତୀୟ ସାହିତ୍ୟ ତୁଳନାରେ । ପରୋକ୍ଷରେ ଜଣେଇଦେବି ଯେ ଏଠିକାର କେହି ସମସାମୟିକ ଲେଖକ କି ଲେଖିକା 'ଗଂଗୋତ୍ରୀ'ର ଯୋଗ୍ୟ ନୁହେଁ । କିନ୍ତୁ ତା'ର ଭିନ୍ନ ଅର୍ଥ କରିବେ ନାହିଁ ତ ସେମାନେ ? ଯେ ବୁଢ଼ା କବି ଖାଲି ନିଜର ଭାଉ ବଢ଼େଇବାକୁ ଚାହୁଁଛି ? ଗ-ଡ୍ !

ଶେଷକୁ ସେ ସ୍ଥିର କଲେ ଯେ କେବଳ ଗୋଟିଏ ଉପାୟ କରିହେବ । ସିଧାସଳଖ ଉପାୟ । ଦଳେଇ କହୁଥିଲା ଯେ ସେ ଶୁଣିଛି ଡକ୍ଟର ରଞ୍ଜନ ଶ୍ରୀବାସ୍ତବଙ୍କ ଠାରୁ ଏବଂ ସେଇ ହେଉଛନ୍ତି ଗଂଗୋତ୍ରୀ ବୋର୍ଡ଼ର ଚେୟାରମ୍ୟାନ୍ । ଗୁଡ୍ ! ଆମେ ଜାଣିଛୁ ପରସ୍ପରକୁ । କଥାଭାଷା ହୋଇଛୁ । ରାମହରିବାବୁଙ୍କର ମନେପଡ଼ିଲା ଯେ ଭୋପାଳରେ ଅନୁଷ୍ଠିତ ଗୋଟିଏ କବିତାପାଠ ଉତ୍ସବରେ ତାଙ୍କ ସାଙ୍ଗରେ ରୀତିମତ ଆଳାପ ହୋଇଥିଲା ଏବଂ ମନେହେଲା ସେ ତାଙ୍କୁ ଓ ତାଙ୍କର ସାହିତ୍ୟକୁ ସମ୍ମାନ କରନ୍ତି । ତା'ହେଲେ ମୁଁ କାହିଁକି ଗୋଟାଏ ଚିଠି ଲେଖିବି ନାହିଁ ତାଙ୍କ ପାଖକୁ ? ଲେଖିବି ଯେ ମୁଁ ଶୁଣିଛି ମୋ ନାଆଁ ବିଚାର କରାଯାଉଛି ଗଂଗୋତ୍ରୀପାଇଁ । କିନ୍ତୁ ଦୟାକରି ମୋତେ ସେଥିରୁ ବାଦ୍ ଦିଅନ୍ତୁ କେତୋଟି ବ୍ୟକ୍ତିଗତ କାରଣ ହେତୁ । ବାସ୍, କାମ ଫତେ ! ଚେୟାରମ୍ୟାନ୍ ଜାଣନ୍ତୁ, ବୋର୍ଡ଼ର ସମସ୍ତେ ଜାଣନ୍ତୁ, ପରେ ଜନସାଧାରଣ ମଧ୍ୟ ଜାଣନ୍ତୁ ଯେ ମୁଁ ସେଥିରେ ଆଗ୍ରହୀ ନୁହେଁ କେତୋଟି ବ୍ୟକ୍ତିଗତ କାରଣରୁ । ଏକ ଅସାଧାରଣ ବ୍ୟକ୍ତିତ୍ୱର ବ୍ୟକ୍ତିଗତ କାରଣ । ଯିଏ ଯାହା ଅର୍ଥ କରୁ ତା'ର ।

କିନ୍ତୁ ମୁଁ କ'ଣ ଖାଲି ନିଜେ ଓହରି ଆସିବି ? ଏକ ପ୍ରଖ୍ୟାତ ଏବଂ ଅନନ୍ୟ ସ୍ରଷ୍ଟା ହିସାବରେ ଗୋଟାଏ ସୁପାରିଶ ଛାଡ଼ିଦେବି ନାହିଁ ତାଙ୍କ ଦରବାରରେ ? ହେଲେ କାହାପାଇଁ ?...

ଏଇ ପ୍ରଶ୍ନଟାର ଉତ୍ତର ମଳିଲା ନାହିଁ ସହଜେ । କିନ୍ତୁ ହଠାତ୍ ତାଙ୍କ ଆଖି ଦି'ଟା ଝଲସି ଉଠିଲା ତାଙ୍କ କଳ୍ପନାଜଳ୍ପନାର ତୃତୀୟ ଦିବସରେ । ସେ ଯେତେବେଳେ ଉପରବେଳା ସର୍ଦାର୍ ପଟେଲ୍ ପାର୍କର ଗୋଟିଏ ବେଞ୍ଚରେ ବସିଥିଲେ ଏବଂ ଏଣ୍ଟୁଅବିଶେଷ ତାଙ୍କ ଆଡ଼କୁ ଅନେଇଥିଲା, ତାଙ୍କ ମନଗହନକୁ କାଳେ ଦେଖିପାରିବ ବୋଲି । ଆରେ, ଏତେ କଥା କାହିଁକି ? ମାର ଗୋଲି ଘଡ଼େଇକୁ । ବଳୀୟାର୍‌ସିଂହଟା ବି ଗୋଟାଏ ପଞ୍ଜୀକାର ଛଡ଼ା ଆଉ କିଛି ନୁହେଁ । କିନ୍ତୁ ଆଉ ଜଣେ ଅଛି । ସେ କବିତା ଲେଖେ, ତା'କୁ କବି ବୋଲି କୁହ ବା ନ କୁହ ଏବଂ ତା'ର ଯୋଗ୍ୟତା ହେଉଛି ଯେ ସେ ମୋର ସବୁଠାରୁ ବଡ଼ ଚାମ୍‌ଚା । ସେ ମୋ ଠାରୁ ପ୍ରେରଣା ପାଇଛି, ପ୍ରେରଣା । ତେଣୁ ମୁଁ ତା'କୁଇ ଟେକି ଧରିବି ବାଣୀସନ୍ତାନ ଶ୍ରୀବାସ୍ତବଙ୍କ ଆଗରେ । ଗୋଟାଏ ଟାଣୁଆ ସୁପାରିଶ କରିବି ତା'ପାଇଁ । ଖାଲି ସେତିକି ନୁହେଁ, ମୁଁ ଅଗଡ଼ମ୍ ବଗଡ଼ମ୍ ଲେଖିବି ତା' କବିତାକୁ ପ୍ରଶଂସା କରି, ତାହା ଯେତେ ମିଛ ହେଉ ପଛେ । ମିଛକୁ ସତ ବୋଲି ଦେଖେଇ ନ ପାରିଲେ, କାହିଁକି ମୋ ନାଆଁ ପଡୁଛି ମିଷ୍ଟିକ୍ କବି ବୋଲି ?

ଚାନ୍ସ ଶତକଡ଼ା ଦଶ, କି ତା'ଠୁଁ ଆହୁରି କମ୍ । ଗଂଗୋତ୍ରୀର କର୍ତ୍ତାମାନେ ନିହାତି ନିର୍ବୋଧ ନ ହୋଇଥିଲେ କେବେହେଲେ ପୁରସ୍କାରଟିକୁ ବଢ଼େଇଦେବେ ନାହିଁ ମୋର ପରମ ଭକ୍ତର ହାତକୁ । କିନ୍ତୁ ଧର ଯଦି ବାଜିଗଲା ? ଧର ଯଦି ବାଣୀସନ୍ତାନ ମହୋଦୟ ଭଳିଗଲେ ମୋ ସୁପାରିଶରେ ? କିମ୍ବା ମୋର କେଉଁ ପ୍ରକାଶିତ ପ୍ରଶଂସାପତ୍ର କିଣିନେଲା କେଉଁ କର୍ତ୍ତାର ହୃଦୟକୁ ? ତା'ହେଲେ ଶୈଳଙ୍କାର ମୁଣ୍ଡରେ ହିଁ ଅଜାଡ଼ି ହୋଇପଡ଼ିବ ସେଇ ଅମୃତର ଧାରା — ଗଂଗୋତ୍ରୀ !

ଆରେ, ମୁଁ ପରା ବୈଷମ୍ୟର ସମ୍ରାଟ୍ ? ଅଣ-ଲଜିକ୍‌ର ଅଙ୍କଲ୍ ? କିଏ ଜାଣେ, ଏଥିରେ ମୁଁ କାବୁ କରିଦେଇପାରିବି ସେମାନଙ୍କୁ, ଆମର ଇତରନିର୍ବୋଧ ସୁଧୀ ସମାଜକୁ ! ମଜା ହେବ, ରିଏଲ ଫନ୍ ! ଆଉ ସେଇ ଟୋକୀ — ଟୋକୀ ନୁହେଁ, ଦରବୁଢ଼ୀ ହେଲାଣି — ଏମିତି କୃତଜ୍ଞ ହେବ ମୋ ପ୍ରତି, ଯେଉଁଠୁ ଜାଣିବ ଯେ ମୋରି ଯୋଗୁଁ ତା'କୁ ମିଳିଗଲା ଏଇ ବିରାଟ ପୁରସ୍କାର, ସେ ଏମିତି ମୁଠେଇ ଧରିବ ମୋ ପାଦପଦ୍ମକୁ...

ରାମହରିବାବୁ ସ୍ଥିର କରିପାରିଲେ ନାହିଁ, ତା'ହେଲେ ସେ କିଭଳି ଆଦେଶ ଦେବେ ତାଙ୍କ ଭକ୍ତକୁ, କିଭଳି ଗୁରୁଦକ୍ଷିଣା ମାଗିବେ ତା'ଠାରୁ । ସେ କେବଳ ମୁଣ୍ଡ ହଲେଇ ହସିବାକୁ ଲାଗିଲେ, ସେଇ ଆବ୍‌ସର୍ଡ଼ ପରିଣତିର କଳ୍ପନା କରି ।

ଏଣ୍ଡୁଅଜାତୀୟ କୌଣସି ପ୍ରାଣୀ ନ ଥିଲେ ସେତେବେଳକୁ, ତାଙ୍କର ଏଇ ଏକାନ୍ତ ରସିକତାର ସ୍ୱାଦୁ ପାଇବାପାଇଁ । କିନ୍ତୁ ପାର୍କରେ ବୁଲୁଥିବା ଦି'ଜଣ କଲେଜ ଛାତ୍ର ଟିକିଏ ପାଖେଇ ଆସିଲେ ତାଙ୍କୁ ଚିହ୍ନିବାଲାଗି ଏବଂ ଚିହ୍ନିଲାରୁ ଜଣେ କହିଲା ଆର ଜଣକୁ—"ମୁଁ କହୁ ନ ଥିଲି ? ଆଉ କିଏ ଏମିତି ହସିପାରିବ, ମୂର୍ଖପଣ୍ଡିତଙ୍କ ପରି, ଆମ ଘୁଅମୁହାଁ ପ୍ରଫେସର, ଆଇ ମିନ୍ ବାବା ରାମଦାସ୍‌ଙ୍କ ଛଡ଼ା ?"

## ଏଗାର

ଅପରାହ୍ଣରେ ନିଦ ଭାଙ୍ଗିଲାବେଳକୁ ଯେଉଁ ଅନୁଭବ ପ୍ରଥମେ ଆସିଲା ସନାତନବାବୁଙ୍କ ମନରେ, ସେଥିରେ ଥିଲା ତୃପ୍ତି । ତୃପ୍ତିର ନିର୍ଯ୍ୟାସ, ଅଳସ ଉପଭୋଗ । ...ଆଃ ! କେଇଟା ବାଜିଲାଣି ? ଯାହାହେଉ ଏଇ କ୍ୟାଲେଣ୍ଡର୍ ରମଣୀମଣି ମୋ ଆଡ଼କୁ ତା'ର ବିରାଟ ଖୋଲା ପିଠି ନ ଦେଖେଇ ତା' ଶ୍ରୀମୁଖଟିକୁ ଦେଖେଇଥିଲେ ଭଲ ହୋଇ ନ ଥାଆନ୍ତା ? ସନାତନବାବୁ ରସିକତା କଲେ ତା' ସାଙ୍ଗରେ, ତାଙ୍କ ବିଳାସୀ ଉପଭୋଗକୁ ଲମ୍ୱେଇଲା ପରି ।

କିନ୍ତୁ ସେହି ଖୋଲା ପିଠି ହିଁ ତାଙ୍କୁ ଚେତାଇଦେଲା ଯେ ଇଏ ଏକ ଅପର ବେଡ୍‌ରୁମ୍‌ର ଶୋଭା; ତାଙ୍କ ନିଜର ନୁହେଁ ଏବଂ ଏଇ ଅନୁଭବ ନ୍ୟାଯ୍ୟ ନୁହେଁ । ହଁ, ସନାତନ ପଣ୍ଡାର ଅବଶ୍ୟ ଅଧିକାର ଅଛି ଅଫିସ୍ କାମରୁ ଦି'ଘଣ୍ଟା ଛୁଟି ନେଇ ଆରାମ କରିବାପାଇଁ । ଯେତେହେଲେ ସେ ଜଣେ ସିନିଅର୍ ଏକ୍‌ଜିକିଉଟିଭ୍ ଏବଂ ସେ ଜାଣିଛି ତା'ର ଦାୟିତ୍ୱ କଅଣ ଓ ତା'କୁ କେମିତି ତୁଲେଇବାକୁ ହେବ । କାନ୍ଥ ଘଡ଼ିରେ ତିନିଟା ବାଜି ପନ୍ଦର ମିନିଟ୍ । ହେଉ, କିଛି ଯାଏ ଆସେ ନାହିଁ । ସେ ସ୍ୱଇଚ୍ଛାରେ ରାତି ଆଠଟା ଯାଏଁ କାମ କରିପାରିବ ଅଫିସ୍‌ରେ । କିନ୍ତୁ ବାକୀତକ କ'ଣ ନ୍ୟାଯ୍ୟ ଥିଲା ? ଯାହାର ଶେଷ କଥା ହେଉଛି ଏଇ ତୃପ୍ତି ?

...ଯାହା ଘଟିଗଲା କିଛି ସମୟ ଆଗରୁ, ଏବଂ ତା' ପରେ ତମେ ଶୋଇପଡ଼ିଲ ଦିବ୍ୟ ଆରାମରେ ଏବଂ ସେହେତୁ ଏଇ ଦୁର୍ଲଭ ଅନୁଭବ ଆଖି ଖୋଲିଲାବେଳକୁ, ତା' ଭଲମନ୍ଦର ଉତ୍ତର କିଏ ଦେବ ଏବଂ କିଏ ତା'ର ଆଧାର ? ଏଇ ଛବି ଖଣ୍ଡକ ? ନା ତା'ର ଜୀବନ୍ତ ରୂପାନ୍ତର, ତା' ମାଲିକାଣୀର ବାସ୍ତବ, ଗୌର, ପେଲବ — ?"

ସେଇଠୁଁ ସନାତନବାବୁ ଚଟ୍‌କିନି ଉଠିକରି ବସିଲେ ଖଟ ଉପରେ ଏବଂ ଦମ୍ଭର ସହିତ କହିଲେ ପ୍ରଶ୍ନକର୍ତ୍ତାଙ୍କୁ, ଯେମିତି ସେ କୁହନ୍ତି ବୋର୍ଡ଼୍ ମିଟିଂରେ— ନୋ ପ୍ରୋବ୍ଲେମ୍ ! ମୁଁ ତା'ର ଉତ୍ତର ଦେଇପାରିବି ।

ଶୁଣ, ପ୍ରଥମ କଥା ହେଉଛି ଯେ ଯାହା ଘଟିଗଲା, ତାହା କେଉଁ ଭଲପାଇବାର ପ୍ରମାଣ ନୁହେଁ କି ପରିଣତି ।

(ସତେ ? କେବଳ ସେକ୍ସ, ପୂରାପୂରି ସେକ୍ସ ? ଟିକିଏ ଅନେଇଲ ମୋ ମୁହଁକୁ, ସନାତନବାବୁ ? କେତେ ଦିନ ପରେ ଯାଇଁ ଘଟଣାଟା ଘଟିଲା କହିଲ — ଛଅ ମାସ, ଆଠ ମାସ, ନା ତା'ଠାରୁ ଊର୍ଦ୍ଧ୍ୱ ? ଏବଂ ସେହି ସବୁ ନିରୋଳା ଅପରାହ୍ଣ କ'ଣ ନ ଥିଲା ଏଇ ଘଟଣାର ପ୍ରସ୍ତୁତି, ଯାହାକୁ କବିମାନେ ରୋମାନ୍ସ ବୋଲି କୁହନ୍ତି ? ଖାଲି କ'ଣ ଆସୁଥାଅ ଆର୍କିଟେକ୍ଟ ବନ୍ଧୁର ପତ୍ନୀଙ୍କ ହାତରୁ କପେ ଚା' ଖାଇବା ପାଇଁ, ଯାହାର ସ୍ୱାଦ ଓ ବାସ୍ନା ପୂରାପୂରି ଭିନ୍ନ ତମ ଅଫିସ୍ କ୍ୟାଣ୍ଟିନ୍‌ର ଚା'ଠାରୁ ?...

"ଚିନି ଠିକ୍ ଅଛି ତ ଆପଣଙ୍କ ଚା'ରେ ?"

"ଚିନ୍ମୟୀର ଚିନି କ'ଣ ଭୁଲ୍ ହୋଇପାରେ କେବେହେଲେ ? ସତରେ ଆପଣଙ୍କର ଡାକନାଆଁ ଅନାୟାସରେ 'ଚିନି' ହୋଇପାରିଥାଆନ୍ତା — ନୁହେଁ ?"

"ବାପମାଆଙ୍କୁ ଧନ୍ୟବାଦ ଦେବା ଉଚିତ ଯେ ସେମାନେ ସେଭଳି ଗୋଟାଏ ସହଜ ସାଧାରଣ ବୁଦ୍ଧିର ନମୁନା ଦେଖାଇ ନାହାନ୍ତି । ଚିନ୍ମୟୀର ମର୍ଯ୍ୟାଦାକୁ ବଞ୍ଚେଇ ରଖିଛନ୍ତି..."")

ଥ୍ୟାଙ୍କ୍ ୟୁ ଚିନ୍ମୟୀ, ଆଇ ମିନ୍, ମିସେସ୍ ଘୋଷାଲ୍ । ସହଜ ବୁଦ୍ଧି ଇତର ଜନକୁ ସୁହାଏ । ସହଜ ବୁଦ୍ଧିରେ କହିବ ଯେ ସନାତନ ପଣ୍ଡା ବିଶ୍ୱାସଘାତକତା କରିଛି ତା'ର ସ୍ତ୍ରୀ ପ୍ରତି । ଯାହାର ପରିଚାୟକ ହେଉଛି ଏଇ ନାରୀ-ପୁରୁଷମୂଳକ ଘଟଣା, ଯାହା ଆଜି ଘଟିଗଲା କେଜାଣି କେମିତି । କିନ୍ତୁ ମୁଁ ସ୍ପଷ୍ଟଭାବରେ କହିବାକୁ ଚାହେଁ ଯେ ତାହା କେଉଁ ଭଲପାଇବାର ପ୍ରମାଣ ନୁହେଁ କି ପରିଣତି । ତେଣୁ ଶୈଳ ପ୍ରତି ବିଶ୍ୱାସଘାତକତାର ପ୍ରଶ୍ନ ଉଠୁ ନାହିଁ ।

(ହଉ ହେଲା, ତମେ ଜଣେ ସଫଳକାମ ବୁଦ୍ଧିମାନ୍ ବ୍ୟକ୍ତି, ବିଚକ୍ଷଣ ଏକ୍‌ଜିକିଉଟିଭ୍ । ଅଯଥାରେ କାହା ସାଙ୍ଗରେ ବକରବକର ହୋଇ ସମୟ ନଷ୍ଟ କରିବା ତମ ଆଚରଣ-ସଂହିତାର ବହିର୍ଭୂତ । ନିଜ ସାଙ୍ଗରେ ତର୍କ କରିବା ତ ଆହୁରି ମାରାତ୍ମକ ! ତେଣୁ ଧରିନିଅ, ଧରିନେବା ଉଚିତ ଯେ ଯାହା ଘଟିଲା କି ନ ଘଟିଲା, ସେଥିରୁ କେଉଁ ପ୍ରତିକୂଳ ଭାବ ଆସିବ ନାହିଁ ତମ ମନକୁ । ଗ୍ଲାନି, ଅନୁଶୋଚନା

ବା ସେହିଭଳି କିଛି । ଉତ୍ତମ । ସେହେତୁ ତମେ ଝାଡ଼ିଝୁଡ଼ି ହୋଇ ଫେରିଯାଅ ତମ କାମକୁ ଏବଂ ପୁଣି ଫେରିଆସ ମୋ ପାଖକୁ, ଯଥାସମୟରେ । ମାନେ ହପ୍ତାକୁ ଥରେ ଦି'ଥର, ଅନ୍ତତଃ । ଆସିବ ମ, ମୁଁ ଜାଣିଛି ! ମୋ ହସର ଦୁଷ୍ଟାମି ତମକୁ ଭଲଲାଗେ ତଥା ମୋ ଦେହର ରଙ୍ଗ, ତା'ର ସ୍ଥାପତ୍ୟ, ତା'ର ଠାଣି ଏବଂ ତା'ର ବାସ୍ନା, ଏକ ଅଭିନବ ମିଠା-କଡ଼ା ଲବଙ୍ଗ ବାସ୍ନା, ଯାହା ତମ ଟେନ୍‌ସନ୍‌କୁ ହରିନିଏ କିଛି ସମୟ ପାଇଁ । କ୍ଷତି କଅଣ ସେଥିରେ ? ଆଉ, ଗୋଲି ମାର, ଯେଉଁ ଘଟଣାଟା ଘଟିଗଲା ଏବେ । ସେ ଯେ ପୁଣି ଘଟିବାକୁ ବାଧ, ହାତଆଉଁଶାରୁ ଚୁମ୍ବା ବାଟ ଦେଇ, ଏମିତି କିଛି କଥା ନାହିଁ । ହେଲେ ତମେ ଆସିବ । ଜାଣିଶୁଣି ନିଜର ଏଇ ନିର୍ଦୋଷ ସୁଖଟାକୁ ବାତିଲ୍ କରି ଦେବ ନାହିଁ ଏବଂ ମୁଁ ଦେବି ଯାହା ଦେଇ ପାରିବି, ଯେତିକି ଦେଇପାରିବି, ହସରସ ବାସ୍ନା ସମେତ । ମୋତେ ବି' କ'ଣ ଭଲ ଲାଗେ ନାହିଁ ତୁମକୁ ସୁଖ ଦେବାରେ ? ଓକେ — ବାଏ !...)

ବାଏ ! ସନାତନବାବୁ ବିଦାୟ ନେଲେ ଅନୁପସ୍ଥିତା ଚିନ୍ମୟୀ ଘୋଷାଲ୍‌ଠାରୁ । କହିକରି ଯାଇଛି ଯେ ତମେ ଶୋଇପଡ଼, ମୁଁ ଟିକିଏ ବାହାରକୁ ଯାଉଛି ଗୋଟାଏ ଜରୁରୀ କାମରେ । ତମେ ତମର ଚାଲିଯିବ, ତମର ଇଚ୍ଛା ହେବ ଯେତେବେଳେ । ଡୁପ୍ଲିକେଟ୍ ଚାବି ତ ରହିଛି ତମ ପାଖରେ କବାଟ ବନ୍ଦ କରିଦେବା ଲାଗି । ତେଣୁ ଏଠି ବସି ରହି ଏଣୁତେଣୁ ଭାବିବାର କୌଣସି ଅର୍ଥ ନାହିଁ । ... ଆରେ, ସାଢ଼େ ତିନିଟା ବାଜିଗଲାଣି ? ଅନେକ କାମ ଅଛି । ଅଫିସ୍ କାମ ଛଡ଼ା ଆଉ କେତେ କାମ । ତନୁ ପାଇଁ ବ୍ୟାଙ୍କ୍ ଲୋନ୍‌ର ବ୍ୟବସ୍ଥା କରିବାକୁ ପଡ଼ିବ । କେ-ବି-କେ ସାହେବ (କ୍ଷମାକର, ମୁଁ ତମକୁ 'କୁଳଭାଇନା' ଡାକିପାରିବି ନାହିଁ, ଏମିତିକା ମଫସଲିଆ ସମ୍ବୋଧନ ମୋତେ ଖାପ୍ ଖାଏ ନାହିଁ ତମ ଚେହେରା ଚରିତ୍ର ସାଙ୍ଗରେ) ଗତ ଚିଠିରେ ଲେଖିଛନ୍ତି ଯେ ତନୁର କଲେଜ ରେକର୍ଡ୍ ଯେମିତିକା, ସେଥିରେ ତା' ଆଡ଼୍‌ମିସନ୍‌ର କୌଣସି ଅସୁବିଧା ହେବ ନାହିଁ । ସ୍କଲାରଶିପ୍ ମିଳିଯିବାର ମଧ ଯଥେଷ୍ଟ ସମ୍ଭାବନା ଅଛି । ପୂରାଟା ନ ହେଲେ ବି ଶତକଡ଼ା ପଚସ୍ତରି ଭାଗ । କିନ୍ତୁ ବାକୀ ସବୁ ଖର୍ଚ୍ଚ ପାଇଁ ବ୍ୟବସ୍ଥା କରିବାକୁ ପଡ଼ିବ । ଅନ୍ତତଃ ପ୍ରଥମ ବର୍ଷଟା । ଠିକ୍ ଅଛି । ତା'ବାପା ପାଖରେ ମଧ ଯତ୍‌କିଞ୍ଚିତ୍ ପୁଞ୍ଜି ରହିଛି । ଅବଶିଷ୍ଟ ବ୍ୟାଙ୍କ୍‌ରୁ ମିଳିଯିବ । ନୋ ପ୍ରୋବ୍ଲେମ୍ !...

ଖଟରୁ ଉଠିଆସି ଲୁଗାପଟା ବଦଳେଇ ଅଫିସ୍‌କୁ ଫେରିବାଲାଗି ପ୍ରସ୍ତୁତ ହେଲାବେଳକୁ ଆଉ ଗୋଟାଏ କଥା ମନେ ପଡ଼ିଲା ତାଙ୍କର, ତନୁର ଫରେନ୍ ଏଜୁକେସନ୍

ନେଇ । ...ତା' ମାଆର ଉତ୍ସାହ ବି' କିଛି କମ୍ ନୁହେଁ ! ସେଦିନ କହିଲା କ'ଣ ନା, ମୋ 'ଦିବ୍ୟଜ୍ୟୋତି' ପୁରସ୍କାରର ପାଣ୍ଠି କ'ଣ ପଡ଼ି ରହିଥିବ ଫିକ୍ସଡ୍ ଡିପୋଜିଟ୍‌ରେ ? ମୋ ଝିଅର କାମରେ ଆସିବ ନାହିଁ ? ଥ୍ୟାଙ୍କ୍ ୟୁ, ଶୈଳ । କିନ୍ତୁ ଇଏ ହେଉଛି ପ୍ରଥମେ ତା' ବାପାର କର୍ତ୍ତବ୍ୟ । ସେ ନ ପାରିଲେ ଆଉ ଯୋଉ କଥା । ତା'ଛଡ଼ା ଇଏ ତମ ସାହିତ୍ୟର ଧନ, ଆଉ ମୁଁ ଜାଣେ ତମକୁ କେତେ ବାଧିବ, ତା'ର କ୍ଷୟକ୍ଷତି ହେଲେ ।

ସାହିତ୍ୟ ତମର ସବୁଠାରୁ ମୂଲ୍ୟବାନ୍ ଧନ । ମୁଁ କ'ଣ ଜାଣି ନାହିଁ ସେ କଥା ? ମୂଳରୁ ଜାଣିଛି, ତମକୁ ବାହା ହେବା ଦିନଠୁଁ । କହିବାକୁ ଗଲେ, ତା' ପୂର୍ବରୁ, ଯେଉଁଥିପାଇଁ ମୁଁ ନିଶ୍ଚୟ କଲି ତମକୁ ବାହାହେବି ବୋଲି ଏବଂ ମୁଁ ସେଥିର ଯଥେଷ୍ଟ ସମ୍ମାନ ଦେଇଆସିଛି । ଦେଇଛି ନା ନାହିଁ ? ମୋ ଜାଗାରେ ଆଉ କିଏ ହୋଇଥିଲେ କେତେ ରାଗରୁଷା, ହୁଏତ କଳିକଜିଆ ଆରମ୍ଭ କରିଦିଅନ୍ତାଣି ଯେ ତମେ ଯଥେଷ୍ଟ ଧ୍ୟାନ ଦେଉ ନାହଁ ଘରକରଣା ପ୍ରତି କିମ୍ବା ତମ ଝିଅର ଓ ସ୍ୱାମୀର ଖବର ବୁଝୁ ନାହଁ ଅନ୍ୟ ସ୍ତ୍ରୀମାନଙ୍କ ପରି । କିନ୍ତୁ ମୁଁ ଭୁଲ୍‌ରେ ବି' କେବେହେଲେ ତମକୁ କହି ନାହିଁ ସେମିତି, ଆକ୍ଷେପ କରି । କାରଣ ମୁଁ ଜାଣେ ତମେ ସାଧାରଣ ସ୍ତ୍ରୀ ନୁହଁ । ତମେ କବି । ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ ଉଠୁଥିବା କବି । ତମ କୁଳଭାଇନା ଯାହା କହୁଥିଲେ, ତମର ବେଳ ହୋଇଗଲାଣି 'ଗଂଗୋତ୍ରୀ' ପୁରସ୍କାର ପାଇବାଲାଗି । କିନ୍ତୁ ଦିବ୍ୟଜ୍ୟୋତିର ଦି' ଲକ୍ଷ ଟଙ୍କାକୁ ଇଏ ତ ମୋଟେ ଲକ୍ଷେ ଟଙ୍କା, ତା'ହେଲେ ଇଏ ତା'ଠୁଁ ବଡ଼ ହେଲା କେମିତି ? ଭଗବାନ୍ ଜାଣନ୍ତି ତମ ସାହିତ୍ୟ ଜଗତର କଥା, ତମ ଉଚ୍ଚନୀଚର ମାପକାଠି କେଉଁ ଧାତୁରେ ଗଢ଼ା !...

'ଚିତ୍ରାଂଗଦା ମ୍ୟାନ୍‌ସନ୍‌ସ୍' ନାମକ ଆପାର୍ଟମେଣ୍ଟ୍ ହାଉସ୍‌ର ତଳକୁ ଓହ୍ଲାଇ ଆସି ରାସ୍ତା ଧରିଲା ବେଳକୁ ସିଛିଆ ସିରାମିକ୍ସର ଡେପୁଟି ଜେନେରାଲ୍ ମ୍ୟାନେଜର୍ ମିଷ୍ଟର୍ ସନାତନ ପଣ୍ଡାଙ୍କର ସମସ୍ତ ତେଜ ଫେରି ଆସିଥିଲା ବହୁବିଧ କାମ କରିବାପାଇଁ । ତେଜ ଏବଂ ଆତ୍ମବିଶ୍ୱାସ ଏବଂ ସେହେତୁ ଏକ ମହନୀୟ ଉଦାରତାବୋଧ, ଯେଉଁଥିରେ ପତ୍ନୀ ଶୈଳଜା ଏବଂ ତା'ର ସାହିତ୍ୟ, ଉଭୟଙ୍କୁ, 'ଥ୍ୟାଙ୍କ୍ ୟୁ ଡିଅର୍, ଅଲ୍ ଦି' ବେଷ୍ଟ !' ବୋଲି କହି ହେଉଥିଲା । ଖୋଜେ ବାଟ ଗଲେ ତାଙ୍କ ପାର୍କ୍‌ଷ୍ଟ୍ରୀଟ୍ ଅଫିସ୍ ।

ପ୍ରାୟ ବର୍ଷେ ହେବ ତାଙ୍କର ଚିହ୍ନା ହେଲାଣି ଚିତ୍ରାଙ୍ଗଦା ମ୍ୟାନ୍‌ସନ୍‌ସ୍‌ର ଚାରିଶହ ପଞ୍ଚାବନ ନମ୍ବର ଫ୍ଲାଟ୍ ସହିତ । ଯାହାର ଦରଜା-କବାଟରେ ଗୋଟାଏ ଚକଚକିଆ ପିତଳ ନେମ୍-ପ୍ଲେଟ୍ ଲାଗିଛି—"ପ୍ରିୟନାଥ ଘୋଷାଲ୍, ଆର୍କିଟେକ୍ଟସ୍ ।"

କମ୍ପାନୀର ନୂଆ ଲେବର କଲୋନୀର ଡିଜାଇନ୍ ତିଆରି କରିବା କାମ ଯେ କୌଣସି ଆର୍କିଟେକ୍ଟଙ୍କୁ ଦେଲେ ଚଳିବ ନାହିଁ । ଇଏ ଗୋଟାଏ ଦାୟିତ୍ୱପୂର୍ଣ୍ଣ କାମ, ଯାହା ସହିତ କମ୍ପାନୀର ଶ୍ରମିକବନ୍ଧୁ ଇମେଜ୍ ସମ୍ପୃକ୍ତ ରହିଛି । ଏହିପ୍ରକାର କାମ ପାଇଁ ପ୍ରିୟନାଥ ଘୋଷାଲ୍ ହିଁ ସବୁଠାରୁ ଉପଯୁକ୍ତ । ସେ ବସତି ନିର୍ମାଣର କଳାକୌଶଳ ପାଇଁ ପ୍ରସିଦ୍ଧ । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ । ଏବଂ ତାଙ୍କ ଘର ବେଶି ଦୂର ନୁହେଁ ଅଫିସ୍‌ରୁ । ନିର୍ଭରଯୋଗ୍ୟ ସୂତ୍ରରୁ ଏହି ସୁପାରିଶ ପାଇଲା ପରେ କମ୍ପାନୀର ଦୁଇ ନମ୍ବର କର୍ତ୍ତା ତାଙ୍କ ସହିତ ଯୋଗାଯୋଗ କରିବାକୁ ଚେଷ୍ଟା କଲେ । କିନ୍ତୁ ତା'ଙ୍କ ଫୋନ୍ ମିଳିଲା ନାହିଁ । ସେହେତୁ ଦିନେ ସନାତନବାବୁ କହିଲେ ଯେ ମୁଁ ନିଜେ ସେଠିକି ଯିବି । 'ଚିତ୍ରାଙ୍ଗଦା ମ୍ୟାନ୍‌ସନ୍‌ସ୍' ଏମିତି କେତେ ବାଟ କି ?

ସେହେତୁ ସେ ନିଜେ ଚାଲି ଚାଲି ଗଲେ ସେଠିକି । କଲିକତାର ଶୀତଳ-ଉଷୁମ ହାଉଆରେ ଉଚ୍ଛନ୍ନ ହୋଇ ଉଠିଥିବା ଗୋଟିଏ ଅପରାହ୍ଣରେ । ଏଭଳି ହାଉଆ ଯେ ତାଙ୍କ 'ଟାଇ' ମଧ ଥିର ହୋଇ ରହୁ ନ ଥାଏ । ଯେଉଁ ନାରୀଜଣକ ଦରଜା ଖୋଲିଦେଲେ, ତାଙ୍କ ସହାସ୍ୟ ବଦନରୁ ମନେହେଲା ଯେ ସେ ପୃଥିବୀର ପହିଲା ନମ୍ବର ଅତିଥିସତ୍କାରିଣୀ । ଏକ ସଫଳ ପ୍ରଫେସନାଲ୍‌ଙ୍କର ଉପଯୁକ୍ତ ସାଥୀ, ଯେ ପ୍ରତ୍ୟେକ ଅତିଥିକୁ ଗରାଖ କରି ନେଇପାରିବେ ।

"ଆଇ ଆମ୍ ସରି", ହାସ୍ୟମୟୀ କହିଲେ, "ସେ ଘରେ ନାହାନ୍ତି । ଦିଲ୍ଲୀ ବାହାରିଯାଇଛନ୍ତି ଗୋଟାଏ ଜରୁରୀ କାମରେ... କିନ୍ତୁ ଆପଣ ଠିଆ ହୋଇ ରହିଛନ୍ତି କାହିଁକି ? ଆସନ୍ତୁ, ଭିତରକୁ ଆସନ୍ତୁ ।"

"ଧନ୍ୟବାଦ । କ୍ଷମା କରିବେ ମୁଁ ଆପଣଙ୍କୁ ଡିଷ୍ଟର୍ବ କଲି", ଏହି ପ୍ରକାର କିଛି ଗୋଟାଏ ଭଦ୍ରତାର ଉପଚାର ସହ ସେଠାରୁ ତତ୍‌କ୍ଷଣାତ୍ ଫେରିଆସିବା କଥା । କିନ୍ତୁ କେଜାଣି କାହିଁକି ସନାତନବାବୁ ତାଙ୍କ ନିମନ୍ତ୍ରଣକୁ ଆକ୍ଷରିକ ଅର୍ଥରେ ସ୍ୱୀକାର କଲେ । ଘର ଭିତରକୁ ଯାଇ ନରମ ସୋଫାରେ ଆଉଜିଗଲେ । ସତେକି ଆତିଥ୍ୟର ଅବମାନନା ହେବ ତାଙ୍କ କଥା ନ ମାନିଲେ । ଏବଂ ତାଙ୍କର ଖିଆଲ୍ ହେଲା ଯେ ଶ୍ରୀମତୀ ଘୋଷାଲ୍ ଅତିଥିଙ୍କୁ ଯଥେଷ୍ଟ ମାନ୍ୟତା ଦେବା ଛଡ଼ା ଚଞ୍ଚଳ ହାଉଆକୁ ମଧ ଯଥେଷ୍ଟ ପ୍ରଶ୍ରୟ ଦିଅନ୍ତି ତାଙ୍କ ଚୂର୍ଣ୍ଣକୁନ୍ତଳ ଓ ଖରାଦିନିଆ ଝୀନବାସ ସାଙ୍ଗରେ ଖେଳିବାଲାଗି । ଯାହାହେଉ ଆଉ ଏଠି ବସିରହିବା ଉଚିତ ନୁହେଁ ବୋଲି ସ୍ଥିର କରି ଉଠ ଉଠ ହେଲାରୁ ଶ୍ରୀମତୀ ଘୋଷାଲ୍ ତାଙ୍କୁ ପଚାରିଲେ, ବିନୟପୂର୍ବକ—

"ଚା' ଆଣିଦେବି ନା କୋଲ୍ଡ ଡ୍ରିଙ୍କ୍ ?"

"ଚା'... ନା, ଏକ୍ସକିଉଜ୍ ମି, ମୋର କିଛି ଦରକାର ନାହିଁ, ମୋତେ ସାଙ୍ଗେ ସାଙ୍ଗେ ଫେରିଯିବାକୁ ହେବ ଅଫିସ୍‌କୁ । ମୁଁ ... ସିନ୍ଥିଆ ସିରାମିକ୍ସରେ କାମ କରେ, ଏଇଠି ଆମ ଅଫିସ୍..."

"ମୁଁ ଜାଣିଛି । ଆପଣ ମିଷ୍ଟର ପଣ୍ଡା, ଡେପୁଟି ଜେନେରାଲ୍ ମ୍ୟାନେଜର୍, ଏବଂ ମୋର ବିଶ୍ୱାସ, ଆପଣ ଅଫିସ୍‌କୁ ଫେରିଯିବା ମାତ୍ରେ ହିଁ ଚା' ମଗେଇବେ । କ'ଣ ଭୁଲ୍ କହିଲି ? ତେଣୁ ଆପଣଙ୍କ ଆପତ୍ତି ଶୁଣାଯିବ ନାହିଁ—"

ବର୍ତ୍ତମାନ ଯେଉଁଭଳି ହସ ଫୁଟିଉଠିଲା ଶ୍ରୀମତୀ ଘୋଷାଲ୍‌ଙ୍କ ଓଠରେ, ସେଥିରେ ଏକପ୍ରକାର ଦୁଷ୍ଟାମିର ଆବିଷ୍କାର କଲେ ସନାତନବାବୁ । ଯେମିତିକି ହୋଷ୍ଟେସ୍ ପ୍ରକୃତରେ ଜାଣନ୍ତି ଯେ ଏଇଠି ଚା' ପାନ କଲେ ତାଙ୍କୁ ବେଶି ଭଲ ଲାଗିବ ଏବଂ ସେ ଅଟକିଗଲେ ।

କ୍ରମଶଃ ହୋଷ୍ଟେସ୍‌ଙ୍କର 'ଦୁଷ୍ଟାମି', ଚଞ୍ଚଳତା, ଚପଳତା, ପରିହାସ ଇତ୍ୟାଦିର ଗୋଟାଏ ମିଶାମିଶି ଭାବ ସନାତନବାବୁଙ୍କୁ କୁତୁକୁତୁ କଲା । କହିବାକୁ ଲାଗିଲା ଯେ ୟା'କୁ ମଧ୍ୟ ନାରୀତ୍ୱ କୁହନ୍ତି । ଏକ ଭିନ୍ନ ଧରଣର ନାରୀତ୍ୱ, ଯାହା ସହିତ ତୁମର ବିଶେଷ ପରିଚୟ ନାହିଁ । ଅତଏବ ପରିଚୟ ଟିକିଏ ହୋଇଯାଉ ନା, — କ୍ଷତି କଅଣ ?

ଚା'ର ଯୋଗାଡ଼ କରିବାଲାଗି ରୋଷେଇଘରକୁ ଗଲାବେଳକୁ ଶ୍ରୀମତୀ ଘୋଷାଲ୍ ଅଗତ୍ୟା ସନାତନବାବୁଙ୍କ ପାଖଦେଇ ଗଲେ ଏବଂ ସେତିକିବେଳେ ସନାତନବାବୁ ପ୍ରଥମଥରପାଇଁ ଅନୁଭବ କଲେ ସେଇ ମିଠା-କଡ଼ା ଲବଙ୍ଗ ବାସ୍ନା । ଏବଂ କୁତୁକୁତୁର କୌତୁକ ଅଧିକ ଉପଭୋଗ୍ୟ ମନେହେଲା ।

ହେଲେ ପ୍ରଥମ ଦିନଠାରୁ ସନାତନବାବୁ ଲକ୍ଷ୍ୟ କରିଛନ୍ତି ଏବଂ ଜାଣି ଖୁସି ହୋଇଛନ୍ତି ଯେ ଭଦ୍ରମହିଳାଙ୍କ ଠାରେ ଯେଉଁ ପ୍ରକାରର ନାରୀତ୍ୱ ଥାଉ ନା କାହିଁକି, ସେଥିରେ ଉଦ୍ଦେଶ୍ୟ ନାହିଁ କି ଯାଚନା ନାହିଁ । ଦାବୀ ନାହିଁ । ସତେକି ସେ କହିବାକୁ ଚାହାନ୍ତି ଯେ ତମର ଯେତିକି ଦରକାର ସେଥିରୁ, ନେଇଯାଇପାର । ମୋର ଆପତ୍ତି ନାହିଁ । ମୁଁ ଜାଣେ ତମେ ମୋର କ୍ଷତି କରିବ ନାହିଁ । ମୁଁ ହେଉଛି ଅତିଥିସତ୍କାରିଣୀ, ସେହିଥିରେ ହିଁ ମୋର ସୁଖ ଓ ଗୌରବ । ସେହେତୁ ମୋର ତଥାକଥିତ ଭିନ୍ନ ନାରୀତ୍ୱରୁ ଚିମୁଟାଏ ନିଅ କି ପୁଳାଏ, ତଦ୍ୱାରା ମୋର କିଛି ସରିବ ନାହିଁ କି ଊଣା ହୋଇଯିବ ନାହିଁ । କ'ଣ ବୁଝୁଛ ମିଷ୍ଟର୍ ସନ୍-ଟ୍ୟାନ୍ ?

ପ୍ରିୟନାଥବାବୁ ତାଙ୍କ ସ୍ତ୍ରୀଙ୍କ ଉପଯୁକ୍ତ ସହଧର୍ମୀ ବୋଲି ମନେହୁଅନ୍ତି । ଅତିଥି ସତ୍କାରର ପରିପ୍ରେକ୍ଷୀରେ ମୁଁ ମୋ ସ୍ତ୍ରୀଙ୍କଠାରୁ କିଛି କମ୍ ନୁହେଁ, ଏହି ଭାବରେ ।

ସେଇ ନିଜେ ପ୍ରସ୍ତାବ କରିଥିଲେ ସନାତନବାବୁଙ୍କୁ, ତାଙ୍କଠାରୁ ଲେବର୍ କଲୋନୀର କଣ୍ଟାକ୍ଟଟା ପାଇସାରିଲା ପରେ ଯେ ସାର୍, ମୋ କୁଡ଼ିଆକୁ ଆପଣ ନିଜ ଘର ବୋଲି ମନେ କରିବେ । ଏତେ ପାଖ ଆପଣଙ୍କ ଅଫିସ୍‌ଠାରୁ । ଆଉ ଆପଣମାନେ ତ ଆମମାନଙ୍କ ପରି ପୋଲାଫାଙ୍କିଆ ନୁହଁନ୍ତି (ହିଁଃ... ହିଁଃ...), କେତେ ଦାୟିତ୍ୱ, କେତେ ଚିନ୍ତା ଆପଣମାନଙ୍କର, ତେଣୁ ଯେତେବେଳେ ମୁଣ୍ଡ ବଥେଇବ ଗଡ଼ିପଡ଼ିବେ ଇଆଡ଼େ । ସେତେବେଳେ ପାଖରେ ଠିଆ ହୋଇଥିବା ଚିନ୍ମୟୀ ଯେଉଁଭଳି ହସ ହସୁଥିଲା, ତା'ର ସେଇ ଦୁଷ୍ଟ ଚତୁର ହସ, ସେଥିରୁ ସନାତନବାବୁଙ୍କର ମନେହେଲା ଯେ ସେ ମଧ୍ୟ ତାଙ୍କ ମୁଣ୍ଡ ଚିପିବା ପାଇଁ ପ୍ରସ୍ତୁତ । ଖାଲି ଅତିଥିଙ୍କର ସେଥିକୁ ଆପତ୍ତି ନ ଥିଲେ ହେଲା ।

କହିବାକୁ ଗଲେ ଠିକ୍ ତାହାହିଁ ଘଟିଲା । କାର୍ଯ୍ୟ ସଙ୍କ୍ରାନ୍ତରେ ସେଠିକି ଗଡ଼ି ପଡୁପଡୁ (ଏଠି ଆମେ ଖୋଲାଖୋଲି ଆଲୋଚନା କରିପାରିବା, ଏହି ଆଳରେ) ସେ ଅକାରଣରେ ମଧ୍ୟ ସେଠିକି ଗଡ଼ି ପଡ଼ିବାକୁ ଲାଗିଲେ । ଯେହେତୁ ବନ୍ଧୁତ୍ୱ ବେଶ୍ ଗାଢ଼ ହୋଇଗଲାଣି ସେତେବେଳକୁ । ଖରାରେ ସିଝି ହୋଇ ଆସିଲା ପରି ମନେ ହେଉଥିବା ସନାତନବାବୁ 'ସନ୍-ଟ୍ୟାନ୍'ର ସମ୍ବୋଧନ ପାଇଲେଣି ଚିନ୍ମୟୀଙ୍କ ଠାରୁ ଏବଂ ସେ ମଧ୍ୟ କହିଲେଣି ଯେ ଚିନ୍ମୟୀଙ୍କର ଚିନି କେବେହେଲେ ଭୁଲ୍ ହୁଏ ନାହିଁ । ଏବଂ କ୍ରମଶଃ ସେ ବେଶି ଭାଗ ଲଞ୍ଚ୍‌ବେଳେ ଆସିବାକୁ ଲାଗିଲେ, ଖରାର ପ୍ରକୋପ ସତ୍ତ୍ୱେ, କାରଣ (ଯାହା ସେ ବ୍ୟକ୍ତ କଲେ ଅଯଥାରେ), 'ଆଇନ୍' ଅନୁଯାୟୀ କେବଳ ଏଇ ଘଣ୍ଟାଟିଏ ହେଉଛି ତାଙ୍କ ବିଶ୍ରାମର ବେଳା । ଯଦିଓ ତାଙ୍କୁ ଜଣାଥାଏ ଯେ ପ୍ରିୟନାଥବାବୁ ଲଞ୍ଚ୍‌କୁ ଆସନ୍ତି ନାହିଁ, ସାଧାରଣତଃ । ଆସିକରି ଲମ୍ବିଯାଆନ୍ତି ସୋଫା ଉପରେ ଏବଂ ଚିନ୍ମୟୀଙ୍କୁ କୁହନ୍ତି, 'ମୋ ପାଇଁ ବ୍ୟସ୍ତ ହୁଅ ନାହିଁ, ପ୍ଲିଜ୍ । ମୁଁ ଖାଲି ଟିକିଏ ବିଶ୍ରାମ ନେବାକୁ ଆସିଛି' । ଚିନ୍ମୟୀ ଅବଶ୍ୟ ବ୍ୟସ୍ତ ହୁଅନ୍ତି ନାହିଁ; ବ୍ୟସ୍ତ ହେବା ତାଙ୍କ ଅଭ୍ୟାସ ନୁହେଁ । କେବଳ ଟିକିଏ ମୁରୁକି ହସା ଦିଅନ୍ତି ଏବଂ ଆଶ୍ୱାସନା — "ଓ-କେ ସାର୍, ଯାହା ଆପଣଙ୍କ ଇଚ୍ଛା । କିନ୍ତୁ ମନେରଖନ୍ତୁ ଯେ ମୋତେ ନ ଜଣେଇ ପଳେଇଯିବେ ନାହିଁ । ମୋ ହାତରୁ କପେ ଚା' କି ଗିଲାସେ ସରବତ୍ ଖାଇକରି ଗଲେ ବିଶେଷ କ୍ଷତି ହେବ ନାହିଁ ଆପଣଙ୍କର, ସେଥିରେ ଚିନିର ମାତ୍ରା ଠିକ୍ ଥାଉ କି ଭୁଲ୍..."

ସେଇଠୁଁ ଦିନେ ସେ ସତକୁ ସତ ଭାବିଲେ ଯେ ତାଙ୍କର ମୁଣ୍ଡ ବଥଉଛି । ପାଖରେ ଅତିଥି ସତ୍କାରିଣୀ । ମୁରୁକି ମୁରୁକି ହସୁଛି ତାଙ୍କର କ୍ଳେଶବୋଧ ଦେଖି । ସତେକି ତାଙ୍କୁ ଚିଡ଼ଉଛି । କହୁଛି, ମୁଁ ଜାଣେ ତୁମର ମୁଣ୍ଡ ବଥଉଛି, ଅନ୍ତତଃ

ତାହାହିଁ ତୁମର ଧାରଣା । କିନ୍ତୁ ମୁହଁ ଖୋଲି କହୁ ନାହଁ କାହିଁକି ? କ'ଣ ଲାଜ ମାଡୁଛି ?

କହିବାର ସାହସ ନ ଥିଲା ସନାତାନବାବୁଙ୍କର । କିନ୍ତୁ ସେ ନିଜକୁ ବ୍ୟକ୍ତ କଲେ । ଇଙ୍ଗିତରେ ।· ବ୍ୟାକୁଳ ଚାହାଣିରେ ଚିନ୍ମୟୀଙ୍କର ଗତିପଥକୁ ଘୂରି ଘୂରି ଅନେଇବାରେ । ଯାହାର ଭାଷା ଥିଲା— ଟିକିଏ ଆସନ୍ତ ନାହିଁ ମୋ ପାଖକୁ, ମୋର କ୍ଳେଶ ଦୂର କରିବାଲାଗି ? ଚିନ୍ମୟୀ ତାଙ୍କ ମିନତିକୁ ସ୍ୱୀକାର କଲେ ଏବଂ ଛଇଳିପଣ ନ ଦେଖାଇ ତାଙ୍କ ହାତରେ ହାତ ରଖିଲେ, ତାଙ୍କ କପାଳ ଆଉଁଶିଦେଲେ ।

ସେଇଠୁଁ ଚୁମାଟିଏ ପାଇବାଯାଏଁ ଆଉ କେତେଦିନ ଲାଗିଥାଆନ୍ତା ସନାତନବାବୁଙ୍କର ? ଏବଂ ଯଥାକ୍ରମେ ଆଜିକାର ଘଟଣା, ଆଜିକାର ସଂଗମ, ଯେତେବେଳେ ନିର୍ଜନତା ଗର୍ଜି ଉଠୁଥାଏ ତାଙ୍କ କାନ ପାଖରେ ଏବଂ କହୁଥାଏ—'ଶେଷକୁ ତୁ ଏଇଆ କଲୁ ?' କିନ୍ତୁ ସନାତନବାବୁ ତାକୁ ବାରମ୍ବାର ଘଉଡ଼େଇଦେଉଥାଆନ୍ତି । କହୁଥାଆନ୍ତି—"ତୁ ଭୁଲ୍ ବୁଝିଛୁ ! ତୁ'ଟା ନିହାତି ଭୁଲ୍ ବୁଝିଛୁ ! ଦୟାକରି ମୋତେ ଛାଡ଼ିଦେ' ଆଉ ଟିକିଏ ଆରାମ କରିବାକୁ, ସୁଖ ପାଇବାକୁ ... ଆଃ ! ଆଃ !! ... କାହିଁ ବିଚ୍ୟୁତି, କାହିଁ ବ୍ୟତିକ୍ରମ ? ଏବଂ ବର୍ତ୍ତମାନ ରାତିଶେଷର ନିଦ ଭାଙ୍ଗିଲା ପରେ ସେ ଧୀରେ ସୁସ୍ଥେ ବୁଝେଇଦେଇ ପାରୁଥିଲେ ସେଇ ବେରସିକ ଭୂତଟାକୁ ଯେ ତା'ର ଆଶଙ୍କା ଏକାନ୍ତ ଅମୂଳକ ।

...ହଁ, ମୋତେ ଅବଶ୍ୟ ଭଲ ଲାଗୁଥିଲା ସେଇ କେତୋଟି ମୁହୂର୍ତ୍ତ । ଆଠ ନଅ ମାସ ହେଲା ଯେଉଁ ସୁଖ ଲୋଡୁଥିଲି ଓ ପାଉଥିଲି, ତା'ର ଶୀର୍ଷରେ ପହୁଞ୍ଚିଲା ପରି । କିନ୍ତୁ ସେଥିର ସମ୍ପର୍କ କ'ଣ ଅଛି ଭଲ ପାଇବା ସାଙ୍ଗରେ ? ଆକାଶ ପାତାଳ ପ୍ରଭେଦ ଏଇ ଦି'ଟା ଜିନିଷ ଭିତରେ ।

ଶୈଳ : ମୁଁ ତୁମକୁ ଭଲପାଏ । ଯାହାକି ଏକ ପବିତ୍ର, ଶାଶ୍ୱତ ଏବଂ ସୁଗଭୀର ଭାବରେ ଉଚ୍ଚାରଣ । ତା'ର କୌଣସି ସମ୍ପର୍କ ନାହିଁ ଏହି ଖୁଚୁବୁଚିଆ ଭଲଲାଗିବାର କୌତୁକ, ସୁଲୁସୁଲୁ, ଖୁମ୍ପାଖୁମ୍ପି ଓ ତା'ର କ୍ଳାଇମାକ୍ସ ସାଙ୍ଗରେ, ତାହା ଯେତେ ସୁଖକର ହେଉ ନା କାହିଁକି ।

କିଏ ବୁଝିବ ନାହିଁ ଏଇ ସାମାନ୍ୟ କଥାଟିକ ? ତମେ ନିଜେ କ'ଣ ବୁଝିପାରିବ ନାହିଁ ଶୈଳ ? ମୁଁ କ'ଣ ଦେଖି ନାହିଁ ତମେ ତମର ପ୍ରାଣପ୍ରିୟ ସାହିତ୍ୟକୁ ନମସ୍କାର କରି ମଜିଯାଅ ବେଳେବେଳେ କେଉଁ ବେଷ୍ଟ ସେଲରର ରସରସିଆ କିମ୍ବା ଅଣନିଃଶ୍ୱାସିଆ ଗପରେ ? ତା' ବୋଲି ତମେ କ'ଣ କହିବ ଯେ ତମେ ତମ ସାହିତ୍ୟର ଅବମାନନା କରିଛ ? ନନ୍‌ସେନ୍ସ !...

ଅଫିସ୍‌ରେ ପହଞ୍ଚିଲାବେଳକୁ ସନାତନବାବୁ ନିଜକୁ ଯଥାବିଧି ସଜାଡ଼ି ନେଇପାରିଥିଲେ । 'ଆଉ ନୁହେଁ, ମୁଁ ଆଉ ସେଠିକି ଯିବି ନାହିଁ କିମ୍ବା 'ମୁଁ କିଛି ଭୁଲ୍ କରି ନାହିଁ, ପୁଣି ଯିବି ସେଠିକି, ବାରମ୍ବାର ଯିବି', ଏଇ ଦୁଇଟି ଭାବରୁ କୌଣସିଟିକୁ ସେ ସ୍ଥାନ ଦେଉ ନ ଥିଲେ ତାଙ୍କ ମନରେ ଗାଦି ମାଡ଼ି ବସିବାପାଇଁ । ଗପଟା ସରିଯାଇଛି ଆପାତତଃ ଏବଂ କ୍ଲାଇମାକ୍ସଟା ବେଶ୍ ଭଲଲାଗିଛି । ଧନ୍ୟବାଦ । ବର୍ତ୍ତମାନ ମୋ ଅଫିସ୍‌ର ଦରକାରୀ କାମ । ସେଇଠୁଁ ସଞ୍ଜବେଳକୁ ଘରକୁ ଫେରିବା କଥା । ନା, ତନୁର ବ୍ୟାଙ୍କ୍‌ଲୋନ୍ ପାଇଁ ସମୟ ନାହିଁ ଆଜି । ...କିନ୍ତୁ ହଁ — ସନାତନବାବୁଙ୍କର ମନେ ପଡ଼ିଗଲା ହଠାତ୍ — ଆଜି ପରା କେଉଁ ପାର୍ଥ ଚକ୍ରବର୍ତ୍ତୀ ଏବଂ ତାଙ୍କ ସ୍ତ୍ରୀ ଖାଇବାକୁ ଆସିବେ ଆମ ଘରକୁ ?

ସେ କୁଆଡ଼େ ଜଣେ ବିରାଟ ସାହିତ୍ୟିକ, ଯାହା ଶୈଳ କହୁଥିଲା ଏବଂ କେ-ବି-କେ ତାଙ୍କ ନାଆଁ ତଳେ ଡବଲ୍ ଅଣ୍ଡରଲାଇନ୍ କରି ଯାଇଛନ୍ତି, ତାଙ୍କ ତାଲିକାରେ । କୁଳଭାଇନାଙ୍କ ତାଲିକା, କୁଳଭାଇନାଙ୍କ ତାଗିଦ୍— କେମିତି ଭଲା ଶୈଳ ତା'ର ଅମାନ୍ୟ କରିବ ? ମୁଁ ବି' ତା'ର ଅବମାନନା କରିବି ନାହିଁ, ଶୈଳ । ଆମେ ଋଣୀ କେ-ବି-କେଙ୍କ ପାଖରେ ସେ ଯାହା କରିଛନ୍ତି ତନୁ ପାଇଁ । ତା'ଛଡ଼ା, ମୋର ଦ୍ୱିଧା ନାହିଁ ପୁଣି ଥରେ କହିବା ପାଇଁ ଯେ ମୁଁ ତମକୁ ଭଲପାଇବା ଛଡ଼ା ତମ ସାହିତ୍ୟକୁ ମଧ୍ୟ ଶ୍ରଦ୍ଧା କରେ । ସେହେତୁ ସ୍ୱାଗତମ୍, ମହାନ୍ ସାହିତ୍ୟିକ ପାର୍ଥ ଚକ୍ରବର୍ତ୍ତୀ ! ତମର ବୟସ ସତୁରି ହେଉ କି ଅଶୀ, ତମର ମହତ୍ ବାଣୀ ବୁଝି ହେଉ କି ନ ହେଉ ଏବଂ ତମର ସ୍ତ୍ରୀ ପାନ ଚାକୁଳେଉଥାଆନ୍ତୁ କି ସିଗାରେଟ୍ ଫୁଙ୍କୁଥାଆନ୍ତୁ, କିଛି ଯାଏ ଆସେ ନାହିଁ ସେଥିରେ । କିନ୍ତୁ ଡିଅର୍ ଶୈଳ, କେତେଦିନ ଯାଏଁ ଏଇ ପାଲା ଚାଲିଥିବ କହିଲ ? ଦେବଦେବୀଗଣ କେବେ ବସିବେ ତାଙ୍କ କୈଳାସରେ ଏବଂ ଗଂଗୋତ୍ରୀ ସୁଅ ଛୁଟେଇଦେବେ ତୁମ ପାଇଁ ? ମଧ୍ୟ ମୋ ପାଇଁ, ମୁଁ ମାନୁଛି । କିନ୍ତୁ ସେଥିପାଇଁ ଏତେ ଝାଳନାଳ, ଏତେ ଧାଁଧପଡ଼, ଅତିଥିଚର୍ଚ୍ଚା... ଶେଷକୁ ଯଦି ନ ମିଳେ ଏଇ ଗଂଗୋତ୍ରୀ ଜିନିଷଟା ? ତା'ହେଲେ ତମେ ଭାଙ୍ଗିପଡ଼ିବ ନାହିଁ ତ ?

ଯାହାହେଉ ସନାତନବାବୁ ଭଗବାନଙ୍କୁ ଧନ୍ୟବାଦ ଦେଲେ ଚକ୍ରବର୍ତ୍ତୀ ଦମ୍ପତିଙ୍କର ଚର୍ଚ୍ଚା କଲାବେଳେ, ଯେ ଏମାନଙ୍କଠାରୁ ବିଶେଷ କିଛି ସହ୍ୟ କରିବାକୁ ପଡୁ ନାହିଁ । କହିବାକୁ ଗଲେ ଦିହେଁ ପାଖରେ ଥିଲେ ମନ୍ଦ ହୋଇ ନ ଥାଆନ୍ତା, ପଡ଼ୋଶୀ ହିସାବରେ । ଭଦ୍ରଲୋକ ଜଣକ ସତୁରି ଉପରେ ହେଲେ ମଧ୍ୟ ଗୁରୁଗମ୍ଭୀର ଆଲୋଚନା କରୁ ନ ଥିଲେ ଶୈଳ ସାଙ୍ଗରେ, ଯାହାକୁ ସାହିତ୍ୟଧର୍ମୀ ବୋଲି କୁହାଯିବ ଏବଂ ତାଙ୍କୁ କେବଳ ମୁଣ୍ଡ ଟୁଙ୍ଗାରିବାକୁ କିମ୍ବା ଦାନ୍ତ ଗିଜିଡ଼ିବାକୁ

ପଡ଼ିବ । ସେ ନୁହଁନ୍ତି ପୂର୍ବରୁ ଏକ ବର୍ଷୀୟାନ୍ ଅତିଥିଙ୍କ ପରି ଯେ ତାଙ୍କ ଅସ୍ପଷ୍ଟ ବକ୍ତବ୍ୟ ସାଙ୍ଗକୁ ମଝିରେ ମଝିରେ ଅନଉଥିଲେ ଗୃହକର୍ତ୍ତାଙ୍କ ଆଡ଼କୁ ଆଶ୍ଚର୍ଯ୍ୟ ହେଲା ପରି । ସତେକି ସେ ବୁଝିପାରୁ ନାହାନ୍ତି ଯେ ଏଭଳି ଏକ ଇତର ସାଧାରଣ ସ୍ୱାମୀ କେମିତି ଜୁଟିଲା କବୟିତ୍ରୀ ଶୈଳଜାଙ୍କ ଭାଗ୍ୟରେ । ଶ୍ରୀମତୀ ଚକ୍ରବର୍ତ୍ତୀ ମଧ ପାନ ଚାକୁଳେଉ ନ ଥିଲେ । ହେଲେ ଘରୋଇ ପଣରେ ସରିଯାଇଥିଲେ । ବଙ୍ଗାଳୀ ଘାଣ୍ଟ ତରକାରି ଓ ଓଡ଼ିଆ ଘାଣ୍ଟ ତରକାରି ଭିତରେ କେଉଁ ପ୍ରକାର ପ୍ରଭେଦ ଅଛି, ତା'ର ମର୍ମ ବୁଝିବାକୁ ଚେଷ୍ଟା କରୁଥିଲେ । କେତେ ଭିନ୍ନ ନ ଥିଲେ ସେ ପୂର୍ବତନ ଏକ ମହିଳା ଅତିଥିଙ୍କଠାରୁ ! ଘନଘନ ସିଗାରେଟ୍ ଫୁଙ୍କୁଥିବା ମଧ୍ୟବୟସୀ ଔପନ୍ୟାସିକା ନନ୍ଦିନୀ ଚୋପ୍ରାଙ୍କଠାରୁ, ଯାହାଙ୍କ ଫେମିନିଷ୍ଟ ନିଆଁ ଓ ସିଗାରେଟ୍ ଧୂଆଁ ଉଭୟ ଅସହ୍ୟ ମନେହେଉଥିଲା ସନାତନବାବୁଙ୍କୁ । ବିଶେଷତଃ ସେ ଯେତେବେଳେ ତା'କୁ ଜାହିର୍ କରୁଥିଲେ ତାଙ୍କ ସିଝିଲା ଓଠ ଓ ଛଡ଼ାଛଡ଼ା କଷରା ଦାନ୍ତର ମାଧମରେ । ସେଦିନ ତାଙ୍କୁହିଁ ଆଶ୍ଚର୍ଯ୍ୟ ହୋଇ ଅନେଇବାକୁ ପଡୁଥିଲା ତାଙ୍କ ନୀରବ ବଙ୍ଗାଳୀ ସ୍ୱାମୀଟିକୁ । ଦେଖିବାକୁ ମନ୍ଦ ନୁହଁନ୍ତି ଭଦ୍ରଲୋକ ଏବଂ କେଉଁ ମର୍ଚ୍ଚାଣ୍ଟ୍ ଅଫିସ୍‌ରେ ମୋଟା ଦରମା ପାଆନ୍ତି ବୋଲି ଶୈଳ କହୁଥିଲା । କିନ୍ତୁ ସେ କେମିତି କାହିଁକି ବାହାହେଲେ ଏଇ ଭିନ୍ନଦେଶୀୟା ଭୈରବୀଙ୍କୁ ?

ଏମିତି ଏକାଧିକ ଚରିତ୍ରମାନଙ୍କୁ ତାଙ୍କ ଡ୍ରଇଂରୁମ୍ ଓ ଡାଇନିଂ ରୁମ୍‌ରେ ବସେଇ ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟ (ହୁଏତ ମୁଖ୍ୟତଃ ପେୟ, ଅତିଥିଙ୍କ ରୁଚି ଅନୁଯାୟୀ) ଦ୍ୱାରା ଆପ୍ୟାୟିତ କରିବାକୁ ପଡ଼ିଛି । କାରଣ ସେମାନଙ୍କ ନାଆଁ ରହିଛି କେ-ବି-କେଙ୍କ ତାଲିକାରେ । କେ-ବି-କେ କୁଆଡ଼େ କହିଛନ୍ତି ଯେ କାହାରିକୁ ଛାଡ଼ିବ ନାହିଁ, କାରଣ କହିହେବ ନାହିଁ କାହାର କିଭଳି ଗୋପନ କ୍ଷମତା ରହିଛି କାହା ଉପରେ । କୋଉ ବାହାର ଲୋକ ଭାବିପାରିବ କି ଯେ ଖୋଦ୍ ବାଣୀସନ୍ତାନ, ଡକ୍ଟର ରଞ୍ଜନ ଶ୍ରୀବାସ୍ତବ, ଗଂଗୋତ୍ରୀ ବୋର୍ଡ୍‌ର ଚେୟାରମ୍ୟାନ୍, ସେ କିଭଳି ଅନୁଗତ ପ୍ରାକ୍ତନ ସୁନ୍ଦରୀ ଓ ସୁବିଖ୍ୟାତ ଶିଳ୍ପପତି ସ୍ୱର୍ଗତ ବିଧୁସେନଙ୍କ ବିଧବାଙ୍କ ପ୍ରତି ? 'ଯେତେକ ସ୍କାଣ୍ଡାଲ୍ ମାଲୁମ୍ ଆମ କୁଳଭାଇନାଙ୍କୁ !' — ଶୈଳ କହିଲା ପରିହାସ ଛଳରେ । କିନ୍ତୁ ଦାବୀ କଲା ଯେ ରୋମୀ ସେନ୍ ମଧ ଜଣେ ସୁପ୍ରସିଦ୍ଧ ଲେଖିକା ଏବଂ ସାହିତ୍ୟପ୍ରେମୀ, ନ ହେଲେ ତାଙ୍କର ଏତେ ଖାତିର୍ ହେଉ ନ ଥାଆନ୍ତା ତା' ଦିଦିଙ୍କ ଦରବାରରେ । ମୋଟ କଥା ହେଉଛି ଯେ ତାଲିକାଭୁକ୍ତ କୌଣସି ନାଆଁ ତଥା ସେହି ଯୋଗାଯୋଗରୁ ସମ୍ଭୂତ ଆଉ କେଉଁ ଦରକାରୀ ବୋଲି ମନେ ହେଉଥିବା ନାଆଁକୁ ଛାଡ଼ିବାର ନୁହେଁ । ତେବେ କାହାକୁ ବହି

ଦି'ଖଣ୍ଡ ଉପହାର ଦେବ, କାହାକୁ ଘରକୁ ଖାଇବାକୁ ଡାକିବ ଅବା କାହାକୁ ରେଷ୍ଟୋରାଁରେ ଚା' କପେ ଖୁଆଇଲେ ଚଳିବ, ତାଙ୍କ ଯେଝା ଯେଝା ସମ୍ଭାବିତ ଓଜନ ଅନୁଯାୟୀ, ସେ କଥା ଭିନ୍ନ ।

ବେଳେବେଳେ ଦୟା ଆସେ ଶୈଳ ଉପରେ । ଝାଳନାଳରେ କାହିଲ୍ ହୋଇଗଲାଣି ବିଚାରୀ ! ଖାଲି ଏଇ କଲିକତା ନୁହେଁ । ତାଲିକାରୁ ମାତ୍ର କେଇଜଣ ଅଛନ୍ତି ଏଠି । ବାକୀ ସମସ୍ତେ ରହିଛନ୍ତି କାହିଁ କୁଆଡ଼େ । ସେମାନଙ୍କୁ ଧରିବାକୁ ପଡ଼ିବ । ତାଙ୍କ ପାଖକୁ ଯିବାକୁ ପଡ଼ିବ । ସାହିତ୍ୟିକାର ଦାବୀ ନେଇ କିମ୍ବା ସ୍ୱର୍ଗତା ଦିଦିଙ୍କ ବନ୍ଧୁ ହିସାବରେ । ସେଇଲାଗି କୋଉଠୁଁ କୋଉଯାଏଁ ଘୂରି ଆସିଲାଣି ସେ ଏଇ ବର୍ଷକ ଭିତରେ । ଲକ୍ଷ୍ନୌ, ଏଲାହାବାଦ୍, ଗୌହାଟୀ, ହାଇଦ୍ରାବାଦ୍, ତିରୁଅନନ୍ତପୁରମ୍, କେଉଁଠି ଭଲା ନାହାନ୍ତି ତାଲିକାଭୁକ୍ତ ଲୋକେ ତଥା ତାଙ୍କ ବିଶିଷ୍ଟ ଆତ୍ମୀୟଗଣ ? କୋଉ ବିରାଟ ସାହିତ୍ୟିକ ଓ ପତ୍ରକାର ଶଙ୍କରଜୀଙ୍କୁ ସେ କୁଆଡ଼େ ଅବମାନନା କରିଥିଲା, ତାଙ୍କ ଆମନ୍ତ୍ରଣ ରକ୍ଷା କରିପାରି ନ ଥିଲା । ତେଣୁ ସେଠିକି ସେ ଦୌଡ଼ିଲାଣି କାହିଁରେ କେତେ ଥର ଏବଂ ପ୍ରତିଥର ଫେରିଆସି କୁହେ ଯେ ତା' କବିତାର 'ରିଭିଉ' ବାହାରିବ ଏବେ, ତାଙ୍କ 'ତକ୍ଷଶିଳା' ପତ୍ରିକାରେ । ସତେକି ସେଇଥିରେ ତା'ର ଶ୍ରମ ସାର୍ଥକ ହେବ ବୋଲି ମୋର ବୁଝିବା ଉଚିତ । କିଓ, ମୁଁ କ'ଣ ତମକୁ ପଚାରୁଛି ସେ ବିଷୟରେ ?

କଥା ହେଉଛି ଯେ ତମେ ନିଜକୁ କଷ୍ଟ ଦେଉଛ, ଉଚିତରୁ ଅଧିକ । ଆଉ କିଛି ନୁହେଁ । ମୋର ଟଙ୍କା ସରିଯାଉ ନାହିଁ କି କୋଉ ଘରକରଣା ନଷ୍ଟ ହୋଇଯାଉ ନାହିଁ ମୋର । ତମ ସ୍ୱାମୀର ଯଥେଷ୍ଟ ଅର୍ଥବଳ ଓ ଲୋକବଳ ଅଛି ତମ ସାହିତ୍ୟ ପିପାସାକୁ ମେଣ୍ଟାଇବା ପାଇଁ । କିନ୍ତୁ ଏଇ ଗଂଗୋତ୍ରୀମାନିଆଟା ଟିକିଏ ବେଶି ହୋଇଯାଉ ନାହିଁ କି ?...

ସନାତନବାବୁ ଅନ୍ୟମନସ୍କ ହୋଇ ପଡ଼ିଥିଲେ ଏମିତି ଭାବୁ ଭାବୁ ଏବଂ ପୁଣି ସେଇ ଆଶଙ୍କା ତାଙ୍କ ମନକୁ ଆସୁଥିଲା — ଧର ଯଦି ଏଇ ପରମ ବାଞ୍ଛିତ ଲଡ୍ଡୁ ନ ମିଳିଲା ତା'କୁ ! ଭଗବାନ୍ ନ କରନ୍ତୁ, କିନ୍ତୁ ଯଦି...

ସେଇଠୁଁ ତାଙ୍କର ଚେତା ପଶିଲା ଯେ କେ-ବି-କେ ଡବଲ୍ ଅଣ୍ଡରଲାଇନ୍ କରିଛନ୍ତି ଏଇ ଭଦ୍ରଲୋକଙ୍କ ନାଆଁ ତଳେ । ଶୈଳ ବି' କହୁଥିଲା ଯେ ସେ ଖୋଦ୍ ରବୀନ୍ଦ୍ରନାଥଙ୍କ ହାତରୁ ପୁରସ୍କାର ପାଇଛନ୍ତି ସ୍କୁଲ୍ ଛାତ୍ର ଥିଲାବେଳେ, କେଉଁ କବିତା ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଲାଭ କରି । ଏହେତୁ ତାଙ୍କ

କାବ୍ୟପ୍ରତିଭା ଅନସ୍ୱୀକାର୍ଯ୍ୟ ଏବଂ ତାଙ୍କ ସୁପାରିଶକୁ ବୋର୍ଡ଼୍‌ର କୌଣସି ସଦସ୍ୟ ସହଜେ କାଟି ଦେଇପାରିବେ ନାହିଁ । କିନ୍ତୁ ସେ କ୍ୟାଲ୍‌କାଟା କର୍ପୋରେସନ୍‌ର ଦୁର୍ନୀତି କି ଗତ କୁକୁର ପ୍ରଦର୍ଶନୀର ଚମତ୍କାରିତା ବିଷୟରେ କ'ଣ ସବୁ କହୁଛନ୍ତି । କିଛି କହୁ ନାହାଁନ୍ତି କାହିଁକି ଶୈଳର ସାହିତ୍ୟ କି ଆଉ କାହାର ସାହିତ୍ୟ ଉପରେ ? ଅସଲ ଜିନିଷଟାକୁ ଏମିତି ଆଡ଼େଇଦେଉଛନ୍ତି କାହିଁକି ? ସନାତନବାବୁ ପ୍ରମାଦ ଗଣିଲେ ଏବଂ ନିଜକୁ ଦୋଷ ଦେଲେ ଯେ ତାଙ୍କର ମଧ୍ୟ ଜାଗ୍ରତ ରହି କିଛି କରିବା ଉଚିତ ଥିଲା, ମାନେ ବାର୍ତ୍ତାଳାପର ମୋଡ଼କୁ ଟିକିଏ ବଦଳେଇ ଦେବାଲାଗି ଚେଷ୍ଟା କରିବା...

ଏହି ପରିସ୍ଥିତିରେ ଅମୃତ ପ୍ରାୟ ମନେ ହେଲା ପାର୍ଥ ଚକ୍ରବର୍ତ୍ତୀଙ୍କ ପଦୁଟିଏ କଥା, ମିଷ୍ଟିଦହି ଓ ସନ୍ଦେଶ ଖାଇଲା ଉତ୍ତାରୁ । କହିଲେ,

"ଆମି ତୋମାର୍ କବିତା ପଡ଼େଛି ଶୈଳ । ଭାଲୋ ଲେଖୋ । କିନ୍ତୁ ଆରୋ ଆରୋ ଅନୁବାଦ୍ ଚାଇ, ବାଙ୍‌ଲାତେ, ହିନ୍ଦୀତେ, ଇଂରେଜୀତେ । ନା ହଲେ ତୁମି ସୁଧୁ ଉଡ଼ିଶ୍ୟାର କବି ହୟେ ଥେକେଯାବେ — ବୁଝ୍‌ତେ ପାର୍‌ଛୋ ଆମି କି ବଲ୍‌ତେ ଚାଇ ?"

"ଆଉ ଗୋଟିଏ ସନ୍ଦେଶ ନିଅନ୍ତୁ ସାର୍ ।"

"ନା ଥାକ୍... ଆଚ୍ଛା ଦାଓ ଯାକ୍‌ଟା..."

ଶୈଳର ମୁହଁ ଝଲିଉଠୁଥିଲା । ଚକ୍ରବର୍ତ୍ତୀ ମହାଶୟଙ୍କଠାରୁ ଗୋଟାଏ ଠିକଣା ଇଙ୍ଗିତ, ଆଶ୍ୱାସନା ଏବଂ ଉପଦେଶ ପାଇଲା ପରି । ସଂଦେଶ ପରେ ସେ ମିଷ୍ଟି ଦହି ମଧ୍ୟ ଭରିଦେଲା ଚକ୍ରବର୍ତ୍ତୀଙ୍କ ପାତ୍ରରେ, ତାଙ୍କ ଅଧା-ନାହିଁକୁ ଅମାନ୍ୟ କରି ।

ସନାତନବାବୁ ଖୁସି ହେଲେ ଯେ ଆଜିକାର ଆତିଥ୍ୟ-ଉପଚାର ସଫଳ ହୋଇଛି । ମଧ୍ୟ ତାଙ୍କ ମନକୁ ଆସିଲା ଯେ ମୋଟାମୋଟି ଆଜି ସାରା ଦିନଟା ହିଁ ସଫଳ ଓ ସୁଖକର । ଅନ୍ତତଃ ଅପରାହ୍ଣରୁ ସନ୍ଧ୍ୟାଯାଏଁ, ଚିତ୍ରାଙ୍ଗଦା ମ୍ୟାନ୍‌ସନ୍‌ସ୍‌ର ଚାରିଶହ ପଞ୍ଚାବନ ନମ୍ବର ଫ୍ଲାଟ୍‌ରୁ ଆରମ୍ଭ କରି ।

କହିବା ବାହୁଲ୍ୟ ଯେ ତାଲିକାର ଅତି-ବିଶିଷ୍ଟ ସଭ୍ୟ ପାର୍ଥ ଚକ୍ରବର୍ତ୍ତୀଙ୍କ ସୁପାରିଶ ଅନୁଯାୟୀ ଶୈଳ ଲାଗିପଡ଼ିଲା ଅଧିକରୁ ଅଧିକ ଅନୁବାଦ କରାଇବାରେ । ବାନ୍ଧବୀ ପଲ୍ଲବୀ ମିତ୍ରଙ୍କୁ ସେ ଭୁଲିଯାଇଥିଲା ଆପାତତଃ, କାରଣ ସେ ତାଲିକାର କେହି ନୁହେଁ ଏବଂ କୁଳଭାଇନା ମଧ୍ୟ ଅଳ୍ପବହୁତ ଆକ୍ଷେପ କରି କହିଥିଲେ ସେଦିନ ପୁସ୍ତକ ଉନ୍ମୋଚନ ସଭା ବିଷୟରେ, ଯାହାକୁ ପଲ୍ଲବୀ ଆୟୋଜନ କରିଥିଲା ।

କିନ୍ତୁ ବର୍ତ୍ତମାନ ସେ ପୁଣି ପଲ୍ଲବୀଙ୍କୁ ଘନ ଘନ ଟା' ଖାଇବାକୁ ଡାକିଲା ଏବଂ ତାଙ୍କୁ ପ୍ରବର୍ତ୍ତାଇଲା ଆଉ ଟିକିଏ ଆଗେଇ ଯିବାକୁ, ଏଇ ଅନୁବାଦ ଜିନିଷଟାକୁ ନେଇ । ଶୈଳର ଅନୁବାଦ । ରାମହରିଙ୍କର ଅନୁବାଦ କେଉଁଯାଏଁ ଗଲା ବୋଲି ପଚାରିବା ଅନାବଶ୍ୟକ ବୋଲି ମନେ କଲା । ଏଣେ ଶଙ୍କରଜୀଙ୍କ ପାଖକୁ ପୁଣି ଥରେ ଦି'ଥର ଯିବାକୁ ପଡ଼ିଲା, ହିନ୍ଦୀ ଅନୁବାଦର କ୍ରମକୁ ତ୍ୱରାନ୍ୱିତ ଏବଂ ଅଧିକ ବ୍ୟାପକ କରିବାପାଇଁ । ଇଂରେଜୀ ପାଇଁ ତ ଖୋଦ୍ ରୋମୀ ସେନ୍ ଅଛନ୍ତି । ଅଦ୍ୱିତୀୟା ରୋମୀ ସେନ୍ । ପରମ ହିତୈଷିଣୀ ରୋମୀ ଦି' । ଦିବ୍ୟଜ୍ୟୋତି ପୁରସ୍କାର ପାଇବା ଦିଗରେ ତାଙ୍କର ଅବଦାନ କିଛି କମ୍ ନୁହେଁ, ଯାହା କୁଳଭାଇନା କହୁଥିଲେ । ଶୈଳ ତାଙ୍କୁ ମଧ୍ୟ ଚିଠି ଲେଖିଲା ଏବଂ ସେ ତା'ର ସସ୍ନେହ ଉତ୍ତର ଦେଇଥିଲେ, ପ୍ରତିଶ୍ରୁତିପ୍ରାୟ ଆଶ୍ୱାସନା ସହ । ଲେଖିଥିଲେ —''ହାଓ କ୍ୟାନ୍ ଆଇ ଫରଗେଟ୍ ୟୁ ଡିଅର୍, ମାଇ ବିଲଭେଡ୍ ନୀଲିମା'ଜ୍ ଗାର୍ଲ ?' ଏହିପରି ଭାବରେ ତା'ର ସାତୋଟି କବିତା ସଙ୍କଳନ ଭିତରୁ ପାଞ୍ଚଟିର ହିନ୍ଦୀ ଅନୁବାଦ ଚାରୋଟିର ଇଂରାଜୀ ଅନୁବାଦ, ଏବଂ ଛଅଟିର ବଙ୍ଗଳା ଅନୁବାଦ କରାଯାଇପାରିଲା, କୁଳଭାଇନାଙ୍କ ପ୍ରସ୍ଥାନର ଦେଢ଼ବର୍ଷ ଭିତରେ ଏବଂ ସେ ସବୁକୁ ମୋଟାମୋଟି ଉତ୍କୃଷ୍ଟ ଧରଣର ବୋଲି କହିବାକୁ ହେବ । ହେଲେ ଯେଉଁ ପ୍ରଚଣ୍ଡ ଉଦ୍ୟମ କରିବାକୁ ପଡ଼ିଥିଲା ସେଥିପାଇଁ ଏବଂ ଯେଉଁ ପ୍ରକାର ସଫଳତା ମିଳିଲା ସେହି ଉଦ୍ୟମରୁ, ତା'ର ସାମାନ୍ୟ ଆଭାସ ମିଳିବ କେବଳ ଏହି ଗୋଟିଏ ତଥ୍ୟରୁ ଯେ ଶୈଳର ଶେଷ ହିନ୍ଦୀ ଅନୁବାଦ 'ଚୁଲ୍‌ବୁଲୀ ଚାଁଦ୍'ର କପି ପହଞ୍ଚିପାରିଲା ତାଲିକାରେ ଥିବା ଶତକଡ଼ା ପଞ୍ଚସ୍ତରୀ ଜଣ ଲୋକଙ୍କ ପାଖରେ, ଚଳିତ ବର୍ଷର ଗଂଗୋତ୍ରୀ ପୁରସ୍କାର ଘୋଷିତ ହେବାର ମାତ୍ର ଦି'ମାସ ଆଗରୁ ।

କିନ୍ତୁ ସେଥିପାଇଁ କେବଳ ଶୈଳକୁ ଧନ୍ୟବାଦ ଦେବା ଉଚିତ ନୁହେଁ । ତା'ର ପ୍ରାଣପ୍ରିୟ ସ୍ୱାମୀ ସନାତନବାବୁଙ୍କୁ ମଧ୍ୟ ବିଶେଷ ଧନ୍ୟବାଦ ଦେବା ଉଚିତ । କାରଣ ଅଧିକାଂଶ ଅନୁବାଦ ପାଇଁ ବେଶ୍ କିଛି ଖର୍ଚ୍ଚ କରିବାକୁ ପଡ଼ିଥିଲା ଏବଂ ସନାତନବାବୁ ଅକୁଣ୍ଠ ଚିତ୍ତରେ ତା'ର ଭାର ବହନ କରିଥିଲେ । କେବଳ ସେତିକି ନୁହେଁ, ତାଙ୍କୁ ମଧ୍ୟ ପଲ୍ଲବୀ ମିତ୍ରଙ୍କ ସ୍ୱାମୀ ଏବଂ ଅଧସ୍ତନ ସହକର୍ମୀ ମନତୋଷ ମିତ୍ରଙ୍କ ଉନ୍ନତିକୁ ବିଶେଷ ତ୍ୱରାନ୍ୱିତ କରିବାକୁ ପଡ଼ିଥିଲା, ଯାହାକୁ ଅନେକେ ଉଚିତରୁ ଅଧିକ ବୋଲି କହିପାରନ୍ତି । କିନ୍ତୁ ସଙ୍କୋଚ ,ସନାତନବାବୁଙ୍କ ଦ୍ୱିଧା ଯଥାଶୀଘ୍ର କଟିଯାଇଥିଲା ସେ ଦିଗରେ । ଯେତେବେଳେ ସେ ନିଜକୁ ବୋଧ ଦେଇପାରିଲେ ଯେ ଯେତେହେଲେ ମନତୋଷ ଜଣେ ଯୋଗ୍ୟ ଲୋକ ଏବଂ ଯଦିବା ତାଙ୍କର ଉନ୍ନତିକୁ ଟିକିଏ ଆଗେଇ ଦିଆଗଲା ଏବଂ ସେଥିଯୋଗୁଁ ଅନ୍ୟ

କାହାର ଉନ୍ନତିରେ ଟିକିଏ ବିଳମ୍ବ ଘଟିଲା, ସେଥିରେ ବିଶେଷ କିଛି ଯାଏ ଆସେ ନାହିଁ । ତା'ଛଡ଼ା ବ୍ୟକ୍ତିବିଶେଷର ଉନ୍ନତି ଠାରୁ ଦେଶର ସାହିତ୍ୟିକ ପ୍ରଗତି ଅଧିକ ମୂଲ୍ୟବାନ । ପୂର୍ଣ୍ଣଚ୍ଛେଦ ।

ଇତିମଧ୍ୟରେ ସନାତନବାବୁ ମଧ୍ୟ ଅନ୍ୟ ଏକ ଧରଣର ସଫଳତା ପାଇଁ ଲାଗିପଡ଼ିଥିଲେ । ଯେପରିକି କାହାରି ମନରେ (ଅର୍ଥାତ୍ ନିଜ ଭିତରେ ଥିବା କୋଉ ଭୂତର ମନରେ) କୌଣସି ପ୍ରକାର ସନ୍ଦେହ ରହିବ ନାହିଁ ଯେ ଚିତ୍ରାଙ୍ଗଦା ମ୍ୟାନ୍‌ସନ୍‌ସ୍‌ରେ ଘଟିଥିବା ଘଟଣାଟାକୁ ଯଥାର୍ଥରେ 'ଘଟଣା' ବୋଲି କୁହାଯିବ ନାହିଁ । ଅର୍ଥାତ୍ ଯାହାର କିଛି ତାତ୍ପର୍ଯ୍ୟ ଅଛି, ଦୂଷଣୀୟ ତାତ୍ପର୍ଯ୍ୟ । ସେ ପୁନର୍ବାର ସେହି ଭୂତର ଆଖିରେ ଆଙ୍ଗୁଳି ଗେଞ୍ଜି ପ୍ରମାଣ ବାଢ଼ିଦେଇପାରିବେ ଯେ ତାଙ୍କ ଭଲ୍‌ପାଇବାର ସବୁଠାରୁ ଅସାର, ହେଲେ ସାଧାରଣ ମତରେ ସାର ଏବଂ ଅଭ୍ରାନ୍ତ ଲକ୍ଷଣ ମଧ୍ୟ ଅକ୍ଷୁଣ୍ଣ ହୋଇ ରହିଛି । ସେ ପୁଣି ଥରେ ସ୍ୱପତ୍ନୀ ଶୈଳର ଅତି ଅନ୍ତରଙ୍ଗ ହୋଇପାରିବେ । ତା' ଦେହର ଯଜ୍ଞରେ ଆହୁତି ଦେଇ, ନିଜକୁ ସଁପି ଦେଇ । ପୁଣି ଥରେ, ଅନେକ ଦିନ ପରେ ନିବିଡ଼ତମ ସମ୍ପୂର୍ଣ୍ଣତାର ପରାକାଷ୍ଠା ଦେଖାଇ ।

ସେ ଚିତ୍ରାଙ୍ଗଦା ମ୍ୟାନ୍‌ସନ୍‌ସ୍‌କୁ ତଥାପି ଯାଉଥିଲେ ମଝିରେ ମଝିରେ । ପ୍ରିୟନାଥବାବୁ ଥିଲାବେଳେ, ମଧ୍ୟ ନ ଥିଲାବେଳେ । ଯେପରିକି ସେମାନଙ୍କ ବନ୍ଧୁତ୍ୱର କ୍ରମରେ କେଉଁ ନୂଆ କି ଅଖାଡୁଆ କଥା ଆସି ପଶିଯାଇଛି ବୋଲି ମନେ ହେବ ନାହିଁ । ଚିନ୍ମୟୀ ପୂର୍ବପରି ହସୁଥିଲେ, ତାଙ୍କ ସାଙ୍ଗରେ ଥଟ୍ଟା ନକଲ ହେଉଥିଲେ ଏବଂ ତାଙ୍କୁ ତା' ସରବତ୍‌ରେ ଆପ୍ୟାୟିତ କରୁଥିଲେ ଚିନିର ମିଠାରେ ତିଳେମାତ୍ର ପରିବର୍ତ୍ତନ ନ ଆଣି । କିନ୍ତୁ ସେଦିନର ସେଭଳି ଘଟଣାର ପୁନରାବୃତ୍ତି ହୋଇ ନ ଥିଲା । ସନାତନବାବୁ ବିଶେଷ ସଜାଗ ଥିଲେ ସେ ଦିଗରେ ।

ଏଣେ ଶୈଳ ସାରାଦିନର ଧାଁଧପଡ଼ ପରେ କ୍ଳାନ୍ତ ହୋଇ ଶୋଇପଡୁଥିଲେ ମଧ୍ୟ ତା' ଚାହାଣିରେ ଗୋଟାଏ ନୂତନ ଜ୍ୟୋତି ପରିସ୍ଫୁଟ ହେଉଛି ବୋଲି ସନାତନବାବୁଙ୍କର ମନେ ହେଉଥିଲା । ସତେକି ସେ ତା' ଅନ୍ତଃକରଣରେ ଜାଣି ସାରିଲାଣି ଯେ 'ଗଂଗୋତ୍ରୀ' ତା' ହାତକୁ ଆସିବହିଁ ଆସିବ । କେହି ତା'ର ଗତିପଥକୁ ରୋଧିପାରିବ ନାହିଁ । ସେହେତୁ ଦିନ ପରେ ଦିନ ସେ ଆଶାନ୍ୱିତ ହୁଅନ୍ତି ଯେ ଅନେକ ଦିନ ପରେ ଆଜି ରାତିରେ ଆସିବ ସେହି ସମ୍ପୂର୍ଣ୍ଣ ସଂଗମର ବେଳା । ଦିନବେଳେ ଯାହାର ଦେଖା ମିଳେ ନାହିଁ, ଯେଉଁଥିପାଇଁ ଅପରାହ୍ଣର ବିଶ୍ରାମ ଅନ୍ୟ କେଉଁଠି ରଚିବାକୁ ପଡୁଥିଲା ତାଙ୍କୁ ଏବଂ ବିଛଣା ନ ଧରୁଣୁ ଯେ ଚଟ୍‌କିନି ଶୋଇଯାଏ ଏବଂ ତାଙ୍କଠାରୁ ଆପେ ଆପେ ଦୂରେଇଯାଏ, ସେ

ଆଜି ଆସିବ ଏତେଦିନକେ ତାଙ୍କର ଅତି ନିକଟକୁ । ଖାଲି ତାଙ୍କ ଛାତିରେ ମୁଣ୍ଡ ଗୁଞ୍ଜି ଦ୍ୱିତୀୟ ପର୍ଯ୍ୟାୟର ନିଦ ଓ ସ୍ୱପ୍ନକୁ ସାରିଦେବା ପାଇଁ ନୁହେଁ, ମଧ୍ୟ ଅନ୍ତିମ ଆନନ୍ଦଟିକୁ ଦେବାପାଇଁ ଓ ନେବା ପାଇଁ । କିନ୍ତୁ କେଜାଣି କେମିତି ସଫଳତା ଖସିଯାଏ ତାଙ୍କ ହାତରୁ । ଉପକ୍ରମଣିକା ସୁରୁ ନ ହେଉଣୁ ସେ ସେମିତି ଶୋଇପଡ଼େ ସବୁଦିନ ପରି । ହୁଏତ ଆଜିକାଲି ସେ ବେଶି ଭିଡ଼ି ଧରୁଛି ତାଙ୍କୁ ଏବଂ ତାଙ୍କ ଛାତିରେ ମୁଣ୍ଡ ଗୁଞ୍ଜି ଦେଉଛି । କିନ୍ତୁ ଶେଷ କଥାଟି ସମ୍ପନ୍ନ ହୋଇପାରୁ ନାହିଁ । ହେଲେ ସନାତନବାବୁ କେବଳ ନିଜକୁ ଭୀରୁ ବୋଲି କହୁଛନ୍ତି । କହୁଛନ୍ତି ଯେ ଏମିତି ହେବା ସ୍ୱାଭାବିକ, ଅଭ୍ୟାସଟା ଛାଡ଼ି ହୋଇଗଲେ । ଏବଂ ସ୍ଥିର କରୁଛନ୍ତି ସେ ଯଥାଶୀଘ୍ର ଓ ଯଥା ସମୟରେ ଆଗେଇ ଯିବେ ଏବଂ କରିବେ ଯାହା କରିବା କଥା ।

ସେଇଠୁଁ ଦିନେ ଆସି ପହୁଞ୍ଚିଲା ସେଇ ଅମୃତବେଳା । ସନାତନବାବୁଙ୍କର ମନେହେଲା ଯେ ଯାକୁ ହିଁ କୁହନ୍ତି ସବୁଜ ସଙ୍କେତ । ଶୈଳର ଆନନ୍ଦ ଲହରୀ କୂଳ ଭାଙ୍ଗି ଉଛୁଳି ଉଠୁଛି । ସତେକି କେଉଁ ହଜିଲା ଧନ ମିଳିଯାଇଛି ତା'କୁ । ତେଣୁ ସେ ନିଜକୁ ଅଜାଡ଼ିଦେବ, ତାଙ୍କ ଆଡୁ ଯତ୍‌ସାମାନ୍ୟ ଆଗ୍ରହର ଲକ୍ଷଣ ଦେଖିଲେ । ନିଦଟାକୁ ବସେଇ ରଖିବ, କାରଣ ତା'ର ଅନେକ କିଛି ଦେବାକୁ ଅଛି ତା'ର ସ୍ୱାମୀକୁ, ଅନ୍ତରତମ ସାଥୀକୁ ।

ସେହେତୁ ସନାତନବାବୁ ଅଗ୍ରସର ହେଲେ । ବିଛଣାକୁ ଆସୁ ନ ଆସୁଣୁ । ଏବଂ ଶୈଳ ତା'ର ପ୍ରତିଦାନ ଦେଲା । ମନେହେଲା ସେ ଜଣାଇଦେଉଛି ଯେ ସେ ତଥାପି ତରୁଣାୟିତା । କେବଳ ତା' କାବ୍ୟରେ ନୁହେଁ, ମଧ୍ୟ ତା' ଦେହର କାମନାରେ, ତୃଷ୍ଣାରେ ।

ପ୍ରଥମେ ସେ ନିଜକୁ ଅଜାଡ଼ିଦେଲା ଶବ୍ଦରେ । ଯାହା କହିବା ପାଇଁ ତା' ପାଟି ଖଲବଲ ହେଉଥିଲା ଏତେବେଳଯାଏଁ । ସନାତନବାବୁଙ୍କ ଛାତିରେ ହାତ ବୁଲାଉ ବୁଲାଉ କହିଲା—

"ଜାଣିଛ ? ଆଜି ଗୋଟାଏ ଘଟଣା ଘଟିଛି । ଅପ୍ରତ୍ୟାଶିତ ଘଟଣା । ଯାହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । କହିବି, କହିବି କ'ଣ ହେଲା ?"

"କ'ଣ ହେଲା ?" ସନାତନବାବୁ ପଚାରିଲେ, ଉତ୍କଣ୍ଠାରେ ଉତ୍ତୋଳିତ ହୋଇ ।

"ରାମହରିବାବୁ ହଠାତ୍ ଆସି ପହୁଞ୍ଚିଗଲେ ଏଠି । ଖୋଦ୍ ରାମହରି ଦାସ । ଏଇ ଦିନ ତିନିଟା ବେଳକୁ । ଆସିଥିଲେ କେଉଁ ଇଂରେଜୀ ସେମିନାର୍‌ରେ ଯୋଗଦେବା ପାଇଁ । ମୋ ଠିକଣା ଖୋଜି ଖୋଜି ହାଜିର୍ ହୋଇଗଲେ ଏଠି । କହିଲେ,

ମୁଁ ଯେମିତି ହେଲେ ଖୋଜି ବାହାର କରି ଥାଆନ୍ତି ତମକୁ । କାରଣ ମୋର ଗୋଟାଏ ଜରୁରୀ କଥା କହିବାର ଅଛି । ଖାଲି ତମକୁ —''

ସନାତନବାବୁ କେବଳ ଅଟକିଯାଇ ନ ଥିଲେ ସେତେବେଳକୁ । ତାଙ୍କର ସର୍ବାଙ୍ଗ ଶିଥିଳ ହୋଇଗଲା ।

ରାମହରି ଦାସ ! ସେଇ ରାମହରି ଦାସ ଯେ ତଥାପି ଦୂରେଇ ଯାଇ ନାହିଁ ଶୈଳର ମନ ଜଗତରୁ, କଲିକତାକୁ ଆସିଲା ପରେ ମଧ୍ୟ । ଯିବ କେମିତି ମ ? ସେ ତା' ପ୍ରେରଣା ପରା ?

ଶୈଳ କହି ଚାଲିଥିଲା — ''ଜରୁରୀ କଥା କ'ଣ ଜାଣିଛ ? କହିଲେ ଯେ ତାଙ୍କ ନାଆଁ ପ୍ରସ୍ତାବ କରାଯାଉଥିଲା ଗଂଗୋତ୍ରୀ ପାଇଁ । କିନ୍ତୁ ଶୁଣିଲା କ୍ଷଣି ସେ ଲେଖି ପଠାଇଛନ୍ତି ଡକ୍ଟର ରଞ୍ଜନ ଶ୍ରୀବାସ୍ତବଙ୍କ ପାଖକୁ ଯେ ଦୟାକରି ତାଙ୍କୁ ସେଥିରୁ ମୁକ୍ତି ଦିଆଯାଉ । ସେ ସେଥିର ଆଗ୍ରହୀ ନୁହଁନ୍ତି । ତାଙ୍କର ସଂସାର ଭିନ୍ନ । ଅପରପକ୍ଷରେ ଓଡ଼ିଶାରୁ ଯଦି କାହାକୁ ଦିଆଯାଏ, ତା'ହେଲେ କେବଳ ଜଣେ ତା'କୁ ପାଇବାର ଯୋଗ୍ୟ । ତା' ନାଆଁ ଶୈଳଜା ପଣ୍ଡା ! କ୍ୟାନ୍ ୟୁ ବିଲିଭ୍ ଇଟ୍ ?

ମୋର ଗୋଟାଏ ଭୟ ଥିଲା ଓଡ଼ିଶାବାଲାଙ୍କୁ ନେଇ । ଆମ ଲୋକମାନଙ୍କ ସାଙ୍ଗରେ ଠିକଣା ସମ୍ପର୍କ ବାନ୍ଧି ହେଉ ନ ଥିଲା, କୁଳଭାଇନାଙ୍କ ନିର୍ଦ୍ଦେଶ ଅନୁଯାୟୀ, ନୂଆ ବହି ଖଣ୍ଡେ ଖଣ୍ଡେ ଡାକରେ ପଠେଇବା ଛଡ଼ା । କାଳେ କିଏ କ'ଣ ଭାବିବ ବୋଲି । ଗାଆଁକନିଆଁ ସିଂଘାଣିନାକୀର ସ୍ୱାଭାବିକ ଭୟ । କିନ୍ତୁ ଭଗବାନଙ୍କ କୃପା, ନିଜେ ରାମହରିବାବୁ, ଓଡ଼ିଆ କବିଙ୍କର ମୁକୁଟମଣି... ରିଏଲି, କ୍ୟାନ୍ ୟୁ ବିଲିଭ୍ ଇଟ୍ ?''

...ହଁ, ଶୈଳ, ଆଇ କ୍ୟାନ୍ ବିଲିଭ୍ ଇଟ୍ । ସବୁ ବିଶ୍ୱାସଯୋଗ୍ୟ, ଗ୍ରହଣଯୋଗ୍ୟ ତମ ସାହିତ୍ୟ ସଂସାରରେ । କାରଣ ସେଠି କେଉଁ ଶିଡ଼ି ପଡ଼ି ନାହିଁ, ଆସିଷ୍ଟାଣ୍ଟ ମ୍ୟାନେଜରରୁ ମ୍ୟାନେଜର୍ ପଦକୁ ଉଠିବାଲାଗି । ଅବା କେଉଁ ଠିକଣା ମାପକାଠି ନାହିଁ, ଯେଉଁଥିରେ କିଏ ବଡ଼, କିଏ ସାନ ବୋଲି ସ୍ଥିର କରି ହେବ । ଥିଲେ ଥିବ ହୁଏତ, କିନ୍ତୁ ମୁଁ ତା'ର ଭେଦ ବୁଝିବା ପାଇଁ ଅକ୍ଷମ । ବୁଝିପାରୁଥିଲେ କ'ଣ ମୁଁ ତମ ଦି'ଜଣଙ୍କ ଭିତରେ ଥିବା ସମ୍ପର୍କର ମହତ୍ତ୍ୱକୁ ଗ୍ରହଣ କରି ନେଇପାରି ନ ଥାଆନ୍ତି ?...

ଶୈଳ କୁରୁଳି ଖାଉଥାଏ ସାର୍‌ଙ୍କର ଏଇ ନାହିଁ-ନ-ଥିବା ସ୍ୱାର୍ଥତ୍ୟାଗରେ ଅଭିଭୂତ ହୋଇ । କହିଲା —

"କହିଲ, କେତେ ମହାନ୍ ଆମର ଏଇ କବି ଜଣକ ! କି ଅପୂର୍ବ ସ୍ୱାର୍ଥତ୍ୟାଗ ! କିନ୍ତୁ ମୁଁ ଲୋଭୀ, ମୁଁ ତାଙ୍କୁ ଜୋର୍ କରି କହିପାରିଲି ନାହିଁ ଯେ ନାଇଁ, ମୁଁ ଆପଣଙ୍କର ଦାନ ଗ୍ରହଣ କରିପାରିବି ନାହିଁ । ଖାଲି ଏତିକି କହିଲି ଏବଂ ତା' ମୋ ମନର କଥା, ଯେ ସେ ଅନେକ ଉର୍ଦ୍ଧ୍ୱରେ ଏଇ ସାନ ସାନ ପୁରସ୍କାର ଠାରୁ । ଯଦି କେଉଁ ପୁରସ୍କାରଟିକୁ ସେ ସ୍ୱୀକାର କରି ନେଇପାରନ୍ତି, ତା' ହେଉଛି 'ବାଣୀସଂତାନ'ର ପୁରସ୍କାର । ଭାରତର ସର୍ବଶ୍ରେଷ୍ଠ ସାରସ୍ୱତ ସମ୍ମାନ । ମୋ କଥାରେ ସେ ମୁରୁକିହସା ଦେଲେ । ସତେକି ମୁଁ ଗୋଟାଏ ମଜା କଥା କହୁଛି । ବିଚିତ୍ର ଭଦ୍ରଲୋକ । ମହାନ୍ ! ଅତି ମହାନ୍..."

...ହଁ, ମହାନ୍ । କିନ୍ତୁ କହିଲ ସେ କ'ଣ ତମ ପାଇଁ ? ମୁଁ ଜାଣେ ସେ ତମର ପ୍ରେମିକ ନୁହନ୍ତି । ସେଭଳି ଗୋଟାଏ ଲୋକ, ଏକାଧାରରେ ହେମାଳ ଓ କଦାକାର, ତା'କୁ କୈଳାସରେ ବସେଇଲେ କ'ଣ ସେ ଶିବ ହୋଇଯିବ ? ନା କୋଉ ପାର୍ବତୀ ମନ କରିବ ତା'କୁ ପାଇବା ପାଇଁ ? ଆଉ ତମ କବି-ଭାବ ବିଷୟରେ ମୁଁ ଯେତିକି ଜାଣେ, ତା'ର ରାଗରଙ୍ଗ କଦାପି ଏତେ ବିକୃତ ହୋଇ ନ ଥିବ ଯେ — ।

କିନ୍ତୁ କାହିଁକି ସେ ଭୂତଟା ଆବୁରି ଧରିଛି ତମକୁ, ଆଉ ତୁମେ ତା'କୁ ଛାଡ଼ିପାରୁ ନାହଁ ? ଛାଡ଼ିବ କ'ଣ ମ, ସେ ମାଡ଼ିବସିଛି ତମକୁ, ରୀତିମତ ମାଡ଼ିବସିଛି ! ତା' ପାଖକୁ ଫୋନ୍ ଆସିଲେ, ତମେ ଛିଞ୍ଚାଡ଼ି ଦିଅ ମୋ ହାତକୁ । ମନେଥିବ ସେ କଥା, ମୁଁ ଯେତେବେଳେ ଆନନ୍ଦରେ ତମକୁ କୁଣ୍ଢେଇବାକୁ ଯାଉଥିଲି, ତମେ ଦିବ୍ୟଜ୍ୟୋତି ପୁରସ୍କାର ପାଇଛ ବୋଲି ଜାଣିଲାରୁ । ତା'ର ଡାକରା ଆସିଲେ ତମେ ସବୁ ଛାଡ଼ିଛୁଡ଼ି ଦେଇ ପଳେଇଯାଅ ତା' ପାଖକୁ । ନୂଆ ବହିଟିଏ ବାହାରିଲେ, ତମେ ପ୍ରଥମେ ତା'କୁ ନାଗି ଦେଇଆସ । ନୂଆ କବିତାଟିଏ ବାହାରିଲେ ତମର ତର ସହେ ନାହିଁ, ତା'କୁଇ ପ୍ରଥମେ ଦେଖାଇ ଆସିବାପାଇଁ ।

ହଁ, ସେ ପ୍ରେମିକ ନୁହେଁ, ଭୂତ । କିନ୍ତୁ ରକ୍ତମାଂସଧାରୀ ଭୂତ । କୁ-ପୁରୁଷ ହେଉ କି ମହାପୁରୁଷ, ଯେତେହେଲେ ପୁରୁଷ । ସେଭଳି ଗୋଟିଏ ପୁରୁଷ ଥାଉ ଥାଉ ଆଉ ଅଭାବ କ'ଣ ତମର ? କେଉଁ ସ୍ୱାମୀର, ପ୍ରେମିକର, କି ଅନ୍ୟ କେଉଁ ସଂଜ୍ଞାବିଶିଷ୍ଟ ପୁରୁଷର ?

କବି ଶୈଳଜା ପଣ୍ଡା, ଭଲପାଇବା ନାଆଁରେ ମୁଁ କେମିତି ଏଭଳି ଗୋଟାଏ କାମ କରିବି ତମ ସାଙ୍ଗରେ, ଯାହା ମୁଁ କରିବାକୁ ବସିଛି, ତମେ ତାଙ୍କ ମହାନତା ନେଇ ଗଦ୍‌ଗଦ ହେଲାବେଳେ ? ଗୋଟାଏ ନିହାତି ନୀଚ, ଅସୁନ୍ଦର, ଖରାପ କାମ କଲାପରି ଲାଗିବ ନାହିଁ ମତେ ?...

ଏହିପରି ଭାବରେ ସେଦିନର ରାତି ମଧ୍ୟ ନିଷ୍ଫଳା ରହିଲା । ସନାତନବାବୁ ଧୀରେ ଧୀରେ ନିଜକୁ ମୁକୁଳେଇ ଆଣିଲେ ଶୈଳର ବାହୁବନ୍ଧନରୁ ଏବଂ ତା'କୁ ତା'ର ସୁଖନିଦ୍ରାରେ ଶୋଇବାକୁ ଦେଲେ ।

ଯଥାକ୍ରମେ ନିଜକୁ ଫେରିପାଇଲା ପରେ ଏବଂ ପୁଣି ଥରେ ନିଜର ଆତ୍ମବିଶ୍ୱାସରେ ବଳୀୟାନ୍ ହୋଇ ଅଫିସ୍‌ରେ ଉଚ୍ଚ ପଦାଧିକାରୀର ଲଗାମ ତୁଲେଇ, ଲଞ୍ଚଟାଇମ୍ ବେଳକୁ ଚିତ୍ରାଙ୍ଗଦା ମ୍ୟାନ୍‌ସନ୍‌ସ୍‌ରେ ଜଣେ ସୁସ୍ଥ, ସୌଖୀନ୍ ଏବଂ ରସିକ ବନ୍ଧୁର ଭୂମିକା ନିଭେଇବା ସମୟରେ ସନାତନବାବୁ ବାରମ୍ବାର କହିହେଲେ ନିଜକୁ—ବେଶ୍, ମୁଁ ସାହିତ୍ୟ ପାଇଁ ଅଯୋଗ୍ୟ । ଏକାନ୍ତ ଅକ୍ଷମ ତା'ର ଯେତେକ ଭାବାର୍ଥ ଓ ପୁରୁଷାର୍ଥକୁ ବୁଝିବାଲାଗି । ହେଲେ ମୁଁ ଆଉ ସବୁଥିକୁ ଫିଟ୍, ରୀତିମତ ଫିଟ୍ । ତେଣୁ ମୋର ଦୁଃଖ କରିବାର କିଛି ନାହିଁ । ଅଥବା ଗ୍ଲାନିର କାରଣ ନାହିଁ ଯେ ମୁଁ କାହା ପ୍ରତି କିଛି ଅନ୍ୟାୟ କରୁଛି । ବେଢ଼ା ବାହାରେ ଥିବା ଯବନଟାଏ କାହା ସାଙ୍ଗରେ ଲାଗିଲା କି ନ ଲାଗିଲା ସେଥିରେ କ'ଣ ଯାଏ ଆସେ ମନ୍ଦିର ଭିତରେ ଥିବା ଦେବତା କିମ୍ବା ତାଙ୍କ ପୂଜାରିଣୀର ?

ଏହାର କିଛିଦିନ ପରେ ଯେତେବେଳେ ସେ ଅନ୍ୟତମ ଅପରାହ୍ଣର ସୁଖଭୋଗ ଏବଂ ଶେଷ ପର୍ଯ୍ୟାୟର ତୃପ୍ତିବୋଧ ପରେ ବାହାରି ଆସୁଥିଲେ ଚିତ୍ରାଙ୍ଗଦା ମ୍ୟାନ୍‌ସନ୍‌ସ୍‌ର ଶୋଇବା ଘରୁ ଏବଂ ଡ୍ରଇଂରୁମ୍‌ରେ ଆସି ପହଞ୍ଚିଲେ ସୋଫା ଉପରେ ଥାଇ ଆଉ ଟିକିଏ ଅଳସ ଭାଙ୍ଗିବା ପାଇଁ, ସେ ଦେଖିଲେ ଯେ ଚିନ୍ମୟୀ କ'ଣ ବସି ଲେଖୁଛି ଲମ୍ବା ସୋଫା ଉପରେ । ଖାତାପତ୍ର ଖେଳା ହୋଇ ପଡ଼ିଛି ତା' ଆଗରେ । କଥା କଅଣ ? କୌତୂହଳବଶତଃ ସେ ପଚାରି ବସିଲେ —

"କ'ଣ କରୁଛନ୍ତି କି ମ୍ୟାଡ଼ାମ୍ ? ବ୍ରିଫ୍ ତିଆରି କରୁଛନ୍ତି ପ୍ରିୟନାଥବାବୁଙ୍କ ଡିଫାଇନ୍ ପାଇଁ, ନା ତାଙ୍କର କୋଉ ମହକିଲଙ୍କୁ ସନ୍ତୁଷ୍ଟ କରିବାଲାଗି ?"

ସସ୍ମିତା ଚିନ୍ମୟୀ ମୁହଁ ଟେକି ଅନେଇଲେ ସନାତନବାବୁଙ୍କୁ । ଅନେଇ ରହିଲେ ତାଙ୍କ ଉତ୍କଣ୍ଠାକୁ ବଢ଼େଇଲା ପରି । ସେଇଠୁଁ କହିଲେ,

"ନା, ମୁଁ କବିତା ଲେଖୁଛି ।"

"ହ୍ୱାଟ୍ ?? ସାହିତ୍ୟ !"

ଚିନ୍ମୟୀ ହସିଉଠିଲେ । ଆରେ ଭଦ୍ରଲୋକ ଡରିଗଲେ ନା କଅଣ ? ସେଇଠୁଁ କହିଲେ —

"ଓ-ନୋ ! ମୁଁ କ'ଣ କବି ହୋଇଛି ମିସେସ୍ ପଣ୍ଡାଙ୍କ ପରି ? ମୁଁ ସାହିତ୍ୟର ଧାର ଧାରେ ନାହିଁ । ଇଏ କବିତା ନୁହେଁ, ଗୀତ । ତୁଚ୍ଛା ଗୀତ । ଖାଲି ନିଜ ପାଇଁ, ନିଜକୁ ନିଜେ ଗୁଣୁଗୁଣୁ ହେବା ପାଇଁ, ଯେତେବେଳେ କେହି ମୋ ପାଖରେ ନ ଥିବେ..."

"ଥ୍ୟାଙ୍କ୍ ଗଡ୍ !" ସନାତନବାବୁଙ୍କ ପାଟିରୁ ବାହାରିଗଲା । ପରେ ସେ ନିଜକୁ କହିଲେ ଯେ ତାଙ୍କର ସେମିତି କହିବା ଉଚିତ ନ ଥିଲା । ଚିନ୍ମୟୀ ତା'ର ଭୁଲ୍ ଅର୍ଥ କରିଥିବ । ଭାବିଥିବ ଯେ ସେ ସାହିତ୍ୟର ଅନୁରାଗୀ ନୁହନ୍ତି । କିନ୍ତୁ ସେ ନିଜକୁ ସଂଶୋଧନ କରିବାର ବାଟ ପାଇଲେ ନାହିଁ ।

## ବାର

ଡକ୍ଟର ରଞ୍ଜନ ଶ୍ରୀବାସ୍ତବ ଅତି ଗମ୍ଭୀର ପ୍ରକୃତିର ଲୋକ ବୋଲି ମନେହୁଏ ବାହାରକୁ । ସତେକି ଜ୍ଞାନଗାରିମାର ଭାରୀପଣ ତାଙ୍କୁ ଦବେଇଦେଇଛି । ବୋଧହୁଏ ଏଇଥିପାଇଁ ସେ ସହଜେ ଚିହ୍ନି ନେଇପାରିଲେ ରାମହରି ଦାସଙ୍କ ଜ୍ଞାନଗାରିମାକୁ, ଯେତେବେଳେ ସେ ଦିଲ୍ଲୀକୁ ଆସିଥିଲେ କେଉଁ ଗୋଟିଏ ସେମିନାର୍‌ରେ ଯୋଗ ଦେବାପାଇଁ ଏବଂ ଡକ୍ଟର୍ ଶ୍ରୀବାସ୍ତବଙ୍କୁ ସେଠାକୁ ଡକା ହୋଇଥିଲା ମୁଖ୍ୟ ଅତିଥି ହିସାବରେ । ତେବେ ଦିହିଁଙ୍କ ମତିଗତିକୁ ବେଷି ପାଖରେ ଓ ବେଶି ସମୟ ଯାଏଁ ଲକ୍ଷ୍ୟ କଲେ ଜଣାପଡ଼ିବ ଯେ, କିଛି ପାର୍ଥକ୍ୟ ରହିଛି ସେମାନଙ୍କ ଗମ୍ଭୀର ଭାବମୂର୍ତ୍ତିରେ । ଡକ୍ଟର ଶ୍ରୀବାସ୍ତବଙ୍କ ଗମ୍ଭୀରତା ଅଗଭୀର ଏବଂ କୃତ୍ରିମ ବୋଲି ସନ୍ଦେହ ହୋଇପାରେ । ସତେକି ତାଙ୍କୁ ଟିକିଏ କୁତୁକୁତୁ କଲେ, ଦେଖିବ ସେ କେମିତି ମିଳେଇଯିବେ ! ଅଥଚ ରାମହରି ଦାସଙ୍କୁ କୁତୁକୁତୁ କଲେ ସେ ଅବଶ୍ୟ ହସିବାକୁ ବାଧ ହେବେ, କିନ୍ତୁ ପରେ ପରେ ରାଗିଉଠିବେ ବୋଲି ଭୟ ହେବ । ଯେ — ମୋତେ କାହିଁକି ହସେଇଲ ତୁମେ, ଜାଣିପାରେ କି ? କେମିତି ବୁଝିଲ ନାହିଁ ଯେ ମୋର ଯେଉଁ ନୈସର୍ଗିକ ରୂପ ତୁମ ଆଖିରେ ପଡ଼ିଛି, ତା'କୁ କୋହଳ କରିଦେବା ଏକାନ୍ତ ଅନୁଚିତ ?

ଏହି ତାରତମ୍ୟକୁ ଯଦି ସ୍ୱୀକାର କରାଯାଏ, ତା'ହେଲେ ରୋମୀ ସେନ୍‌ଙ୍କ ସହିତ ଡକ୍ଟର୍ ଶ୍ରୀବାସ୍ତବଙ୍କ ସମ୍ପର୍କକୁ ନେଇ ଆଶ୍ଚର୍ଯ୍ୟ ହେବାର ବିଶେଷ କିଛି ନାହିଁ । ହୁଏତ ରୋମୀଙ୍କର ସାନିଧ୍ୟ ତାଙ୍କୁ ଭଲଲାଗେ । ସତେକି ଜ୍ଞାନଗର୍ଭ ଭାରୀପଣ ତାଙ୍କୁ ମାଡ଼ି ବସିଲାଣି ଅନେକ ଦିନ ହେବ, ତେଣୁ ରୋମୀର ଆସିବା ହେଉ । କାରଣ ଲେଖିକା ଓ ବୁଦ୍ଧିମତୀ ହେଲେ ମଧ୍ଯ ସେ ଜଣେ ନାରୀ, ବିଗତଯୌବନା ହେଲେ ମଧ୍ଯ ତଥାପି ସୁନ୍ଦରୀ, ତଦୁପରି ଚଞ୍ଚଳା ଓ ମୁଖରା । ଏଥର ଟିକିଏ ହାଲୁକା ଲାଗିବ ତାଙ୍କୁ, ଭଲ ଲାଗିବ । ଏବଂ ଏହେତୁ ମନେରଖିବା ଉଚିତ ଯେ ଦିହିଁଙ୍କ ଭିତରେ କେବଳ ଯୌନତାର ଖୋଜାଲୋଡ଼ା ନାହିଁ, ମଧ୍ଯ ଅଛି ଏଇ ଜ୍ଞାନବୋଧର ପ୍ରବଣତା । ଯାହାକି ସ୍ୱାଭାବିକ । ରାମହରିବାବୁଙ୍କ ପରି ଲୋକମାନଙ୍କୁ ଛାଡ଼ିଦିଅ, ସେମାନେ ସାଧାରଣ ନୁହନ୍ତି ।

ରୋମୀଙ୍କର କେବଳ ଗୋଟିଏ ଆଚରଣ ତାଙ୍କର ଦେହସୁହା ହୋଇ ନ ଥିଲା ଅନେକ ଦିନଯାଏଁ । ତା'ର ଘନ ଘନ ସିଗାରେଟ୍ ପିଇବାର ଜିଦ୍‌ଦି । ଥରେ ସେ ବାନ୍ଧବୀର ସିଗାରେଟ୍ ଧୂଆଁଜନିତ କଳା ଓଠ ଉପରେ ଆକ୍ଷେପ କରି କ'ଣ କହିଥିଲେ, ଯାହାର ଉତ୍ତରରେ ତାଙ୍କୁ ଶୁଣିବାକୁ ପଡ଼ିଲା — 'ଓ-କେ, ୟୁ କ୍ୟାନ୍ ଲିଭ୍ ଇଟ୍ ଫ୍ରମ୍ ୟୋର୍ ଲଭ୍‌ମେକିଙ୍ଗ୍ ! ତମେ ସେଇ ଅଂଶଟିକୁ

ବାଦ୍ ଦେଇପାର ତମ ପ୍ରେମପ୍ରକ୍ରିୟାରୁ । ରଂଜନ୍‌ଜୀ ଚୁପ୍ ହୋଇଗଲେ, ନିଆଁରେ ପାଣି ପଡ଼ିଲା ପରି ।... କଥାରେ କିଏ ଜିଣିପାରିବ ଆମ ରୋମୀକୁ ? ଏପରିକି ସାହିତ୍ୟ ଚର୍ଚ୍ଚାରେ ବି' ସେ ଜିତିଲା ପରି ମନେହୁଏ ଅନେକ ସମୟରେ, ତା'ର ବିଦ୍ୟାବୁଦ୍ଧି ମୋ ଠାରୁ ଯଥେଷ୍ଟ ଊଣା ହେଲେ ମଧ୍ୟ । ଏଇ ହେଉଛି ତା'ର ଅନ୍ୟତମ ବାହାଦୁରୀ...ରଞ୍ଜନ ଶ୍ରୀବାସ୍ତବ ହାରିଗଲେ ମଧ୍ୟ ଖୁସି ହୁଅନ୍ତି ଯେ ଏଭଳି ଗୋଟିଏ ସ୍ତ୍ରୀ ତାଙ୍କର ପ୍ରଣୟିନୀ ହୋଇପାରିଛି । ଗଂଗୋତ୍ରୀ ପୁରସ୍କାରର ଘୋଷଣା ପାଇଁ ପ୍ରାୟ ମାସେ ବାକୀ ଅଛି । ଏହି ସମୟରେ ରୋମୀ ସେନ୍‌ଙ୍କ ଆବିର୍ଭାବ ହେଲା ଡକ୍ଟର ଶ୍ରୀବାସ୍ତବଙ୍କ ଫ୍ଲାଟ୍‌ରେ ପୂର୍ବାହ୍ନରେ ଏବଂ ଆସୁ ନ ଆସୁଣୁ ସେ ତାଙ୍କ ଆସିବାର ଉଦ୍ଦେଶ୍ୟକୁ ଜାହିର୍ କଲେ । କହିଲେ, "ମୁଁ ଆଜି ଆସିଛି ତମ ସାଙ୍ଗରେ ସାହିତ୍ୟ ଚର୍ଚ୍ଚା କରିବାଲାଗି । ତମେ ଫ୍ରି ଅଛ ତ ?" ସେଇଠୁଁ ଆମୋଦର ଯେଉଁ ସ୍ଫୁରଣଟିକ ଫୁଟିଉଠିଲା, ଡକ୍ଟର ଶ୍ରୀବାସ୍ତବଙ୍କ ଓଠରେ, ସେଇ ହେଲା ଦୁର୍ଗପତନର ପ୍ରଥମ ଦୃଶ୍ୟ ।

ତାଙ୍କ ଆମୋଦର କାରଣ ହେଉଛି ଏଇ ଯେ ଅତୀତ ଅଭିଜ୍ଞତା ଅନୁଯାୟୀ ରୋମୀ ଆସିଛି ସାହିତ୍ୟିକମାନଙ୍କୁ ନେଇ ଗସିପ୍ କରିବାକୁ, ନିଜର କୌଣସି ଅରମାନ ମେଣ୍ଟାଇବାଲାଗି । ନ ହେଲେ ସେ ମୂଳରୁ ଏଭଳି ସ୍ପଷ୍ଟ ଏବଂ ଆକ୍ରମକ ହୋଇ ନ ଥାଆନ୍ତା ସାହିତ୍ୟ ତରଫରୁ । ଯାହାହେଉ ସେ ତାକୁ ପ୍ରଶ୍ରୟ ନ ଦେଲେ ମଧ୍ୟ ଉପଭୋଗ କରନ୍ତି । ଆଜିକାର ଗସିପ୍ କେଉଁପ୍ରକାର ? ଡକ୍ଟର ଶ୍ରୀବାସ୍ତବ କୁତୂହଳୀ ହେଲେ ଏବଂ ରୋମୀ ସେନ୍ ଯଥାଶୀଘ୍ର ତାଙ୍କ କୌତୂହଳର ସମ୍ମାନ ଦେଲେ । ଚଟାଣରେ ପରା ହୋଇଥିବା ଦୀୱାନ୍‌ର ଗୋଲ୍ ତକିଆରେ ଭରାଦେଇ ତାଙ୍କୁ ସିଧାସଳଖ ପଚାରିଲେ,

"କାହାକୁ ମିଳୁଛି ଏ ବର୍ଷର ଗଂଗୋତ୍ରୀ ପୁରସ୍କାର ?"

ଡକ୍ଟର ଶ୍ରୀବାସ୍ତବ ହସିଉଠିଲେ, ଏଇ ବିଚିତ୍ର ରୋମୀ-ଚରିତ୍ରର ଅନୁଧ୍ୟାନ କରି । ରୋମୀ ପ୍ରାୟ ପ୍ରତିବର୍ଷ ଏହିଭଳି ପ୍ରଶ୍ନ ପଚାରି ଆସିଛି ଏବଂ ମୁଁ ତା'କୁ ଏଡ଼ାଇଦେଇଛି । ତଥାପି ସେ ପଚାରେ ଏବଂ ମୁଁ ତା'କୁ ଶାସ୍ତ୍ରସମ୍ମତ ଉତ୍ତର ଦିଏ । ଯଥା— ଜିନିଷଟା ମୋ ହାତରେ ନାହିଁ, ବୋର୍ଡ଼୍‌ରେ ସର୍ବମୋଟ ପନ୍ଦରଜଣ ଅଛନ୍ତି ଏବଂ ପ୍ରତ୍ୟେକଙ୍କର ନିଜସ୍ୱ ମତାମତ ଅଛି... ଏବେଠୁଁ କିଛି କହି ହେବ ନାହିଁ । ସବୁ ସୁପାରିଶ ଆସିଗଲେ ଯାଇଁ ତା'ର ଆଲୋଚନା କରାଯିବ, ଏବଂ ତା'ର ଫଳାଫଳ କ'ଣ ହେବ ମୁଁ ତା'ର ଭବିଷ୍ୟତବାଣୀ ଦେବାକୁ ଅକ୍ଷମ ମାଇ ଡିଅର୍ ରୋମୀ, ଯଦିବା କିଛି ଜଣାଥାଏ ମୋତେ, ତମେ କେମିତି ଆଶା କରୁଛ ଯେ ମୁଁ ସେଇ ଗୋପନୀୟ ତଥ୍ୟଟିକୁ ବଢ଼େଇଦେବି

ତମ ହାତରେ ? ଇତ୍ୟାଦି । ହେଲେ ସେ ତଥାପି ଅପେକ୍ଷା କରିଥାଏ କାଳେ ଗୋଟାଏ ଦି'ଟା ରତ୍ନ ମିଳିଯିବ, ଅନ୍ତତଃ ତା'ର ଝିକିଝିକି ଦିଶିଯିବ ତା'କୁ, ମୋର କଥାକୁହା ସଫେଇ ଭିତରେ । ଏବଂ ମିଳେ ନାହିଁ ବୋଲି କିଏ କହିବ ? ଯଦିଓ ତାହା କେଉଁ ସମ୍ଭାବନାର ଝଲକ ଛଡ଼ା ଆଉ କିଛି ହୋଇ ନ ପାରେ । କିନ୍ତୁ ତମ ନାଆଁ ରୋମୀ । ତଥାପି ବାଳିକାଟିଏ । ତମର କୌତୂହଳ ଦୁର୍ଦ୍ଦମନୀୟ, ତମେ କେବେହେଲେ ତା'କୁ ଘୋଡ଼େଇ ଦେଇପାରିବ ନାହିଁ ଏବଂ ଯେହେତୁ ମୁଁ ତମର ପ୍ରେମିକ, ତମର ଆଶା ଅଫୁରନ୍ତ...

ଡକ୍ଟର ଶ୍ରୀବାସ୍ତବଙ୍କର ଦୟା ହେଲା ପଚାଶ ବର୍ଷ ପାରି ହୋଇଯାଇଥିବା 'ବାଳିକା'ଟି ଉପରେ ଯେ ଶୁଣିବାକୁ ପ୍ରସ୍ତୁତ ହୋଇଗଲାଣି ତା'ର ପ୍ରଥମ ସିଗାରେଟ୍‌ରେ ନିଆଁ ଧରେଇ । ଏବଂ ତାଙ୍କର ମନ ହେଲା ଯେ ଏଥର ସେ କିଛି ଅଧିକ କଥା କହିବେ ତା'ର ମନୋରଞ୍ଜନ ପାଇଁ । ଯେଉଁଥିରୁ କୌଣସି ନିର୍ଦ୍ଦିଷ୍ଟ ସୂଚନା ମିଳିବ ନାହିଁ, କିନ୍ତୁ ଦୃଶ୍ୟପଟର ବୈଚିତ୍ର୍ୟ ଫୁଟିଉଠିବ । ଡକ୍ଟର ଶ୍ରୀବାସ୍ତବ ନିଜକୁ ଅଳ୍ପବହୁତ ଖୋଲିଦେବା ପାଇଁ ଚେଷ୍ଟା କଲେ, ଉଦାରତାପୂର୍ବକ । ସେ ଯାହା କହିଲେ ଏବଂ କହିଲେ ନାହିଁ, ତା'ର ସାରାଂଶ ଏହିପ୍ରକାର

ତଜନରୁ ଊର୍ଦ୍ଧ୍ୱ ନାଆଁ ଆସିଛି ପ୍ରତ୍ୟେକ ବିଭାଗ ପାଇଁ । କାବ୍ୟ କବିତାରେ ସବୁଠୁଁ ବେଶି । କିନ୍ତୁ ଯେଉଁ ଅଞ୍ଚଳରୁ କେହି ପୁରସ୍କାର ପାଇ ନାହାନ୍ତି ଅନେକ ବର୍ଷ ହେଲା, ସେଇ ଅଞ୍ଚଳରୁ ଆସିଥିବା ନାଆଁଗୁଡ଼ିକୁ ଯଥାସମ୍ଭବ ପ୍ରାଧାନ୍ୟ ଦେବା ଉଚିତ । ଏହି ଅଞ୍ଚଳଗୁଡ଼ିକ ହେଲା ମହାରାଷ୍ଟ୍ର, ତାମିଲ୍‌ନାଡୁ, ଓଡ଼ିଶା ଏବଂ ଆସାମ ।

ପ୍ରଥମେ ଗଳ୍ପ ଉପନ୍ୟାସ । ଓଡ଼ିଶାର ବଳୀୟାର୍ ସିଂହ, ମହାରାଷ୍ଟ୍ରର ଜ୍ଞାନ୍‌ଚାନ୍ଦ୍ ସିରୋଡ୍‌କାର୍, ତାମିଲ୍‌ନାଡୁର ପି. ଭାଗ୍ୟମୂର୍ତ୍ତି... ଏଇ କେତେଗୁଡ଼ିଏ ନାଆଁ ବିଚାରକୁ ଆସୁଛି । କହିଲେ ନାହିଁ ଯେ ଓଡ଼ିଶା ବାହାରେ ବଳୀୟାର୍ ସିଂହ କିମ୍ବା ତାଙ୍କର ବହିର ଚେହେରା କ୍ୱଚିତ୍ କାହାରି ଆଖିରେ ପଡ଼ିଛି ଏବଂ ତାହା ଦୁର୍ଭାଗ୍ୟଜନକ । ଏବଂ କହିଲେ ନାହିଁ ଯେ ପି. ଭାଗ୍ୟମୂର୍ତ୍ତି କେତୁଟା କଡ଼ା କଥା କହିଛନ୍ତି ଆମ ପୁରସ୍କାର ପଦ୍ଧତି ବିଷୟରେ ଏବଂ ତାହା କୌଣସି ପ୍ରାର୍ଥୀଠାରୁ ଆଶା କରାଯାଏ ନାହିଁ । ଏବଂ କହିବାର କୌଣସି ଆବଶ୍ୟକତା ନ ଥିଲା ଯେ ସିରୋଡ୍‌କାର୍ ମହାଶୟ ମାତ୍ର ତିନୋଟି ବହି ଲେଖିଥିଲେ ମଧ୍ୟ ସେ ଏକାଧାରରେ ସୁବିଦିତ ଓ ଦଳିତ, ଏବଂ ଜନୈକ ମନ୍ତ୍ରୀ ସଭାପତିଙ୍କୁ ଗୋଟିଏ ବ୍ୟକ୍ତିଗତ ଚିଠି ଲେଖିଛନ୍ତି ତାଙ୍କ ନାଆଁ ସୁପାରିଶ କରି । ତେଣୁ ସଭାପତିଙ୍କର ଇଚ୍ଛା ଯେ ସେ ସିରୋଡ୍‌କାର୍‌ଙ୍କୁ ବିଶେଷ ଭାବରେ ଉପସ୍ଥାପିତ କରିବେ ବୋର୍ଡ୍‌ର

ଅନ୍ୟ ସଦସ୍ୟମାନଙ୍କ ଆଗରେ ଏବଂ ବିଶେଷ କିଛି କହିବେ ତାଙ୍କ ବଳିଷ୍ଠ ଓ କ୍ରାନ୍ତିକାରୀ ସାହିତ୍ୟ ବିଷୟରେ । ଏହା ହିଁ ତାଙ୍କର କର୍ତ୍ତବ୍ୟ ।

ଦ୍ୱିତୀୟରେ ନାଟ୍ୟନାଟିକା । ଆସାମ୍‌ର ଦୀନନାଥ ବେଜ୍‌ବରୁଆ, ତାମିଲ୍‌ନାଡୁର ଏଲ୍.ଭି.କୁପ୍‌ପୁସ୍ୱାମୀ ଏବଂ ମହାରାଷ୍ଟ୍ରର କୃଷ୍ଣସାଗର ତିରୁପୁଡ଼େ । କୃଷ୍ଣସାଗରଙ୍କ ଆତିଥ୍ୟ ଅନବଦ୍ୟ ଏବଂ ସେ ନିଜେ ରଙ୍ଗମଞ୍ଚର ଭୀଷ୍ମ ଅଥବା ସିକନ୍ଦରଙ୍କ ପରି ଦେଖାଯାଆନ୍ତି । ସଭାପତି ତାଙ୍କୁ ବ୍ୟକ୍ତିଗତ ଭାବରେ ଜାଣନ୍ତି ଏବଂ ବହୁବାର ସେ ତାଙ୍କ ଲୋନାଭ୍‌ଲା ବଙ୍ଗଲୋରେ ସୁସ୍ୱାଦୁ ଶ୍ରୀଖଣ୍ଡର ସଦୁପଯୋଗ କରିଛନ୍ତି । କିନ୍ତୁ ସେ କୋଉ ବୁଦ୍ଧିରେ ଏସବୁ କଥା କହିବେ ରୋମୀ ଆଗରେ ? ତା' ଛଡ଼ା ମହାରାଷ୍ଟ୍ରରୁ ଦି'ଜଣଙ୍କୁ ମିଳିବ କେମିତି ? ସମସ୍ୟା ଜଟିଳ ।

ବକ୍ତବ୍ୟର ଏହି ପର୍ଯ୍ୟାୟରେ ଡକ୍ଟର ଶ୍ରୀବାସ୍ତବଙ୍କୁ ହଠାତ୍ ଆଶ୍ଚର୍ଯ୍ୟ ଲାଗିଲା ଯେ ରୋମୀ ଖାଲି ଚୁପ୍‌ଚାପ୍ ବସି ଶୁଣୁଛି । କଥା କଅଣ ? ସେ କାହାରି ବିଷୟରେ କିଛି କହୁ ନାହିଁ କାହିଁକି, ସବୁଥର ପରି ? ଏଥର କ'ଣ ତା'ର କେହି ପ୍ରିୟପାତ୍ର ନାହାନ୍ତି ? ଏବଂ ବିଚାରାଧୀନଙ୍କ ଭିତରେ କ'ଣ କେହି ନାହାନ୍ତି ଯାହାଙ୍କୁ ସେ 'ହେଟ୍' କରେ ? କିନ୍ତୁ ତାଙ୍କ ଧାରଣା ଭ୍ରମାତ୍ମକ ଥିଲା । ଯେହେତୁ କାବ୍ୟକବିତାର ବିଭାଗକୁ ସେ ଆସି ନ ଥିଲେ ସେତେବେଳଯାଏଁ ।

ଶେଷକୁ କାବ୍ୟକବିତା । ଡକ୍ଟର୍ ଶ୍ରୀବାସ୍ତବ ଦୁଃଖ କରି କହିଲେ ଯେ ସେଇଠି ସବୁଠୁଁ ବେଶି ଅସୁବିଧା । ଅନେକ ପ୍ରାର୍ଥୀ, ଅନେକ ସୁପାରିଶ । କହିଲେ ନାହିଁ ଯେ ଅଯାଚିତ ସୁପାରିଶ ମଧ ଅନେକ ଆସିଛି, ଯାହାକୁ ପୂରାପୂରି କାଟି ଦେଇ ହେବ ନାହିଁ । ମନେହେଉଛି ଯେ ପୁରସ୍କାରଟିକୁ ସୀମିତ କରି ହେବ ନାହିଁ ଉପରୋକ୍ତ ଚାରୋଟି ରାଜ୍ୟର କବିମାନଙ୍କ ଭିତରେ । ଏ ହେତୁ ସେ କୌଣସି ନାଆଁ ଉଲ୍ଲେଖ କରିବା ନିରର୍ଥକ ବୋଲି ମନେକଲେ । କିନ୍ତୁ ନିଜର ଦୁଃଖକୁ ବିଶେଷ ଭାବରେ ବ୍ୟକ୍ତ କରିବାକୁ ଯାଇ ସେ ରୋମୀଙ୍କୁ ଗୋଟିଏ ଛୋଟିଆ ଭାଷଣ ନ ଶୁଣେଇ ରହିପାରିଲେ ନାହିଁ । କହିଲେ,

"ବୁଝିଲ ରୋମୀ, ଇଏ ଏକ କାବ୍ୟପ୍ରଧାନ ଦେଶ । ତେଣୁ ଅନେକ ଅନେକ ଫୁଲ ଫୁଟିଥାଏ ଆମ ପୁଷ୍ପବାଟିକାରେ ଏବଂ ମନେହୁଏ ଯେ ପ୍ରତ୍ୟେକଟି ସୁନ୍ଦର, ସୁରଭିତ ଏବଂ ବାଣୀଦେବୀଙ୍କ ପାଦତଳେ ସ୍ଥାନ ପାଇବାର ଯୋଗ୍ୟ । ତେଣୁ କାହାକୁ ସବୁଠାରୁ ସୁନ୍ଦର ଓ ସୁରଭିତ ବୋଲି ବାଛିବ, କହିଲ ?... ଯଦିଓ କେତେଜଣ ଅଛନ୍ତି, ଯାହାଙ୍କ ପ୍ରାର୍ଥୀତ୍ୱକୁ ସହଜେ ଏଡ଼ାଇ ଦେଇ ହେବ ନାହିଁ । ଯଥା ଓଡ଼ିଶାର ବରିଷ୍ଠ ମିଷ୍ଟିକ୍ କବି ରାମହରି ଦାସ..."

''ହ୍ୱାଟ୍ ? ସେଇ କଦାକାର ପ୍ରଫେସରଟା ? ସିଏ ହେଉଛି ସୁନ୍ଦର ଓ ସୁରଭିତ ? ମାଇ ଗଡ୍ ! ମୁଁ ଭାବି ନ ଥିଲି ଯେ ବୁଢ଼ା ହେଲାରୁ ତମର ରସବୋଧ ମଧ୍ୟ ଏମିତି ବିକୃତ ହୋଇଯିବ !'' ରୋମୀ ସେନ୍ ଦରଜଳା ସିଗାରେଟ୍‌କୁ ମାଡ଼ିଦେଇ ଆଉ ଗୋଟିକରେ ନିଆଁ ଧରେଇଲେ । ଏତେ ରାଗିଲା ପରି ମନେ ହେଉଥିଲେ ଯେ ଯେଉଁ ବିରାଟ ବିଦ୍ରୂପର ହସ ତାଙ୍କ ଓଠଯାଏଁ ଆସୁଥିଲା, ତା'କୁ ସେ ଠିକଣା ଭାବରେ ଛାଡ଼ିଦେଇ ପାରିଲେ ନାହିଁ ।

ଡକ୍ଟର ଶ୍ରୀବାସ୍ତବ କାବା ହେଲେ ତାଙ୍କ ଉଗ୍ରମୂର୍ତ୍ତି ଦେଖି ଏବଂ ବୋଧ ଦେଲେ, ''ଶୁଣ, ଶୁଣ, ଏତେ ତାତିଯାଅ ନାହିଁ । ସେ କଦାକାର ହୋଇପାରେ, କିନ୍ତୁ ଏଠି ରୂପର ସୌନ୍ଦର୍ଯ୍ୟ କଥା ପଡ଼ି ନାହିଁ —''

''ରଖ ହେ ! ମୋତେ ସେ ସବୁ ପାଠ ପଢ଼ାଅ ନାହିଁ । ସେ ପ୍ରତ୍ୟେକ ଅର୍ଥରେ କଦାକାର । ବିଷଦୃଷ୍ଟିରେ ଦେଖେ ପୃଥିବୀଟାକୁ ଏବଂ ସେଇ ବିଷକୁ ଉଦ୍‌ଗାରିଦିଏ ତା'ର ତଥାକଥିତ କବିତାରେ (ମୁଁ ଭୁଲିପାରିବି ନାହିଁ ସେ ଯେଉଁ ତାଚ୍ଛିଲ୍ୟ ଦୃଷ୍ଟିରେ ଅନେଇଲା ମୋ ଆଡ଼କୁ, ଯେତେବେଳେ ମୁଁ ତା'କୁ ଥରେ ପଚାରିଥିଲି ତା'ର ଗୋଟିଏ କବିତାର ଅର୍ଥ କଅଣ ବୋଲି । ଥରେ ଅନେଇଲା ମୋ ସିଗାରେଟ୍‌ର ଧୂଆଁକୁ ଏବଂ ଆଉ ଥରେ ମୋ ଓଜନିଆ ଛାତିକୁ, ସତେକି ଉଭୟ ବିଷମୟ...)—''

''କିନ୍ତୁ ଲୋକଟା ଖରାପ ନୁହେଁ ।''

''କିଏ ଭଲ ଆଉ କିଏ ଖରାପ କହିଲ ଡକ୍ଟର ସାହେବ ? ତମେ ଓ ମୁଁ ଭଲ ନା ଖରାପ । କୁହ !! (ଟିକିଏ ରହିଯାଇ ଜିତାପଟ ପାଇଲା ପରି), କିନ୍ତୁ କବିତା ସଂକ୍ରାନ୍ତରେ ତମେ ନିଜେ ଯେଉଁ ଉପମା ଦେଉଥିଲ, ସେଥିରେ କେଉଁ ଫୁଲଟାକୁ ଭଲ କି ଖରାପ ବୋଲି କହିବ ? ପ୍ରଥମ କଥା ହେଉଛି ଫୁଲଟା କେତେ ସୁନ୍ଦର, ଆଉ କେମିତି ବାସୁଛି । ଏସ୍ଥେଟିକ୍ସ, ସୌନ୍ଦର୍ଯ୍ୟବୋଧ, ସେଇ ହେଉଛି କବିତାର ଆତ୍ମା...''

ଡକ୍ଟର ଶ୍ରୀବାସ୍ତବ ମୁଣ୍ଡ ଟୁଙ୍ଗାରିଲେ ଗମ୍ଭୀରତାପୂର୍ବକ । ରୋମୀ ସେନ୍‌କୁ ବର୍ତ୍ତମାନ ସାହିତ୍ୟିକା ବୋଲି କୁହାଯିବ ନାହିଁ, ସେ କେବଳ ଜଣେ କୁପିତା ନାରୀ । ତେଣୁ କେଉ ବୁଦ୍ଧିରେ ସେ ତା' ସାଙ୍ଗରେ ତର୍କ କରିବାକୁ ଯିବେ ସୌନ୍ଦର୍ଯ୍ୟବୋଧର ତତ୍ତ୍ୱ ନେଇ ? ମୁଣ୍ଡ ଟୁଙ୍ଗାରିବା ହିଁ ଶ୍ରେୟସ୍କର । ଯେଉଁ ଭାବରେ ସେ ତାଙ୍କ ସ୍ୱର୍ଗୀୟା ପତ୍ନୀଙ୍କ କ୍ରୋଧର ମୁକାବିଲା କରୁଥିଲେ, ଯଦିଓ ସୁପ୍ରୀତି ଅଳ୍ପ ବୟସରେ ଚାଲିଗଲା, ତେଣୁ ତା'ର କ୍ରୋଧ ସହିତ ତାରୁଣ୍ୟ ଓ ସୌନ୍ଦର୍ଯ୍ୟର ଏକ ବିଶେଷ ସମ୍ପର୍କ ଥିଲା । ଡକ୍ଟର ଶ୍ରୀବାସ୍ତବ ଅନ୍ୟମନସ୍କ ହୋଇପଡ଼ିଥିଲେ ।

ସେଇଠୁଁ ତାଙ୍କର ମନେ ପଡ଼ିଗଲା । ରାମହରି ଦାସ ଗଂଗୋତ୍ରୀର ଉପଯୁକ୍ତ କି ନୁହେଁ ସେ କଥା ଭିନ୍ନ । କିନ୍ତୁ ସେ ତ ନିଜେ ଗୋଟାଏ ଢଙ୍ଗ କରୁଛନ୍ତି ଯେ ସେ ତା'କୁ ଚାହାନ୍ତି ନାହିଁ । ତା'ହେଲେ ତାଙ୍କୁ ବାଦ୍ ଦେଲେ କ୍ଷତିଟା କଅଣ ? ଠିକଣା ଶାସ୍ତି ହେବ ପ୍ରଫେସର ସାହେବଙ୍କୁ । ଯାହାହେଉ କହିଦିଏ ସେ ଯାହା ଲେଖିଛନ୍ତି । କୁପିତାର କ୍ରୋଧ ଶାନ୍ତ ହୋଇଯାଉ ଆପାତତଃ ।

"କିନ୍ତୁ ଶୁଣ ରୋମୀ...ମଜା କଥା ହେଉଛି ଯେ ଭଦ୍ରଲୋକ ନିଜେ ଚାହାନ୍ତି ନାହିଁ ଏଇ ପୁରସ୍କାର । ମୋ ପାଖକୁ ଚିଠି ଲେଖିଛନ୍ତି ଯେ ଯଦି ତାଙ୍କ ନାଆଁ ବିଚାରକୁ ଆସୁଥାଏ, ତା'ହେଲେ ସେ ଆଗତୁରା ସେଥିରୁ ମୁକ୍ତି ପାଇବାକୁ ଚାହାନ୍ତି । ଆଣ୍ଟିସିପେଟରୀ ବେଏଲ୍ ! ଅଦ୍ଭୁତ ଭଦ୍ରଲୋକ । ଅପରନ୍ତୁ —"

ଏଇଠି ଡକ୍ଟର ଶ୍ରୀବାସ୍ତବ ରହିଗଲେ । କେଉଁ ଷଷ୍ଠେନ୍ଦ୍ରିୟ ତାଙ୍କୁ ଅଟକେଇ ଦେଲା କହିହେବ ନାହିଁ । କିନ୍ତୁ ତାଙ୍କର ମନେହେଲା ଯେ ବୋଧହୁଏ କହିବା ଉଚିତ ହେବ ନାହିଁ ପ୍ରଫେସର୍ ଯେଉଁ ସୁପାରିଶ କରିଥିଲେ, ତାଙ୍କ ଅଞ୍ଚଳର ଶୈଳଜା ପଣ୍ଡାକୁ ନେଇ । କେବଳ ଗୋପନୀୟତା ଦୃଷ୍ଟିରୁ ନୁହେଁ । ଭାବିଲେ ଯେ ରୋମୀ ହୁଏତ ଆହୁରି ରାଗିଯିବ ଓ ଘୃଣ୍ୟ ରାମହରି ଦାସର ସୁପାରିଶକୁ ମଧ୍ୟ ଗୋଇଠା ମାରି ତଳେ ଗଡ଼େଇଦେବ ଏବଂ ତାଙ୍କୁ ଆହୁରି ଅସୁବିଧାରେ ପକେଇବ ।

ଏହିପରି ଭାବରେ ଇତିହାସର ମୋଡ଼ ବଦଳିଗଲା । ଯେଉଁଥିପାଇଁ ଡକ୍ଟର୍ ଶ୍ରୀବାସ୍ତବଙ୍କ ଗୋଟିଏ ମୁହୂର୍ତ୍ତର ଦ୍ୱିଧା ଓ ତଦ୍‌ଜନିତ ନିବୃତ୍ତିକୁ ଦାୟୀ କରିବାକୁ ପଡ଼ିବ । ତଦ୍ୱାରା କାହାର ଭଲ ହେଲା କି ମନ୍ଦ, ତା' ବି ଇତିହାସ ବୁଝିବ ।

"ଅପରନ୍ତୁ— ?" ରୋମୀ ପ୍ରଶ୍ନ କଲେ ।

"ସରି, ଭୁଲିଗଲିଣି କ'ଣ କହିବାକୁ ଯାଉଥିଲି । ବାର୍ଦ୍ଧକ୍ୟର ଅନ୍ୟତମ ଲକ୍ଷଣ ।"

ସେଇଠୁଁ ରୋମୀ ତାଙ୍କୁ ଚମକେଇଦେଲେ ଗୋଟାଏ କଥା କହି ଏବଂ ବୁଝିପାରିଲେ ନାହିଁ ଏଥିରେ ଚମକି ଉଠିବାର କ'ଣ ଅଛି । ଯେତେବେଳେ ସେ ପଚାରିଲେ, "ଓଡ଼ିଶାର ଶୈଳଜା ପଣ୍ଡାକୁ ଚିହ୍ନିଛ ?"

"ଏଁ ! ନା, ଚିହ୍ନି ନାହିଁ । ତେବେ ତା'ର ବହି କେତୋଟି ମୋ ଆଖିରେ ପଡ଼ିଛି ଇଂରେଜୀ ଓ ହିନ୍ଦୀ ଅନୁବାଦ । ଏବଂ ଗୋଟାଏ ହିନ୍ଦୀ ବହି ପଠେଇଥିଲା ମୋ ପାଖକୁ—'ଚୁଲ୍‌ବୁଲୀ ଚାଁଦ' । ଇଣ୍ଟରେଷ୍ଟିଙ୍ଗ୍!"

"ଖାଲି ଇଣ୍ଟରେଷ୍ଟିଙ୍ଗ୍ ବୋଲି କହିଲେ ଚଳିବ ନାହିଁ । ସେଥିର ଶବ୍ଦରେ ସୌନ୍ଦର୍ଯ୍ୟ ଅଛି, ଯାହାକି ପୃଥିବୀର ସୌନ୍ଦର୍ଯ୍ୟକୁ ଦି'ପଦ ଶିଖେଇ ଦେଇପାରିବ,

ଛନ୍ଦରେ ମାଧୁରୀ ଅଛି, ଯାହାକି ପୃଥିବୀକୁ ଉଦ୍ଧାର କରିପାରିବ ତା'ର ନିତ୍ୟ ପ୍ରତ୍ୟହ ଛନ୍ଦପତନରୁ...''

''ଧନ୍ୟବାଦ ରୋମୀ, ମୁଁ ଆହୁରି ମନ ଦେଇ ପଢ଼ିବି ତା' କବିତା । ଯେଉଁଥିରେ ତମର କବିତ୍ୱ ବି' ଫୁଟିଉଠୁଛି ଏମିତି ।'' ଡଃ ଶ୍ରୀବାସ୍ତବ ଅନୁମାନ କଲେ ଯେ ରୋମୀର କ୍ରୋଧ ପୂରାପୂରି ଲିଭିଯିବ ଏଥର ।

''ଥ୍ୟାଙ୍କ୍ ୟୁ । ତା'କୁ ପୁରସ୍କାର ଦିଅ ବା ନ ଦିଅ, ଯାଏ ଆସେ ନାହିଁ । ସୌନ୍ଦର୍ଯ୍ୟକୁ ପୁରସ୍କାର ଦେବା ଅବାନ୍ତର...''

''ଆଚ୍ଛା, ଭଦ୍ରମହିଳା ଦେଖିବାକୁ କେମିତି ?'' ଡକ୍ଟର ଶ୍ରୀବାସ୍ତବ ପଚାରିଲେ, ରାମହରି ଦାସଙ୍କ ଉପରେ ରୋମୀର ମନ୍ତବ୍ୟକୁ ମନେ ପକେଇ ।

''ଶ୍ୟାମା । ହେଲେ ସୁନ୍ଦରୀ । ବିଶେଷତଃ ତା'ର ଜ୍ୟୋତିର୍ମୟ ଆଖି ଦୁଇଟିର ଚାହାଣିକୁ ନେଇ । ଏଭଳି ଜ୍ୟୋତି, ଯେ ମନେହେବ ସେ ତମକୁ ବାଧ୍ୟ କରୁଛି ତା'ର ଅଞ୍ଜଳି ଭରିଦେବା ପାଇଁ ।''

''ରିଏଲି !'' ଡାଏଲଗ୍‌ଟିକୁ ବେଶ୍ ଉପଭୋଗ କରୁଥିଲେ ଶ୍ରୀବାସ୍ତବଜୀ ଏବଂ ମନେ ମନେ ତୁଳନା କରୁଥିଲେ ସମ୍ମୁଖୀନା ନାରୀର ଜ୍ୟୋତି ସାଙ୍ଗରେ ସେଇ ଅଦେଖା କବୟିତ୍ରିର ଜ୍ୟୋତିକୁ । ଇଏ ଚ୍ୟାଲେଞ୍ଜ୍ କରେ ତମକୁ — ନେଇପାରିବ ତ ମୋତେ ? ନେଲ ଦେଖି ? ଆଉ ସେ କ'ଣ ଅନ୍ୟ ଭାବରେ ଚ୍ୟାଲେଞ୍ଜ୍ କରେ ତମକୁ ? କୁହେ — ତମେ କ'ଣ ଏତେ ଅକ୍ଷମ ଯେ ମୋତେ ଦେଇପାରିବ ନାହିଁ ମୁଁ ଯାହା ଚାହେଁ ? ଅବଶ୍ୟ ରୋମୀର କଳ୍ପନାଶକ୍ତି କିଛି କମ୍ ନୁହେଁ !

''ସେ ମୋର ଅନେକ ଦିନର ଚିହ୍ନା । ନୀଳିମା କର୍ ବଞ୍ଚିଥିଲା ଦିନଠୁଁ । ମୁଁ ବି' ଇଂରେଜୀରେ ଅନୁବାଦ କରିଛି ତା'ର ଗୋଟିଏ ବହିକୁ, ବଙ୍ଗଳାରୁ ଇଂରେଜୀ, —'ଦି' ସିଲ୍‌ଭର୍ ବେଲ୍‌ସ୍' । ତା'କୁ ଆଣିଛି ମୋ ସାଙ୍ଗରେ । ପଢ଼ିବ ସୁବିଧା ହେଲେ ।''

...ହଁ, ଶୈଳଜା ପଣ୍ଡା । ଗୋଟାଏ ନୂଆ ନାଆଁ । ଗତବର୍ଷ ନ ଥିଲା କି ତା' ପୂର୍ବ ବର୍ଷ । କିନ୍ତୁ ଏମିତି ଭାବରେ ଗର୍ଜିଉଠିଛି ଏ ବର୍ଷ ଯେ ତମ ମନରେ ଲାଖି ରହିବ । ତା'ର ଗୁଡ଼ାଏ ବହି ପହଞ୍ଚିଛି ଆମ ପାଖରେ । ବିଭିନ୍ନ ଭାଷାରେ ଅନୁବାଦ । ଏପରିକି କେରଳର ରାଜେନ୍ଦ୍ରନ୍ ବି' କହୁଥିଲେ ସେଦିନ ଯେ ଗୋଟାଏ ମାଲୟାଲୀ ଅନୁବାଦ ଆସି ପହଞ୍ଚିଛି ତାଙ୍କ ପାଖରେ । ଆଉ ସୁପାରିଶ ବି' ଆସିଛି କାହିଁରେ କେତେ । ଅଯାଚିତ ସୁପାରିଶ ଏବଂ ଭାରତର ବିଭିନ୍ନ କୋଣରୁ । ଏବଂ କେଇଟା ଓଜନିଆ ସୁପାରିଶ ବି' ଅଛି ତା' ଭିତରେ ।

ଯଥା, ମୋର ଯେତେଦୂର ମନେ ପଡୁଛି, ବଙ୍ଗଳାର ବରେଣ୍ୟ ଓ ବୃଦ୍ଧ ପାର୍ଥ ଚକ୍ରବର୍ତ୍ତୀ ଏବଂ ସୁପ୍ରସିଦ୍ଧ ଜର୍ଣ୍ଣାଲିଷ୍ଟ୍ ଶଙ୍କରଜୀ ।

ସବୁଠାରୁ ଓଜନିଆ ସୁପାରିଶ ହେଉଛି ମୋର ଏଇ ଦୁର୍ବିନୀତା ପ୍ରଣୟିନୀର, ଯେ ମୋ ଆଡ଼କୁ କଟମଟ କରି ଅନେଇଛି ମୋ ଠାରୁ କିଛି ଇସାରା ପାଇବ ବୋଲି । ସନ୍ଦେହ ନାହିଁ ଯେ ସେ ଖାସ୍ ଏଇଥିପାଇଁ ଆସିଥିଲା ମୋ ପାଖକୁ ଏଇ ଏକମାତ୍ର ଉଦ୍ଦେଶ୍ୟ ନେଇ । ସେହେତୁ ସେ ଚୁପ୍ ହୋଇ ବସିଥିଲା ଗଳ୍ପ ଉପନ୍ୟାସ ଓ ନାଟ୍ୟନାଟିକାର ଆଲୋଚନାବେଳେ । ଅନେଇ ବସିଥିଲା କାବ୍ୟକବିତାକୁ । କେତେବେଳେ ସେ ତା' ଶ୍ୟାମା ସୁନ୍ଦରୀକୁ ଧରେଇଦେବ ମୋତେ ଓ କହିବ ପ୍ରକାରାନ୍ତରେ— ଏଥର ବୁଝ ଯା' କଥା । ଦେଖୁନା ସେ କେମିତି ଚାହିଁଛି ତମ ଆଡ଼କୁ ?

କ୍ଷମା କର ଡାର୍ଲିଂ । ଡକ୍ଟର୍ ଶ୍ରୀବାସ୍ତବ ସେମିତିକା ଲୋକ ନୁହେଁ । ପ୍ରିୟା ପ୍ରୀତି ତୋଷଣ ତା' ଜାତକରେ ନାହିଁ । ତା'ଛଡ଼ା ମୁଁ ତ ତା' ଚାହାଣିକୁ ଦେଖି ନାହିଁ ସ୍ୱଚକ୍ଷୁରେ । ମୁଁ କାହିଁକି ବାନ୍ଧି ହୋଇଯିବି ସେଥିରେ ? ତେବେ ମୁଁ ତା' କବିତାକୁ ଆଉ ଥରେ ପଢ଼ିବି, ନିଶ୍ଚୟ ପଢ଼ିବି...

ଏବଂ ସେ ରୋମୀ ସେନ୍‌ଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳନ କଲେ । ଶୈଳର ଏକାଧିକ କବିତାକୁ ବାରମ୍ବାର ପଢ଼ିଲେ । ସେଇଦିନ ରାତିରେ । ଇଂରେଜୀରେ ତଥା ହିନ୍ଦୀରେ । ପଢ଼ିଗଲେ ଏବଂ ଅଳ୍ପବହୁତ ଆଶ୍ଚର୍ଯ୍ୟ ହେଲେ ଯେ ତାଙ୍କୁ ବୋର୍ ଲାଗୁ ନାହିଁ । ବାଧ ହୋଇ ଗୋଟାଏ କାମ କରୁଛନ୍ତି ବୋଲି ମନେ ହେଉ ନାହିଁ । ମୁଣ୍ଡ ବି' ଖେଳେଇବାକୁ ପଡୁ ନାହିଁ । ଖାଲି ଛବି ଓ ଧ୍ୱନିର ଏକ ଅବାରିତ ଶୋଭାଯାତ୍ରା । ଭଦ୍ରମହିଳା ବାଇସ୍କୋପ୍ ଦେଖଉଛନ୍ତି ଆମକୁ । କେଉଁ ଯାଦୁକରୀ ବନାନୀରେ ଥିବା ଯେତେକ ଫୁଲପତର, ଧୂସର ସବୁଜ, ପାଣିପବନ, ସିରିସିରି, ଝରଝର, ଚେଁଚାଁ ଓ କୁଁକୁଁର କୋଳାହଳ ଏବଂ ତାଙ୍କ ଚିମୁଟା-ଚୁମୁମାର କେତେ ବିଚିତ୍ର ପ୍ରେମ ଦିଆନିଆ... ଖାଲି ପ୍ରେମ, ଖାଲି ପ୍ରେମ... ଗଡ୍ !

କେତେବେଳକେ ତାଙ୍କ ମନକୁ ଆସିଲା— ଆରେ, ଏଠି କ'ଣ ମଣିଷ ନାହାଁନ୍ତି ? କିନ୍ତୁ ତା' ପରେ ସେ ନିଜକୁ କହିଲେ— ବେଶ୍ ତ ! ଜଣେ କେହି କବି ତ ସାହସ କରି କହିପାରୁଛି ଯେ ମଣିଷର ଲୋଡ଼ା ନାହିଁ, ଏଇ ସୁନ୍ଦର ପୃଥିବୀରେ !

ସୌନ୍ଦର୍ଯ୍ୟବୋଧର ଏଇ ଅସାଧାରଣ ସାହସ, ଇଏ କ'ଣ ଯୋଗ୍ୟ ନୁହେଁ ଗଂଗୋତ୍ରୀର ? ନ ହେଲେ କି ଅହି-ନକୁଳ ପରି ସମ୍ପର୍କ ଥିବା ରୋମୀ ଓ

ରାମହରି ଉଭୟେ ତା' ନାଆଁ ସୁପାରିଶ କରିଥାଆନ୍ତେ ? ଡକ୍ଟର୍ ଶ୍ରୀବାସ୍ତବ ଆଖି ବୁଜି ଆଣିଲେ ଏକ ଅପୂର୍ବ ସମ୍ଭାବନାର କଳ୍ପନାରେ । ଧର ଶେଷକୁ ଶୈଳଜା ପଣ୍ଡାକୁ ହିଁ ମିଳିଛି ଏଇ ପୁରସ୍କାର । ନିଷ୍ପତ୍ତିରେ ସଭାପତିଙ୍କ ହାତ ଯାହା ଥାଉ ନା କାହିଁକି, ରୋମୀ ନିଶ୍ଚୟ ଭାବିବ ଯେ ଏତେ ଦିନକେ ମୁଁ ମାନିଛି ତା' କଥା । ପୂରାପୂରି । ଗୁଡ୍ ବୟ ! ସେଇଠୁଁ ସେ କିଭଳି ଚ୍ୟାଲେଞ୍ଜ୍ ସୃଷ୍ଟି କରିବ ତା'ର ପରବର୍ତ୍ତୀ କେଉଁ ରାତିରେ ଏବଂ ତାଙ୍କୁ କିଭଳି ତା'ର ମୁକାବିଲା କରିବାକୁ ପଡ଼ିବ ତାଙ୍କର ସମସ୍ତ ଶକ୍ତି ଅନୁଯାୟୀ... । ଶ୍ରୀବାସ୍ତବ୍‌ଜୀ ଆଖି ଖୋଲି ପକେଇଲେ, ସତେକି ଦୃଶ୍ୟଟାକୁ ସମ୍ଭାଳି ହେଉ ନାହିଁ ।

X X X ଗତକାର ଟେଲିଭିଜନ୍‌ରେ ଏବଂ ଆଜିକାଲି ଖବରକାଗଜ ଜରିଆରେ ଘୋଷିତ ହୋଇସାରିଛି ଗଂଗୋତ୍ରୀବିଜେତା ତିନିଜଣଙ୍କର ନାଆଁ । ବାକୀ ଦୁଇଜଣ ଯିଏ ହୁଅନ୍ତୁ ନା କାହିଁକି, ଓଡ଼ିଶାରୁ ମଧ୍ୟ ଜଣେ । ଶ୍ରୀମତୀ ଶୈଳଜା ପଣ୍ଡା ।

ସେହେତୁ ପ୍ରଭୂତ ଆନନ୍ଦ ଓଡ଼ିଶାବାସୀଙ୍କ ମନରେ । ମଧ୍ୟ ବିସ୍ମୟ । ଅନେକେ ତାଙ୍କ ନାଆଁ ଶୁଣି ନାହାନ୍ତି, ଯେଉଁମାନଙ୍କର ବିଶେଷ ଆଗ୍ରହ ନ ଥାଏ ଓଡ଼ିଆ ସାହିତ୍ୟ ପତ୍ରିକା ପଢ଼ିବାରେ । କିନ୍ତୁ ସାହିତ୍ୟିକମାନେ ପଢ଼ିଛନ୍ତି ତାଙ୍କ କବିତା । ହେଲେ ସେମାନେ ମଧ୍ୟ ପରସ୍ପରର ମୁହଁକୁ ଚାହୁଁଛନ୍ତି, କଥାଟାକୁ ବୁଝି ନ ପାରିଲା ପରି । ୟା'ଙ୍କୁ କେମିତି ମିଳିଲା ଏତେ ବଡ଼ ପୁରସ୍କାର, ଆମର ମହାରଥୀମାନଙ୍କୁ ଛାଡ଼ିଦେଇ ? କୁଆଡ଼େ ଗଲେ ଆମର ଔପନ୍ୟାସିକ ରୁଦ୍ର ବଳୀୟାର ସିଂ, କବି ଜଗନ୍ନାଥ ଘଡ଼େଇ, ଗାଳ୍ପିକ ବିରଞ୍ଚି ସ୍ୱାଇଁ ଓଗେର ? ଆଉ ଯଦି ବୃଦ୍ଧ ଜରଦ୍‌ଗବମାନଙ୍କୁ ଦିଆଯାଏ, ତା'ହେଲେ ତ ଅଛନ୍ତି ଆମର ଦୁର୍ଦ୍ଧର୍ଷ ମିଷ୍ଟିକ୍ କବି ରାମହରି ଦାସ ! ହୁଏତ ମନେପଡ଼ିଯାଏ ଯେ ହଁ, ଏଇ ବୋଧହୁଏ କେବେ ପାଇଥିଲେ 'ଦିବ୍ୟଜ୍ୟୋତି' ପୁରସ୍କାର । କିନ୍ତୁ ସେ ତ ଗୋଟାଏ ସ୍ପେଶାଲିଷ୍ଟ୍ ପୁରସ୍କାର, କୋଉ ପ୍ରାଇଭେଟ୍ ସଂସ୍ଥା ତରଫରୁ, ଯାହାର ଗଣ୍ଡିମୁଣ୍ଡ ନ ଥାଏ । ଆଉ ଇଏ ହେଉଛି ସୁବିଦିତ ସର୍ବଭାରତୀୟ 'ସରକାରୀ' ପୁରସ୍କାର, ବାଣୀପରିଷଦ ତରଫରୁ । ଏଥିରେ ତ କିଛି ଗୋଟାଏ ମାପକାଠି ଥିବା ଦରକାର । ଯେମିତିକି ଶୁଣିଲା ମାତ୍ରେ ତାଳି ମାରିବାକୁ ମନ ହେବ ଯେ ଗୋଟାଏ ଯୋଗ୍ୟ ଲୋକ ଉଚ୍ଚ ହୋଇ ଠିଆ ହୋଇଛି ଆମ ଆଗରେ ? ବିସ୍ମିତ ସାହିତ୍ୟିକ ବାରମ୍ବାର ମୁଣ୍ଡ ହଲାଏ ଏବଂ ତା'ର ତର ସହେ ନାହିଁ କେଉଁ ସମସାହିତ୍ୟିକ ସହିତ ଆଳାପ-ଆଲୋଚନା ନ କରିବାଯାଏଁ ।

ଏହି ପ୍ରକାର ତାଡ଼ନାର ବଶବର୍ତ୍ତୀ ହୋଇ ନାନାଦି ଓଡ଼ିଆ ସାହିତ୍ୟିକ ଓ ସାହିତ୍ୟପ୍ରେମୀ ଏକାଠି ହେଉଥିଲେ ପୁରସ୍କାର ଘୋଷଣାର ପରବର୍ତ୍ତୀ ସକାଳ

ସଙ୍ଗମାନଙ୍କରେ । ତନ୍ମଧ୍ୟରୁ କ୍ୟାପିଟାଲ୍‌ର ସୁପ୍ରସିଦ୍ଧ ରାଣୀ କନକମଞ୍ଜରୀ ଲାଇବ୍ରେରୀର ସାନ ରିଡ଼ିଂ ରୁମ୍‌ରେ ମଧ୍ୟ ଗୋଟିଏ ବୈଠକ ଗଢ଼ି ହୋଇ ଯାଇଥିଲା ଦ୍ୱିତୀୟ ଦିନର ସନ୍ଧ୍ୟାରେ । ତାହା ବିଶେଷ ଉଲ୍ଲେଖଯୋଗ୍ୟ ଏହି ଉପାଖ୍ୟାନ ପାଇଁ, କାରଣ ପ୍ରଫେସର ରାମହରି ଦାସ ଆସି ପହଞ୍ଚିଗଲେ ସେଠି । ଯେଉଁ ବରିଷ୍ଠ କବି ଏବଂ ଅଧ୍ୟାପକ ମହାଶୟ ଏଭଳି ଆଳାପ-ଆଲୋଚନାର ପାଖ ମାଡ଼ନ୍ତି ନାହିଁ, ସେ ସ୍ୱତଃପ୍ରବୃତ୍ତ ହୋଇ ଆସିଥିଲେ, ଆଲୋଚନାରେ ଭାଗ ନେବାଲାଗି ଏବଂ ତାଙ୍କ ମୁହଁରେ ହସ ଥିଲା ।

ସାନ ରିଡ଼ିଂ ରୁମ୍‌ଟି ଏକଦା ଗବେଷକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିଲା । କିନ୍ତୁ କାଳକ୍ରମେ ତାହା ଆଲୋଚକମାନଙ୍କ କାମରେ ଲାଗିଲା, ଯେଉଁମାନେ ସେଠି ତାଙ୍କ ସ୍ୱର ଉଞ୍ଚେଇବାର ସୁବିଧା ପାଇଲେ ।

ଆଜି ସେମାନଙ୍କ ସ୍ୱର ବୋଧହୁଏ ଟିକିଏ ବେଶି ଉଞ୍ଚକୁ ଉଠିଥିଲା ଗଂଗୋତ୍ରୀ ପୁରସ୍କାରର ପରିପ୍ରେକ୍ଷୀରେ । ସାମ୍ବାଦିକ ପଶୁପତି ବଡ଼ାଳ, ଯେ ମଧ୍ୟ କବିତା ଲେଖନ୍ତି ମଝିରେ ମଝିରେ, ଟେବୁଲ୍ ବାଡ଼େଇ କହୁଥିଲେ—

"ଆରେ, ମୁଁ କ'ଣ ଜାଣେ ନାହିଁ ଏଇ ସବୁ ପୁରସ୍କାର କେମିତି ଦିଆଯାଏ ? ସେଥିପାଇଁ କେତେ ବୋତଲ ସ୍କଚ୍ ଓ କେଇଟା ଫାଇଭ୍-ଷ୍ଟାର୍ ଡିନର୍ ଯୋଗାଇବାକୁ ପଡ଼େ, ଠିକଣା ପାର୍ଟିମାନଙ୍କୁ ଖୁସ୍ କରିବାଲାଗି ? କିଓ, ମୁଁ ପରା ଦିଲ୍ଲୀରେ ଥିଲି ପାଞ୍ଚ ବର୍ଷ ? ଆଉ ମୋ ସାଙ୍ଗ ଥିଲେ ଯେତେକ ନାମ୍‌ଜାଦା କବି, ଆର୍ଟିଷ୍ଟ..."

"ତା'ମାନେ କ'ଣ ପୁରସ୍କାର ପାଇବାକୁ ହେଲେ ତମର ବଡ଼ଲୋକ ହୋଇଥିବା ଦରକାର ?"

"ଅବଶ୍ୟ । ଆଜ୍ଞା, ଆପଣ କ'ଣ ଜାଣନ୍ତି ନାହିଁ ଶୈଳଜାଙ୍କ ସ୍ୱାମୀ କଅଣ କାମ କରନ୍ତି, ଆଉ ତାଙ୍କର ରୋଜଗାର କେତେ ?"

କିନ୍ତୁ ବୈଠକରେ ମଧ୍ୟ ଥିଲେ ଜଣେ ସାହିତ୍ୟିକ ଯେ ଶୈଳଜାଙ୍କ ଯୋଗ୍ୟତା ବିଷୟରେ ସନ୍ଦିହାନ ଥିଲେ ମଧ୍ୟ ଅର୍ଥବଳର ଭୂମିକାକୁ ଏତେ ବେଶି ଗୁରୁତ୍ୱ ଦେଇପାରୁ ନ ଥିଲେ । ତେଣୁ ସେ ମୁଣ୍ଡ ହଲେଇ କହିଲେ, "କ୍ଷମା କରିବେ, ଘଟଣାଟା ଠିକ୍ ତା' ନୁହେଁ । ମଧ୍ୟ ତମେ ସୁନ୍ଦର ହୋଇଥିବା ଦରକାର ।"

"ହ୍ୱାଟ୍ ?" ଅନ୍ୟତମ ସାହିତ୍ୟିକ ପାଟି କରି ଉଠିଲେ ଏବଂ ପ୍ରାୟ ସମସ୍ତ ଶ୍ରୋତା ସେହିପ୍ରକାର ବିସ୍ମୟର ଭାବ ଦେଖାଇଲେ । କୁଜି ଗାଳ୍ପିକ ତଥା ଇଂରାଜୀର କନିଷ୍ଠ ଅଧ୍ୟାପକ ଶଶଧର ମହାନ୍ତିଙ୍କର ମୁଣ୍ଡ ଠିକ୍ ଅଛି ତ ?

କିନ୍ତୁ ଶଶଧରବାବୁ ଅର୍ଥପୂର୍ଣ୍ଣ ହସଟିଏ ଦେଇ ତାଙ୍କ ବକ୍ତବ୍ୟର ତାତ୍ପର୍ଯ୍ୟକୁ ବୁଝାଇବାକୁ ଲାଗିଲେ । କହିଲେ —

''ଶୁଣନ୍ତୁ, ଏଠି ସୁନ୍ଦରର ମତଲବ ଭିନ୍ନ । ସୁନ୍ଦରର ଅର୍ଥ ସୁଦୃଶ୍ୟ । ବାଣୀରାଣୀଙ୍କ ଦରବାରରେ, ଅର୍ଥାତ୍ ଶିଳ୍ପୀ ମହଲର ହାଇ-ସୋସାଇଟିରେ ସୁଦୃଶ୍ୟ । ଯେଉଁମାନଙ୍କୁ 'ବିଉଟିଫୁଲ୍ ପିପଲ୍' ବୋଲି କୁହାଯାଏ ଇଂରେଜୀରେ । ସେଠି ଖଗାମାନଙ୍କର ସ୍ଥାନ ନାହିଁ । କେବଳ ଯେଉଁମାନେ ନିଜକୁ ଠିକଣା ଭାବରେ ଚିହ୍ନେଇପାରିବେ ସେଇ ସୁରଭିତ ସ୍ୱର୍ଗରେ, ଉଚିତ ବେଶଭୂଷା, ଆଚାର ବ୍ୟବହାର, କଥାକୁହା ଚାତୁରୀ ଏବଂ ଭି.ଆଇ.ପି. ସମ୍ପର୍କର ଅଧିକାରୀ ହୋଇ, କେବଳ ସେଇମାନେ ହିଁ ସୁନ୍ଦର । ଟଙ୍କାସୁନା ଅବଶ୍ୟ ତାଙ୍କ କାମରେ ଆସେ, କିନ୍ତୁ ସିଏ ବି ସୁନ୍ଦର ଦିଶେ, ସାଂସ୍କୃତିକ ମହିମାରେ ମଣ୍ଡିତ ହୋଇ — କ'ଣ ବୁଝିଲେ ନା ମୁଁ କ'ଣ କହୁଛି । ସହଜେ ସେଇମାନଙ୍କ କବିତା ସୁନ୍ଦର ଏବଂ ପୁରସ୍କାରଯୋଗ୍ୟ ।''

ସୌନ୍ଦର୍ଯ୍ୟର ନୂତନତମ ସଂଜ୍ଞା ଶ୍ରୋତାମାନଙ୍କ ମନକୁ ପାଇଗଲା ଏବଂ ସେମାନେ ହସିଉଠିଲେ କେବଳ ଜଣକୁ ବାଦ୍ ଦେଇ । ସେ ଜନମତକୁ ସହଜେ ଗ୍ରହଣ କରି ପାରେ ନାହିଁ, ଭାବେ ଯେ ତା'ର ଗୋଟାଏ ସ୍ୱାଧୀନ ମତ ଅଛି, ଯାହାକୁ ସେମାନେ ଜାଣିବା ଦରକାର । ସେ ପାଟି କରି ଉଠିଲା —

''ନା । ଶୈଳଜା ସେମିତିକା ଲୋକ ନୁହନ୍ତି । ମୁଁ ତାଙ୍କୁ ଜାଣିଛି । ଏବଂ ମୋ ମତରେ ତାଙ୍କର କବିତା ପ୍ରକୃତରେ ସୁନ୍ଦର । ଯେତିକି ସରଳ, ସେତିକି ସୁନ୍ଦର...''

ଏହି ସମୟରେ ଘର ଭିତରକୁ ପଶିଆସିଲେ ପ୍ରଫେସର୍ ରାମହରି ଦାସ ଆଲୋଚକମଣ୍ଡଳୀକୁ ଅବାକ୍ କରିଦେଇ ଏବଂ କଥାର ସୁଅ ବଦଳିଯିବାକୁ ବାଧ୍ୟ ହେଲା ଯେତେବେଳେ ରାମହରିବାବୁ ସୁଚିନ୍ତିତ ଢେକାଟିଏ ଛାଡ଼ିଲେ ପାଣି ମଝିକୁ । କହିଲେ — ''ଶୁଣିଲି ଗୋଟାଏ ଜବର୍ ଆଲୋଚନା ଚାଲିଛି ଏଠି ଗଂଗୋତ୍ରୀ ପୁରସ୍କାରକୁ ନେଇ । ଭାବିଲି ମୁଁ ବି' ଟିକିଏ ମିଶିଯାଏ ଆପଣମାନଙ୍କ ସାଙ୍ଗରେ...''

କାହାରି ମୁହଁରୁ କଥା ବାହାରିଲା ନାହିଁ । କଅଣ କହିବାକୁ ଆସିଛନ୍ତି ସାର୍ ? ସମସ୍ତେ ଜାଣନ୍ତି ସେ ଶୈଳଜାଙ୍କ 'ପ୍ରେରଣା' । କିନ୍ତୁ ସେ ନିଜେ ମଧ୍ୟ ଜଣେ ବରିଷ୍ଠ କବି । ତେଣୁ ପ୍ରଥମେ ତାଙ୍କରି ପାଇବା କଥା ଏଇ ପୁରସ୍କାର, ସଂସ୍କାରସମ୍ମତ ବିଧି ଅନୁଯାୟୀ । ସେଇଠୁଁ ଦ୍ୱିତୀୟ ଢେକାଟିଏ ଛାଡ଼ିଲେ ରାମହରିବାବୁ ।

''ଆନନ୍ଦର କଥା, ଓଡ଼ିଶାରୁ ଜଣେ ପାଇଲା ଏବଂ ଯୋଗ୍ୟ ଲୋକଟିଏ ପାଇଲା ।''

ତା'ପରେ ଯେଉଁ ଗୁଞ୍ଜରଣର ଧ୍ୱନି ଶୁଣାଗଲା ସେଥିରେ ପ୍ରତିବାଦ ନ ଥିଲା, ଉଲ୍ଲସିତ ସମର୍ଥନ ନ ଥିଲେ ମଧ୍ୟ । ଯଥା — ହଁ, ତେବେ... ଯାହା କୁହନ୍ତୁ ପଛେ, ଭଲ ଲାଗେ ପଢ଼ିବାକୁ ତାଙ୍କ କବିତା... ଆନ୍ତରିକତା, ସେଇ ହେଉଛି ତାଙ୍କ କାବ୍ୟମାନସର ବୈଶିଷ୍ଟ୍ୟ...ଇତ୍ୟାଦି । କିନ୍ତୁ ସେଇ ପ୍ରତିବାଦୀପ୍ରବଣ ସାହିତ୍ୟିକ ସାହସ ବାନ୍ଧିଲା ପୁଣି କିଛି କହିବା ପାଇଁ, ନିଜର ସ୍ୱାଧୀନ ମତକୁ ଜାହିର୍ କରିବାଲାଗି । ପଚାରିଲା,

"ସାର୍, କିଛି ମନେକରିବେ ନାହିଁ । କିନ୍ତୁ ଆପଣଙ୍କ ଭଳି ଜଣେ ବରିଷ୍ଠ କବି ଥାଉଁ ଥାଉଁ ଶୈଳଜାଙ୍କୁ ମିଳିଲା ଏଇ ପୁରସ୍କାର, ଏଇଟା କ'ଣ ଠିକ୍ ହେଲା ?"

ଏହି ପ୍ରଶ୍ନ ପାଇଁ ପ୍ରସ୍ତୁତ ଥିଲେ ରାମହରି ଦାସ । କହିଲେ, "ଠିକ୍ ହେଲା । କାରଣ ମୋ କବିତ୍ୱର ଉପାଦାନ ଭିନ୍ନ, ଉଦ୍ଦେଶ୍ୟ ଭିନ୍ନ, ତେଣୁ ତା'କୁ ପୁରସ୍କାର ଦେବା ଅନୁଚିତ" । ଉହ୍ୟ ରହିଲା ଯେ ସିଏ ଯଥେଷ୍ଟ ଊର୍ଦ୍ଧ୍ୱରେ, ଯାହାକୁ ତମ ତଥାକଥିତ ସାହିତ୍ୟିକାର ହାତ ପାଇବ ନାହିଁ । କାରଣ ମୋର ଲେଖା ସାହିତ୍ୟ ନୁହେଁ, ଗୋଟାଏ ମହାକବିର କ୍ରୋଧ ଯେ ତା'କୁ ଏଭଳି ଗୋଟାଏ ଇତର ସାଧାରଣ ସମାଜରେ ଜନ୍ମ ହେବାକୁ ଥିଲା !

ଶ୍ରୋତାମଣ୍ଡଳୀ ନୀରବ । ତାଙ୍କ ବିମୂଢ଼ତାକୁ ଉପଭୋଗ କଲେ ରାମହରି ଦାସ ଏବଂ ମୃଦୁ ମୃଦୁ ହସିଲେ । ରାମହରିଙ୍କର ସ୍ମିତହାସ ଏତେ ସମୟଯାଏଁ ରହିଥିବ ତାଙ୍କ ଓଠରେ, ଖାଲି ତିଷ୍ଠି ରହିଥିବ ନୁହେଁ, ପ୍ରସାରିତ ହେଉଥିବ, ଏହି ଅପୂର୍ବ ଦୃଶ୍ୟ କାହାରି ଆଖିରେ ପଡ଼ି ନ ଥିଲା ଏଥି ପୂର୍ବରୁ । କିନ୍ତୁ ପ୍ରଶ୍ନକର୍ତ୍ତା ସ୍କୁଲ୍‌ମାଷ୍ଟର୍ ସାରଥି ବେହେରାର ସାହସ ମଧ୍ୟ ତିଷ୍ଠି ରହିଥିଲା ଏବଂ ଆହୁରି ଉଚ୍ଚକୁ ଉଠିବ ବୋଲି ବସିଥିଲା । ସେହେତୁ ସେ ପୁଣି ପଚାରିଲା, ନୀରବତା ଭଙ୍ଗ କରି —

"କିନ୍ତୁ ଏଇ ଭିନ୍ନତାର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଅଛି ସାର୍ ଏବଂ ତା'କୁ ତା'ର ପାଉଣା ମିଳିବା ଉଚିତ । ତେଣୁ ମୋ ମତରେ (ଇଏ ମୋ ସ୍ୱାଧୀନ ମତ), ଗଂଗୋତ୍ରୀ ଯୁଆଡ଼େ ଯାଉ ନା କାହିଁକି, ଆପଣଙ୍କୁ ଅନ୍ତତଃ ଗୋଟାଏ ପୁରସ୍କାର ମିଳିବା ବିଧେୟ । ଦେଶର ସର୍ବଶ୍ରେଷ୍ଠ ସାରସ୍ୱତ ସମ୍ମାନ — 'ବାଣୀସନ୍ତାନ' ।"

ରାମହରିବାବୁ ତାଙ୍କ ସ୍ମିତହାସକୁ ଫେରାଇ ଆଣିଲେ । କାରଣ ତାଙ୍କର ମନେପଡ଼ିଗଲା ଯେ ତାଙ୍କ ଅନୁଗତା, ଖୋଦ୍ ଶୈଳଜା ପଣ୍ଡା ମଧ୍ୟ ଏହି ଶୁଭେଚ୍ଛା ଜଣାଇଥିଲା, ଯେତେବେଳେ ସେ ତା'କୁ କହିଲେ ସେ କିଭଳି ଉପାୟ କରୁଛନ୍ତି

ତା' ପାଇଁ ଏବଂ ସେ ତା'କୁ ଧନ୍ୟବାଦ ନ ଦେଲେ ମଧ 'ନୋ ଥ୍ୟାଙ୍କ୍ସ' ବୋଲି କହିପାରି ନ ଥିଲେ । ଖାଲି ଗୋଟିଏ ଅନିର୍ଦ୍ଦିଷ୍ଟ ମୁରୁକିହସା ଦେଇଥିଲେ ଏବଂ ଆଜି ଏଇ ଅଚିହ୍ନା ଟୋକାଟା ବି ସେଇଆ କହୁଛି ଏବଂ ତା'କୁ ଦବେଇଦେଇ ହେଉ ନାହିଁ ।

...ହଉ । କ୍ଷତି କଅଣ ? ବାଣୀସନ୍ତାନ ରାମହରି ଦାସ । ମଜା ଲାଗୁଛି ଶୁଣିବାକୁ । ଲଙ୍କେଶ୍ୱରଙ୍କ ମୁହଁରେ ହରିନାମ ପରି । ହଉ, ସେଇଆ ହେଉ । ମୁଁ କିଛି କହିବି ନାହିଁ ତା' ବିରୋଧରେ, ଏଥର ଯେମିତି କଲି । ବରଂ ତା'କୁ ଆସିବାକୁ ଦେବି । ମୌନଂ ସମ୍ମତି ଲକ୍ଷଣଂ । କିନ୍ତୁ ତା' ପରେ ପରେ, ମାନେ ତା'ର ଘୋଷଣା ହେଲା ପରେ ପରେ ମୁଁ କ'ଣ କରିବି ଜାଣିଛ ?—

ପ୍ରତ୍ୟାଖ୍ୟାନ ! ପଦାଘାତ । ସେଇ ତଥାକଥିତ ସର୍ବଶ୍ରେଷ୍ଠ ପୁରସ୍କାରକୁ 'ଧନ୍ୟବାଦ, ଫେରାଇନିଅ' ବୋଲି କହିବି ଏବଂ ତାହାହିଁ ହେବ ତମର ସାହିତ୍ୟ ପ୍ରତି ମୋର ଚରମ ଧିକ୍କାର । କରିବି, ଯାହା କେହି କେବେ କରି ନାହାନ୍ତି କି କରିବେ ନାହିଁ । ଆଉ ତମେ ସବୁ ବୁଝିବ ରାମହରି ଦାସର ମହତ୍ତ୍ୱ । ବୁଝିବ ତା'ର ବ୍ୟକ୍ତିତ୍ୱ କେଉଁ ଧାତୁରେ ଗଢ଼ା ।

ରାମହରି ନିରୁତ୍ତର ରହିଲେ ଏବଂ ପୁଣି ଏକ ଦୁର୍ଲ୍ଲଭ ହସର ପରାକାଷ୍ଠା ଦେଖାଇଲେ । କିନ୍ତୁ କେବଳ ଇଂରାଜୀ ଅଧ୍ୟାପକ ଶଶଧର ମହାନ୍ତି, ଯେ ଏକଦା ତାଙ୍କର ଛାତ୍ର ଥିଲେ, ସେଇ ବୁଝିଲେ ଯେ ଇଏ ସାଧାରଣ ହସ ନୁହେଁ । ଏଥିରେ କିଛି ଗୋଟାଏ ପ୍ରଚ୍ଛନ୍ନ ବିଦ୍ରୂପ ଅଛି, ଯାହାକୁ ସେ ବ୍ୟକ୍ତ କରିପାରୁ ନାହାନ୍ତି । ଯେଉଁଭଳି ହସ ତାଙ୍କ ଓଠରେ ଉକୁଟି ଉଠେ, ଯେତେବେଳେ କ୍ଲାସ୍‌ରେ ପାଠ ପଢ଼େଇଲାବେଳେ ସେ କେଉଁ ଲୋକପ୍ରିୟ ଓ ସୁପ୍ରସିଦ୍ଧ ଲେଖକଙ୍କୁ ତୁଚ୍ଛ ବୋଲି ଜଣାଇବାକୁ ଚାହାନ୍ତି, ହେଲେ ସେଥିରେ ବ୍ୟାଖ୍ୟା କରିପାରନ୍ତି ନାହିଁ ।

X X X ଶୈଳ ତା'ର ପେଟୁଆ ସ୍ପେଶାଲ୍ ଚମଡ଼ା ବ୍ୟାଗ୍‌ଟିକୁ ଶୋଇବା ଘରକୁ ନେଲା । ଉଦ୍ଦେଶ୍ୟ, ସେଥିରେ ଭର୍ତ୍ତି ହୋଇଥିବା ଅଭିନନ୍ଦନପତ୍ରଗୁଡ଼ିକୁ ଗୋଟି ଗୋଟି କରି ପଢ଼ିବ, ଆଖିକୁ ନିଦ ଲାଗି ଆସିବାଯାଏଁ ଏବଂ ସ୍ଥିର କରିବ କେଉଁମାନଙ୍କୁ ହାତଲେଖା ଉତ୍ତର ଦେବାକୁ ପଡ଼ିବ ଏବଂ କେଉଁମାନଙ୍କୁ ଟାଇପ୍‌କରା ଷ୍ଟାଣ୍ଡାର୍ଡ଼୍ ଉତ୍ତର ଦେଲେ ଚଳିବ । ତା' ମନରେ ବିପୁଳ ଉତ୍ସାହ ଥିଲା ବୋଲି କହି ହେବ ନାହିଁ । କାରଣ ସେ ଥକିଯାଇଛି ଦିନର ଯେତେକ ସମ୍ବର୍ଦ୍ଧନା ଓ ସାକ୍ଷାତକାର ଆଦି ଉପଚାରରେ । ତେବେ ଏଇ କାମଟାକୁ ସାରିବାକୁ ପଡ଼ିବ ଯେମିତି ହେଲେ । ପୁରସ୍କାର ଘୋଷଣାର ଆସି ଦଶଦିନ ହେଲାଣି । କିନ୍ତୁ ସେ ନିଜକୁ କହୁଥିଲା ଯେ ଇଏ କେବଳ କର୍ତ୍ତବ୍ୟ ନୁହେଁ, ମଧ ଏକ

ଆନନ୍ଦବର୍ଦ୍ଧକ କାମ । ସଫଳତାକୁ ନିରୋଳାରେ ଚାକୁଳେଇ ହେଲା ପରି । ଯାହା କେବଳ ସମ୍ଭବ ଆମ ବେଡ୍‌ରୁମ୍‌ରେ ଏବଂ ଏତିକିବେଳେ ।

... ଆମ ବେଡ୍‌ରୁମ୍ । ବାମ୍ଫୁଆ ମହାନଗରୀ ଭିତରେ ଥିବା ଗୋଟିଏ ସମ୍ଭ୍ରାନ୍ତ ଏକ୍ଜିକିଉଟିଭ୍‌ଙ୍କର ଘର । ମଶାନିବାରକ ଜାଲିରେ ଘେରା ହୋଇଥିବା ଘର, ତେଣୁ ବୋଧହୁଏ ଅଧିକ ବାମ୍ଫୁଆ, ହେଲେ ତା'ରି ଭିତରେ ଥିବା ଆମ ଏୟାର କଣ୍ଡିସନ୍‌ଡ୍ କମରା । ଧୋବ ଫରଫର ଚାଦର ପରା ହୋଇଥିବ, ଝୁମନ୍ ତା' କାମ କରି ଯାଇଥିବ ଚୁପ୍‌କିନି ଓ ମୁଁ ତା' ଉପରେ ଲୋଟିଯିବି । ଆଉ ଚିଠିଗୁଡ଼ିକୁ ପଢ଼ିବି ଗୋଟି ଗୋଟି କରି ।

ଆଃ ! କି ଆରାମ ! ପ୍ରଥମ ପ୍ରବେଶର ପ୍ରତିଶ୍ରୁତି । କାନ୍ଥ ଘଡ଼ିରେ ରାତି ଦଶଟା ବାଜି ପନ୍ଦର ମିନିଟ୍ । ଅନ୍ତତଃ ଘଣ୍ଟାଏ ଖଣ୍ଡେ କରି ହେବ ଏଇ କାମ, ବିଶିଷ୍ଟ କାମ ଏବଂ ଇଏ ମଧ୍ୟ ଗୋଟାଏ ସାରସ୍ୱତ କାମ... ହଁ, ଶୈଳଜାର ମନରେ ଯତ୍‌ସାମାନ୍ୟ ଉତ୍ସାହ ଥିଲା, ତା'କୁ ବିପୁଳ ନ କହିଲେ ମଧ୍ୟ ।

ଆମ ବେଡ୍ ରୁମ୍ । ତେଣୁ କମରାରେ ଆଉ ଜଣେ ରହିଛି, ରହିବା କଥା । ଦିବ୍ୟ ଆରାମରେ ଶୋଇଯାଇଛି । ଆଜିକାଲି ବହୁତ ଶୀଘ୍ର ଶୋଇପଡୁଛନ୍ତି ଭଦ୍ରଲୋକ । ଶୁଅନ୍ତୁ, ଭଲକଥା ।

ଭଲ କଥା । ଶୈଳଜା ତା'ର ବ୍ୟାଗ୍‌ଟିକୁ ଖୋଲିବାକୁ ଲାଗିଲା । କିନ୍ତୁ କ୍ଷଣକପାଇଁ ତା'ର ମନେହେଲା ଯେ ତା'ର ମଧ୍ୟ ଶୋଇପଡ଼ିବା ଉଚିତ ଏବଂ ରାଗ ହେଲା ଆର ଲୋକଟି ଉପରେ । ତମେ କାହିଁକି ଏମିତି ଶୋଇପଡ଼ିବ ଆରାମରେ ? ମୋତେ ଯଦି ଶୋଇବାକୁ ମନା, କାହିଁକିନା ଏଇ ଗଦାଗଦା ଚିଠି ପଢ଼ିବାକୁ ପଡ଼ିବ, ମୋ ସଫଳତାର ଉତ୍ସବ ଓ କୋଳାହଳକୁ ଆବୁରିବାକୁ ପଡ଼ିବ, ନିଦର ତାଡ଼ନା ସହି ନ ପାରିବାଯାଏଁ, ତା'ହେଲେ ତମେ କାହିଁକି ଶୋଇପଡ଼ିବ ଏମିତି ? ଏଇ ଉତ୍ସବର ଦଡ଼ମଡ଼ି କ'ଣ ଖାଲି ମୋର, ତମର ନୁହେଁ ? କାହିଁ, ଆଗରୁ ତ ଏମିତି ଶୋଇଯାଉ ନ ଥିଲ ?...

କାହିଁ, ଆଗରୁ ତ ଏମିତି ଶୋଇ ଯାଉ ନ ଥିଲ ? ଏଇ ଅକାରଣ ଅବାନ୍ତର ପୋକଟି ରୁଟ୍‌କିନି କାମୁଡ଼ିଦେଲା ତାକୁ, ଏବଂ ଚେତେଇଦେଲା ଯେ ସେଥିର ଅର୍ଥ ଅଛି । କିନ୍ତୁ ଶୈଳଜା ତାଙ୍କୁ ବାହାରକୁ ଫିଙ୍ଗିଦେଲା ଦୃଢ଼ତାର ସହ ଏବଂ ତା' ଚିଠିପଢ଼ା ଆରମ୍ଭ କଲା ।

ସବୁତକ ଖଟ ଉପରେ ଅଜାଡ଼ିଦେଇ ସାରିଲା ପରେ ସେ ଠିକ୍ କଲା ଯେ ପ୍ରଥମେ ଓଡ଼ିଶାରୁ ଆସିଥିବା ଚିଠିଗୁଡ଼ିକ ପଢ଼ିବା ଦରକାର । କାରଣ

ସେମାନେ ଯେମିତି ବୁଝିଛନ୍ତି ତା' ଭାଷା, ତା' କବିତାର ଭାଷା, ତା'କୁ ଅନ୍ୟମାନେ ବୁଝି ନ ଥିବେ ଅନୁବାଦ ଢରିଆରେ ।

...ଶୈଳ, ତୁ କାହାକୁ ଠକଉଛୁ କହିଲୁ ? ଅସଲ କଥା ତୁ ସେମିତି ପିଲା ହୋଇ ଅଛୁ । ଦଶରୁ ଆଠ ମାର୍କ ପାଇବାର ବିରାଟ ସଫଳତାକୁ ପ୍ରଥମେ ମୋ ବାପାବୋଉ ଚିହ୍ନିବା ଦରକାର, ତା'ପରେ ଆଉ ଯିଏ — ଏଇଆ ନା ? ବାପାବୋଉ ପାଖରେ ନାହାନ୍ତି, ବାପା ତ ସ୍ୱର୍ଗକୁ ଗଲେଣି ଆଉ ବୋଉ ବିଛଣାଲଗା ହେଲାଣି, ସେଇଥିଲାଗି ଅନ୍ୟ 'ଆତ୍ମୀୟ'ମାନଙ୍କ ବାହାବା ଆଗେ ଦରକାର ତୋର ।

ବେଶ୍ । କିନ୍ତୁ ଏଥିରେ ଲଜ୍ଜାର କାରଣ କିଛି ନାହିଁ । ମୁଁ ସର୍ବଭାରତୀୟ କବି ହେଲେ ମଧ୍ୟ ଜଣେ ଓଡ଼ିଆଣୀ କବି ଏବଂ ତାହାହିଁ ମୋର ଗର୍ବ । ... କ୍ଷଣକପାଇଁ ଅଟକିଗଲା ଉତ୍ତାରୁ ଶୈଳ ପଢ଼ିବସିଲା । ଗୋଟିକ ପରେ ଗୋଟିଏ ।

''ମାନନୀୟ ଶୈଳଜା ଦେବୀ । ଆମେ ଗର୍ବିତ ଯେ ଆପଣଙ୍କୁ ଏ ବର୍ଷର ଗଂଗୋତ୍ରୀ ପୁରସ୍କାର ମିଳିଛି, କାବ୍ୟକବିତା ପାଇଁ । ଆପଣଙ୍କର ଲେଖନୀ ଉତ୍ତରୋତ୍ତର ଯଶସ୍ୱୀ ହେଉ...''

''ଡିଅର୍ ମିସେସ୍ ପଣ୍ଡା, ଇଟ୍ ଇଜ୍ ଏ ମ୍ୟାଟର୍ ଅଫ୍ ଗ୍ରେଟ୍ ପ୍ରାଇଡ୍ ଫର୍ ଅସ୍...'' ଇଂରେଜୀ ଚିଠି, କିନ୍ତୁ ଓଡ଼ିଶାରୁ ଆସିଛି ।

''ଶୈଳ ଅପା, କିଛି ମନେକରିବେ ନାହିଁ, ଆମେ ଏଭଳି ସମ୍ବୋଧନ କରୁଛୁ ଆପଣଙ୍କୁ । କିନ୍ତୁ ଆମକୁ ଠିକ୍ ସେମିତି ଲାଗିଲା, ଯେତେବେଳେ ଖବରଟିକୁ ଶୁଣିଲୁ ରେଡ଼ିଓରୁ ଯେ ପୁରସ୍କାର ମିଳିଛି ଆମର ଜଣେ ଭଉଣୀଙ୍କୁ...''

ଦେଖ, ଦେଖ, ମୁଁ କହୁ ନ ଥିଲି ? ଯେ ମୁଁ ଓଡ଼ିଆଣୀ ଏବଂ ତାହାହିଁ ମୋର ଗର୍ବ ? ଦେଖ, କେତେ ନୂଆ ଭାଇଭଉଣୀ ମିଳିଯାଇଛନ୍ତି ମୋତେ ! ଶୈଳ ଉଲ୍ଲସିତ ହୋଇଉଠିଲା ଏବଂ ଭାବିଲା ଶାୟିତ ସ୍ୱାମୀଙ୍କୁ ନିଦରୁ ଉଠେଇଦେବ ଏବଂ ତାଙ୍କୁ ଆହ୍ୱାନ କରିବ — ''ଆସ, ଭାଗୀ ହୁଅ ମୋର ଏଇ ଅପୂର୍ବ ଆନନ୍ଦ ଉତ୍ସବରେ । ପୂରାପୂରି ମିଶିଯାଇ ମୋର ଅନୁଭବରେ । ତୁମ ଛଡ଼ା ଆଉ କାହାର ସେ ଅଧିକାର ଅଛି ?'' କିନ୍ତୁ ସେଇଠୁଁ ତା' ଆଖିରେ ପଡ଼ିଲା ତାଙ୍କ ଓଠରେ ଉକୁଟି ଉଠିଥିବା ଗୋଟାଏ ମଧୁରିଆ ହସ ଏବଂ ତା'କୁ ବିରକ୍ତ ଲାଗିଲା । ସତେକି ସେ ତା'କୁ ଥଟ୍ଟା କରୁଛନ୍ତି । ସେ ଫେରିଆସିଲା ତା'ର କାର୍ଯ୍ୟକ୍ରମକୁ ।

...ଅନେକ ଚିଠି ଆସିଛି ଓଡ଼ିଶାରୁ । ହଉ, ମୁଁ ପ୍ରତ୍ୟେକଟିକୁ ପଢ଼ିବି । ସେମାନେ ସମସ୍ତେ ମୋର ଆତ୍ମୀୟ... ଶୈଳ ଆଗେଇଗଲା । ହେଲେ ମନଟାକୁ ପୂରାପୂରି ଯୋଡ଼ିପାରିଲା ନାହିଁ ସେଥିରେ ।

...ଅବଶ୍ୟ ଏମାନେ ମୋର ଆତ୍ମୀୟ । କିନ୍ତୁ କାହାନ୍ତି ଅନ୍ୟମାନେ ? ମୋର ଭାଇବନ୍ଧୁ ଜ୍ଞାତିକୁଟୁମ୍ବ ? ବାପାବୋଉ ସିନା ମୃତ ଅବା ଅସମର୍ଥ, କିନ୍ତୁ ଅନ୍ୟମାନେ ଗଲେ କୁଆଡ଼େ ? ପାଞ୍ଚ ଭାଇଭଉଣୀଙ୍କ ଠାରୁ ଦଶଖଣ୍ଡ ଚିଠି ଆସିବା କଥା ତାଙ୍କ ସ୍ୱାମୀ-ସ୍ତ୍ରୀମାନଙ୍କୁ ମିଶେଇ, କିନ୍ତୁ ଆସିଛି ମାତ୍ର ତିନୋଟି । ଆଶା କରିଥିଲି ଅରୁଭାଇନା ନିଜ ହାତରେ ଖଣ୍ଡେ ଚିଠି ଲେଖି ପଠେଇବେ । କିନ୍ତୁ ଖାଲି ମାଳଅପା ବଧେଇ ଦେଇଛି ଦିହିଁଙ୍କ ତରଫରୁ...

ନେଭର୍ ମାଇଣ୍ଡ୍ । ଶୈଳ ନିଜକୁ ତିଆରିଲା ଯେ ସତରେ ସେ ବେଶି ପିଲାଳିଆ ହୋଇଯାଉଛି । ଯାହା ଜଣେ ମଧ୍ୟବୟସୀ କବୟିତ୍ରୀକୁ ଶୋଭା ପାଏ ନାହିଁ । ଶୁଣିଲେ ହସିବେ ଅନ୍ୟମାନେ । ରୋମୀ ଦି' ଲେଖିନାହାନ୍ତି କି ତାଙ୍କ ବଧେଇ ସାଙ୍ଗକୁ ? — ଏଇ ପୁରସ୍କାର କେବଳ ତୋର ନୁହେଁ, ଆମ ସମସ୍ତଙ୍କର । ଯେଉଁମାନେ ସାହିତ୍ୟକୁ ଭଲପାଉ—''

ହଁ, ଠିକ୍ ସେଇଆ । ଯେଉଁମାନେ ମାଆ ସରସ୍ୱତୀଙ୍କ ସନ୍ତାନ, ସେଇମାନେ ହିଁ ପ୍ରକୃତ ଆତ୍ମୀୟ ମୋ ପାଇଁ । ଅବଶ୍ୟ ସବୁଦିନେ ଥିଲେ, କିନ୍ତୁ ଏଣିକି ଅଧିକରୁ ଅଧିକ ନିଜର ହୋଇଯିବେ ଏବଂ ତାହାହିଁ ସ୍ୱାଭାବିକ । ହଠାତ୍ ଶୈଳର ଆଖିକୁ ଲୁହ ଆସିଲା ପରି ମନେହେଲା । ସତେକି ନୂଆ ଆତ୍ମୀୟମାନେ ଆସି ଭିଡ଼ କରିବାରୁ ପୁରୁଣାମାନେ ତା'କୁ ଛାଡ଼ିଛୁଡ଼ି ପଳେଇଯାଉଛନ୍ତି ।

...ତନୁ ଖାଲି ଗୋଟାଏ ଟେଲିଗ୍ରାମ୍ ପଠେଇଥିଲା ବୋଷ୍ଟନ୍‌ରୁ । ଟିକିଏ ଫୋନ୍ କରିପାରିଲା ନାହିଁ ? ଏଣୁତେଣୁ ବାଜେ କଥାରେ କେତେ ଫୋନ୍ କରେ । ହେଲେ ତା'ର ବୋଉ ଏତେ ବଡ଼ ପୁରସ୍କାର ପାଇଲା, ଅଥଚ ତା'ର ମନ ହେଲା ନାହିଁ ମୁହଁରେ ପଦେ କଥା ହେବାପାଇଁ ତା' ସାଙ୍ଗରେ ?

ଆଉ ମୋ ନବୀନତମ ଭାଇ କୁଳଭାଇନା ଗଲେ କୁଆଡ଼େ ? କୋଉ ସାଇବିରିଆରେ ଯାଇଁ ଅଛନ୍ତି ଯେ ଖବରଟା ଏ ପର୍ଯ୍ୟନ୍ତ ପହୁଞ୍ଚି ନାହିଁ ତାଙ୍କ ପାଖରେ ? ନା ସେ ଭାବୁଛନ୍ତି ଯେ ତାଙ୍କରି ଯୋଗୁଁ, ତାଙ୍କରି 'ତାଲିକା'କୁ ଅକ୍ଷରେ ଅକ୍ଷରେ ପାଳନ କରିବା ହେତୁ ମୋତେ ମିଳିଛି ଏଇ ପୁରସ୍କାର, ତେଣୁ ମୋତେ ହିଁ ପ୍ରଥମେ ତାଙ୍କୁ ବଧେଇ ଦେବା ଉଚିତ ?...

ସେଇଠୁଁ ସେ ପୁଣି ଥରେ ଅନେଇଲା ସୁଖନିଦ୍ରାରେ ଶୋଇଥିବା ସ୍ୱାମୀଙ୍କ ଆଡ଼କୁ ଏବଂ ତା'ର ଧାରଣା ହେଲା ଯେ ସେଇ ମଧୁରିଆ ହସଟା ତଥାପି ଲାଖି ରହିଛି ତାଙ୍କ ଓଠରେ ।

'ଆଇ ହେଟ୍ ୟୁ !' ପ୍ରଚଣ୍ଡ ଅଭିମାନରେ ତା'ର ପାଟିକରି ଉଠିବାକୁ ଇଚ୍ଛା ହେଲା ଆଜିକାଲିକାର ଟୀନ୍ଏଜର୍ଙ୍କ ପରି । ଏବେ ସେ ଆହୁରି କେତେ କଥା କହିଗଲା ମନେ ମନେ, ତାଙ୍କ ଶୁଣିବାଲାଗି —

ତମେ, କେବଳ ତମେ ! ତମେ ହିଁ ମୋତେ ଭୁଲିଯାଇଛ, ଆଉ କେହି ନୁହେଁ । ତମେ ମୋର ଆତ୍ମୀୟ ନୁହଁ, ଅନ୍ତରଙ୍ଗ । କିନ୍ତୁ ଅନ୍ତରଙ୍ଗତାର କୋଉ ଲକ୍ଷଣ ଦେଖେଇଲ ମୋତେ, ଏଇ ଖବରଟା ପାଇଲାରୁ ? ହଁ, ଅଫିସ୍ରୁ ଫୋନ୍ କରିଥିଲ ମୋତେ କଂଗ୍ରାଚୁଲେଟ୍ କରି ଏବଂ ମୋ ସାଙ୍ଗରେ ହାତ ମିଳେଇଥିଲ ଅଫିସ୍ରୁ ଫେରିଲା ପରେ । ବାସ୍ ? ସ୍ୱାମୀର କ'ଣ ଆଉ କିଛି କରିବା ପାଇଁ ଇଚ୍ଛା ହୁଏ ନାହିଁ, ତା' ସ୍ତ୍ରୀକୁ ନେଇ, ଯେତେବେଳେ ତା'କୁ ଏଭଳି ଏକ ପୁରସ୍କାର ମିଳେ, ଏଭଳି ଏକ ସମ୍ମାନ ? ନା ତମ ଉଦାର ଉନ୍ନତ ସ୍ୱାମୀପଣ ଏତେ ନିଆରା ଯେ...

ଯେଉଁ ଲୁହର ଉଦ୍‌ଗମ୍‌କୁ ସେ ଅଟକେଇ ରଖିଥିଲା, ତାକୁ ବୋଧହୁଏ ଆଉ ବାରଣ କରି ହୋଇ ନ ଥାଆନ୍ତା । କିନ୍ତୁ ଶୈଳ ନିଜକୁ କୌଣସିମତେ ସଞ୍ଜତ କଲା ଏବଂ ତା' ଚିଠିପତ୍ରକୁ ସାରିଦେବାକୁ ଚାହିଁଲା ।

ପଢୁ ପଢୁ ତା' ଆଖି ଉଠେଇପାରିଲା ନାହିଁ ଗୋଟିଏ ଚିଠିରୁ ; କିଏ ଗୋଟାଏ ଲେଖିଛି, ବେନାମି ଚିଠି । —''ଶ୍ରୀମତୀ ଶୈଳଜା ପଣ୍ଡା ମହୋଦୟେଷୁ, ନମସ୍କାର । ବଧେଇ । କିନ୍ତୁ ଆଜ୍ଞା, ଗୋଟିଏ କଥା ଜଣେଇବେ କି ଆମ ପାଠକ ସମାଜର ଅବଗତି ପାଇଁ ? କହିବେ କି ଆପଣଙ୍କୁ କେଉଁ ପ୍ରକାର ମୂଲ୍ୟ ଦେବାକୁ ପଡ଼ିଲା, ଏଇ ପୁରସ୍କାର ପାଇବାଲାଗି ? କେତେ ଧାଁଧପଡ଼ ଓ କେତେ ଲଞ୍ଚଡିନର୍ ଇତ୍ୟାଦିର ବ୍ୟୟ, ଅନୁବାଦ ପାଇଁ କେତେ ପାରିଶ୍ରମିକ ଏବଂ କେତେ ତୋଷାମଦର ଲିଖିତ ଓ କଥିତ ଫର୍ଦ୍ଦ ? କାହିଁକିନା ହିସାବଟା ଆମ କାମରେ ଲାଗିବ, ଯଦି କାହାର ହିମ୍ମତ୍ ହୁଏ ଆପଣଙ୍କ ଜ୍ୱଳନ୍ତ ଉଦାହରଣକୁ ଅନୁସରଣ କରିବା ପାଇଁ...''

...ଛେଳୁଆ ! ନିଜର ନାଆଁ ଲେଖିବାକୁ ବି' ସାହସ ନାହିଁ । କିନ୍ତୁ ତୁ ଯାହା ଲେଖିଛୁ ସବୁ ମିଛ, ପୂରାପୂରି ମିଛ । କୁଳଭାଇନାଙ୍କ ତାଲିକା ଅନୁଯାୟୀ ମୁଁ ଯାହା ଲେଖିଛି, ତାହା ପ୍ରତ୍ୟେକ ଲେଖକ-ଲେଖିକାର ଧର୍ମ । ସେଥିରେ

କୋଉ ନୀଚ ଦୋଷାମଦ ନାହିଁ, କାହାକୁ ଖୁସ୍ କରିବାଲାଗି । ଆଉ ମୋ ସ୍ୱାମୀଙ୍କର ଯଦି ପଇସା ଅଛି ସେହିସବୁ ଖର୍ଚ୍ଚ ତୁଲେଇବା ପାଇଁ, ତୋର କ'ଣ ଯାଉଛି ସେଥିରେ ? ତୋ ମୁଣ୍ଡ କାହିଁକି ବଥଉଛି ? ଶୈଳ ରାଗରେ ପାଚିଗଲା ଏବଂ ଗୋଟାଏ ମୁହୂର୍ତ୍ତରେ ତା'ର ଇଚ୍ଛା ହେଲା ଚିଠିଟାକୁ ଟିକିଟିକି କରି ଛିଣ୍ଡେଇଦେବ ।

କିନ୍ତୁ ତା'ର ପୁଣି ଆଖି ପଡ଼ିଲା ନିଦ୍ରିତ ସ୍ୱାମୀଙ୍କ ଉପରେ । ଏବଂ ତା' କ୍ରୋଧର ସ୍ୱରୂପ ବଦଳିଗଲା । କାରଣ ତା'ର ମନେହେଲା ଯେ ସେଇ ଭୀରୁ ହିଂସୁକୁଟିଆ ଲୋକଟା ସତ କଥା କହିଛି ଗୋଟାଏ ହିସାବରେ । ଶୈଳକୁ ହୁଏତ ଗୋଟାଏ ମୂଲ୍ୟ ଦେବାକୁ ପଡ଼ିଛି । ସାଂଘାତିକ ମୂଲ୍ୟ । ଶତ୍ରୁକୁ ବି ଏମିତି ମୂଲ୍ୟ ଦେବାକୁ ନ ପଡୁ, ତା'ର ସଫଳତା ପାଇଁ ! ପଲ୍ଲବୀ ଯେଉଁ ଇଙ୍ଗିତ ଦେଇଥିଲା, ତା' ସ୍ୱାମୀଙ୍କ ବିଷୟରେ, ତା'କୁ ମିଛ ବୋଲି କହି ହେବ ନାହିଁ...

ସେଇଠୁଁ ସେ ତା' ଲୁହକୁ ଛାଡ଼ିଦେଲା ଆସିବା ପାଇଁ । ଏତେ ଲୁହ, ଏଭଳି ଧାରାଶ୍ରାବଣ ଯେ ସେ ମୁହଁ ମାଡ଼ିଦେଲା ତକିଆ ଉପରେ ଏବଂ ଆହୁରି ଆହୁରି କାନ୍ଦିବାକୁ ଲାଗିଲା ଏବଂ ତା' ସ୍ୱାମୀଙ୍କୁ ସମ୍ବୋଧିଲା ସେଇ ଲୁହ କୋହ ଭିତର ଦେଇ —

କିନ୍ତୁ ମୋର କୌଣସି ଦୋଷ ନାହିଁ, ମିଷ୍ଟର୍ ! ଯଦି ବା ଦୋଷ ଥିଲା କେଉଁଠି କିଛି, ତମେ ମୋତେ ବତେଇଦେଲ ନାହିଁ କାହିଁକି ? ଥରେ ହେଲେ ରାଗିଲ ନାହିଁ କାହିଁକି ମୋ ଉପରେ ?

ଠିକ୍ ଅଛି । ତା'ହେଲେ କୌଣସି କାରଣ ନାହିଁ ମୁଁ ମୋର ବାଟ ବଦଳେଇ ଦେବି । ଲୁହଭରା ଆଖିରେ ଶୈଳଜା ଉଠିପଡ଼ିଲା ବିଛଣାରୁ ଏବଂ ଗୋଟାଏ ଝରକାକୁ ଖୋଲିଦେଲା, କ୍ରୋଧ-ଶୋକର ଆବେଗରେ । ସୁଖନିଦ୍ରାରେ ଶୋଇଥିବା ସ୍ୱାମୀଙ୍କର ଥଣ୍ଡା ଘରକୁ ଉପହାସ କଲା ପରି ।

ଝଲକାଏ ଉଷୁମୁଳିଆ ପବନ ପଶିଆସିଲା ଭିତରକୁ । କିନ୍ତୁ ତା' ସାଙ୍ଗକୁ ମଧ୍ୟ ଶୁଭିଲା ସଙ୍ଗୀତ ଓ ବାଜା ବାଜଣାର ଧ୍ୱନି । ଶୈଳ ଦେଖିଲା ଯେ ପାଖ ବସ୍ତିରେ ମଉଜ କରୁଛନ୍ତି ସେମାନେ ଏବଂ ତା'ର ମନ ହେଲା ଡାକ ଛାଡ଼ିବାକୁ — ପ୍ଲିଜ୍, ମୋତେ ବି' ନେଇଯାଅ ସେଠିକି ! ମୁଁ ବି' ଥେଇ ଥେଇ ହେବି ତମ ସାଙ୍ଗରେ ! ଏଠି ଆଉ କ'ଣଟା ଅଛି ମୋ ପାଇଁ ?

# ତୃତୀୟ ଭାଗ

# ବାଣୀ ସନ୍ତାନ

## ତେର

ସକାଳୁ ସକାଳୁ କେ-ବି-କେ ବିଛଣାରେ ପଡ଼ିରହି ଅଳସ ଭାଙ୍ଗୁଥିଲେ ଏବଂ ଡେଙ୍ଗା ଡେଙ୍ଗା ଗଛମାନଙ୍କୁ ଦେଖୁଥିଲେ, ଯାହାର ନାଆଁ ଜଣା ନାହିଁ ତାଙ୍କୁ । ହେଲେ ତାଙ୍କ ସିଗିସିରି ଦେଖିବାକୁ ଭଲ ଲାଗୁଛି । 'ଫଲ୍' ଋତୁରେ ତାଙ୍କ ଦେହରେ ଯେଉଁ ରଙ୍ଗ ଚହଟିଯିବ, ତା'କୁ ବି' ଦେଖିବାକୁ ଭଲ ଲାଗିବ ମଧ୍ୟ ପରେ ଥୁଣ୍ଟା ହୋଇ ତାଙ୍କ ପଞ୍ଜରା ହାଡ଼ ଦେଖେଇଲେ । ହେଲେ ସେଗୁଡ଼ାଙ୍କର ନାଆଁ କଅଣ ? କେଉଁ ସ୍ୱପ୍ନ କି ସଂସ୍କାରର ଦ୍ରୁମ ହୋଇଛନ୍ତି, ଯଥା ଓସ୍ତ, ବର, ଆମ୍ୱ, ପଣସ, ଇତ୍ୟାଦି, ଯେ ମୁଁ କିଛି କହିପାରିବି ତାଙ୍କ ବିଷୟରେ ? ହେଲେ ମୋର ତିଳେ ହେଲେ ଇଚ୍ଛା ନାହିଁ ଜାଣିବାପାଇଁ । ଏଇ ଭଲ, ତାଙ୍କର ଏଇ ଅଚିହ୍ନାପଣ । ଉପଭୋଗଟା ହାଲୁକା ହୋଇ ରହିବ ସେଥିରେ, ଦଖଲ ଜମେଇବ ନାହିଁ ତମ ଉପରେ ।

ଯେମିତି ଏଠିକାର ଲୋକମାନେ । ତାଙ୍କର ନାଆଁ ଜାଣିଲେ କି ନ ଜାଣିଲେ ଯାଏ ଆସେ ନାହିଁ । ବସ୍ତୁତଃ ସମସ୍ତେ ଅଚିହ୍ନା । ତାଙ୍କର. ପରିବାର, ସଂସ୍କାର, ଧର୍ମଧାରଣାର ଘେର ସାଙ୍ଗରେ ମୋର କୌଣସି ସମ୍ପର୍କ ନାହିଁ । କିଏ ହସୁ ବା କିଏ କାନ୍ଦୁ, କୋଉ ସେଲ୍‌ସ୍‌ମ୍ୟାନ୍ ଅଯଥାରେ ଜୋକ୍ କରୁ ମୋ ଅଫିସ୍‌ରେ, କି ବାର୍‌ର ପାଖ ଷ୍ଟୁଲ୍‌ରେ ବସିଥିବା କେଉଁ ରମଣୀ ସୁଁସୁଁ ହେଉ ତା' ପ୍ରେମିକର ପ୍ରତାରଣାକୁ ନେଇ, ସେ ସମସ୍ତ ଉପଭୋଗ୍ୟ ମୋ ପାଇଁ ସମାନ ଭାବରେ । ଭାରତ ଛାଡ଼ି ଆସିବାର ଏଇ ତିନିବର୍ଷ ଭିତରେ ମୋର ଯେଉଁ ଲାଭ-କ୍ଷତି ହୋଇଛି, ତା'ର ଯୋଗ-ବିୟୋଗ କରିସାରିଲା ପରେ ଏଇ ହେଉଛି ମୋର ବଳକା ଲାଭ । ନେଟ୍ ଗେନ୍ ।

ଆଉ ଡୋରା ? ହଁ, ସେଇ ତ ମୋର ଅସଲ ଲାଭ ! ସେ ମୋର ସ୍ତ୍ରୀ, ହେଲେ ମୋର ଅଚିହ୍ନା ଏବଂ ମୋର ଇଚ୍ଛା, ଭଗବାନ୍ କରନ୍ତୁ ସେ ସେମିତି ଅଚିହ୍ନା ହୋଇ ରହିଥିବ ସବୁଦିନେ । ଆମେ ଯେଉଁ ସୁଖ କରୁଛୁ

ପରସ୍ପରକୁ ନେଇ, ସିଏ ସବୁଦିନେ ଏମିତି ଶୁଖା-ହାଲୁକା ହୋଇ ରହିଥିବ । କୋଉ ଅନାବଶ୍ୟକ ସେଣ୍ଟିମେଣ୍ଟରେ ଓଦା ହେବ ନାହିଁ, ଭାରୀ ହୋଇ ଉଠିବ ନାହିଁ । ଥ୍ୟାଙ୍କ୍ସ ।

"ହ୍ୟାଲୋ ଲେଜିବୋନ୍ସ୍, କଅଣ ଉଠିବ ନାହିଁ ଆଜି ? ଆଜି ଛୁଟିଦିନ ବୋଲି ଭାବୁଛ ନା କଅଣ ? ନା ଭିନ୍ନ ମତଲବରେ ଅଛ ? ଅଫିସ୍‌କୁ ଠକେଇ ଆହୁରି ପ୍ରେମ କରିବ ତମ ଡୋରା ସାଙ୍ଗରେ ?"

ନୋ ଫିଅର୍ସ୍ ଡାର୍ଲିଂ ! ସେଭଳି କୌଣସି ନିର୍ବୋଧ, କହିବାକୁ ଗଲେ ଆତ୍ମଘାତୀ ମତଲବ ଆଶା କରାଯାଏ ନାହିଁ ମିଷ୍ଟର୍ କୁଲ୍‌ଭୂଷଣ କର୍, ଆଇ.ଏ.ଏସ୍. ଠାରୁ । ଯାହାର ନାବାଳିକୀ ଫିଟିଗଲାଣି । ଅବଶ୍ୟ ପଚାଶ ପୂରିଲା ପରେ । ହେଲେ ଫିଟିଛି ତ ! କେ-ବି-କେ ଏହି ମର୍ମରେ ଉତ୍ତର ଦେଲେ ତାଙ୍କର ତରୁଣୀ ପତ୍ନୀକୁ । ଅବଶ୍ୟ ମନେ ମନେ ଏବଂ ଗୋଟାଏ ରହସ୍ୟମୟ ସ୍ମିତହାସ ଛାଡ଼ିଦେଲେ ତା' ଆଡ଼କୁ, ଯାହାର ଅର୍ଥ ସବୁଆଡ଼କୁ ପାଇବ ।

...ଏଇ୍ଲ ଡୋରା । କେହି ତା'କୁ ସୁନ୍ଦରୀ ବୋଲି କହିବ ନାହିଁ । ମୁଁ ମଧ୍ୟ କହିବାକୁ ନାରାଜ, ଯଦିଓ ମୁଁ ତା'କୁ ବାହା ହୋଇଛି ଏବଂ ଯେଉଁମାନେ ନୀଲ୍‌କୁ ଦେଖିଛନ୍ତି, ସେମାନେ ସହଜେ କାବା ହୁଅନ୍ତି ଯେ ନୀଲ୍ ପରେ ମୁଁ ଏଭଳି ଗୋଟିଏ ସ୍ତ୍ରୀକୁ କେମିତି ବାଛିଲି ତା'ର ଅଭାବ ପୂରଣ କରିବାପାଇଁ । ଦିଲ୍ଲୀରେ ନୀଲ୍‌କୁ ଜାଣିଥିବା ଗୋଟାଏ ଲୋକ ହଠାତ୍ ଆସି ପହୁଞ୍ଚିଗଲା ସେଦିନ । ଫରେନ୍ ସର୍ଭିସ୍‌ର ସଦାନନ୍ଦ ପିଲେଇ । କୋଉ ଟ୍ରେଡ୍ ଡେଲିଗେସନ୍‌ରେ ଆସିଛି ଲଣ୍ଡନ୍‌କୁ । ମୋତେ ଖୋଜି ଖୋଜି ହାଜର ପ୍ରାୟ ଏତିକିବେଳେ । ସେତେବେଳକୁ ମୁଁ ଖିଅର ହୋଇ ହାଉସ୍‌କୋଟ୍ ପିନ୍ଧି ମୋଟାମୋଟି ଠିକଣା ଦିଶୁଥିଲି । କିନ୍ତୁ ଡୋରା ରାତିପିନ୍ଧାଟାଏ ପିନ୍ଧି ନସରପସର ହେଉଥାଏ, ଅଯଥାରେ ବକର ବକର ହେଉଥାଏ, ଆଉ ଖିଲି ଖିଲି ହୋଇ ହସୁଥାଏ । ଏଣେ ତା' କାଖମୂଳ ଦିଶିଯାଉଥାଏ, ଏଇକ୍ଷଣି ଯେମିତି ଦିଶୁଛି । ଲୋମଶ । କିନ୍ତୁ, ଦୁଃଖର ବିଷୟ, ବେଲ୍ ବାଜିଲାରୁ ସେଇ ଯାଇଁ କବାଟ ଖୋଲିଦେଲା ଏବଂ ପିଲେଇ ଦେଖିଥିବ ତା'ର ଏଇ ଅସଭ୍ୟ ଚେହେରା ତଥା ତା'ର ଚେପ୍‌ଟା ନାକ, ଚଉଡ଼ା ଓଠ, ଅଲରା କେଶ ଏବଂ ଫ୍ରେକ୍‌ଲସ୍, ଗୋରା ଚମଡ଼ାରେ ପ୍ରାୟଶଃ ଯେଉଁ ଛିଟୁଫୁଟା ଛଉ ଦେଖିବାକୁ ମିଳେ । ତେଣୁ ପିଲେଇର ଦୋଷ ନୁହେଁ ସେ ଯେତେବେଳେ ତା'କୁ ପଚାରିଲା, —"ଇଜ୍ ଦି' ମାଷ୍ଟର୍ ଯାଟ୍ ହୋମ୍ ?" ମୁନିବ ଘରେ ଅଛନ୍ତି କି ?

ଡୋରା ଖିଲି ଖିଲି ହସରେ ତା'ର ଉତ୍ତର ଦେଲା ଏବଂ ମୁଁ ଚା' ପିଇବା ଅବସ୍ଥାରୁ ଉଠିଯାଇ ତା'କୁ ସ୍ୱାଗତ ଜଣାଇଲି ଏବଂ ତତ୍‌କ୍ଷଣାତ୍ ତା'ର ଭୁଲ୍

ଧାରଣାକୁ ବାତିଲ୍ କରିଦେଲି । ସଗର୍ବରେ କହିଲା ପରି କହିଲି, ''ମିଟ୍ ମାଇଁ ୱାଇଫ୍ ଡୋରା...''

ବୁଡ଼୍‌ବକ୍ ଅଭଦ୍ରଙ୍କ ପରି ଅନେଇ ରହିଲା ଡୋରା ଆଡ଼େ । କିରେ, ତା'ର ବେଶଭୂଷା ଯାହା ହେଉ ନା କାହିଁକି, ତୁ କୋଉ ବୁଦ୍ଧିରେ ତା' ଆଡ଼କୁ ଅନେଇଛୁ ଏମିତି, ମୁଁ ତା'କୁ ଚିହ୍ନେଇଦେଲା ପରେ ବି' ? ଏଇ ଆଦବ୍ କାଇଦା ଶିଖିଛୁ ତୋ ଫରେନ୍ ସର୍ଭିସ୍‌ରେ, ଯାହାର ସଂହିତା ଅନୁଯାୟୀ ତୋର ତତ୍‌କ୍ଷଣାତ୍ ମୁଣ୍ଡ ନୁଆଁଇ ତା'କୁ ଅଭିବାଦନ ଜଣେଇବା ଉଚିତ ଥିଲା ? ଅବଶ୍ୟ ସେଇଆ କଲୁ ଶେଷକୁ, କିନ୍ତୁ ସେଇ ଯୋଉ ଅଧମିନିଟିଏ ଅନେଇଲୁ ତା' ଆଡ଼କୁ ବୋକାଙ୍କ ପରି, ମୁଁ ତା'ର କାରଣ ବୁଝିପାରିଲି ନାହିଁ ସହଜେ । କିନ୍ତୁ ବୁଝିଲି କିଛି ସମୟ ପରେ । ତୁ ଜାଣିଛୁ ଯେ ମୁଁ ଆଉ ଥରେ ବାହା ହୋଇଛି ଏବଂ ମୋର ଜଣେ ବିଲାତି ଷ୍ଟେନୋଗ୍ରାଫର୍‌କୁ । ତଥାପି ତୁ କାବା ହୋଇଗଲୁ । ସତେକି ନୀଲ୍ ପରି ଜଣେ ସମ୍ଭ୍ରାନ୍ତ ସୁନ୍ଦରୀ ପରେ ତୁ ଏଇ ଅସଂଭୃତା, ଚାକରାଣୀ ପରି ଦିଶୁଥିବା ଏବଂ ଟୀନ୍‌ଏଜର୍‌ଙ୍କ ପରି ହସୁଥିବା ଡୋରାକୁ ମୋର ସ୍ତ୍ରୀ ରୂପେ ଗ୍ରହଣ କରିପାରିଲୁ ନାହିଁ !

ମୁଁ ଜାଣିଛି । ମୁଁ ଜାଣିଛି । ସ୍ୱାଭାବିକ ପ୍ରତିକ୍ରିୟା ଆମ ଇଣ୍ଡିଆନ୍‌ଙ୍କର । ଦେଖା ସୁନ୍ଦର 'ଶୋଭା' ହିଁ ବଡ଼ କଥା, ସେଥିରେ ସୁଖ ଥାଉ ବା ନ ଥାଉ ।

ହଁ, ମୁଁ ଗର୍ବିତ ଯେ ମୁଁ ଡୋରାକୁ ପାଇଛି । ସେ ସ୍ୱଚ୍ଛନ୍ଦରେ ହସିପାରେ, ହେଲେ ଜାଣେ ନାହିଁ ସୁଖକୁ କେମିତି କଳାତ୍ମକ କରାଯାଏ ଏବଂ କାହିଁକି ବା କରାଯିବ । ଛଳ ନ କରି କହିଯାଏ, ଯାହା ତା'ର ମନକୁ ଆସେ । ଏବଂ ତା'ର ବେଶଭୂଷା ଯେମିତି ଅମାର୍ଜିତ, ସେତିକି ନିର୍ଦ୍ଦୋଷ । ତା'ର ଅବାରିତ ସେକ୍ସ ପରି, ଯେଉଁଥିରେ ତିଳେ ମାତ୍ର ସଙ୍କୋଚ ନାହିଁ । କେଉଁ ଦେବୀ ମୋତେ ଅନୁଗ୍ରହ କରୁଛନ୍ତି, କିନ୍ତୁ ତାଙ୍କର ଏଇସବୁ ଇତର ବସ୍ତୁ ପ୍ରତି କୌଣସି ଆଗ୍ରହ ନାହିଁ — ଏହି ପ୍ରକାର ଭାବ କଦାପି ଆସେ ନାହିଁ, ତା' ସାଙ୍ଗରେ ପ୍ରେମ, ଆଇ ମିନ୍ ଦେହଲଗା ପ୍ରେମ, କଲାବେଳେ ମନେ ରଖିବାକୁ ହେବ ଯେ ଏହି ସମସ୍ତ ଗୁଣ ପାଇଁ ମୁଁ ବାହା ହୋଇଛି ତା'କୁ ।

କିନ୍ତୁ ତା'ର ଅର୍ଥ ନୁହେଁ ଯେ ମୁଁ ନୀଲ୍‌କୁ ଭଲପାଉ ନ ଥିଲି । କଥା ହେଉଛି ଯେ ପ୍ରେମର ସୁଖ ଓ ସ୍ୱାଧୀନତାବୋଧର ଆନନ୍ଦ, ଏଇ ଦୁଇଟିଯାକ ଜିନିଷ ଦରକାର ମଣିଷ ପାଇଁ । କିନ୍ତୁ ତାଙ୍କର ସହାବସ୍ଥାନ ବୋଧହୁଏ ସମ୍ଭବ ନୁହେଁ ଅଧିକାଂଶ କ୍ଷେତ୍ରରେ । ସେହେତୁ ଏକଦା ନୀଲ୍‌କୁ ଲୋଡ଼ିବା ଯେତିକି

ସତ ଥିଲା ମୋ ପାଇଁ, ଆଜି ଡୋରାକୁ ଲୋଡ଼ିବା ମଧ୍ୟ ସେତିକି ସତ ଓ ଯଥାର୍ଥ ।

ତେବେ ମୁଁ ମୋର ଅଭାବଟା ପୂରାପୂରି ବୁଝି ନ ଥିଲି ଅନେକ ଦିନଯାଏଁ । ଏଇ ପଶ୍ଚିମ ପୃଥିବୀକୁ ଆସିଲା ପରେ ଯାଇଁ ବୁଝିଲି । ଯେଉଁଠି ସ୍ୱାଧୀନତା କେଉଁ କାମ୍ୟ, କିନ୍ତୁ ସୁଦୂରବର୍ତ୍ତୀ ଧ୍ରୁବତାରା ନୁହେଁ, ନିତ୍ୟ ପ୍ରତ୍ୟହର ଉପଯୋଗୀ ସତ୍ୟ । କାର୍ଯ୍ୟକାରୀ ସତ୍ୟ । ଅତଏବ କେ-ବି-କେ ଅଲବତ୍ ବାହା ହୋଇପାରିବ ଡୋରା ପରି ଗୋଟିଏ ଝିଅକୁ ଏବଂ ପ୍ରତ୍ୟକ୍ଷରେ ଅନୁଭବ କରିପାରିବ ଯେ ସେ ମୁକ୍ତ । ମୁକ୍ତ ! ନୀଲ୍, ମୁଁ ତମକୁ ଅବଶ୍ୟ ଶ୍ରଦ୍ଧା କରୁଥିଲି, ଭଲ ପାଉଥିଲି । କିନ୍ତୁ ତମେ ମୋତେ ମାଡ଼ି ବସିଥିଲ । ମୋତେ ପୋତି ପକେଇଥିଲ ତମର ସର୍ବଜ୍ଞ ସଂସ୍କୃତ ଦେବୀପଣରେ । ମୋର ନିଃଶ୍ୱାସ ରୁନ୍ଧି ହୋଇଯାଉଥିଲା, ନୀଲ୍ — ଆଇ ଆମ୍ ସରି ଟୁ ସେ ଦ୍ୟାଟ୍ । ସତେକି ତମକୁ ବାହା ହୋଇଥିବାର ସୌଭାଗ୍ୟ ଏବଂ ସେଥିର ଦାୟିତ୍ୱକୁ ନିଭେଇବା ହିଁ ମୋର ପ୍ରଥମ କର୍ତ୍ତବ୍ୟ, ତା'ପରେ ଆଉ ଯୋଉ କଥା ଏବଂ ସେ ଦାୟିତ୍ୱ କେବଳ ତମକୁ ସୁଖ ଆଣିଦେବାର ଦାୟିତ୍ୱ ନୁହେଁ । ମଧ୍ୟ ଅପରଙ୍କୁ ତମେ ତମର ଯେଉଁ ଭକ୍ତମାନଙ୍କୁ ଆଣି ଜୁଟେଇଥିଲ ମୋ ପାଖରେ ।

ଯଥା ସେଇ କାଳୀ ସୁନ୍ଦରୀ ଓଡ଼ିଆଣୀ । ମୋର ନବଲବ୍ଧ 'ଭଉଣୀ', ଯାହାକୁ ମୁଁ ହୁଏତ ବାହା ହୋଇପାରିଥାଆନ୍ତି, ବାପାବୋଉଙ୍କ ବଡ଼ଲୋକୀ ଢଙ୍ଗକୁ ଅମାନ୍ୟ କଲାପରି । କିନ୍ତୁ ସେ ମୋତେ ବଶ କରିଦେଲା କି ତମକୁ ଭଲପାଇବାର ଦାୟିତ୍ୱକୁ ତୁଲେଇବାକୁ ଯାଇ ମୋର ଏଇ ଦଶା ହେଲା ଭଗବାନ୍ ଜାଣନ୍ତି, ମୁଁ ତା' ସାଙ୍ଗରେ ବି' କେମିତି ବାନ୍ଧି ହୋଇଗଲି ଦେଖ !

କିନ୍ତୁ ନୀଲ୍, ତମକୁ ମାନିବାକୁ ପଡ଼ିବ ଯେ ମୁଁ ତମର ଯେତେକ ନିର୍ଦ୍ଦେଶ ପାଳନ କରିଛି । ରାତିଶେଯର ନିର୍ଦ୍ଦେଶଠାରୁ ଆରମ୍ଭ କରି, ପାର୍ଟିର ଅତିଥିସୂଚୀ ପ୍ରସ୍ତୁତି କରିବାଯାଏଁ । ପ୍ରତିଟିକୁ ଚ୍ୟାଲେଞ୍ଜ୍ ବୋଲି ଗ୍ରହଣ କରିଛି ଏବଂ ତା'କୁ ତୁଲେଇଛି । ତୁଲେଇଛି ନା ନାହିଁ ? ତୁମେ ଚାଲିଗଲା ପରେ ମଧ୍ୟ ଯେଉଁ କାମ ବାକୀ ରହିଯାଇଥିଲା, ତମେ ଯାହା ଚାହିଁଥିଲ, ପ୍ରତ୍ୟେକଟିକୁ ପାଳନ କରିଛି । କରିଛି ନା ନାହିଁ ?

ଏପରିକି ସେଇ ଶୈଳଜା ପଣ୍ଡାର ଅଞ୍ଜଳି ବି' ଭରିଦେଇଛି ! ଆଶ୍ଚର୍ଯ୍ୟ ଭାବରେ ଭରିଦେଇଛି, ଯାହା ମୁଁ ନିଜେ କଳ୍ପନା କରିପାରି ନ ଥିଲି । ଭାବି ନ ଥିଲି ଯେ ଏତେ କାମ ଦେବ ମୋ ତାଲିକା ଖଣ୍ଡକ, ଯାହାକୁ ମୁଁ ତିଆରି କରିଥିଲି ତମରି ଆଶ୍ରମରୁ ହାସଲ କରିଥିବା ବିଦ୍ୟାକୁ ନେଇ । କିନ୍ତୁ ଏଣିକି ମୁଁ ମୁକ୍ତ, ମାଇ ଡିଅର୍ ନୀଲା ଥ୍ୟାଙ୍କ୍ସ । ଯତ୍ ପଠିତଂ ତଦ୍ ଗୁରବେ ନିବେଦିତଂ ।

ଡୋରା ହେଉଛି ଏଇ ମୁକ୍ତିର ସନ୍ତକ । ଏକ ଅଭିନବ ଜୀବନ୍ତ ସନ୍ତକ...

କେ-ବି-କେ ହଠାତ୍ ଖଟରୁ ଉଠିପଡ଼ିଲେ ଏବଂ ଏକା ଡିଆଁରେ ପହଞ୍ଚିଲେ ଡୋରା ପାଖରେ ଏବଂ ତା'କୁ ଜବର୍ ଚୁମାଟାଏ ଦେଲେ, ତା'ଓଠକୁ କାମୁଡ଼ିଦେଲା ପରି । ଯାହା ସେ କସ୍ମିନ୍‌କାଳେ କରିପାରି ନ ଥାଆନ୍ତେ ନୀଲ୍‌କୁ ନେଇ । ତାଙ୍କ ନିଜର ବି' ଚେତା ହେଲା ଯେ ସେ ଏଭଳି ଗୋଟାଏ କାମ କରିପାରୁଛନ୍ତି, ଅବାଧରେ । ନିର୍ଦ୍ୱନ୍ଦ୍ୱରେ । ...କାହିଁକିନା ଡୋରା, ମୁଁ ତୋତେ ବାହା ହୋଇଛି ସିନା ଲୋକାଚାରକୁ ଖାତିର୍ କରି, କିନ୍ତୁ ପ୍ରକୃତରେ ବାହା ହୋଇ ନାହିଁ । ମୁଁ ତୋତେ ବାନ୍ଧି ନାହିଁ କି ତୁ ମୋତେ ବାନ୍ଧିପାରିବୁ ନାହିଁ । ଏଇ ହେଉଛି ମୋ ଉତ୍ତର ଜୀବନର ଆନନ୍ଦ, ଯାହା ଏତେଦିନ ଯାଏଁ ଜୁଟି ନ ଥିଲା ମୋ କପାଳରେ । ଥ୍ୟାଙ୍କ୍ସ ଡୋରା, ଥ୍ୟାଙ୍କ୍ସ୍... କେ-ବି-କେ ତା'କୁ ଅଣ୍ଟାରୁ ଧରି ଘୂରେଇବାକୁ ଲାଗିଲେ ।

ଇଣ୍ଡିଆନ୍ ସ୍ୱାମୀର ଏଇ ପ୍ରଚଣ୍ଡ ପ୍ରେମପ୍ରକ୍ରିୟା ପରେ ଏବଂ ତା'ର ନିଃଶ୍ୱାସ ଫେରିପାଇଲା ଉତ୍ତାରୁ ଡୋରା ଗୋଟାଏ ଅବାନ୍ତର ସମ୍ବାଦ ଶୁଣେଇଲା କେ-ବି-କେଙ୍କୁ—

"ଜାଣିଛ ? କାଲି ଦି'ଥର ଲଙ୍ଗ୍ ଡିଷ୍ଟାନ୍ସ ଫୋନ୍ ଆସିଥିଲା ତମ ପାଇଁ । ତମକୁ ସେ ଅଫିସ୍‌ରେ ପାଇଲା ନାହିଁ, ଏଠି ବି' ତମେ ନ ଥିଲ । କହିଥିଲା ଆଜି ପୁଣି ଫୋନ୍ କରିବ ।"

"କିଏ ? କିଏ ?" ଘରେ ବୁଢ଼ୀମାଆ, ବୟସ ଅଶୀରୁ ବେଶି ହେଲାଣି । କେ-ବି-କେ ଉଦ୍‌ବିଗ୍ନ ହେଲେ ।

"ଆରେ, ମୁଁ କେମିତି ଜାଣିବି କିଏ ବୋଲି ? କିନ୍ତୁ ତମ ଘରୁ ଆସି ନ ଥିଲା । ଷ୍ଟେଟ୍‌ସ୍‌ରୁ ଆସିଥିଲା । ତା' ନାଆଁ କ'ଣ ଭୁଲିଗଲିଣି । କିନ୍ତୁ ତମକୁ ଅଙ୍କଲ୍ ବୋଲି କହୁଥିଲା... ।" ଡୋରା ହସି ଉଠିଲା ଅଭଦ୍ରଙ୍କ ପରି, ଯାହା କେ-ବି-କେଙ୍କୁ ମୋଟେ ଭଲ ଲାଗିଲା ନାହିଁ । କାରଣ ସେ ବୁଝିଲେ ତା' ହସର କାରଣ କଅଣ । ଇଣ୍ଡିଆନ୍‌ମାନଙ୍କର ଏଇ 'ଅଙ୍କଲ୍' 'ଆଣ୍ଟି' ସମ୍ବୋଧନ ତା'କୁ ସବୁବେଳେ ମଜା ଲାଗି ଆସିଛି । ଯିଏ ତମ ଫ୍ୟାମିଲିର କେହି ନୁହେଁ, ତା'କୁ ମିଛଟାରେ ନିଜର ବୋଲି କହିବାର ଢଙ୍ଗ ତା'କୁ ଗୋଟାଏ ବିରାଟ ଜୋକ୍ ବୋଲି ମନେହୁଏ ।

କେ-ବି-କେ ତାଙ୍କ କ୍ରୋଧ ସମ୍ବରଣ କଲେ । ନିଜକୁ ଚେତାଇଦେଲେ ଯେ ସ୍ପଷ୍ଟବାଦୀ ଡୋରାଠାରୁ ଏହା ହିଁ ଆଶା କରାଯାଏ ଏବଂ ଇଏ ବି' ତା'ର ଅନ୍ୟତମ ପ୍ଲସ୍-ପଏଣ୍ଟ୍ ନୁହେଁ କି ?

'...ବେଶ୍, ବେଶ୍ । ବୁଝିଲି । କିନ୍ତୁ ଷ୍ଟେଟ୍‌ସ୍‌ରୁ କେବଳ ଜଣେ ଫୋନ୍ କରିପାରେ ତା'ର କେ-ବି-କେ ଅଙ୍କଲ୍‌କୁ । ତନୁଶ୍ରୀ ପଣ୍ଡା । କ'ଣ ହେଲା ଝିଅର ? କାହିଁକି ସେ ଫୋନ୍ କରୁଛି ଏମିତି ?

ଆରେ, ଏମିତି ବ୍ୟସ୍ତ ହେଉଛ କାହିଁକି ? ପ୍ରକୃତରେ ସେ ତମ ଝିଆରୀ ନା କଅଣ ? ମୁହୂର୍ତ୍ତକ ଆଗରୁ ଖୁସି ହେଉଥିଲ ଯେ ଗୋଟାଏ ବିରାଟ ମୁକ୍ତି ମିଳିଛି ତମକୁ—ଅତୀତରୁ, ପ୍ରେମ ନାମକ ବନ୍ଧନରୁ, ବନ୍ଧନର ଦାୟିତ୍ୱରୁ ଏବଂ ଦାୟିତ୍ୱର ଅନ୍ୟତମ ସନ୍ତାନ ସେଇ କାଳୀ କବୟିତ୍ରୀଠାରୁ । ଅଥଚ ଦି'ତିନିଟା ଫୋନ୍ ଆସିଲା କବୟିତ୍ରୀର ଝିଅଠାରୁ, ସେ କୋଉ ପିଲାଟିଏ ନୁହେଁ, ଆଉ ସେଇଥିରେ ତମ ମୁଣ୍ଡ ବିଗିଡ଼ିଗଲା ? ବୁଝିଲ କେ-ବି-କେ ସାହେବ, ତମେ ସତରେ ମାଡ୍ରୁଆଟିଏ ! ନିଛକ୍ ଭାରତୀୟଟିଏ, ଓଡ଼ିଆଟିଏ ! ମୁକ୍ତି ଚାହି, ମୁକ୍ତି ଚାହି, ବୋଲି ଖାଲି ମୁହଁରେ ପାଟି କରୁଥିବ, ହେଲେ ତମର ଦରକାର ସେଇ ଦାସତ୍ୱ । କିଛି ଗୋଟାଏ କରିବାକୁ ପଡ଼ିବ ତମ ମାଲିକ ପାଇଁ, ନ ହେଲେ ଶାନ୍ତି ଲାଗିବ ନାହିଁ ତମକୁ ।

ରବିଶ୍ ! ତା' ନୁହେଁ । ତନୁ ଶୈଳର ଝିଅ ହୋଇପାରେ, କିନ୍ତୁ ମୁଁ ତା' ପାଇଁ ଯାହା କରିଛି, ସେଥିରେ ଶୈଳର କିଛି କର୍ତ୍ତୃତ୍ୱ ନାହିଁ, କି ତା' ଦିଦିଙ୍କର । ମୁଁ ଗୋଟାଏ ବ୍ରାଇଟ୍ ୟଙ୍ଗ୍ ଗାର୍ଲ୍‌କୁ ସାହାଯ୍ୟ କରିଛି ଆପଣା ଖୁସିରେ । ଯେମିତିକି ଏଭଳି ରୂପବତୀ ଗୁଣବତୀ ଝିଅଟାକୁ ଗୋଟାଏ ସୁଯୋଗ ମିଳିବ, ତା'ର ଉଚ୍ଚାଭିଳାଷ ମେଣ୍ଟାଇବାଲାଗି । ପୁଣି ଗୋଟିଏ ଇଣ୍ଡିଆନ୍ ଝିଅ, ଆମ ଓଡ଼ିଆ ଝିଅ । ମୁଁ କେତେ ଚେଷ୍ଟା ନ କରିଛି ତା'କୁ ଗୋଟାଏ ଭଲ ଜର୍ଣ୍ଣାଲିଜ୍‌ମ୍ ସ୍କୁଲ୍‌ରେ ନାଆଁ ଲେଖାଇବା ପାଇଁ ! ଶୈଳ ହାତକୁ ଖାଲି ଗୋଟାଏ ତାଲିକା ବଢ଼େଇ ଦେଇଥିଲି । ସେଣିକି ସେ କରୁ, ଯାହା ତା'ର କରିବାର କଥା । କିନ୍ତୁ ଯା'ପାଇଁ ମୁଁ କାହାକୁ ନ ଲେଖିଛି, କେତେ ଫାଇଦା ଉଠେଇ ନାହିଁ ମୋ ୟୁନେସ୍କୋ ନେଟ୍-ୱାର୍କର ! ଆଉ ମୁଁ କେତେ ଖୁସି ନ ହୋଇଛି ଯେତେବେଳେ ମୁଁ ଶୁଣିଲି ଯେ ନିଉ ଜର୍ସିର ଗୋଟାଏ ନମ୍ବର ଉଆନ୍ ସ୍କୁଲ୍ ତା'କୁ ନେବାପାଇଁ ରାଜି ହୋଇଯାଇଛି ! ହଁ, ମୋର ଗର୍ବ କରିବାର କଥା ଯେ ମୁଁ ଏଭଳି ଗୋଟିଏ ଝିଅର ଅଙ୍କଲ ହୋଇପାରିଛି । ଇଏ ଗୋଟାଏ ଅଯାଚିତ ମାମୁଁପଣିଆ କି ଦାଦିପଣିଆ, ଯାହା କୁହ ତା'କୁ । କେ-ବି-କେର ସ୍ୱାଧୀନ ଖିଆଲ୍, ଯେଉଁଥିରେ ହୁଏତ ଅଳ୍ପବହୁତ ଦେଶପ୍ରୀତି ରହିଛି...

କେ-ବି-କେ ଲକ୍ଷ୍ୟ କଲେ ଯେ ଡୋରା ପଳେଇଗଲାଣି କୁଆଡ଼େ । ତା' ସ୍ୱାମୀ ଚିନ୍ତାଶୀଳ ହୋଇପଡ଼ିଲେ ସେ ସେଠି ମୋଟେ ରହିବାକୁ ଚାହେଁ ନାହିଁ । ସତେକି ତା'ର ଉପସ୍ଥିତି ଲୋଡ଼ା ନାହିଁ, ଆପାତତଃ ।

...ଠିକ୍ ଅଛି । ମୁଁ ମାନୁଛି ଯେ ମୁଁ ଚିନ୍ତିତ ଏବଂ ଇଏ ମୋର ପ୍ରୋବ୍ଲେମ୍ । ଡୋରାର ନୁହେଁ, କି ଆଉ କାହାର । ତନୁ ନିଶ୍ଚୟ କିଛି ବିପଦରେ ପଡ଼ିଛି । କଅଣ ହେଲା ? ଖବରକାଗଜରେ ବାହାରିଥିଲା ଯେ ନିଉ ଜର୍ସିର କେଇଟା ଗୋରା ଗୁଣ୍ଡା ଅଭିଯାନ ଚଳେଇଛନ୍ତି ବ୍ଲାକ୍‌ମାନଙ୍କ ବିରୋଧରେ— ହେ ଭଗବାନ୍ ! ଆମ ତନୁକୁ କେହି କ'ଣ କହିବ 'ବ୍ଲାକ୍' ବୋଲି ? ବାପ ପରି ଗୋରା ତକ୍‌ତକ୍, ଆଉ ମାଆର ଆଖି, ଚାହାଣି, ନା-ନା, ଆହୁରି ତେଜ ଅଛି ସେଥିରେ, ଖୋଲାଖୋଲି ତେଜ । ଧ୍ୟାତ୍, କାହାର ସତ ବଳିବ କି ସାହସ ହେବ ଏଭଳି ଗୋଟିଏ ଝିଅକୁ ଆକ୍ରମଣ କରିବା ପାଇଁ ?

ନା, ତା' ହୋଇ ନ ଥିବ ପରା ! ଡୋରାଟା ଇଉସ୍‌ଲେସ୍ (ଷ୍ଟେନୋ ହିସାବରେ ବି ସେମିତି ଥିଲା), ମୋତେ ଆଗରୁ ଟିକିଏ ଜଣାଇଲା ନାହିଁ କାହିଁକି ? ତା'ହେଲେ ମୁଁ ତା' ଆପାର୍ଟମେଣ୍ଟ୍‌କୁ ଫୋନ୍ କରିଥାଆନ୍ତି । ଏଇକ୍ଷଣି ତ ସେ କଲେଜରେ ଥିବ, ତା'କୁ ପାଇବା ମୁସ୍କିଲ୍ । ନା ଚେଷ୍ଟା କରିବି ? ତାଙ୍କ ଷ୍ଟୁଡେଣ୍ଟ୍‌ସ୍ କାଉନ୍‌ସେଲ୍‌ର୍‌କୁ ଖୋଜିବି ଫୋନ୍‌ରେ, କୋଉ ମିସେସ୍ ଜୋନ୍‌ସ୍, ବଦ୍‌ରାଗୀଟାଏ ବୋଲି ତନୁ ଲେଖିଥିଲା ତା' ଚିଠିରେ । କିଛି କ୍ଷତି ନାହିଁ, ଇଏ ହେଉଛି ଏମର୍‌ଜେନ୍ସି...

କେ-ବି-କେଙ୍କର ଉଦ୍‌ବିଗ୍ନତା ବଢ଼ି ବଢ଼ି ଗଲା ଏବଂ ସେ ତାଙ୍କ ଅଫିସ୍ କାମକୁ ଠିକଣା ଭାବରେ ତୁଲେଇଲେ କି ନାହିଁ, ସେ ବିଷୟରେ ସନ୍ଦେହ ଆସିପାରେ ତାଙ୍କର ଅସ୍ଥିର ବ୍ୟବହାର ଦେଖି । ଯାହାହେଉ ଉପରବେଳା ଫୋନ୍ ଆସିଲା ସେ ପାଖରୁ ।

''ହ୍ୟାଲୋ ଅଙ୍କଲ୍...''

''ହଁ, ହଁ, ମୁଁ ଅପେକ୍ଷା କରିଥିଲି ତୋ ଫୋନ୍ ପାଇଁ । କାଲି କୁଆଡ଼େ ତୁ ତିନିଥର ଫୋନ୍ କରିଥିଲୁ । ସରି, ମୁଁ ନ ଥିଲି...''

''ଅଙ୍କଲ୍, ମୁଁ ଆସୁଛି ତମ ପାଖକୁ ଏଇ ଉଇକ୍-ଏଣ୍ଡରେ । ତମେ ଥିବ ତ ? ଗୋଟାଏ ଜରୁରୀ କାମ ଅଛି ତମ ସାଙ୍ଗରେ ।''

''କ'ଣ ? କ'ଣ ?? ଏନି ଥିଙ୍ଗ୍ ରଙ୍ଗ୍ ?''

ମୁଁ ଗଲେ ତମକୁ କହିବି ସବୁ କଥା । ପ୍ରକୃତରେ ରଙ୍ଗ୍, ଭୟାନକ ଭାବରେ ରଙ୍ଗ୍ । କିନ୍ତୁ ମୋର ନୁହେଁ, ମୋ ବୋଉର...''

...ଶୈଳ ପଣ୍ଡାର ପୁଣି କ'ଣ ହେଲା ? କେ-ବି-କେଙ୍କୁ ରାଗ ଲାଗିଲା । ଯାହା ବା ହେଲା, ତୁ ନିଜେ ମୋ ପାଖକୁ ଲେଖିଲୁ ନାହିଁ କାହିଁକି ? ଝିଅଟାକୁ ଏମିତି ହଇରାଣ କରିବା କ'ଣ ଦରକାର ଥିଲା ?

କିନ୍ତୁ ତନୁ ଯାହା କହିଲା, ଯେମିତି ଭାବରେ କହିଲା, ସେଥିରୁ ମନେହେଉଛି ଯେ ସେ ନିଜେ ଚିନ୍ତିତ, ଭୟାନକ ଭାବରେ ଚିନ୍ତିତ ତା' ବୋଉ ପାଇଁ । ସତେକି ବୋଉକୁ ଗୋଟାଏ ସାଙ୍ଘାତିକ ରୋଗ ହୋଇଛି, ଯାହାକୁ କେହି ଠଉରେଇପାରୁ ନାହାନ୍ତି । କିନ୍ତୁ ମୁଁ କ'ଣ କରିବି ? ମୁଁ କ'ଣ ଡାକ୍ତର ?

ତେବେ ଗୋଟାଏ ସ୍ପେଶାଲ୍ ରୋଗ ହୋଇଥିବା ଅସମ୍ଭବ ନୁହେଁ, ଯାହାର ଆରୋଗ୍ୟ ପାଇଁ ହୁଏତ କୁଳଭାଇନା ଓରଫ୍ ଅଙ୍କଲ୍ କିଛି କରିପାରନ୍ତି । ଗଂଗୋତ୍ରୀରେ ମନ ଭରି ନାହିଁ ଲେଡ଼ିଙ୍କର । ପାଟିରେ ଚଟକ ଲାଗିଲାଣି । ସେଇଥିପାଇଁ ଡକରା ପଡ଼ିଛି ଭଗୀରଥଙ୍କୁ, ଆଉ କୋଉ ଗଙ୍ଗା ବୁହେଇବେ ବୋଲି । ଅନ୍ତ ନାହିଁ ଦୁରାଶାର । କିନ୍ତୁ ଏଥର ଆଉ କ'ଣ ଦରକାର ତମର ? ନୋବେଲ୍ ପ୍ରାଇଜ୍ ?

ଏହିପରି ଭାବରେ ଶୈଳଜା ପଣ୍ଡାଙ୍କର ଦୁଃଖ ଅଥବା ରୋଗକୁ ଛିଗୁଲେଇବା ସଙ୍ଗେ ସଙ୍ଗେ କେ-ବି-କେଙ୍କ ମନରେ ଗୋଟାଏ ସାମାନ୍ୟ ଗ୍ଲାନି ମଧ ଆସୁଥିଲା । ...ମୁଁ ହଠାତ୍ ନିଜକୁ ଅତ୍ୟଧିକ ଦୂରେଇ ନେଇଛି ତା'ଠୁଁ । ତା'ର ଗଂଗୋତ୍ରୀ ପୁରସ୍କାର ପାଇଲା ପରେ ମୁଁ ଖଣ୍ଡିଏ ଚିଠି ଦେଇଥିଲି ଯାହା । କିନ୍ତୁ ଅନେକ ଡେରିରେ ଏବଂ ଗୋଟିଏ ଦି'ଧାଡ଼ିଆ ଚିଠି । ଆଉ ତା'କୁ ପାଇଲା ପରେ ସେ ଯେଉଁ ଲମ୍ବା ଚିଠି ଲେଖିଥିଲା, କୃତଜ୍ଞତାରେ ଗଦ୍‌ଗଦ ହୋଇ ଏବଂ ତା' ଦିଦିକୁ ମନେ ପକେଇ, ମୁଁ ତା'ର ଉତ୍ତର ଦେଲି ନାହିଁ । ଗତ ତିନିବର୍ଷ ଭିତରେ ମୁଁ ଖଣ୍ଡେ ହେଲେ ଚିଠି ଦେଇ ନାହିଁ ତା' ପାଖକୁ, ନବବର୍ଷର ଅଭିବାଦନ ଛଡ଼ା । ଅଥଚ ତା' ଝିଅ ପାଖକୁ କେଜାଣି କେତେ ଚିଠି ଲେଖିଛି, କେତେ ପରାମର୍ଶ ଦେଇଛି ତା' ପାଠ ବିଷୟରେ, ତଥା ଆମେରିକା ସାଙ୍ଗରେ କିଭଳି ଦୋସ୍ତି କରିବାକୁ ହୁଏ, କିନ୍ତୁ କିଭଳି ଶତ୍ରୁତା ଅନିବାର୍ଯ୍ୟ ଏବଂ ଡେଟିଙ୍ଗ୍‌ର ଭଲମନ୍ଦ ବିଷୟରେ । ଯଦିଓ ମୁଁ ଜାଣେ ସେ ହସୁଥିବ ମନେ ମନେ ମୋ ଅଙ୍କଲ୍‌ପଣିଆର ପରାକାଷ୍ଠା ଦେଖି ।

...ହଁ, ମୁଁ ଶୈଳଠୁଁ ନିଜକୁ ଦୂରେଇ ନେଇଛି ଜାଣିଶୁଣି । ସତେକି ଗଂଗୋତ୍ରୀ ପୁରସ୍କାର ପରେ ମୁଁ ତା'କୁ ନୋଟିସ୍ ଦେଇଛି ଯେ ବାସ୍, ଏଇ ଯଥେଷ୍ଟ । ଆଉ ହଇରାଣ କରିବୁ ନି' ମୋତେ । ଏଣିକି କେ-ବି-କେ ତା' ଜୀବନକୁ ଉପଭୋଗ କରିବାକୁ ଚାହେଁ । ବନ୍ଧନହୀନ ଦାୟିତ୍ୱହୀନ ସ୍ୱାଧୀନତାର ସମ୍ଭୋଗ । କେହି ସେଥିରେ ବାଧା ଦେଇପାରିବ ନାହିଁ । ଠିକ୍ କରିଛି । ତା'ର ବୁଝିବା ଉଚିତ । ଡୋରା ବି' ଜାଣିଛି ସେ କଥା । ଆଉ ତନୁ ବି' ଜାଣିବ । ମୁଁ

ତା'ର ସ୍ପଷ୍ଟ ସୂଚନା ଦେବି ଏଥର । ତୋ ଅଙ୍କଲ୍ କାହାର ହାତବାରିସି ନୁହେଁ । ସେମିତି କଥାକୁ ମୁଁ ତୋତେ ବି' କାଟି ଦେଇପାରିବି ।...

ଯାହାହେଉ ଶନିବାର ସକାଳେ ଯେତେବେଳେ ତନୁ ଆସି ସଶରୀରେ ପହୁଞ୍ଚିଗଲା ଏବଂ 'ହ୍ୟାଲୋ ଅଙ୍କଲ୍' କହି କୁଣ୍ଢେଇ ପକେଇଲା ତାଙ୍କୁ, କେ-ବି-କେଙ୍କର ମନେହେଲା ଯେ ଏଭଳି ତେଜସ୍ୱିନୀ ତରୁଣୀର କୌଣସି ବିଷୟରେ କିଛି ଭାବିବାର ନୁହେଁ । ତା' ସଂସାରରେ ସବୁକିଛି ଠିକ୍ ହୋଇଯିବ, ଆପେ ଆପେ ।

ତନୁ ନିତ୍ୟକର୍ମ ସାରି ଗାଧୋଇ ପାଧୋଇ ବ୍ରେକ୍‌ଫାଷ୍ଟ ଟେବୁଲ୍‌ରେ ବସୁ ନ ବସୁଣୁ କେ-ବି-କେ ତା'କୁ ଆକ୍ରମଣ କଲେ —

"କ'ଣ ହୋଇଛି ତୋ ବୋଉର ?"

କଥା କ'ଣ ? ତନୁକୁ କାହିଁକି ଏତେ ସମୟ ଲାଗୁଛି ପ୍ରଶ୍ନର ଉତ୍ତର ଦେବାପାଇଁ ? ଏବଂ ସେ କାହିଁକି ତାଙ୍କ ଆଖିରେ ଆଖି ରଖୁଛି, ସତେକି ଅଙ୍କଲ୍ ତା' ଉତ୍ତରକୁ କିପରି ଭାବରେ ନେବେ, ସେ ତା'ର ଭଲମନ୍ଦକୁ ଆଗତୁରା ଜାଣିବାପାଇଁ ଚାହୁଁଛି ? ମୁହୂର୍ତ୍ତ ପରେ ମୁହୂର୍ତ୍ତ କଟିଗଲା । ସେଇଠୁଁ ସେ କହିଲା, ତା' ଚାହାଣିକୁ ଆହୁରି ଆଣ୍ଟରେ ଥାପିଲା ପରି ତା' ଅଙ୍କଲ୍‌ଙ୍କ ଉପରେ —

"ବୋଉ ଆଉ କବିତା ଲେଖୁ ନାହିଁ ଆଜିକାଲି । ସମାଜସେବା କରୁଛି ।"

ଏଇକ୍ଷଣି କେ-ବି-କେଙ୍କର ପାଳି ତରୁଣୀ ତନୁଶ୍ରୀର ଚାହାଣି ଉପରେ ଚଢ଼ଉ କରିବାପାଇଁ । ଟୋକୀ କ'ଣ ଜୋକ୍ କରୁଛି ମୋ ସାଙ୍ଗରେ ? ଏଇଆ କହିବାଲାଗି ସେ ଧାଇଁଆସିଛି ଆମେରିକାରୁ ? କିନ୍ତୁ ସେ ଆମୋଦର କୌଣସି ଲକ୍ଷଣ ଦେଖିଲେ ନାହିଁ ତା' ସ୍ଥିର ଚାହାଣିରେ । ଅଥବା ତା' ଗମ୍ଭୀର ଓଠଚିପା ଭଙ୍ଗୀରେ । ବରଂ ମନେହେଉଛି ତା'କୁ ଟିକିଏ ଭୟ ଲାଗିଲାଣି ଯେ ଅଙ୍କଲ୍ ତା' କଥାକୁ ହସି ଉଡ଼େଇଦେବେ, ସେ ଯାହା ଭାବିଥିଲା, ତେଣୁ ସେ ନିଜେ ଟିକିଏ ହସିବାକୁ ଚେଷ୍ଟା କରୁଛି । ଅର୍ଥାତ୍ ମୁଁ ମିଛ କହୁ ନାହିଁ ଅଙ୍କଲ୍, ଯଦିଓ ଜିନିଷଟା ଅଦ୍ଭୁତ ଲାଗିପାରେ ତମକୁ ।

କିନ୍ତୁ କେ-ବି-କେ ଉଚ୍ଚ ସ୍ୱରରେ ହସି ଉଠିଲେ । କାରଣ ସେ ବୁଝିଲେ ଯେ ଇଏ ହେଉଛି ତନୁର ମିଛ ବାଘ । ତା'କୁ ଘଉଡ଼େଇଦେବାକୁ ହେବ । ଯେତେହେଲେ ଅପରିପକ୍ୱା, ଆଧୁନିକା ବୋଲି ଯେତେ ନିଜକୁ ଦେଖେଇ ହେଲେ ବି' । କହିଲେ,

"ସରି । ମୋତେ ଭୁଲ୍ ବୁଝିବୁ ନାହିଁ । ଝିଅମାନେ ଏମିତି ଚିନ୍ତା କରିବା ସ୍ୱାଭାବିକ ତାଙ୍କ ମାଆଙ୍କୁ ନେଇ । କିନ୍ତୁ ଯାହା ହୋଇଛି, ଭଲ ହୋଇଛି ।"

"ହ୍ୱାଟ୍ ଡୁ ୟୁ ମିନ୍ ?"

''ଶୁଣ୍, କବି ହିସାବରେ ତୋ ବୋଉର ଯେଉଁ ସୁଖ୍ୟାତି ଆସିଗଲାଣି, ତା' ସାଙ୍ଗକୁ ଏଇ ସମାଜସେବା ବେଶ୍ କାମ ଦେବ । ଯିଏ ତାକୁ ଏଇ ପରାମର୍ଶ ଦେଇଛି, ସେ ନିଶ୍ଚୟ ଗୋଟାଏ ମହା ବୁଦ୍ଧିଆ ଲୋକ । ପବ୍ଲିସିଟିର ମୂଳମନ୍ତ୍ର ଜାଣିଛି । ଦେଖ, ଫଟୋ ବାହାରିଛି କାଗଜରେ । ଅମୁକ ୱାର୍ଡ଼ କାଉନ୍‌ସିଲର୍, ହୁଏତ ଖୋଦ୍ କଲ୍ୟାଣମନ୍ତ୍ରୀ ତାଙ୍କ ପାଖରେ ଠିଆ ହୋଇଛନ୍ତି । ଗଂଗୋତ୍ରୀ ପୁରସ୍କାର ବିଜେତା ପ୍ରଖ୍ୟାତ କବୟିତ୍ରୀ ଶ୍ରୀମତୀ ଶୈଳଜା ପଣ୍ଡାଙ୍କ ପାଖରେ । ଆଃ, ସାକ୍ଷାତ୍ ଦେବୀ ମୂର୍ତ୍ତିଟିଏ ! ପଛରେ ଗୁଡ଼ିଏ ଦରଲଙ୍ଗଳା ପିଲା ଓ ମୁରୁକୁଟିଆ ବୁଢ଼ାବୁଢ଼ୀ ଦାନ୍ତ ଦେଖେଇଛନ୍ତି । ଶୈଳଜା ଆସିଥିଲେ ବସ୍ତିରେ ଗୋଟିଏ ଶିଶୁମଙ୍ଗଳ କେନ୍ଦ୍ରର ଶୁଭ ଦେବାପାଇଁ...

''ଅଙ୍କଲ୍ ! ଇଟ୍ ଇଜ୍ ନଟ୍ ଦ୍ୟାଟ୍ । ମୋଟେ ସେମିତି ନୁହେଁ । ବୋଉ କୋଉ କଳା ଲଙ୍ଗଳା ଛୁଆର ବଥ ଚିପୁଛି । ତା' ମୁଣ୍ଡରୁ ଉକୁଣି ବାଛୁଛି । ପୁଣି ଆଉ କାହାକୁ ପିଠିରେ ଲାଉ କରି ନେଉଛି ଶିଶୁମଙ୍ଗଳ କେନ୍ଦ୍ରକୁ । ତମେ ବିଶ୍ୱାସ କରିବ ନାହିଁ ଅଙ୍କଲ୍, ସେ ଯୋଉସବୁ କାମ କରୁଛି...''

କେ-ବି-କେ ଦୃଶ୍ୟଟାକୁ ଖେଳେଇଲେ ମନଶ୍ଚକ୍ଷୁରେ । ପ୍ରଖ୍ୟାତ କବି ତଥା ପ୍ରସିଦ୍ଧ ମଲ୍‌ଟି-ନେସ୍‌ନାଲ୍ କମ୍ପାନୀ ସିନ୍ଥିଆ କର୍ପୋରେସନ୍‌ର ଅନ୍ୟତମ ବଡ଼ ସାହେବଙ୍କ ଲେଡ଼ି କୋଉ କଳାଲଙ୍ଗଳା ପିଲାର ବଥ ଚିପୁଛନ୍ତି, ଉକୁଣି ବାଛୁଛନ୍ତି...ଇସ ! କେତେ ଦୂରକୁ, କେତେ ତଳକୁ ଯାଇପାରେ ଏଇ ଝିଅଟା, ନିଜକୁ ପ୍ରତିଷ୍ଠିତ କରିବାଲାଗି ! କିଭଳି ଅଭିନୟ କରିପାରେ ! କିଓ, ହେବନି' କାହିଁକି ? ପନ୍ଦର ଷୋଳ ବର୍ଷ ତଳେ ସେଇ ତ ପୁଣି ସ୍ୱର ମେଳେଇ ଦେଇଥିଲା ରାଜଧାନୀ ଏକ୍ସପ୍ରେସ୍‌ରେ, ବଡ଼ ବଡ଼ ସାହିତ୍ୟିକମାନଙ୍କୁ ଖୁସ୍ କରିବାପାଇଁ ? ଏଇକ୍ଷଣି ତ ସେ ରୀତିମତ କବିଟିଏ ହେଲାଣି, ତେଣୁ ସେ ଖୁସ୍ କରିବାକୁ ଚାହୁଁଛି ଜନସାଧାରଣଙ୍କୁ, ମାନେ ମିଡ଼ିଆକୁ । ଏମିତି ଭାବରେ, ଯେ ସେମାନେ ନିଶ୍ଚୟ ତା'ର ବିସ୍ମୟକର ସେବାଭାବକୁ ଲକ୍ଷ୍ୟ କରିବେ ଏବଂ ତା'କୁ ଆହୁରି ଉପରକୁ ଟେକିବେ । ଗଡ୍ ! ... କେ-ବି-କେ ବିଶ୍ୱାସ କରିପାରିଲେ ନାହିଁ ତନୁ ଯାହା ସବୁ କହିଯାଉଛି ଶୈଳର ସମାଜସେବା ବିଷୟରେ । ଦୁଃଖୀଦରିଦ୍ରଙ୍କ ଅପରଛନିଆ ସଂସାରରେ ସେ କେମିତି ମିଶେଇଦେଇଛି ନିଜକୁ । କିନ୍ତୁ ସେ ଠିକ୍ କରିପାରିଲେ ନାହିଁ । କ'ଣ କହିବେ ତା'ର ଏଇ କନ୍ୟାରତ୍ନଟିକୁ । ଭଲ କହିବେ ନା ମନ୍ଦ କହିବେ ।

...ଅବଶ୍ୟ ଭଲ କହିବି । ଏଇକ୍ଷଣି ୟା'କୁଇ ଖୁସ୍ କରିବା କଥା, ଏଇ ଫୁଲ୍ଲ, ଉଜ୍ଜ୍ୱଳ ସୂର୍ଯ୍ୟମୁଖୀଟିକୁ । ଯେମିତିକି ସେ ଅଯଥାରେ ଝାଉଁଳି ପଡ଼ିବ ନାହିଁ । ... ତେଣୁ କେ-ବି-କେ ଗୋଟାଏ ଲମ୍ବା ନିଃଶ୍ୱାସ ଟାଣି କହିଲେ,

"ଲିସ୍‌ନ୍, ମାଇ ଡିଅର୍ । ମୁଁ ଭୁଲ୍ ବୁଝିଥିଲି । ଇଏ କୋଉ ପୋଷାକି ଲୋକ ଦେଖାଣିଆ ସମାଜସେବା ନୁହେଁ । ଶୈଳର ମନୋବୃତ୍ତି ବଦଳିଯାଇଛି । ପ୍ରକୃତ ସେବା ମନୋବୃତ୍ତି । ଦି' ରିଏଲ୍ ଥିଙ୍ଗ୍ । ଏଥିରେ ତୋର ଦୁଃଖ କରିବାର କିଛି ନାହିଁ । ବରଂ ତୋର ଗର୍ବ କରିବା କଥା ଯେ ଧନମାନରେ ଏତେ ଉଚ୍ଚରେ ଥିଲେ ମଧ, ତୋ ବୋଉ କେମିତି ଟାଣି ହୋଇଆସିଛି ଜନସେବା କରିବା ପାଇଁ ଏବଂ ସେଥିରେ ନିୟୋଜିତ କରିଦେଇଛି ନିଜକୁ...

"ଅଙ୍କଲ୍, ୟୁ ଡୋଣ୍ଟ୍ ଅଣ୍ଡର୍‌ଷ୍ଟାଣ୍ଡ୍ ! ତମେ ଜାଣି ନାହଁ ମୋ ବୋଉକୁ —"

କେ-ବି-କେ ଅପେକ୍ଷା କଲେ ତା' ବକ୍ତବ୍ୟର ବାକୀତକ ଶୁଣିବାକୁ ।

"ବୋଉ ଧୂଳିମଇଳାକୁ ଘୃଣା କରେ । ତମ ଆମ ପରି ନୁହେଁ । ଅନେକ ଅଧିକ । କାନ୍ଥକୋଣରେ ଅଳନ୍ଧୁ ଦେଖିଲେ ତା' ମୁଣ୍ଡକୁ ପିତ୍ତ ଚଢ଼ିଯାଏ । ବାସନମଜା ପାଣି ଠୋପାଏ ହେଲେ ପଡ଼ିବ ନାହିଁ ଚଟାଣରେ, ପାଦର କାଦୁଅ ଟିକିଏ ହେଲେ ଆସିବ ନାହିଁ ଘର ଭିତରକୁ, ଫ୍ରକ୍ ଗନ୍ଧେଇବ ନାହିଁ, ବିଛଣାରେ ଦାଗ ଲାଗିବ ନାହିଁ... ଏ ସବୁଥିରେ ତିଳେ ହେଲେ ବ୍ୟତିକ୍ରମ ହେଲେ କାହାରି ରକ୍ଷା ନାହିଁ । ଚାକରାଣୀ ହେଉ କି ତା' ଉଦଣ୍ଡୀ ଝିଅ, କି ଆମ ଉଦାର ବାପା । ସେଇ ପୁଣି ଆଜି ଉକୁଣି ବାଛୁଛି କୋଉ ମୁନ୍‌ନୀର ମୁଣ୍ଡରୁ, କେଷ୍ଟୋର ବଥ ଚିପୁଛି, ଆଉ ସିଙ୍ଗାଣିନାକା ଲାଲ୍‌ମନିକୁ ଲାଉ କରୁଛି ତା' ପିଠିରେ । ବସ୍ତିର ଯେତେକ ମଇଳା ଅପରଛନିଆ ଦରଲଙ୍ଗଳା ପିଲାଙ୍କର ବଡ଼୍‌ଦି' ହୋଇଛି...

"ବଡ଼୍‌ଦି ? ଗୁଡ୍ ହେଭନ୍‌ସ୍ !"

" ଏବଂ ଯାହାକି ସବୁଠାରୁ ମାରତ୍ମକ, ସେ କବିତା ଲେଖା ଛାଡ଼ିଦେଇଛି ।"

"ତୁ କେମିତି ଜାଣିଲୁ ଏତେ କଥା ?"

"ମୁଁ ପଜା ଛୁଟିରେ ଯାଇଥିଲି ଏବେ, ଆଉ ଦି' ମାସ ରହିଥିଲି ସେଠି । ମୁଁ ଯେତେବେଳେ ତା'କୁ ପଚାରେ ଏ ସବୁ କଥା କାହିଁକି କରୁଛୁ ବୋଲି, ସେ ଖାଲି ହସିଦିଏ, ଆଉ କୁହେ ତା'କୁ ଭଲ ଲାଗୁଛି । ...କିନ୍ତୁ ଅଙ୍କଲ୍, ସେ ମିଛ କହୁଛି (ତନୁର ଆଖି ଦି'ଟା ତେଜିଉଠିଲା), ତା'କୁ ମୋଟେ ଭଲ ଲାଗୁ ନାହିଁ ଏମିତିକା ଗନ୍ଧିଆ କାମ କରିବାକୁ । ସେ ନିଜକୁ କଷ୍ଟ ଦେଉଛି, ଜାଣିଶୁଣି ନିଜକୁ କଷ୍ଟ ଦେଉଛି । କୋଉଥିପାଇଁ ଭଗବାନଙ୍କୁ ଜଣା ।"

"ଆଉ କବିତା ?"

"ସେ ନିଜେ କହିଲା ସେ କଥା । ମୁଁ ଯେତେବେଳେ ପଚାରିଲି ତା'ର କୋଉ ନୂଆ ବହି ବାହାରିଛି ବୋଲି । କହିଲା ସେ ଲେଖାଲେଖି ଛାଡ଼ିଦେଇଛି ।"

"ହୁଁ—ଉଁ..." । ଏଥର କେ-ବି-କେ ପ୍ରକୃତରେ ଗମ୍ଭୀର ଓ ଚିନ୍ତିତ ଦେଖାଗଲେ । ତେଣୁ ତନୁ ବଳ ପାଇଲା ମାଡ଼ିଯିବା ପାଇଁ । କହିଲା,

"କବିତା ଲେଖା ଯାହାର ଜୀବନ, ଯେଉଁଥିରେ ସେ ବୁଡିଯାଇଥିଲା ଏତେଦିନଯାଏଁ, ସ୍ୱାମୀ ପିଲା ଘରସଂସାରକୁ ପଛରେ ପକାଇ, ଆଜି ସେ ତା'କୁ ବର୍ଜନ କରିଛି । ବୁଝୁଛ ଅଙ୍କଲ୍, ସେ କେତେ କଷ୍ଟ ଦେଉଛି ନିଜକୁ ?"

"ହୁଁ—ଉଁ..."

"ନା, ଅଙ୍କଲ୍ ! ଖାଲି 'ହୁଁ' କହିଲେ ଚଳିବ ନାହିଁ ! ତମକୁ କିଛି କରିବାକୁ ହେବ, ପ୍ଲିଜ୍..."

ଆରେ, ତା' ଆଖିରେ ଲୁହ ନା କ'ଣ ମ ? କେ-ବି-କେଙ୍କର ମନେହେଲା ଲଣ୍ଡନ୍‌ର ପାଗ ପୁଣି କୁହୁଡ଼ିଆ ହୋଇଗଲାଣି । ଖରା ପଡ଼ିବାକୁ ଅନେକ ସମୟ ଲାଗିବ ଏଇକ୍ଷଣି । ନା, ଏମିତି ହେବା ଉଚିତ ନୁହେଁ । ନିତାନ୍ତ ଅନ୍ୟାୟ । କିନ୍ତୁ ... ମୁଁ କ'ଣ କରିପାରିବି ଏଥିରେ ? ଧୀର କଣ୍ଠରେ କେ-ବି-କେ ବୋଧ ଦେଲେ ତନୁକୁ,

"ବ୍ୟସ୍ତ ହୋ'ନା । ଇଏ ଗୋଟାଏ ଟେମ୍ପରାରୀ ଫେଜ୍ । ପାଗଳାମି ଚଢ଼ିଛି ତା' ମୁଣ୍ଡକୁ, ଯେଉଁଥିପାଇଁ ହେଉ । ହେଲେ ଇଏ ଦି'ଦିନିଆ, ଚାଲିଯିବ ଶୀଘ୍ର । ଆପେ ଆପେ..."

ତନୁ ତା'ର ପ୍ରତିବାଦ କରି ଉଠିବା ପୂର୍ବରୁ କେ-ବି-କେ ଆଉ ଗୋଟାଏ 'ଉଚିତ' କଥା କହିଲେ, ଏଇ ହୁଣ୍ଡୀ ଝିଅକୁ । ଯାହା ତାଙ୍କର ଆଗରୁ କହିବାକୁ ଥିଲା । କହିଲେ,

"ଲୁକ୍ ତନୁ— । ଯଦିବା କିଛି ହୋଇଥାଏ ତୋ ବୋଉର, ଯାହାକି ନ ହେବା କଥା, ଯଦିବା ତା' ମୁଣ୍ଡ ବିଗିଡ଼ିଯାଇଛି, ଆଉ ସେ ଜାଣିଶୁଣି ନିଜକୁ କଷ୍ଟ ଦେଉଛି, ତୋର ବିଚାର ଅନୁଯାୟୀ, ତା'ହେଲେ ତା'କୁ ସୁଧାରିପାରିବ କେବଳ ଜଣେ । ତୁ ନୁହେଁ, ମୁଁ ନୁହେଁ କି ଆଉ କେହି ନୁହେଁ । କେବଳ ତୋ ବାପା । ସନାତନବାବୁ..."

ତନୁ ନିରୁତ୍ତର ରହିଲା । ମୁହଁ ତଳକୁ କଲା ଏଇ ପହିଲିବାର ଏବଂ ମନେହେଲା ସେ ଟେବୁଲ୍ ଉପରେ ଛନ୍ଦାଛନ୍ଦି ହୋଇ ରହିଥିବା ତା' ଦୁଇ ହାତର ଲମ୍ବାଲମ୍ବା ନାଲିରଙ୍ଗବୋଳା ନଖମାନଙ୍କୁ ଅଧ୍ୟୟନ କରୁଛି ।

ପୁଣି କ'ଣ ହେଲା ଏ ଝିଅର ? ଅଦ୍ଭୁତ ପିଲା !

ତା' ଆଖିରେ ଲୁହ ଥାଉ ବା ନ ଥାଉ ଚାହାଣିରେ ଅବଶ୍ୟ ଦମ୍ଭ ଥିଲା, ଯେତେବେଳେ ସେ ସ୍ଥିର କଲା ଯେ ସେ କହିବ, ଯାହା ସହଜେ କହିହେଉ ନାହିଁ ।

"ବାପା ବୋଉକୁ ବଦଳେଇପାରିବେ ନାହିଁ । କି ବୋଉ ବାପାଙ୍କୁ । ଇଏ ହେଉଛି ଗୋଟାଏ ନିରାଟ ସତ କଥା ତାଙ୍କ ଜୀବନର । ଆଗରୁ ଏତେଟା ନ ଥିଲା, କିନ୍ତୁ ଏଇକ୍ଷଣି ଦିହେଁ ଅଲଗା ଅଲଗା, ଆଇ ମିନ୍ ନିଜ ନିଜ ସଂସାରରେ ଏମିତି ମଗ୍ନ ହୋଇଯାଇଛନ୍ତି ଯେ—"

(ଆଉ କ'ଣ କହିବି ? ନା କହିପାରିବି ? ସିଧାସଳଖ କହିବି ଯେ ବାପାବୋଉ ଏକାଠି ଶୋଉନାହାନ୍ତି ଆଜିକାଲି ? ମୁଁ ଏତେଟା ଆଧୁନିକା ନୁହେଁ । ଅବଶ୍ୟ ସେମାନେ କଥାଭାଷା ହେଉଛନ୍ତି, ଏକା ଟେବୁଲ୍‌ରେ ଖାଇ ବସୁଛନ୍ତି ଏବଂ ଖବରକାଗଜର ହେଡ଼୍‌ଲାଇନ୍ ଉପରେ ବି' କହୁଛନ୍ତି ପଦେ ଦି'ପଦ । କିନ୍ତୁ ବାପାବୋଉମାନେ କ'ଣ ଏମିତି ଭଲପାଆନ୍ତି ପରସ୍ପରକୁ ? କାହିଁ ଗଲା ବାପାଙ୍କର 'ଶୁଲ୍', ଆଉ ବୋଉର 'ମିଷ୍ଟର୍' ଡାକ ?...)

"ତନୁ, ତୁ ଯାହା ଭାବୁଛୁ, ତା' ହୋଇ ନ ଥିବ ବୋଲି ମୋର ବିଶ୍ୱାସ । ଅତି ଭଲ ଲୋକ ତୋର ବାପାବୋଉ ଦି'ଜଣ, ମୁଁ ଯେତିକି ଜାଣିଛି ତାଙ୍କ ବିଷୟରେ..."

"ଅବଶ୍ୟ ଭଲ ଲୋକ । ମୁଁ କ'ଣ ଜାଣେ ନାହିଁ ମୋ ବାପାବୋଉଙ୍କୁ ? କିନ୍ତୁ ଦିହିଁଙ୍କ ଭଲପଣିଆ କେଜାଣି କାହିଁକି ମ୍ୟାଚ୍ କରୁ ନାହିଁ ଏଇକ୍ଷଣି, ପରସ୍ପର ସାଙ୍ଗରେ..."

କେ-ବି-କେ ଭାବୁଥିଲେ ଟିକିଏ ଲଘୁ ପରିହାସ କରିବେ ଝିଅ ସାଙ୍ଗରେ, ଆଜିକାଲିକାର ଏଇ ଫେସନିଆ ବୌଦ୍ଧିକତାକୁ ନେଇ । ବିଶେଷତଃ ଆଧୁନିକ ବୋଲାଉଥିବା ଯୁବାମହଲରେ । କଥାକଥାକେ ଗୋଟାଏ ଚମକପ୍ରଦ ସାଇକୋଲଜିକାଲ୍ ଷ୍ଟେଟ୍‌ମେଣ୍ଟ୍ ! ମନସ୍ତାତ୍ତ୍ୱିକ ହାବେଳି । କ'ଣ ନା ବାପାବୋଉଙ୍କ ଭଲପଣିଆ ମ୍ୟାଚ୍ କରୁ ନାହିଁ ପରସ୍ପର ସାଙ୍ଗରେ । ଯେତେକ ଆବ୍‌ସର୍ଡ୍ — ! କିନ୍ତୁ ଦୁଇଟି କାରଣରୁ ସେ ଅଟକିଗଲେ । ଦେଖିଲେ ଯେ ଝିଅର ଦାମ୍ଭିକତା, ଅନ୍ୟ ଅର୍ଥରେ ଜିଦ୍‌ଦିକୁ ଏଣୁତେଣୁ କଥା କହି ଟାଳିଦେଇ ହେବ ନାହିଁ । ସେ ହଜାର ହଜାର ମାଇଲ୍ ପାରିହୋଇ ଆସିଛି କିଛି ଗୋଟାଏ ନେଇକରି ଯିବ ବୋଲି । ଯେମିତି ହେଲେ ନେବ । ସେ ପ୍ରସ୍ତୁତ ଅଛି ଅଙ୍କଲ୍‌ଙ୍କ ସାଙ୍ଗରେ ଲଢ଼େଇ କରିବାଲାଗି । ଏଣେ ସେ ଦେଖିଲେ ଯେ ଡୋରା ଆସି ପହଞ୍ଚିଗଲାଣି ବ୍ରେକ୍‌ଫାଷ୍ଟ ଟେବୁଲ୍ ପାଖରେ । ସସ୍ମିତା, କିନ୍ତୁ ତା' ଆଖିରେ ବି ଗୋଟାଏ ଦାମ୍ଭିକ ଚାହାଣି । ଯାହାର ଅର୍ଥ ତମ ଦି'ଜଣଙ୍କ ଗପ କ'ଣ ସରି ନାହିଁ ଏତେବେଳଯାଏଁ ?

ମୋର ବି' କିଛି ଗୋଟାଏ ଅଧିକାର ଅଛି ନା ନାହିଁ ବ୍ରେକ୍‌ଫାଷ୍ଟ ଟେବୁଲ୍‌ରେ ବସିବାପାଇଁ ?

ହଁ ଡୋରା, ମୁଁ ବୁଝୁଛି । ତମର ବି' ଅଧିକାର ଅଛି ମୋ ଉପରେ, ମୋର ସମୟ ଉପରେ । କହିବାକୁ ଗଲେ, ଅଗ୍ରାଧିକାର । ହେଲେ ମୁଁ ମଧ୍ୟ ଜଣେ ପୁରୁଖା ପ୍ରଶାସକ, ମୋତେ ଜଣାଅଛି ପରସ୍ପର ବିରୋଧାତ୍ମକ ଦାବୀକୁ କେମିତି ମ୍ୟାଚ୍ କରେଇବାକୁ ହୁଏ, ଉପସ୍ଥିତ ସଙ୍କଟରୁ ବର୍ତ୍ତିଯିବାଲାଗି ।

ସେହେତୁ ସେ ଡୋରାକୁ ସସ୍ମିତ ନିମନ୍ତ୍ରଣ ଜଣାଇଲେ ସେମାନଙ୍କ ଆଳାପରେ ଯୋଗ ଦେବାଲାଗି ଏବଂ ତନୁକୁ ଗୋଟାଏ ଅସଂଲଗ୍ନ ପ୍ରଶ୍ନ ପଚାରିଲେ, "ତୋର ଫ୍ଲାଇଟ୍ ଯାଇଁ କାଲି ସନ୍ଧ୍ୟାବେଳକୁ — ନା ?" ଅର୍ଥାତ୍ ଅନେକ ସମୟ ଅଛି ଏ ବିଷୟରେ କିଛି ଭାବିଚିନ୍ତି ସ୍ଥିର କରିବାପାଇଁ । ତନୁ ବୁଝିଲା ଅଙ୍କଲ୍ କ'ଣ କହିବାକୁ ଚାହାନ୍ତି । ତେଣୁ ସେ ଡୋରା ସାଙ୍ଗରେ ଘରକରଣାର ଏଣୁତେଣୁ କଥା ପକେଇଲା । ଡୋରାର ପିନ୍ଧିଥିବା ଡ୍ରେସ୍‌ଟି 'ପ୍ରେଟ୍‌ଟୀ', ଯେଉଁଭଳି ଡିଜାଇନ୍ ଆମେରିକାରେ ଦୁର୍ଲ୍ଲଭ, ଏହିପ୍ରକାର ସତମିଛ ଚାଟୁବାଣୀରୁ ଆରମ୍ଭ କରି ।

କେ-ବି-କେ ତନୁର ବୁଦ୍ଧିକୁ ପ୍ରଶଂସା କଲେ ମନେ ମନେ । କିନ୍ତୁ ତା' ସାଙ୍ଗକୁ ତାଙ୍କର ବୁଝିବାରେ ବାକୀ ରହିଲା ନାହିଁ ଯେ ଏଇ ବୁଦ୍ଧି ଅପେକ୍ଷା କରି ରହିବ ଆସନ୍ତାକାଲିର ସଞ୍ଜଯାଏଁ, ଫେରନ୍ତା ପ୍ଲେନ୍ ଉପରକୁ ଉଠିବାଯାଏଁ । ବୁଦ୍ଧି ସାଙ୍ଗକୁ ଆଣ୍ଠ କିଛି କମ୍ ନୁହେଁ ଏ ଝିଅର !

...କିନ୍ତୁ ମୁଁ ଭଲା କ'ଣ କରିପାରିବି ? ତୋ ବାପ ଯଦି ସିଧା ବାଟକୁ ନେଇ ଆସିପାରିବ ନାହିଁ ତୋ ମାଆକୁ, ଆଉ ତୁ ବି' କିଛି କରିପାରିବୁ ନାହିଁ ସେ ଦିଗରେ, ତା'ହେଲେ କେମିତି ଆଶା କରୁଛୁ ଯେ ମୋ ଦ୍ୱାରା କିଛି ହୋଇପାରିବ ? ମୁଁ କ'ଣ ସତରେ ତୋ ମାଆର ଜନ୍ମକଲା ଭାଇ ? ନା ଭାବୁଛୁ କିଛି ଭିତିରିଆ ସମ୍ପର୍କ ଅଛି ଆମ ଭିତରେ, ଯାହା ତୁ ଜାଣି ନେଇପାରିଛୁ ତୋର ସାଇକୋଲଜି ଖଟେଇ ? ... କେ-ବି-କେ ଏହି ମର୍ମରେ ବାତିଲ୍ କରିବାକୁ ଚାହିଁଲେ ତନୁର ଦାବୀପତ୍ରକୁ । ଦିନସାରା ଓ ତା' ପରଦିନ । କିନ୍ତୁ ସିଏ ସେମିତି ପଡ଼ିରହିଲା ତାଙ୍କ ସାମ୍ନାରେ ଓ ତାଙ୍କୁ ଅନେଇଲା ଛଳଛଳ ହୋଇ । କହିଲା, ଏତେ ଅଗୁଆଁର ତୁମେ ? ତନୁର ଅଳି-ଆବ୍‌ଦାରକୁ ଦାବୀପତ୍ର ବୋଲି କହୁଛ ? ହାକିମପଣିଆ ଦେଖଉଛ ତା' ଆଗରେ ?

...ହଁ, ହଁ, ଜାଣିଛି । ଇଏ ତୋର ଦାବୀ ନୁହେଁ, ମିନତି । ତୋର ଗୋଟାଏ ଅହେତୁକ ଆସ୍ଥା ଅଛି ମୋ ଉପରେ, ବୁଝିଲି, ତା' ବୋଲି ମୁଁ ଆଲ୍ଲାଦୀନ୍‌ର ଲ୍ୟାମ୍ପ୍ ନୁହେଁ ଯେ ତୋର ଯେତେକ ଆବ୍‌ସର୍ଡ୍ ଇଚ୍ଛା ପୂରଣ କରିପାରିବି ।

ତା'ଛଡ଼ା, ମୁଁ ପୁଣି ସେଥିରେ ଲଟପଟ ହେବି ? ନୀଲ୍‌ର ଉପକାରୀ ଛନ୍ଦାଛନ୍ଦି ସଂସାରରେ, ଯାହାକୁ ମୁଁ ତ୍ୟାଜ୍ୟ କରିଛି, ଫୋପାଡ଼ିଦେଇ ଆସିଛି ଇଣ୍ଡିଆରେ ? କେ-ବି-କେ ଆସି ବୁଢ଼ା ହେଲାଣି, ସେ କ'ଣ କେବେହେଲେ ତା' ନିଜ ସୁଖର ଖସଡ଼ା ତିଆରି କରିପାରିବ ନାହିଁ ?

ତା'ହେଲେ କ'ଣ କହିବି ତନୁକୁ ? କହିବି ଏକ୍ସକିଉଜ୍ ମି ଡିଅର୍, ମୋ ଦ୍ୱାରା କିଛି ହୋଇପାରିବ ନାହିଁ । ଯେ ଇଏ ତମ ଘରୋଇ ସମସ୍ୟା, ଏଥିରେ ମୋର କିଛି କରିବାର ନାହିଁ ? କହିବାରେ କିଛି ଅସୁବିଧା ହେବ ନାହିଁ ମୋର, କିନ୍ତୁ ତା'ପରେ ସେ ଯେମିତି ଭାବରେ ଅନେଇବ ମୋ ମୁହଁକୁ, ସତେକି ତା'ର ଅବଶିଷ୍ଟ ଖୁମ୍ବ, ଯାହା ଉପରେ ସେ ଏତେ ଭରସା କରିଥିଲା, ସିଏ ବି' ଭୁଷୁଡ଼ିଗଲା... ତା'ର ସେଇ ହତାଶିଆ ଚାହାଣି, ରାଗ ଅଭିମାନକୁ ପାରି ହୋଇ ଯାଇଥିବା ଶୂନ୍ୟ ଚାହାଣିକୁ ସହି ହେବ ତ ?

ଶେଷକୁ ସେ ତନୁକୁ କହିଲେ ତା' ପରଦିନ, ହିଥ୍‌ରୋ ଏଆର୍‌ପୋର୍ଟ୍‌ରେ ତା'ଠୁ ବିଦାୟ ନେଲା ପୂର୍ବରୁ । ତା' ହାତରେ ହାତ ରଖି କହିଲେ, ତାଙ୍କର ସମଗ୍ର ଅଙ୍କଲ୍‌ପଣିଆର ପରାକାଷ୍ଠା ଦେଖାଇ —

''ହଉ, ମୁଁ କିଛି କରିବି ସେ ବିଷୟରେ, ତୁ ଯାହା କହିଲୁ ମୋତେ । କେତେଦୂର କ'ଣ ସମ୍ଭବ ହେବ ମୋ ଦ୍ୱାରା ଜାଣେ ନାହିଁ, କିନ୍ତୁ ମୁଁ ଚେଷ୍ଟା କରିବି । ତେବେ ଗୋଟାଏ କାମ କରିବାକୁ ପଡ଼ିବ ତୋତେ । ଶୈଳର ଯେତେକ କବିତା ଅନୁବାଦ ହୋଇଛି ଇଂରେଜୀରେ, ପ୍ରତ୍ୟେକର ଗୋଟିଏ ଲେଖାଏଁ କପି ପଠେଇବୁ ମୋ ପାଖକୁ ! ତା'ଛଡ଼ା ତା'ର ଗୋଟିଏ 'ବାୟୋ-ଡେଟା' ଓ ତା'ର ଲେଖାକୁ ନେଇ ଯାହା ସବୁ ବାହାରିଛି ଇଣ୍ଡିଆର ଇଂରେଜୀ ପତ୍ରପତ୍ରିକାରେ । ମୁଁ ତା' ମନଟାକୁ ଫେରାଇ ଆଣିବାକୁ ଚେଷ୍ଟା କରିବି ମାଆ ସରସ୍ୱତୀଙ୍କ ଆଡ଼କୁ । ସେଣିକି ସବୁକିଛି ଦଜାଡ଼ି ହୋଇଯିବ...''

''ଥ୍ୟାଙ୍କ୍ସ । ମୋତେ ସମୟ ଲାଗିବ, ଏଇସବୁ କାଗଜପତ୍ର ଯୋଗାଡ଼ କରିବାପାଇଁ । କିନ୍ତୁ ମୁଁ ପାରିବି ।''

''କିନ୍ତୁ ସାବଧାନ, ମୋର ଗୋଟିଏ ସର୍ତ୍ତ ରହିଛି । ମୁଁ ତ ଏ ବିଷୟରେ କିଛି ଲେଖିବି ନାହିଁ ଶୈଳକୁ, କିନ୍ତୁ ତୁ ବି' ଯେମିତି ଭୁଲ୍‌ରେ ତୋ ମାଆକୁ ନ ଜଣାଉ, କି ଆଉ କାହାକୁ ଯେ ଏଇ ଷଡ଼ଯନ୍ତ୍ର ଚାଲିଛି ଆମ ଦି'ଜଣଙ୍କ ଭିତରେ ।''

"ଓ, ସିଓର୍ । ଥ୍ୟାଙ୍କ୍ସ୍, ଅଙ୍କଲ୍ ! ମେନି ମେନି ଥ୍ୟାଙ୍କ୍ସ୍ !" କହି ତନୁ ତରତର ହେଲା ସିକ୍ୟୁରିଟି ଯାଞ୍ଚର ଶେଷ ଆହ୍ବାନକୁ ସ୍ୱୀକାର କରିବାଲାଗି । କିନ୍ତୁ ତା' ପୂର୍ବରୁ ସେ ଯେଉଁ ଚିକିଚିକି ହସର ନମୁନାଟିଏ ଦେଖେଇଲା, କୃତଜ୍ଞତାରେ ଗଦ୍‌ଗଦ ହୋଇ, ତା'କୁ ତା'ର ଅଙ୍କଲ୍ ଗୋଟେଇ ନେଲେ ତତ୍‌କ୍ଷଣାତ୍, ପରମ ଶ୍ରଦ୍ଧାର ସହିତ ।

ହେଲେ ଫେରନ୍ତା ବାଟରେ କେ-ବି-କେଙ୍କର ମନେହେଲା ଯେ ସେ କେବଳ ତନୁକୁ ଖୁସି କରିବାପାଇଁ ଏଇ ପ୍ରତିଶ୍ରୁତିଟିକ ଆଣି ଦେଇ ନାହାନ୍ତି ନିଜକୁ, ତାହା ଯେତେ ଅନିର୍ଦ୍ଦିଷ୍ଟ ଏବଂ ଅନିଶ୍ଚିତ ହେଉ ପଛକେ । ମଧ ଗୋଟାଏ ବିଷମ ଅସୁନ୍ଦର ଛବିକୁ ସହ୍ୟ କରି ହେଲା ନାହିଁ । ତା'କୁ ମ୍ୟାଚ୍ କରେଇ ହେଲା ନାହିଁ ଅତୀତର ସେଇ ଦୃଶ୍ୟ ସାଙ୍ଗରେ । ଦେବସଭାରେ ନାଚୁଥିବା ଉର୍ବଶୀ (ହେଲା ଏବେ କାଳୀ ଉର୍ବଶୀ)କୁ ମିଳେଇ ହେଲା ନାହିଁ ଏଇ ଅଜବ୍ 'ବଡ୍‌ଦି' ସାଙ୍ଗରେ, ଯେ ବସ୍ତିର ଅପରଛନିଆ ପିଲାକୁ ଶୁଏଇ ଦେଉଛି ତା' ଗୋଡ଼ ଉପରେ, ଆଉ ତା' ପିଠାରେ ଉଠିଥିବା ବଥକୁ ବସି ଚିପୁଛି । ଯଦି ଇଏ ପବ୍ଲିସିଟି ନୁହେଁ କି ଅଭିନୟ, ତା'ହେଲେ ଇଏ ହେଉଛି ଗୋଟାଏ ବିକଟ ଅପଦୃଶ୍ୟ । ତା'କୁ ସହି ହେବ କେମିତି ?

...ନୀଲ୍‌ର ସ୍ମୃତିକୁ ସିନା ଉତାରିଦେଲିଣି ମୋ ମୁଣ୍ଡରୁ କି ପୂରାପୂରି ଉତାରିଦେବି ବୋଲି ଅଡ଼ି ବସିଛି, ତା' ବୋଲି ସେ ଯେଉଁ ସୌନ୍ଦର୍ଯ୍ୟବୋଧଟିକକ ଦେଇଯାଇଛି ମୋତେ, ତା'କୁ ବି' କ'ଣ ଫିଙ୍ଗିଦେବା ଉଚିତ ?...

## ଚଉଦ

ସେଦିନ ରାତିରେ ଶୈଳ ଯେଉଁ ବିଦ୍ରୋହୀ ମନୋଭାବର ପରିଚୟ ଦେଲା, ଅର୍ଥାତ୍ ଏୟାର୍‌କଣ୍ଡିସନ୍‌ଡ୍ କମରାର ବନ୍ଦ ଝରକାକୁ ଖୋଲିଦେଲା ଏବଂ ବସ୍ତିବାଲାଙ୍କୁ ମନେ ମନେ ଡାକ ଛାଡ଼ିଲା ଯେ ରୁହ ମୁଁ ବି ଆସୁଛି ଥେଇ ଥେଇ ହେବି ତୁମ ସାଙ୍ଗରେ, ତା'କୁ ଗୋଟାଏ ମିଛ ବିସ୍ଫୋରଣ ବୋଲି କହି ହସିଦେବା ଉଚିତ ହେବ ନାହିଁ । ଅବଶ୍ୟ ସେ ସାଙ୍ଗେ ସାଙ୍ଗେ ଝରକାକୁ ଧଡ଼୍‌କିନି ବନ୍ଦ କରିଦେଲା, କିନ୍ତୁ ତା'ର କାରଣ ନୁହେଁ ଯେ ସେ ନିଜେ ଡରିଗଲା । ଉଷୁମୁଳିଆ ପବନର ସଂଘାତକୁ ସହି ହେଲା ନାହିଁ । ତେଣୁ ଧନିକ ରମଣୀ ଫେରିଆସିଲା ତା'ର ସୁସ୍ଥ ଓ ସୌଖୀନ୍ ସଂସାରକୁ, ତାହା ଯେତେ ଅସନ୍ତୋଷିଆ ହେଉ ପଛେ । ନା, ସେମିତି କିଛି ନୁହେଁ । ସେ ଖାଲି ନିଜ ଗୁହାକୁ ଫେରି ଆସିବାକୁ ଚାହିଁଲା । ଭାବିଲା ଯେ ସେଇ ଦୂରବର୍ତ୍ତୀ ଉତ୍ସବର ଦୃଶ୍ୟ କି ନିକଟବର୍ତ୍ତୀ ସୁଖନିଦ୍ରାର ଦୃଶ୍ୟ, କିଛି ଦେଖିବ ନାହିଁ । ଅଭିନନ୍ଦନ ପତ୍ରଗୁଡ଼ାକୁ ହଟେଇ ଦେବ

ତା' ଖଟରୁ । ଆଲୁଅ ଲିଭେଇଦେବ ଏବଂ ଆଖି ବୁଜିଦେବ । କହିବ, ମୋ ଦୁଃଖ ମୋର, ମୁଇଁ ତା'କୁ ଗ୍ରହଣ କରିବି । ଧନ୍ୟବାଦ ।

ଶୈଳ ତା'ର ବିଶିଷ୍ଟ ଦୁଃଖକୁ ଅନୁଭବ କଲା । ତା'କୁ ତା'ର ପ୍ରତିଟି ନିଃଶ୍ୱାସରେ ଗ୍ରହଣ କରିବାକୁ ଚାହିଁଲା ଏବଂ ଅପେକ୍ଷା କଲା ଯେ ତା'ର ନିଦ, ତା'ର ଅଚେତନ ବି' ତା'କୁ ଆଦରିନେବ । ଆଦରି ନେବ ଏବଂ ତା'କୁ ନିଜର କରିନେବ । ଯେମିତିକି ଦୁଃଖଟା ଜରିଯାଇଥିବ ତା' ଦେହରେ-ମନରେ କାଲି ସକାଳ ବେଳକୁ । ସେଥିର ବ୍ୟଥା ନ ଥିବ, ରୁଗୁରୁଗୁ ନ ଥିବ, ଥାଇ ଥାଇ ତାକୁ ଛୁଞ୍ଚି ଫୋଡ଼ିଲା ପରି । କୋଉ ଇଙ୍ଗିତ, ପ୍ରଚ୍ଛନ୍ନ ବିଦ୍ରୂପ, କି ଉପହାସ । ପଲ୍ଲବୀ ମିତ୍ର ହେଉ କି ହିଂସୁକୁଟିଆ ଅଭିବାଦନକାରୀ ।

ନିଦମାଉସୀ ଶୈଳ ପ୍ରତି ନିଷ୍ଠୁର ହୋଇ ନ ଥିଲା ସେଦିନ । ତା'କୁ ବେଶି ସମୟ ବସେଇ ରଖି ନ ଥିଲା । ତେବେ ତା' ଆଗରୁ ପଲ୍ଲବୀ ମିତ୍ର ପୁଣି ଆସି ଠିଆ ହୋଇଯାଇଥିଲା ତା' ସାମ୍ନାରେ, ପାନ ଚୋବେଇ ଚୋବେଇ ଏବଂ ତା' ହାତରେ ହାତ ରଖି କହିଲା ସଦୟ ଶ୍ରଦ୍ଧାର ସହ —

"ମୁଁ କିଛି ମିନ୍ କରି କହୁ ନାହିଁ ମିସେସ୍ ପଣ୍ଡା । ଘୋଷାଲ୍ ଫ୍ୟାମିଲିଙ୍କୁ ମୁଁ ଜାଣିଛି, ବେଶ୍ ଭଲଲୋକ ଦି'ଜଣଯାକ । କିନ୍ତୁ ଆମ ଲୋକମାନଙ୍କ କଥା ଜାଣିନ ? ସଜ ମାଉଁସରେ ବି' ପୋକ ପକେଇବେ । କହୁଛନ୍ତି ଯେ ଲଞ୍ଚ୍ ପାଇଁ ପଣ୍ଡା ସାହେବ ଘରକୁ ଯାଆନ୍ତି ନାହିଁ କି କୋଉ କ୍ଲବ୍ କିମ୍ବା ରେଷ୍ଟୋରାଁକୁ । ଯାଆନ୍ତି ଚିତ୍ରାଙ୍ଗଦା ମ୍ୟାନ୍‌ସନ୍‌ସକୁ । ସେଠି କ'ଣ କିଛି ଅଧିକା ମିଳେ ? ଏନି ୱେ ଫରଗେଟ୍ ଇଟ୍ —"

...ଫରଗେଟ୍ ଇଟ୍ ଶୈଳଜା, ଶୋଇ ଯା', ଶୋଇ ପଡ଼ । କାଲି ଆଉ ଗୋଟାଏ ଦିନ...

କିନ୍ତୁ ରୁଗୁରୁଗୁ ତା' ପରଦିନ କିମ୍ବା ପରବର୍ତ୍ତୀ ଦିନଗୁଡ଼ିକରେ ଉଭେଇଗଲା ନାହିଁ । ବରଂ ତେଜି ଉଠୁଥିଲା ମଝିରେ ମଝିରେ, ଶୈଳକୁ କହିଲା ପରି ଯେ ବଥାଟା କେଉଁ ବ୍ୟାପକ ଦାର୍ଶନିକ ବିଷାଦରେ ଜରିଯାଇପାରିବ ନାହିଁ । କାରଣ ତା'ର ଗୋଟାଏ ସ୍ଥୂଳ ରୂପ ଅଛି, ଅନ୍ୟ ଏକ ମଣିଷକୁ ନେଇ । ତେଣୁ ସେ 'ଏକ୍ସକିଉଜ୍ ମି' କହି ଖୁଣ୍ଟା ଦେବ ।

...ଗୋଟାଏ ପାର୍ଟିରେ ଦେଖା ହୋଇଥିଲା ମିସେସ୍ ଘୋଷାଲ୍ ସାଙ୍ଗରେ । ନିହାତି ଅଳ୍ପବୟସୀ ପରି ଦିଶୁ ନ ଥିଲା । ସେମିତି କିଛି ଗୋରା ମଧ୍ୟ ନୁହେଁ । ସୁନ୍ଦରୀ ? କେଜାଣି । ଯଦି କାନରେ ଦୁଲ୍ ଝୁଲେଇଥିଲେ କି ଗାଲରେ ଟିପଚିହ୍ନ

ଥିଲେ ସୌନ୍ଦର୍ଯ୍ୟ ଫୁଟିଉଠେ ପୁରୁଷଙ୍କ ଆଖିରେ, ତା'ହେଲେ ସେ ଅବଶ୍ୟ ସୁନ୍ଦର । ଯାହାହେଉ ସୌଜନ୍ୟରେ ସରିଯାଇଛି ଝିଅ । ଗୋଟାଏ ଲମ୍ବା ଚଉଡ଼ା ନମସ୍କାର ପକେଇଲା ମତେ, ମୁଣ୍ଡ ନୁଆଁଇ । କହିଲା, ମୋର ଆଜି ପରମ ସୌଭାଗ୍ୟ ଯେ ଆପଣଙ୍କପରି ପ୍ରଖ୍ୟାତ କବିଙ୍କ ସାଙ୍ଗରେ ଦେଖାହେଲା । ମୁଁ ଆପଣଙ୍କ କବିତା ପଢ଼ିଛି । ୱାଣ୍ଡରଫୁଲ୍ । ମୁଁ ତା'କୁ ଧନ୍ୟବାଦ ଦେଲି । କହିପାରିଲି ନାହିଁ ଯେ କ୍ଷମା କରିବେ, ଆପଣ ଯେଉଁ ଅତର ଲଗେଇଛନ୍ତି, ସିଏ ମୋର ଚିହ୍ନା ଚିହ୍ନା ଲାଗୁଛି । ନା ଇଏ ମୋ ସନ୍ଦେହୀ ମନର ଭ୍ରମ ? ଆଉ ମୋ ସ୍ୱାମୀ ଆମ ଆଡ଼କୁ ଏମିତି କଣେଇ କଣେଇ ଅନଉଛନ୍ତି କାହିଁକି ? ଇଏ ବି' ମୋ ମନର ଭ୍ରମ ?

ମିଷ୍ଟର୍ ଘୋଷାଲ୍ ଥରେ ଆସିଥିଲେ ଆମ ଘରକୁ, ଅଫିସ୍ କାମ ନେଇ । କିନ୍ତୁ ମୋ କାନରେ ପଡ଼ିଲା ସେ ଯାଙ୍କ ମନିପର୍ସ ବି' ଫେରାଇବା ପାଇଁ ଆସିଥିଲେ । କହିଲେ, ଆପଣଙ୍କ ପକେଟ୍‌ରୁ ବୋଧହୁଏ ଖସିପଡ଼ିଥିଲା ଆମ ଘରେ । ଗତକାଲି ଉପରବେଳା । ଚିନ୍ମୟୀ ପଠେଇଦେଇଛି ମୋ ହାତରେ । ଅନୁଗତ ସ୍ୱାମୀ । କିନ୍ତୁ ସେ କେମିତି ଜାଣିବେ ଯେ ପର୍ସ କେବେହେଲେ ଖସିପଡ଼େ ନାହିଁ ମୋ ସ୍ୱାମୀଙ୍କ ପକେଟ୍‌ରୁ ? ସେ ମହା ହୁସିଆର୍ ସେ ବିଷୟରେ । ହଁ, ଯଦି ତାଙ୍କୁ ସାର୍ଟ୍‌ପ୍ୟାଣ୍ଟ୍ ଉତାରିବାକୁ ପଡ଼େ ଏବଂ ତା'କୁ ପୁଣି ପିନ୍ଧିଲାବେଳେ ତାଙ୍କ ମନ କୋଉ ଆକାଶରେ ଉଡୁଥାଏ, ତା'ହେଲେ ସେ କଥା ଭିନ୍ନ । ନା ଇଏ ବି' ମୋ ମନର ଭ୍ରମ ?

ଆଉ ତମେ କେବେହେଲେ କହି ନାହଁ କାହିଁକି ଯେ ତମେ ପ୍ରାୟ ପ୍ରତ୍ୟେକ ଉପରବେଳା ଯାଅ ସେଠିକି ? ଏମିତି ମାମୁଲି ଘଟଣା ଯେ ସେ ବିଷୟରେ କିଛି କହିବା ଦରକାର ନାହିଁ ବୋଲି ଭାବିଲ ? ନା କହିଲେ ତା'ର ଅସଲ କାରଣ କହିହେବ ନାହିଁ ଏବଂ ମିଛ କହିବା ତମ ଜାତକରେ ନାହିଁ, ତେଣୁ ସବ୍‌ସେ ଚୁପ୍ ଭଲା ? ଠିକ୍ ଅଛି, ମୁଁ ବି' ଚୁପ୍ ରହିବି । ଭାବିନେବି ଯେ ମୁଁ ପ୍ରାୟ ଘରେ ନ ଥାଏ, ତେଣୁ ତମେ ଲଞ୍ଚ୍ ବେଳକୁ ପାଖରେ ଥିବା ବନ୍ଧୁ ଘରକୁ ଯାଅ, ଟିକିଏ ବିଶ୍ରାମ ନେବାଲାଗି । ଓ-କେ...

କିନ୍ତୁ ଯେତେବେଳେ ସନାତନବାବୁଙ୍କୁ ପ୍ରମୋସନ୍‌ରେ ବମ୍ବେ ଯିବାକୁ କୁହାଗଲା, କମ୍ପାନୀର ନୂଆ ଶାଖା ଅଫିସ୍‌ର ମୁଖ୍ୟ ହେବା ପାଇଁ, ହେଲେ ସନାତନବାବୁ ବୋର୍ଡ୍‌କୁ ଅନୁରୋଧ କଲେ ତାଙ୍କୁ କ୍ଷମା କରିବାଲାଗି ଏବଂ ପଲ୍ଲବୀ ଏଇ ଅଜବ୍ ଖବର ଶୁଣାଇଲା ଶୈଳଜାକୁ, ସେ ପଚାରିବାକୁ ବାଧ ହେଲା ସ୍ୱାମୀଙ୍କୁ—

"ତମକୁ କୁଆଡ଼େ ବମ୍ବେ ଯିବାପାଇଁ କୁହା ହୋଇଥିଲା ଜେନେରାଲ୍ ମ୍ୟାନେଜର୍ ହୋଇ, କିନ୍ତୁ ତମେ କହିଲ ଥ୍ୟାଙ୍କ୍ସ, ମୋର ପ୍ରମୋସନ୍ ଦରକାର ନାହିଁ, ମୁଁ ଏଇ କଲିକତାରେ ରହିବି ?"

"ଦ୍ୟାଟ୍‌ସ୍ ରାଇଟ୍ ।"

"କିନ୍ତୁ କାହିଁକି ?"

"ୱେଲ୍...ମୋତେ କଲିକତା ଭଲ ଲାଗେ । ଆଉ ମୁଁ ଭାବିଲି ବମ୍ବେ ମୋତେ ଭଲ ଲାଗିବ ନାହିଁ । ବାସ୍, ଏଇଥିପାଇଁ । କ'ଣ ଯାଏ ଆସେ କେଇଟା ଅଧିକା ଟଙ୍କାରେ ?? ...ତମେ କ'ଣ ଚାହିଁଥାଆନ୍ତ ବମ୍ବେ ଯିବାପାଇଁ ?"

"ଏଇକ୍ଷଣି ପଚାରି କିଛି ଲାଭ ଅଛି କି ସେ ବିଷୟରେ ?" ଶୈଳଜା ଉତ୍ତର ଦେଲା, ଶୁଖିଲା ହସଟିଏ ହସିଦେଇ ।

"ସରି— ।"

ସେଇ ସାମାନ୍ୟ ଅସନ୍ତୋଷର ସୂଚନା, ଏବଂ କ୍ଷମାଭିକ୍ଷାର ପଦୁଟିଏ ତା'କୁ ଖାପ୍ ଖାଇଲାପରି । କଳିକଜିଆ, ରାଗରୁଷା, ମାନଭଞ୍ଜନ ଇତ୍ୟାଦିର କୌଣସି ଆବଶ୍ୟକତା ନାହିଁ । ପଣ୍ଡାଦମ୍ପତି ସେ ଦିଗରେ ଅଭ୍ୟସ୍ତ ନୁହନ୍ତି ବାହାହେଲା ଦିନୁଁ । ଏବଂ ଆଜି ତ ସେମାନେ ମଧ୍ୟବୟସ୍କ ଏବଂ ଯେଝା ଯେଝା ବ୍ୟକ୍ତିତ୍ୱରେ ଗୋଟାଏ ବିଶେଷ ମର୍ଯ୍ୟାଦା ଆସିଗଲାଣି, ଯାହାର ଅବମାନନା କରିବା ଅନୁଚିତ । ଅଶୋଭନୀୟ । ତେଣୁ କଥାଟା ସେତିକିରେ ଛିଣ୍ଡିଗଲା ।

ଏବଂ ଆତ୍ମୀୟତାର ପ୍ରଧାନ ତନ୍ତୁଟିକ ମଧ୍ୟ ଛିଣ୍ଡିଗଲା, ଯାହା କୌଣସିମତେ ତିଷ୍ଠି ରହିଥିଲା ଏତେ ଦିନଯାଏଁ । ଶୈଳଜାର ବୁଝିବାକୁ ବାକୀ ରହିଲା ନାହିଁ, କେଉଁଥିପାଇଁ ତାଙ୍କୁ କଲିକତା ଭଲଲାଗେ, ଆଉ ବମ୍ବେ ଭଲ ଲାଗେ ନାହିଁ । କେତେ ବଳଶାଳୀ ହୋଇଥିବ ସେଇ ଭଲ ଲାଗିବାର ଡୁଲ୍, ଟିପଚିହ୍ନ, କି ଆଉ ଯାହା, ଯେଉଁଥିରେ ଆମ ଉଚ୍ଚାଭିଳାଷୀ ସ୍ୱାମୀ ଯେ ପଣ୍ଡା ସିରାମିକ୍ସର ରାଜା ନ ହୋଇ ସିଛିଆ କର୍ପୋରେସନ୍‌ର ମନ୍ତ୍ରୀ ହେବାକୁ ସ୍ଥିର କଲେ, ଛୋଟ ସହରକୁ ଛାଡ଼ି ମହାନଗରୀକୁ ଆସିଲେ ଯେମିତିକି ଧନ, ମନ ଓ ଅଭିଜ୍ଞତା ବଳରେ ସେ ଭବିଷ୍ୟତର ସମ୍ରାଟ୍ ହୋଇପାରିବେ, ସେ ହାତେ ହାତେ ଆସୁଥିବା ପ୍ରମୋସନ୍‌ଟାକୁ ବି' ଛିଃ କରିଦେଲେ ! ହଉ, ଶୈଳ ବୁଝିବ ତା' ନିଜ କଥା । ଧନ୍ୟବାଦ । ଏବଂ ସନାତନବାବୁ ମଧ୍ୟ ବୁଝିଲେ ଯେ ଶୈଳ ବୁଝିଛି । ଯାହା ଟିକିଏ ଅନୁମାନ କରିଥିବ ଏଥିପୂର୍ବରୁ, ବର୍ତ୍ତମାନ ତା'ର ଆଉ କୌଣସି ସନ୍ଦେହ ନ ଥିବ । ଠିକ୍ ଅଛି । ଉପାୟ ନାହିଁ । ଯଦି ତା'କୁ ଜୋର୍ କରି କୁହେ

ଏଇକ୍ଷଣି, ଛାତିରେ ହାତ ରଖି କୁହେ ଯେ ଚିନ୍ମୟୀ ମୋ ପାଇଁ ଦରକାର, କିନ୍ତୁ ମୁଁ କେବଳ ତମକୁ ହିଁ ଭଲପାଏ, ସେ କ'ଣ ମୋତେ ବିଶ୍ୱାସ କରିବ ? ତେଣୁ କଥା ବଢ଼େଇ ଲାଭ ନାହିଁ । ତା'ଛଡ଼ା ଶୈଳର ବିଶେଷ କିଛି କ୍ଷତି ହେବ କି ଏଇ ଆବିଷ୍କାର ହେତୁ ? ସେ ଯେଉଁ କାବ୍ୟରାଇଜରେ ଅଛି, ଆଉ ଯେମିତି ମଜ୍ଜିଯାଇଛି ତା' ରାଜତ୍ୱରେ, ପୁଣି ନୂଆ ନୂଆ ମୁକୁଟରେ ଅଭିଷିକ୍ତ ହେଉଛି, ସେଥିରେ ଏଇ ଆବିଷ୍କାର କେବଳ ଗୋଟାଏ ବିସ୍ମୟ ଛଡ଼ା ଆଉ କ'ଣ ହୋଇପାରେ ? ବିସ୍ମୟ, ଯାହା ଆପେ ଆପେ ସିଧା ହୋଇଯିବ, କାରଣ ତା'ର କୌଣସି ସମ୍ପର୍କ ନାହିଁ ତା'ର ରାଜଭୋଗ ସାଙ୍ଗରେ ।

କିନ୍ତୁ ଶୈଳ ଭଲ ପାଇବାର ତଥ୍ୟ, ଅର୍ଥାତ୍ ବର୍ତ୍ତମାନ ତା'ର ସ୍ୱରୂପ କେଉଁ ପ୍ରକାର ତାଙ୍କ ଦିହିଁଙ୍କ ଭିତରେ, ସେ ବିଷୟରେ କୌଣସି ପ୍ରଶ୍ନକୁ ପ୍ରଶ୍ରୟ ଦେଲା ନାହିଁ । ସତେକି ସେ ଜାଣେ ଯେ ଏଭଳି ପ୍ରଶ୍ନର ଉତ୍ତରଗୁଡ଼ାକ ମିଛୁଆ କିମ୍ବା ନିଷ୍ଠୁର ହେବାକୁ ବାଧ୍ୟ । ସେ କେବଳ ଚିପିନେଲା ଯେ ଚିନ୍ମୟୀ ନାମକ ଆଉ ଜଣେ ନାରୀ ଅଛି ତାଙ୍କ ଜୀବନରେ । ହଉ ।

ଏହିପରି ଭାବରେ ଭଲପାଇବା ଜାରୀ ରହିଲା ଦିହିଁଙ୍କ ଭିତରେ, ସରକାରୀ ଖାତାରେ । କିନ୍ତୁ ଆତ୍ମୀୟତାର ତନ୍ତୁ ଛିଣ୍ଡିଗଲା । ବାଲ୍‌କନିର କୁଣ୍ଡରେ ଲଗା ହୋଇଥିବା କାକ୍‌ଟସ୍ ଯେତେବେଳେ ହଠାତ୍ ହସିଉଠିଲା, ନାଲି ଟହଟହ ଫୁଲଟିଏ ଦେଖେଇ, ଶୈଳ ଧାଇଁଗଲା ନାହିଁ ସନାତନବାବୁଙ୍କ ପାଖକୁ, ଏଇ ସୁସମ୍ବାଦ ଦେଇ ଆସିବାପାଇଁ । ସତେକି ତା'ର ଏଇ ବ୍ୟକ୍ତିଗତ ଆନନ୍ଦ ସାଙ୍ଗରେ ତାଙ୍କର କୌଣସି ସମ୍ପର୍କ ନାହିଁ ଏବଂ ଯେତେବେଳେ ତାଙ୍କ ଆପାର୍ଟମେଣ୍ଟ୍ ହାଉସ୍‌ର ଭାଲୁଆ ନାମକ ଭୁଆଁବିଲେଇ ସକାଳୁ ସକାଳୁ ଆସି 'ମ୍ୟାଉଁ' 'ମ୍ୟାଉଁ' ହେଲା ନାହିଁ ତା'ର ଦୈନନ୍ଦିନ କ୍ଷୀର ଖାଇବାଲାଗି, ମୋଟେ ଆସିଲା ନାହିଁ ଦିନ ପରେ ଦିନ ଏବଂ ଶୈଳର ମନରେ ଆସିଲା ଯେ ତା'କୁ ନିଶ୍ଚୟ କେହି ମାରିଦେଇଥିବ, ସେ ଧାଇଁ ଗଲା ନାହିଁ ସନାତନବାବୁଙ୍କ ପାଖକୁ, ସ୍ୱାମୀସୁଲଭ ଆଶ୍ୱାସନା କିମ୍ବା ଲଘୁ ପରିହାସର ପଦେ (ସେ ତା' ମାଉସୀ ଘରକୁ ଯାଇଥିବ ମ !) ଶୁଣିବାପାଇଁ । କାରଣ ତା'ର ଏଇ ବ୍ୟକ୍ତିଗତ ଦୁଃଖ ସାଙ୍ଗରେ ତାଙ୍କର କୌଣସି ସମ୍ପର୍କ ନାହିଁ ।

ଏବଂ ଯେତେବେଳେ ସେ ତା'ର କାବ୍ୟଜଗତରେ ମଜ୍ଜିଯାଏ, ସେ ଆଗଭଳି ତା'ର ନିମଜ୍ଜନରୁ ଉଠି ଆସିବାକୁ ଚାହିଁଲା ନାହିଁ ମଝିରେ ମଝିରେ, ଘର ଭିତରେ ଥିବା ଆର ଲୋକଟିକୁ ଏଣୁତେଣୁ କିଛି ସମ୍ବାଦ ଦେବାଲାଗି ତା'ର ସାହିତ୍ୟ ବିଷୟରେ । ଯଥା ଜାଣିଛ ? ବରୋଦାର କୋଉ 'ପ୍ରଗତିବାଦୀ

ନାରୀ ସଂଘ' ଚିଠି ଲେଖିଛି ମୋ ପାଖକୁ, ଗୋଟିଏ କବିତା ଲେଖି ପଠେଇବା ପାଇଁ, ଯେଉଁଥିରେ ପ୍ରଗତି ଓ ନାରୀ ଉଭୟର ବିଶିଷ୍ଟ ଭୂମିକା ଥିବ । କ'ଣ ଚୁପ୍ ହୋଇ ରହିଯିବି, ନା ଲେଖିବି ଯେ ମୁଁ ସେମିତିକା ବରାଦିଆ କବି ନୁହେଁ ? ...ଶୁଣୁଛ ? ଦିଲ୍ଲୀର ମୁକୁର ପ୍ରକାଶନ ଗୋଟାଏ ଚେକ୍ ପଠେଇଛି ଏତେଦିନକେ, ମୋର ହିନ୍ଦୀ 'ଫୂଲୀ ହୁଇ ଫୁଲ୍‌ୱାରୀ' ପାଇଁ ? ...ପ୍ଲିଜ୍, ମୋର ଆଉ କେଇଟା ଭଲ ଫଟୋ କରେଇଦେବ କି, ପାର୍କଷ୍ଟ୍ରୀଟ୍‌ର ସେଇ ଫଟୋ ଦୋକାନରୁ ? ମୋତେ ବ୍ୟତିବ୍ୟସ୍ତ କରିଦେଉଛନ୍ତି ଏଇ ସମ୍ପାଦକଙ୍କ ଦଳ । କିନ୍ତୁ ଏକା ପୋଜ୍ ହେଲେ ଚଳିବ ନାହିଁ ... ଇତ୍ୟାଦି । ଅପରନ୍ତୁ ତା'ର ମନରେ ଆସେ — ଇସ୍ ! ମୁଁ କେମିତି ଏଇ ସବୁ ବାଜେ କଥା ଶୁଣାଉଥିଲି ମ ତାଙ୍କୁ ? ମୋର ସାହିତ୍ୟ ଜୀବନର ବଡ଼ କଥା ହେଉ କି ସାନ କଥା, ସେଥିରେ ତାଙ୍କର ଯାଏ କେତେ, ଆସେ କେତେ ?

ତେଣୁ ଦେଖାଗଲା ଯେ ଶୈଳ ପ୍ରାୟ ଏକୁଟିଆରେ ବସି ରହୁଛି ତା'ର ଷ୍ଟଡ଼ି ରୁମ୍‌ରେ, ରାତି ଅଧଯାଏଁ ଏବଂ ପରଦିନ ସକାଳେ ଡେରିରେ ଉଠିବା ହେତୁ ତା'ର କ୍ୱଚିତ୍ ଦେଖାସାକ୍ଷାତ ହୁଏ ସ୍ୱାମୀଙ୍କ ସାଙ୍ଗରେ, ତାଙ୍କର ଅଫିସ୍ ଯିବା ପୂର୍ବରୁ । ଖାଲି ବ୍ରେକ୍‌ଫାଷ୍ଟ ପରର କଫି ଓ 'ବାଏ ଡାର୍ଲିଂ !'ର ଉପଚାରକୁ ଛାଡ଼ିଦେଇ ।

ଏହିପ୍ରକାର ପରିସ୍ଥିତିକୁ ନେଇ ପୁଣି ଥରେ ବର୍ଷା ଋତୁର ଆବିର୍ଭାବ ହେଲା ଏବଂ ଏୟାର୍ କଣ୍ଡିସନ୍‌ଡ଼୍ ରୁମ୍‌ରେ ଝରକା କବାଟ ବନ୍ଦ କରି ଶୋଇବାର ଆବଶ୍ୟକତା ରହିଲା ନାହିଁ । ସେହେତୁ ଶୈଳ ତା' ଷ୍ଟଡ଼ି ରୁମ୍‌ରୁ ବାରମ୍ବାର ପଳେଇଆସେ ରାତିରେ, ଶୋଇବା ଘର ଝରକା ବାଟେ ପୃଥିବୀକୁ ଅନେଇବାପାଇଁ । କାରଣ ଷ୍ଟଡ଼ିରୁମ୍‌ରୁ ଝରକାରୁ ଖାଲି କେଇଟା ଛାତ ଦେଖାଯାଏ । ଅବଶ୍ୟ କାବ୍ୟ ରଚନାରେ ବୁଡି ରହିଥିବା ପ୍ରାଣୀର କିଛି ଯାଏ ଆସେ ନାହିଁ, ଝରକା ସେପାଖରେ ଛାତ ଥାଉ କି ଚଳମାନ ପୃଥିବୀ । କିନ୍ତୁ କେଜାଣି କାହିଁକି ଶୈଳ ଆଗଭଳି ବୁଡିଯାଇ ପାରୁନାହିଁ ତା' ସର୍ଜନାରେ । ଷ୍ଟଡ଼ିରୁମ୍‌ରେ ଅନେକ ସମୟ ବସିରହୁଛି ସିନା, କିନ୍ତୁ ଖାଲି ଏଣୁତେଣୁ ପଢୁଛି, ଖାତାପତ୍ର ଘାଣ୍ଟୁଛି ଏବଂ ଦି'ଧାଡ଼ି ଲେଖିଲା ପରେ ଥକିଯାଉଛି । ଏବଂ ଦିନେ ସେ ନିଜ ଉପରେ ଭୀଷଣ ରାଗିଲା ଯେ ଗଂଗୋତ୍ରୀ ପୁରସ୍କାର ପାଇବାର ଆସି ପାଞ୍ଚ ମାସ ହୋଇଗଲାଣି, ୟା' ଭିତରେ ସେ ତିନୋଟି କବିତା ବି' ଲେଖିପାରି ନାହିଁ, ମାନେ ମନଲାଖି କବିତା ଯାହାକୁ ଛପେଇ ହେବ ।

...ଆଉ କ'ଣଟା କରୁଛୁ ତା'ହେଲେ ? ପ୍ରମାଣ ଦେବାକୁ ଚାହୁଁଛୁ ଯେ ତୁ ଅନ୍ୟତମ ଧନିକ ରମଣୀ, ଯାହାର ଅଳସବିଳାସକୁ ହିଁ କାମ କୁହାଯାଏ ?

କିଏ ଶପିଙ୍ଗ୍ କରେ କି ବ୍ରିଜ୍ ଖେଳେ, ଆଉ ତୁ ଦିନସାରା ଘୂରିବୁଲୁଛୁ ବିଭିନ୍ନ ବହି ଦୋକାନରେ ଏବଂ ଆଡ୍‌ଡ଼ା ମାରୁଛୁ ପଲ୍ଲବୀଙ୍କାତୀୟ ସାହିତ୍ୟପ୍ରେମୀ ସାଙ୍ଗମାନଙ୍କ ଘରେ । ନ ହେଲେ ଥୁଣ୍ଟା ହୋଇ ବସିରହୁଛୁ ଗୋଲ୍‌ପାର୍କର ରାମକୃଷ୍ଣ ମିସନ୍ ଲାଇବ୍ରେରୀରେ ଏବଂ ବାରମ୍ବାର ପଢୁଛୁ ବସି ସେମାନେ କ'ଣ କହିଥିଲେ ବଞ୍ଚିବାଠାରୁ ଆଗେଇ ଯାଇ କେଉଁ ନୂଆ ଧରଣର ସୁଖ ପାଇବା ପାଇଁ । କିଲୋ, ତୁ କ'ଣ ଖାଲି ବଞ୍ଚୁଛୁ ? ତୋ ନିଜର କ'ଣ କିଛି କହିବାର ନାହିଁ ପୃଥିବୀକୁ ନେଇ ? ପାଞ୍ଚ ମାସ ଭିତରେ ଅଢ଼େଇଟା କବିତା ? ହେ ଭଗବାନ୍ ! କ'ଣ ହୋଇଛି ତୋର ଶୈଳ ? ଶୂନ୍ୟତାବୋଧ ? ଯେଉଁ ଦିନଠୁଁ ଜାଣିଲୁ ଯେ ତୋ ସ୍ୱାମୀ— ?

ଷଟ୍ ଇଟ୍ ! ସେ ଦିଗରେ ମୋର ଶୂନ୍ୟତା ନାହିଁ । ଇଏ ଗୋଟାଏ ସାମୟିକ ନିଷ୍କ୍ରିୟତା, ଉଦାସୀନତା — ଆଉ କିଛି ନୁହେଁ । ଯାହାକି ପ୍ରତ୍ୟେକ ସ୍ରଷ୍ଟାକୁ ଆକ୍ରମଣ କରିଥାଏ ବେଳେବେଳେ । ମୁଁ କିଛି ସ୍ୱର୍ଗରୁ ଖସିପଡ଼ି ନାହିଁ...

ସେଇଠୁଁ ଦିନକର କଥା । ରାତି ସାଢ଼େ ଏଗାରଟା । ସ୍ୱାମୀ ଦିବ୍ୟ ଶୋଇ ରହିଛନ୍ତି ସବୁଦିନ ପରି । ଏବଂ ଶୈଳ ପଳେଇଆସିଛି ତା' ଷ୍ଟଡ଼ିରୁମ୍‌ରୁ, ଶୋଇବା ଘର ଝରକା ବାଟେ ଅନେଇବା ଲାଗି ବାହାରକୁ ।

କିନ୍ତୁ ଆଜି ତା'ର ମନ ହେଲା ନାହିଁ ଯଥାଶୀଘ୍ର ଫେରିଯିବାପାଇଁ । ସତେକି ସେ କିଛି ବଳ ପାଉଛି ତା'ର ଏଇ ସ୍ନେହୀ ପୃଥିବୀଠାରୁ । ...ହଁ, ପୁଣି ସେଇ ଉତ୍ସବର ଧ୍ୱନି ଉଠିଆସୁଛି ବସ୍ତିବାଲାଙ୍କ ସଂସାରରୁ ! ନାଚ ଆଉ ଗୀତ । ଆରେ, ମୁଁ ଜାଣିଛି ଏ ଗୀତ ! ଶୁଣିଛି କୋଉ ଗଣ-ସଙ୍ଗୀତର ଆସରରେ । ସୋନାର୍ ଚାନ୍ଦ୍ ବଦନୀ ଧନୀ, ନାଚୋ ତୋ ଦେଖି, ନାଚୋ ତୋ ଦେଖି ବଲା ନାଚୋ ତୋ ଦେଖି, ସୋନାର୍ ଚାନ୍ଦ..."

ତା'ର ମନେହେଲା ତାଙ୍କ ଉତ୍ସବ ସରି ନାହିଁ ସେଇ ଦିନଠୁଁ । ଯେଉଁଦିନ ସେ ଏଇ ଏୟାରକଣ୍ଡିସନ୍‌ଡ୍ ରୁମ୍‌ର ବନ୍ଦ ଝରକାକୁ ଖୋଲି ଦେଇଥିଲା, ସଂସାର ପ୍ରତି ତା'ର ଘୋର ବିଦ୍ରୋହ ଦେଖେଇଲା ପରି, ଆଉ ଝଲକାଏ ଅବାଞ୍ଛିତ ଉଷ୍ମ୍ମୂଳିଆ ପବନ ପୂରେଇ ଆଣିଥିଲା ଘର ଭିତରକୁ । ... ଆଲୋ, ବିଦ୍ରୋହର ରାଗ ଦେଖଉଛୁ କାହିଁକି ? ସେମାନେ ତୋତେ ଡାକୁଛନ୍ତି ପରା ? ଇଚ୍ଛା କଲେ ତୁ କ'ଣ ଯାଇପାରନ୍ତୁ ନାହିଁ ସେଠିକି, ତାଙ୍କ ଆନନ୍ଦର ସାଥୀ ହେବାଲାଗି ?

ବେଶ୍, ମୁଁ ଯିବି ସେଠିକି । ମାଇ ଡିଅର୍ ହଜ୍‌ବ୍ୟାଣ୍ଡ, କ'ଣ ଭାବିଛ ଯେ ଖାଲି ତମକୁ ଭଲଲାଗେ କଲିକତା ? ମୋତେ ବି' କେମିତି ଭଲଲାଗେ, ଦେଖିବ । ଆଉ ଦେଖିବ ତା'ର ମୂଲ୍ୟ କେତେ ବେଶୀ, ତମର ତଥାକଥିତ ଭଲଲାଗିବା

ଠାରୁ । କିଭଳି ସାର୍ଥକତା...ବର୍ଷାର କୁନୁମୁନିଆ ବିନ୍ଦୁଟିଏ କେଉଁଠି ଥିଲା, ଶୈଳର ଖୋଲା ବାହୁକୁ ଚୁମି ଦେଇଗଲା । ସେଠିକି ଯିବାପାଇଁ ତା'କୁ ଗୋଟାଏ ବିଧିବଦ୍ଧ ଚିଟାଉର ନିମନ୍ତ୍ରଣ ଜଣାଇଲା ପରି ।

କିନ୍ତୁ ସେଠିକି ଯିବ କେମିତି ମଣିଷ ? ମନଟାକୁ ସିନା ଉଡ଼େଇ ନେଇ ହେବ ସେଠିକି, ମଧ୍ୟ ତାଳ ଦେଇ ହେବ ଚାନ୍ଦ୍‌ବଦନୀର ନାଚ ସାଙ୍ଗରେ, କିନ୍ତୁ ଯିବାକୁ ହେଲେ ତ ପାଦରେ ଚାଲିବାକୁ ପଡ଼ିବ । ଆମ 'ବ୍ରିନ୍ଦାବନ୍ ହାଉସ୍'ର ସାତ ମହଲାରୁ ଓହ୍ଲେଇ ବଜାର ରାସ୍ତା ଧରିବାକୁ ପଡ଼ିବ । କିନ୍ତୁ ତା'ପରେ ? ରାସ୍ତାରୁ କେମିତି ଭଲା ଗଡ଼ିଯାଇ ହେବ ବସ୍ତିକୁ ? ଶୈଳ ସମସ୍ୟାକୁ ବିଚାର କରି ବସିଲା ।

ଏବେ ଫୁଟ୍‌ପାଥ୍‌ରେ ଚାଲିଲାବେଳେ ଲକ୍ଷେ ମଣିଷଙ୍କ ଦେହ ସାଙ୍ଗରେ ଘଷି ହୋଇଯିବାକୁ ପଡ଼େ । ଏପରିକି ଥରେ ଅଧେ ଗେଞ୍ଜିପିନ୍ଧା ଝାଳୁଆ ଦେହ ସାଙ୍ଗରେ । ଝୁଣ୍ଟିବାକୁ ହୁଏ ଭିକାରୁଣୀର ଚିଣବାସନ ଆଉ ତା' ପାଖରେ ଚିତ୍ ହୋଇ ପଡ଼ିଥିବା ପିଲାଟା ସାଙ୍ଗରେ । ଅବଶ୍ୟ ଶୈଳର ଅଭ୍ୟାସ ହୋଇଗଲାଣି କେମିତି ସେ ସବୁକୁ ଆଡ଼େଇବାକୁ ହୁଏ । ଯଥାସମୟରେ ଗଳି ପଶି ଆଗେଇବାକୁ ହୁଏ କୁଦାଟାଏ ମାରିବାକୁ ହୁଏ, ଏବଂ ଅବିରତ 'ଏକ୍ସକିଉଜ୍ ମି' ପଦଟାକୁ ଝାଡ଼ିଦେଇ ପଳେଇ ଆସିବାକୁ ହୁଏ ଯାବତୀୟ ଅଭଦ୍ର ଲୋକମାନଙ୍କ ଠାରୁ । ଯେମିତିକି ଯଥାଶୀଘ୍ର ଗୋଟିଏ ସୁବିଧା ଜାଗାରେ ପହଞ୍ଚି ନିଃଶ୍ୱାସ ମାରିହେବ ଏବଂ ଟିକିଏ ଅନେଇ ହେବ ବଜାର ବିପଣୀର ଦୃଶ୍ୟ ଆଡ଼କୁ । ତେଣୁ ବାଟରେ କେଉଁଠି ଗଡ଼ି ଯାଇହେବ ବସ୍ତି ଆଡ଼କୁ, ତା'କୁ ଲକ୍ଷ୍ୟ କରିବାର ଫୁରୁସତ୍ କାହିଁ ? ଦ୍ୱିତୀୟରେ... ନା କୌଣସି ଦ୍ୱିତୀୟ କାରଣ ନାହିଁ । ଶୈଳକୁ ଡର ମାତ୍ର ନାହିଁ । ଶୈଳକୁ ଲାଜ ଲାଗୁ ନାହିଁ ।

ଏହିପରି ଭାବରେ ଦିନେ ଉପରବେଳା ଶୈଳ ଓହ୍ଲେଇଗଲା ତଳକୁ, ଖାସ୍ ସେଠିକି ଯିବ ବୋଲି । ଯେଉଁଠି ସେମାନେ ରାତି ଅଧରେ ନାଚନ୍ତି, ଗୀତ ଗାଆନ୍ତି, ସାତମହଲାର କେଉଁ ଦୁଃଖିନୀକୁ ଶୁଣେଇବାଲାଗି । ତେଣୁ ସେ ଠେଲାପେଲା ଭିତରେ ଧୈର୍ଯ୍ୟ ଧରି ଚାଲୁଥାଏ ଏବଂ ମଝିରେ ମଝିରେ ଅଟକିଯାଉଥାଏ, ତା' ଗନ୍ତବ୍ୟ ପଥର ସନ୍ଧାନ ନେବାପାଇଁ ଏବଂ ଦୋହରେଇ ହେଉଥାଏ ଯେ ସେ ଆଜି ଅବଶ୍ୟ ଦେଖିବ ତା' ଚାନ୍ଦବଦନୀକୁ । ହୁଏତ ତା'କୁ ତା' ଫ୍ରେଣ୍ଡ କରିନେବ ! କିଏ କ'ଣ କହିବ, ଯାଏ ଆସେ ନାହିଁ ।

...କିନ୍ତୁ କୋଉଠି ମୋ ବାଟ ? ଏଇ ସିଲୁବାଡ଼ କଡ଼ରେ ଯେଉଁ ପଚପଚ କାଦୁଅ, ହଜାରେ ପାଦଚିହ୍ନ ତା' ଉପରେ, ଆଉ ସିଏ ଗଡ଼ିଯାଇଛି କୋଉ

ଅପନ୍ତରାକୁ, ସେଇ ହେଉଛି ମୋ ବାଟ ? ଧ୍ୟାତ୍ ! ନା ଯୋଉ ସରୁ ଗଳିଟାଏ ଲମ୍ବିଯାଇଛି ବାସନ ଦୋକାନ ଓ 'ବସନାଳୟ' ମଝିରେ ? କାହାକୁ ପଚାରିବି ? କ'ଣ ପଚାରିବି ? ଯେ ଏଇଠି କୋଉଠି ଗୋଟାଏ ବସ୍ତି ରହିଛି, ଯେଉଁଠି ରାତିବିକାଳି ଗାନବାଜଣା ହୁଏ, ଆପଣ ଜାଣିଛନ୍ତି କି ସେଠି ପହୁଞ୍ଚିବାର ବାଟ ? ଲୋକଟା ଚାହିଁବ ମୋ ମୁହଁକୁ ଜଳଜଳ ହୋଇ । କ'ଣ ବୋଲି କ'ଣ ଭାବିବ । ଦରକାର ନାହିଁ । ମୋ ଉଦ୍ଦେଶ୍ୟ ମୋର, ମୁଇଁ ତା'ର ଉପାୟ କରିବି...

'ପ୍ରିଥିବୀର୍ କେଉ ଭାଲୋ ତୋ ବାସେ ନା, ଏ ପ୍ରିଥିବୀ ଭାଲୋ ବାସିତେ ଜାନେ ନା...', ଶ୍ୟାମାସଙ୍ଗୀତର ପଦେ ଶୁଭିଗଲା କୋଉ ଦୋକାନରୁ । ...ହଁ, ହଁ, ମୁଁ ଜାଣିଛି । କିନ୍ତୁ ପୃଥିବୀ ଖାଲି ତଥାକଥିତ ନିଜ ମଣିଷଙ୍କୁ ନେଇ ଗଢ଼ା ହୋଇ ନାହିଁ କି ଧୋବଧାଉଳିଆମାନଙ୍କୁ ନେଇ । ଏଠି ଅନ୍ୟମାନେ ବି ଅଛନ୍ତି ଯେଉଁମାନେ ତମକୁ ଡାକନ୍ତି । କିନ୍ତୁ ତମର ହିମ୍ମତ୍ ନ ଥାଏ ତାଙ୍କ ଡାକ ଶୁଣିବାପାଇଁ । କିନ୍ତୁ ମୁଁ ସେମିତିକା ଲୋକ ନୁହେଁ । ମୁଁ ପ୍ରକୃତିର ଡାକ ଶୁଣିଛି, ପିଲାଟି ଦିନୁ ଶୁଣିଆସିଛି ଏବଂ ତା'କୁ ନେଇ ଯେଉଁ କବିତା ଲେଖିଛି, ସେଥିରେ ସାରା ଦେଶ ଚମକିଉଠିଛି । ଆଉ ଆଜି ଶୁଣୁଛି ଚାନ୍ଦବଦନୀର ଡାକ । ପ୍ରକୃତିରୂପିଣୀର ଆହ୍ୱାନ । ତା'କୁ ମଧ ହଁ ଭରିବି । ପାରିବି, ଅଲ୍‌ବତ୍ ପାରିବି ।

ଏଇଠି ପଶିଗଲେ ଯାଏ । ଆରେ, ହେଇ ତ ଦିଶିଯାଉଛି ଆମ 'ବ୍ରିଂଦାବନ୍ ହାଉସ୍' ! ତା'ରି ସାତମହଲା ବେଡ୍‌ରୁମ୍‌ର ଝରକା କ'ଣ ପଶ୍ଚିମ ଦିଗକୁ ନୁହେଁ ? ମାନେ, ଏଇ ଆଡ଼କୁ ? ... ଏହି ପ୍ରକାର ଧାରଣାର ବଶବର୍ତ୍ତୀ ହୋଇ ଏବଂ ଶ୍ୟାମାସଙ୍ଗୀତ ଦ୍ୱାରା ପ୍ରଚୋଦିତ ହୋଇ ଶୈଳ ପଶିଗଲା ଦି' .ଦୋକାନ ଭିତରେ ଥିବା କେଉଁ ଗୋଟାଏ ଗଳିରେ । ଯେଉଁଠି ବିଶେଷ କାଦୁଅ ଥିଲାପରି ଲାଗୁ ନାହିଁ କିମ୍ବା ଗାଈଗୋରୁମାନେ ଶିଙ୍ଗ ହଲାଉ ନାହାନ୍ତି ।

କିନ୍ତୁ ଚାହୁଁ ଚାହୁଁ ଗଳି ସରିଗଲା । ସେଣିକି ଖାଲି ମାଟିକାଦୁଅ, ଆଉ ଘାସ ନ ଥିବା ପଡ଼ିଆ ଏବଂ କେବଳ ଗାଈଗୋରୁ ନାହାନ୍ତି ଏଠି, ମଧ ଅଛନ୍ତି ଫଡ଼ ଫଡ଼ ହୋଇ ଉଡ଼ି ଯାଉଥିବା କୁକୁଡ଼ାଛୁଆ । ଆଉ ଚମଛଡ଼ା ନାଲି ସରସର ଘୁଷୁରି । ...ଏଇ କ'ଣ ମୋ ବାଟ ? ହଁ, ମନେ ହେଉଛି ସେଇଆ । ବସ୍ତିଟା ବେଶ୍ ଦିଶିଯାଉଛି ଏଠୁଁ । ମାଟି କାଦୁଅ ଲୁତୁପୁତୁର ବିସ୍ତାର ଉପରେ ଇଟା ଖଣ୍ଡେ ଖଣ୍ଡେ ପଡ଼ିଛି, ସେଇ ହେଉଛି ବାଟ । ତା'ରି ଉପରେ ପାଦ ରଖି ଦି' ହାତକୁ ଡେଣା ପରି କରି ଚାଲିବାକୁ ପଡ଼ିବ । କିନ୍ତୁ ସେ ପାଖରୁ ଆଉ ଜଣେ ଆସୁଥିଲେ ତଳକୁ ଓହ୍ଲେଇବାକୁ ପଡ଼ିବ ପକ୍‌କିନି । ହଉ,

ତଥାପି ଯିବି । ଆଉ ଯଦି କେହି ଛଳଛଳ ହୋଇ ଅନାଏ ମୋ ଆଡ଼କୁ ଆଉ ପଚାରେ କୁଆଡ଼େ ଯାଉଛ ବୋଲି, ତା'କୁ କହିବି ଯେ ଏଇ ହେଉଛି ସର୍ଟ୍‌କଟ୍ ବ୍ରିନ୍ଦାବନ୍ ହାଉସ୍‌କୁ ଯିବାପାଇଁ । ପ୍ରକୃତରେ କ'ଣ ସେଇଆ ନୁହେଁ କି ? ସତରେ କ'ଣ କୋଉ ଚାନ୍ଦବଦନୀକୁ ଦେଖିବି, ଆଉ ମୁଁ ମିତ ବସିବି ତା' ସାଙ୍ଗରେ ? ଖାଲି ଟିକିଏ ପାଖରୁ ଦେଖିବା କଥା ସେମାନଙ୍କୁ, ଯେଉଁମାନେ ରାତି ଅଧରେ ଏମିତିକା ଉତ୍ସବ ମନାନ୍ତି । ସେଇ ଯଥେଷ୍ଟ ଆଜିକାପାଇଁ । କିନ୍ତୁ ପରେ ଆସିବି ଯେ ଆସିବି । ଯେତେବେଳେ ପାଗ ଶୁଖିଲା ଥିବ, ସୁବିଧାରେ ପାଦ ପକେଇ ହେଉଥିବ ରାସ୍ତାରେ...

ବସ୍ତି ନିକଟରୁ ନିକଟ ହୋଇ ଆସିଲା । ଧାଡ଼ି ଧାଡ଼ି ତିନି ଧାଉଡ଼ିର ବସ୍ତି । କାଦୁଅ କମି ଆସିଲା ସିନା, କିନ୍ତୁ ଏଣିକି ଭୀଷଣ ଗନ୍ଧ । କ'ଣ ସେ ଗନ୍ଧରେ ମିଶିକରି ଅଛି ଭଗବାନ୍ ଜାଣନ୍ତି । ଶୈଳ ଭାବିବାକୁ ଚାହିଁଲା ନାହିଁ ଯେ ସାମୂହିକ ଦୁର୍ଗନ୍ଧ ଭିତରେ ଯେଉଁ ପଚାଗନ୍ଧ ବାରି ହୋଇଯାଉଛି, ତାହା ଗୋବରର ନୁହେଁ, ପଚାପତରର ନୁହେଁ, କୋଉ ମଲା ବିଲେଇର ମଧ ନୁହେଁ । ସମ୍ଭବତଃ ଆହୁରି ଜଘନ୍ୟ ।

ପହିଲି ଧାଉଡ଼ିର ସାମ୍ନାରେ ଆସି ପହୁଞ୍ଚିଲା ଶୈଳ । ଦି'ଧାଉଡ଼ିର ଭିତରେ ଥିବା ଚଲାବାଟକୁ ଆଡ଼େଇ ଦେଇ । ଗୋଟାଏ ଭିତିରିଆ ଭୟ ଆସୁଥିଲା ତା' ମନରେ ଯେ ତା' ନିଃଶ୍ୱାସ ରୁନ୍ଧି ହୋଇଯିବ କିମ୍ବା ଲୋକଗୁଡ଼ାକ ଘେରିଯିବେ ତା'କୁ । ଯାହାହେଉ ବର୍ତ୍ତମାନର ପ୍ରଶ୍ନ ହେଉଛି ଯେ ସେ କେମିତି ଏଇ ବାଟଟାକୁ ପାରି ହୋଇଯିବ ଏବଂ ଆଗକୁ ଦିଶୁଥିବା ଖୋଲା ପଡ଼ିଆରେ ପହୁଞ୍ଚିବ । ଆଉ ତାକୁ ପାରିହୋଇ କୌଣସିମତେ ପହୁଞ୍ଚିଗଲେ ହେଲା 'ବ୍ରିନ୍ଦାବନ୍ ହାଉସ୍'ର ଆଗ ଗେଟ୍ କି ପଛ ଗେଟ୍, କି ସରଭ୍ୟାଣ୍ଟ୍ କ୍ୱାର୍ଟର୍ସ୍ ପାଖରେ ।

...ଆରେ, ଜଣେ ନୁହେଁ ଦି'ଜଣ ନୁହେଁ, ଦୁନିଆଯାକ ମୋ ଆଡ଼କୁ ଏମିତି ଅନଉଛନ୍ତି କାହିଁକି ? ଅଣ୍ଟାରେ କାନି ଭିଡ଼ିଥିବା ଗୋଟାଏ ଅପରଛନିଆ ଟୋକୀ । ଖଟିଆରେ ବସିଥିବା ଧୁଡୁଧୁଡ଼ିଆ ବୁଢ଼ା । ଗାଣ୍ଡୁଆରେ ଗୋବର ପୂରଉଥିବା ମୋଟୀ ମାଇକିନିଆ । ଶୈଳ ଥରକୁ ଥର ତା' ଦୃଷ୍ଟି ତଳକୁ କରୁଥାଏ, ତାଙ୍କ ଚାହାଣିରୁ ବର୍ତ୍ତିଯିବା ଲାଗି । କାହିଁ ଉତ୍ସବର ପଦଧ୍ୱନି ? ତା'ର ସାମାନ୍ୟତମ ଆଭାସ, ଅନୁମାନ, କ୍ଷୀଣତମ ଝଙ୍କାର, ଯାହା ଏଇ ପାଣି ପବନରେ ଜରିକରି ରହିଛି, ଆଉ ଫୁଟି ଫାଟିପଡ଼ିବ ରାତି ଅଧକୁ ? ଶୈଳ ଆତୁର ହେଲା ଜାଣିବା ପାଇଁ, ହେଲେ ତରତର ହୋଇ ପାଦ ପକେଇଲା, ବାଟଟାକୁ ଶୀଘ୍ର ପାରି ହୋଇଯିବା ଲାଗି ।

ଏହି ସମୟରେ ହଠାତ୍ ଗୋଟାଏ ଦରଲଙ୍ଗଳା ପିଲା ଦୌଡ଼ିଆସିଲା ତା' ପାଖକୁ । ତା' ମୁହଁକୁ ଭଲ କରି ଅନେଇ ହେଲା ନାହିଁ, କାହିଁକିନା ତା'ପୂର୍ବରୁ ସେ 'ବଡ଼ଦି !' 'ବଡ଼ଦି !' କହି ତା' ବୋଉକୁ ଭିଡ଼ି ଧରିଲା । ଆଉ ମୁହଁ ଗୁଞ୍ଜିଦେଲା ତା' ଶାଢ଼ିରେ । ଶୈଳର ଦେହ ସିରିସିରି ହୋଇଉଠିଲା । କାରଣ ସେ ନିଶ୍ଚିତ ଥିଲା ଯେ ସେ ମେଞ୍ଚାଏ ଶିଙ୍ଘାଣି ବୋଳିଦେଇଥିବ ତା' ଶାଢ଼ିରେ । କିନ୍ତୁ ତା' ପରେ ସେ ଯେତେବେଳେ ଅନେଇଲା ପିଲାର ମୁହଁକୁ, ତା' ନାକରେ ଶିଙ୍ଘାଣି ଅଛି କି ନାହିଁ ବୋଲି ଦିଶିଲା ନାହିଁ ତା'କୁ । ଖାଲି ଦିଶିଗଲା ତା' କଜ୍ଜଳଲଗା ଡ୍ରିମା ଡ୍ରିମା ଆଖି । ସତୃଷ୍ଣ ଆଖି କେମିତି କ୍ରମଶଃ ହାରିଯାଉଛି, ନିସ୍ତେଜ ଦିଶୁଛି ଯେ ଇଏ ତା' ବଡ଼ଦି ନୁହେଁ । ଆଉ ଗୋଟାଏ କିଏ ।

ସେଇଠୁଁ ସେ ଯାହା କଲା, ତା' ସେ କେବେହେଲେ କରିପାରିବ ବୋଲି ଭାବି ନ ଥିଲା । ସେ ସେଇ ପିଲାଟାକୁ ଭିଡ଼ିଧରିଲା, ସେ ଖସି ପଳେଇଯିବା ଆଗରୁ ଓ କହିଲା, ''ହଁ, ମୁଁ ତୋ ବଡ଼ଦି ପରା ? ଆଉ ଗୋଟାଏ ବଡ଼ଦି । ମୋତେ ନେବୁ ନାହିଁ ତୋ ଘରକୁ ?''

ପିଲାଟା ହସି ପକେଇଲା । ଆଉ ତା' ମୁଣ୍ଡ ଟୁଙ୍ଗାରିଲା । ଶୈଳର ମନେହେଲା ସେ ଏମିତିକା ଭରପୂର ଗାଲଫୁଲା ହସ ଦେଖି ନ ଥିଲା ତା' ଜୀବନରେ ଏବଂ ସେ ତା'ର ବିଣି ଆଙ୍ଗୁଠିକୁ ଚୁପ୍‌କିନି ସଁପିଦେଲା ତା'ର ଟିକି ହାତର ମୁଠାକୁ । ଆଉ କିଛି ଭାବିବାର ନାହିଁ । ଏଇ ମୋତେ ବାଟ କଢ଼େଇ ନେବ ମୋର ଯେଉଁଠିକି ଯିବାର କଥା । ବାଟଯାକ ଘୁଅ ଗୋବର ଥାଉ କି ଆଉ ଯାହା ।

ଘରର ଅର୍ଥ ଗୋଟାଏ ଅନ୍ଧାରିଆ ଗୁହା, ଯାହା ଭିତରକୁ ମୁଣ୍ଡ ନୁଆଇଁ ପଶିବାକୁ ହେଲା । ''ଇଏ ହେଉଛି ବାବା, ଇଏ ହେଉଛି ଛୋଟ୍ ଦି', ଆଉ ଇଏ ଆମ ଖୁକୀ''— ପିଲାଟି ଚିହ୍ନାଇଦେଲା । କିନ୍ତୁ କାହାନ୍ତି ସମସ୍ତେ ? କେତେବେଳକେ ଶୈଳ କେତେ ଜଣଙ୍କୁ ଠଉରେଇପାରିଲା । ଖଟିଆ ଉପରେ ଯିଏ ବସିଛି, ଗୋଟାଏ ଲୁଳିତଚର୍ମ ବୁଢ଼ା, ସେଇ ନିଶ୍ଚୟ ତା' ବାବା ହୋଇଥିବ । ଛୋଟ୍ ଦି ହେଉଛି ସେଇ ଜଣକ, ଯିଏ କୋଉ ଅଭ୍ୟନ୍ତରରୁ ବାହାରି ଆସିଲା ଏବଂ ପିଲାକୁ 'ପାଚି' ବୋଲି କହି ଆଗନ୍ତୁକଙ୍କୁ 'ବସନ୍ତୁ' ବୋଲି କହିଲା ଏବଂ କହିଲା—''ମାଫ୍ କରିବେ, ଇଏ ଆପଣଙ୍କୁ ଏମିତି ହଇରାଣ କଲା । ଆଗରୁ ଆଉ ଦି'ଜଣଙ୍କୁ ବି' ଏମିତି କରିଥିଲା, କିନ୍ତୁ ସେମାନେ ଶୁଣିଲେ ନାହିଁ ତା' କଥା ।''

...ସେମାନେ କୋଉଠୁ ଶୁଣିବେ ? ସେମାନେ କ'ଣ ତା' ବଡ଼ଦି ହୋଇଛନ୍ତି ଯେ ଶୁଣିବେ ? ହଁ, ମୁଁ ସତସତିକା ବସିବି ଏଠି, ପଳେଇଯିବି ନାହିଁ । କିନ୍ତୁ

ବସିବାକୁ ଜାଗା କାହିଁ ? କାହିଁକି, ସେଇ ଟ୍ରଙ୍କ୍ ନା କଅଣ, ଯାହା ଉପରେ ଗୋଟାଏ ହେଁସ ଥୁଆ ହୋଇଛି, ସେଠି ବସିବାକୁ କିଏ ମନା କରୁଛି ? ... ଶୈଳ ବସିପଡ଼ିଲା ତା' ଉପରେ ଏବଂ ପଛରୁ ଦଉଡ଼ିରେ ଝୁଲୁଥିବା କନ୍ଥା ତା' ଆଘ୍ରାଣକୁ ଆଉ ଗୋଟାଏ ଗନ୍ଧ ଆଣିଦେଲା, ଯାହା ସହିତ ସେ ବେଶ୍ ପରିଚିତ । ପାଲିଙ୍କିପୁର ବେଳର ଗନ୍ଧ, ଯେତେବେଳେ ଭଉଣୀମାନେ ଏକାଠି ଶୋଉଥିଲେ, ଗୋଟାଏ ଲମ୍ବା ଖଟ ଉପରେ ଏବଂ କେଉଁ ପୁରାତନ ଶେଯର ସନାତନ ମୃତଗନ୍ଧକୁ ସହିଯିବାକୁ ପଡୁଥିଲା । ଇଏ ଅବଶ୍ୟ ଟିକିଏ ଭିନ୍ନ ମନେହେଉଛି । ହୁଏତ ସଦ୍ୟ, ସନାତନ ନୁହେଁ, ସେହେତୁ ତୀକ୍ଷ୍ଣ । କିଛି ଯାଏ ଆସେ ନାହିଁ । ମୋତେ ଇଏ ବଳେଇଯିବ ନାହିଁ ।

ଶୈଳ ସେଇଠି ବସି ରହିଲା, ଯଦିଓ କେବଳ ଗନ୍ଧ ନୁହେଁ, ମୁଣ୍ଡ ଉପରେ ପଡୁଥିବା ବର୍ଷାପାଣିର ଥପ୍ ଥପ୍ ମଧ୍ୟ ତା'କୁ ଆଘାତ କରିବାକୁ ଲାଗିଲା । କିନ୍ତୁ ଶୈଳ ତା'କୁ ମଧ୍ୟ ଖାତିର୍ କଲା ନାହିଁ । ନିଜ ସାଙ୍ଗରେ ରସିକତା କଲା । ଧୀର ପାଣି ପଥର କାଟେ ସତ, କିନ୍ତୁ ଶୈଳ ନାମକ ଜୀବନ୍ତ ପଥର ସହଜେ ଘୋରି ହୋଇଯିବ ନାହିଁ କି ଭାଙ୍ଗିପଡ଼ିବ ନାହିଁ । ଶୈଳ ଅପେକ୍ଷା କଲା ।

କିନ୍ତୁ କୋଉଥିପାଇଁ ଅପେକ୍ଷା ? ଖଟିଆରେ ପଡ଼ିଥିବା ବୁଢ଼ା ସେମିତି ସ୍ଥାଣୁ ହୋଇ ବସିଛି, ପାଟିରୁ କଥା ବାହାରୁ ନାହିଁ । ସତେକି କୌଣସି ଅଭିନବ ଦୃଶ୍ୟ, ଆସ୍‌ମାନ୍‌ରୁ ଖସିପଡ଼ିଥିବା କେଉଁ ଧୋବଧାଉଳିଆ ଆଗନ୍ତୁକର ଚେହେରା, ମଧ୍ୟ ତା'ର ଅଣ-ଅନୁଭବକୁ ଚହଲେଇ ଦେଇପାରିବ ନାହିଁ । ସେ ଅନାଦି ଅନନ୍ତର ଅଂଶବିଶେଷ ! କାହିଁ କେବେଠୁଁ । ଛୋଟ୍‌ଦି ଖାଲି ଘରୁ ବାହାରକୁ, ବାହାରୁ ଘରକୁ ନସରପସର ହେଉଛି । ଆଉ ଖୁକୀ ବୋଧହୁଏ ସେଇ ଝିଅଟା, ଯେ କାନ୍ଥକୁ ଆଉଜିକରି ବସିଛି ଗୋଡ଼ ଲମ୍ବେଇ । ମାଟିରେ ମିଶିଗଲା ପରି ମନେ ହେଉଛି । ତା'ର କ'ଣ ହୋଇଛି ? ସେ ବି' କ'ଣ ବୋବା ?

ଏଣେ ବସ୍ତିର ଛୋଟରୁ ବଡ଼ଯାଏଁ ଗୁଡ଼ିଏ ପିଲା ଆସି ଠିଆ ହୋଇଗଲେଣି ଦୁଆର ମୁହଁରେ । କିନ୍ତୁ ସେମାନେ ଚୁପ୍ ନୁହନ୍ତି । କ'ଣ ସବୁ ବିଡ଼ିବିଡ଼ି ହେଉଛନ୍ତି ନିଜ ଭିତରେ । ହଠାତ୍ କିଏ ଖେଁ ଖେଁ ହୋଇ ହସୁଛି ଏବଂ ହଠାତ୍ କିଏ କାହାକୁ ମିଛୁଟାରେ ପିଟୁଛି । କିନ୍ତୁ ଦୃଶ୍ୟ ବୋଲି ଗୋଟିଏ ସମସ୍ତଙ୍କ ପାଇଁ । କୁଆଡୁ ଆସି ପହୁଞ୍ଚିଥିବା ବାବୁଘର ମେୟେମାନୁଷ୍ । ହେଲେ ତା'କୁ ଧରି ଆଣିଥିବା ପିଲା, ତା' ନାଆଁ ହାରୁ ବୋଲି ଜଣାପଡ଼ିଲା ପରେ, ସେ ତା'ର କର୍ତ୍ତବ୍ୟରେ ହେଳା କଲା ନାହିଁ । ଗର୍ବର ସହିତ ତା'ର ଅତିଥିଙ୍କୁ ଚିହ୍ନେଇଦେଲା ସେମାନଙ୍କୁ ।

କହିଲା—‘‘ଇଏ ଆଉ ଗୋଟାଏ ବଡ଼୍‌ଦି !’’ ସେଇଠୁଁ ଥୋକେ ହସିଉଠିଲେ ତାଙ୍କ ଭିତରୁ । ଅନ୍ତବନ୍ଧୁତ ପିଟାପିଟି ଚାଲିଲା ଏବଂ ପଛରୁ ଗୋଟାଏ ଡେଙ୍ଗା ପିଲା ପାଟିକରି ଉଠିଲା —‘‘କିନ୍ତୁ ଇଏ ବି’ ପଳେଇଯିବ ଯେ !’’ ସେଇଠୁଁ ଆରମ୍ଭ ହେଲା ଅବୋଧ କୋଳାହଳ ଏବଂ ଗଣ୍ଡଗୋଳ, ଯାହା ଫଳରେ ଛୋଟ୍‌ଦି ହଠାତ୍ ବାହାରି ଆସି ଗର୍ଜି ଉଠିଲା— ‘‘କ’ଣ ତାମ୍‌ସା ଲାଗିଛି ଏଠି ? ଯାଅ, ନିକଲ୍, ଯାଉଛ ନା ନାହିଁ ?’’

ଦର୍ଶକମାନେ ଚାଲିଗଲା ପରେ ଶୈଳ କ’ଣ କରିବ ବୋଲି ସ୍ଥିର କରି ନ ପାରି ହାରୁକୁ ପାଖକୁ ଟାଣିଆଣିଲା । ସତ ବଡ଼୍‌ଦି କୁଆଡ଼େ ପଳେଇଲା ବୋଲି ପଚାରିବାକୁ ପାଟି ଖଲବଲ ହେଉଥିଲା, କିନ୍ତୁ ସେ ପଚାରିଲା ନାହିଁ । ମନେ ହେଲା ତା’ ଭିତରେ କିଛି ଗୋଟାଏ ରହସ୍ୟ ଅଛି, ଖରାପ ରହସ୍ୟ, ଯେଉଁଥିପାଇଁ ଛୋଟ୍‌ଦି ଏମିତି ରାଗିଉଠିଲା । ନା, ଥାଉ ଏଇକ୍ଷଣି । ଆଗେ କିଛି ଯୋଗ୍ୟତା ହାସଲ କରିସାରେ, ଯା’ର ଦ୍ୱିତୀୟ ବଡ଼୍‌ଦି ହେବା ଲାଗି ।

ଏହି ସମୟରେ ତା’ର ଆଖି ପଡ଼ିଲା ଖୁକୀ ଉପରେ ଏବଂ ସେ ତା’ ଦୃଷ୍ଟିକୁ ଫେରାଇ ଆଣିପାରିଲା ନାହିଁ । ତା’ର ଗଳାଟା ଫୁଲିଛି । ଗୋଟାଏ ବିରାଟ ଆବୁ ବାହାରିଲା ପରି ଦିଶୁଛି । ସେଇଥିପାଇଁ ବୋଧହୁଏ ତା’କୁ କଷ୍ଟ ହେଉଛି, ଦେହରେ ଜର ବି’ ଅଛି ହୁଏତ, ଯେଉଁଥିପାଇଁ ସେ କିଛି କଥା କହିବାକୁ ନାରାଜ । ସେହେତୁ ଶୈଳ ନ ପଚାରି ରହିପାରିଲା ନାହିଁ ।

‘‘କ’ଣ ହୋଇଛି ଖୁକୀର ?’’

‘‘ସେ ମରିବ ।’’ ପ୍ରଥମେ ବୁଢ଼ା ହିଁ ପ୍ରଶ୍ନର ଉତ୍ତର ଦେଲା, ଆଉ କେହି କିଛି କହିବା ଆଗରୁ ।

ଏବଂ ତତ୍‌କ୍ଷଣାତ୍ ଗୋଟାଏ ଦୃଢ଼ ପ୍ରତିବାଦର ସ୍ୱର ଉଠିଲା ଶୈଳର ମନ ଭିତରୁ — ନା, ସେ ମରିବ ନାହିଁ । ତା’ର ବଡ଼୍‌ଦି ଥାଉଁ ଥାଉଁ ସେ କଦାପି ମରିବ ନାହିଁ । ସେଇଠୁଁ ସେ ଛୋଟ୍‌ଦି ଠାରୁ ବୁଝିଲା ଘଟଣାଟା କଅଣ । ଫୁଲାଟା ବଢ଼ି ବଢ଼ି ଚାଲିଛି ଆଜିକି ଦି’ମାସ ହେବ । ବଇଦ ହାକିମ କେତେ କ’ଣ କଲାଣି, କିନ୍ତୁ କେଉଁଥିରେ କିଛି ଲାଭ ହେଉ ନାହିଁ । ଜର ବି’ ହେଉଛି ମଝିରେ ମଝିରେ, ଆଉ ସେ କିଛି ଖାଇବାକୁ ଚାହୁଁ ନାହିଁ । ତା’ ଉପରେ, ବାବା ଏମିତି କହୁଛି ସବୁବେଳେ । ବଡ଼୍‌ଦି ଗଲାଦିନୁ ତା’ ମୁଣ୍ଡ ବିଗିଡ଼ି ଗଲାଣି ।

ମାର ଗୋଲି ବଡ଼୍‌ଦିକୁ ! ଶୈଳ ବଡ଼୍‌ଦି ବଞ୍ଚିଛି । ଶୈଳ ଘୋଷଣା କଲା ଯେ ସେ କାଲି ସକାଳେ ପୁଣି ଆସିବ ଏଠିକି । ଆଉ ଖୁକୀକୁ ନେଇଯିବ

ଗୋଟାଏ ଭଲ ଡାକ୍ତର ପାଖକୁ ଏବଂ ଗୋଟାଏ ଅଭୟବାଣୀ ଶୁଣାଇଲା— କିଛି ଚିନ୍ତା ନାହିଁ । ଖୁକୀର କିଛି ହେବ ନାହିଁ ।

ସେଇଠୁଁ ଆରମ୍ଭ । ବଡ଼୍‌ଦିର ପ୍ରଥମ କେସ୍ ଏତିକି ସଫଳ ହେବ ବୋଲି ସେ ଆଶା କରି ନ ଥିଲା । ଡକ୍ଟର ବସାକ୍ ନାମକ ଜଣେ ପ୍ରକାଶକ ବନ୍ଧୁଙ୍କର ବିଚକ୍ଷଣ ବିଲାତଫେରନ୍ତା ଡାକ୍ତର ପୁଅର ଚିକିତ୍ସାରେ ଖୁକୀ ଦି'ମାସ ଭିତରେ ଭଲ ହୋଇ ଉଠିଲା ଏବଂ ଦିନ ଆସିଲା ଯେତେବେଳେ ଶୈଳ 'ବାବା' ସାଙ୍ଗରେ ଏକାଠି ବସି ଚା' ପିଇଲା, ସୁଡୁସୁଡୁ କରି ଏବଂ କହିବାର ଅଧିକାର ପାଇଲା ଛୋଟ୍‌ଦି'କୁ — ''ଆଜି ତୋ ଚା'ଟା ପାଣିଚିଆ ଲାଗୁଛି ଲୋ ରୁନୁ । ଅଦାରସ ଦେବାକୁ ଭୁଲିଯାଇଛୁ କି ?''

ଏବଂ ଯଥାକ୍ରମେ ସେ ଜାଣିବାକୁ ପାଇଲା ଯେ ସତ ବଡ଼୍‌ଦି, ଯେ କି ମାଆଛେଉଣ୍ଡ ପିଲାଙ୍କର ଯତ୍ନ ନେଉଥିଲା, ବିଶେଷତଃ କୋଡ଼ପୋଛା ଗୋଟାଏ ବୋଲି ଭାଇ ହାରୁକୁ, ତା'କୁ କୋଉ ବସିର୍ ମିଆଁ ହରଣଚାଳ କରି ନେଇଯାଇଛି । ଝିଅଟା ସୁନ୍ଦରିଆ ଥିଲା, ଭଲ ଗୀତ ଗାଉଥିଲା, ନାଚୁଥିଲା ବି', ସେଇଲାଗି ପାଖଆଖ ଯେତେକ ଟୋକା ଆଖେଇଥିଲେ ତାକୁ ବାହା ହେବାପାଇଁ । କିନ୍ତୁ ଦିନେ ରାତିରେ, ନାଚତାମ୍‌ସାର ଗହଳି ଭିତରେ ସେଇ ଶାଲା ହାରାମ୍‌ଜାଦା ... ତଣ୍ଟିରେ ଚାହା ଲାଗିଯାଏ ବାବାର, ସେ ଯେତେବେଳେ କୁହେ ସେ ବିଷୟରେ, ଏବଂ ରାଗରେ ଟମଟମ ହୋଇଉଠେ । ଶୈଳ ତା'ର ପିଠି ଆଉଁଶିଦିଏ । ଭାବେ ଯେ ସେଇ ନିଶ୍ଚୟ ଥିଲା ତା'ର ଚାନ୍ଦବଦନୀ ଯେ ତା'କୁ ଟାଣି ଆଣିଛି ଏଠିକି, ହେଲେ ନିଜେ ପଳେଇଯାଇଛି କୁଆଡ଼େ । ମହା ଠକ ! କିନ୍ତୁ ସେ ମନେ ମନେ ଆଶ୍ୱାସନା ଦିଏ ବାବାକୁ ଓ ତା' ପିଲାମାନଙ୍କୁ ଯେ ସେଭଳି କିଛି ଭୟ କରିବାର କାରଣ ନାହିଁ ଏଇ ନୂଆ ବଡ଼୍‌ଦିଠାରୁ । ସେ କଦାପି' ଛାଡ଼ି କରି ଯିବ ନାହିଁ ତମମାନଙ୍କୁ । ନେଭର୍ !

କିନ୍ତୁ ଶୈଳ କେବଳ ସେଇମାନଙ୍କର ହୋଇ ରହିପାରିଲା ନାହିଁ । ଯେଉଁ ଅଜଣା ଅଶୁଣା ଅପୂର୍ବ ବଡ଼୍‌ଦି ହଠାତ୍ ଆସି ପହୁଞ୍ଚିଗଲା ବସ୍ତିରେ ଏବଂ ଖୁକୀକୁ ଭଲ କରିଦେଲା, ସେ କେବଳ ସେଇମାନଙ୍କ ପାଇଁ ଆସି ନାହିଁ । ଆସିଛି ବସ୍ତି ପାଇଁ । ବସ୍ତିର ଅନ୍ୟତମ ବୁଢ଼ୀ କାନ୍ତି ମା'ସୀ ସାଫ୍ ସାଫ୍ ବତେଇଦେଲା ସମସ୍ତଙ୍କୁ, ଯେ କାଳୀମାତା ତା'କୁ ସପନେଇଥିଲେ ଯେ ସେ ଶୀଘ୍ର ଆସିବେ ଆମ ବସ୍ତିକୁ, ଆଉ ତା'ର ଚେହେରା ବଦଳେଇଦେବେ । କିନ୍ତୁ ପଡ଼ାର ଅନ୍ୟତମ 'ଦାଦା' 'ରଙ୍ଗୁଦା' କହିଲା ଯେ ବଡ଼୍‌ଦି ହେଉଛି ବିରୋଧୀ ଦଳର ଗୋଇନ୍ଦା, ଚାଷୀ ମୂଲିଆର ସରକାରକୁ ବଦ୍‌ନାମ କରିବାକୁ ଚାହେଁ ।

ହେଲେ ରଙ୍ଗୁଦା'ର ଚେତାବନୀକୁ କେହି ଗ୍ରହଣଯୋଗ୍ୟ ବୋଲି ମନେ କଲେ ନାହିଁ । କିଓ, କୋଉ ଗୋଇନ୍ଦା କ'ଣ ଖୁକୀର ଗଳଗଣ୍ଡିକୁ ଏମିତି ଭଲ କରି ଦେଇଥାଆନ୍ତା ମାସେ ଦି'ମାସ ଭିତରେ ? ନା ପାଞ୍ଚୁର କାଛୁଦେହକୁ ନିର୍ମଳ କରେଇ ଦେଇଥାଆନ୍ତା ହପ୍ତାକ ଭିତରେ ? ନା, ସେ ସାକ୍ଷାତ୍ କାଳୀମାତା । ସେ ଖାଲି ତମ ଦେହକୁ ଟିକିଏ ଆଉଁଶିଦିଅନ୍ତୁ, ଟିକିଏ ହସିଦିଅନ୍ତୁ ତମ ଆଡ଼କୁ ଚାହିଁ, ସେଇଥିରେ ତମ ରୋଗ ଅଧେ ଭଲ ହୋଇଯିବ ପରା !

ସମସ୍ତେ ଜାଣନ୍ତି ଯେ ସେ ସେଇ ଉଚ୍ଚ କୋଠାଘରେ ରୁହନ୍ତି, କୋଉ ବଡ଼ଲୋକର ସ୍ତ୍ରୀ ହିସାବରେ । କିନ୍ତୁ ସିଏ ହେଉଛି ତାଙ୍କର ସାଂସାରିକ ରୂପ । ତା'କୁ ଉତାରି ଦେଇ ସେ ଓହ୍ଲେଇ ଆସନ୍ତି ଆମ ପାଖକୁ, ଆମର ଦୁଃଖ ହରିବା ପାଇଁ । ପ୍ରତ୍ୟେକ ଦିନ ନ ହେଲେ ବି' ଦି'ଦିନରେ ଥରେ । ଖାଲି ରୋଗବଇରାଗ ନୁହେଁ, ସେ କ'ଣ ନ କରିଛନ୍ତି ଆମ ପାଇଁ ! କାନ୍ତି ମା'ସୀ ମରିଗଲା ଯେଉଁଦିନ, ଧାରାଶ୍ରାବଣ ଚାଲିଛି କେଇ ଦିନ ହେଲା, ଲାସ୍‌ଟା ଏମିତି ଗନ୍ଧଉଛି ଯେ ତା'ର ପାଖ ମାଡ଼ି ହେଉ ନାହିଁ, ହେଲେ ବଡ଼ଦି ପରୁଆ କଲେ ନାହିଁ । କାହା କଥା ମାନିଲେ ନାହିଁ, ଆଉ ତା'କୁ ନିଜେ ଟେକିନେଲେ ଗୋଟାଏ ଭ୍ୟାନ୍ ଭିତରକୁ, ଦି' ତିନିଟା ଟୋକାଙ୍କୁ ସାଙ୍ଗରେ ଧରି ଏବଂ ତା'ର ଦାହ କରେଇଲେ ନିମ୍‌ତଲା ଘାଟରେ । ମଧ ଯେତେକ ବଜାରୀ ଟୋକାମାନଙ୍କୁ ଜବତ୍ କରି ରଖିଛନ୍ତି ସେ । ଆଉ ବେକାର ଟୋକାମାନଙ୍କୁ କାମ ଯୋଗାଇ ଦେଇଛନ୍ତି । କ'ଣ କହିବ ବଡ଼ଦିଙ୍କ ମହିମା !

ସନାତନବାବୁ ତାଙ୍କ ସ୍ତ୍ରୀଙ୍କ ହାତ ଧରି କହିଥିଲେ ଗଦ୍‌ଗଦ ହୋଇ— ''ଏତେ ସେବାଭାବ ମଧ ଅଛି ଆମ କବିଙ୍କ ହୃଦୟରେ, ମୁଁ ଜାଣି ନ ଥିଲି । ଅଲ୍ ଦି' ବେଷ୍ଟ ! ସବୁମତେ ମୁଁ ତୁମର ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛି... ।'' ତା'ର ଉତ୍ତରରେ ଶୈଳ କହିଥିଲା, ''ଧନ୍ୟବାଦ । ଆର୍ଥିକ ସାହାଯ୍ୟ ମୋର ଲୋଡ଼ା ନାହିଁ । ତମର ସହଯୋଗ ହିଁ ଯଥେଷ୍ଟ । ଦରକାର ହେଲେ ଯଦି ମ୍ୟୁନିସିପାଲିଟି ଉପରେ ଚାପ ପକେଇପାରିବ ତାଙ୍କ ନର୍ଦ୍ଦମାର ଥିର ପାଣିକୁ ଟିକିଏ ଚହଲେଇବା ପାଇଁ, ଯଦି ଗୋଟାଏ ବେଡ୍ ଯୋଗାଡ଼ କରେଇ ଦେଇପାରିବ ସରକାରୀ ଡାକ୍ତରଖାନାରେ ତାଙ୍କର କୋଉ ମରମର ହେଉଥିବା ରୋଗୀପାଇଁ, କେଉଁକାଳୁ ଅକାମି ହୋଇ ପଡ଼ିଥିବା ଟିଉବ୍ ୱେଲ୍‌ଟାକୁ ଚାଲୁ କରେଇଦେଇ ପାରିବ, ଇତ୍ୟାଦି । ସନାତନବାବୁ ଘନଘନ 'ଅଫ୍‌କୋର୍ସ !' ବୋଲି କହିଥିଲେ ତାଙ୍କ ହାତ ଦି'ଟାକୁ ଛଡ଼େଇ ଆଣିଲା ପରେ । ତେବେ ଦେଖାଗଲା ଯେ ଏଣିକି ସନାତନବାବୁ ଥରେ ହେଲେ ତାଙ୍କ ସ୍ତ୍ରୀଙ୍କୁ ଚୁମ୍ବନ ଦେବାର ସାହସ

କରିପାରିଲେ ନାହିଁ ଏବଂ ଶୈଳ ଯେତେବେଳେ କହିଲା ଯେ ମୁଁ ଭାବୁଛି, ରାତିରେ ଷ୍ଟଡ଼ିରୁମ୍‌ରେ ହିଁ ଶୋଇବି, କାରଣ ରାତିରେ ହିଁ ମୋତେ ଲେଖାଲେଖି କରିବାକୁ ପଡୁଛି, ଆଉ ମୁଁ ତମକୁ ଡିଷ୍ଟର୍ବ୍ କରିବାକୁ ଚାହେଁ ନାହିଁ, ସନାତନବାବୁ ସେଥିରେ ପଦୁଟିଏ ଆପତ୍ତି ଉଠେଇଲେ ନାହିଁ । ବରଂ ତାଙ୍କୁ ହାଲୁକା ଲାଗିଲା । ଏଥର କେହି ତାଙ୍କୁ ଦୋଷ ଦେଇପାରିବେ ନାହିଁ ଯେ ସେ ନିଜର ସ୍ୱାମୀତ୍ୱକୁ ଲଦିଦେବାକୁ ଚାହାନ୍ତି ତାଙ୍କର ଅସାମାନ୍ୟା ସ୍ତ୍ରୀ ଉପରେ ।

ତନୁ ତିନିବର୍ଷ ପରେ ସିନା ଆତଙ୍କିତ ହୋଇଉଠିଲା ତା' ବୋଉର ମତିଗତି ନେଇ, କିନ୍ତୁ ପ୍ରଥମ ବର୍ଷ ସେ ଯେତେବେଳେ ଆସିଥିଲା ଛୁଟିରେ, ସେ ମୁଗ୍ଧ ହୋଇଥିଲା, ସମାଜସେବା ପ୍ରତି ବୋଉର ଏଇ ଆଶାତୀତ ଆଗ୍ରହ ଏବଂ ଅବିଚଳିତ ନିଷ୍ଠା ଦେଖି । ଏବେ ଯାଇଁ ସେ ଜାଣିଲା ଯେ କେତେ ଉତ୍କଟ ଏଇ ଆଗ୍ରହ ଏବଂ ସେଥିରେ କେତେ ମଳମୂତ୍ର, ପୂଯ ରକ୍ତ ଓ ଝାଳନାଳର ଭୂମିକା ରହିଛି । ଏବଂ ତା' ଛାତିରେ ଛନକା ପଶିଲା, ଯେଉଁଠୁ ସେ ଜାଣିଲା ଯେ ତା' ସାଙ୍ଗକୁ ସେ ତା'ର କବିତା ଲେଖା ବି' ଛାଡ଼ିଦେଇଚି !

ଶୈଳର ସାହିତ୍ୟିକ ବନ୍ଧୁମାନେ ମଧ୍ୟ ଲକ୍ଷ୍ୟ କଲେ ଯେ ଇଏ ତାଙ୍କ ପରିଚିତ ଶୈଳଜା ପଣ୍ଡା ନୁହେଁ, ଯେ ଅଧିକନ୍ତୁ ସମାଜସେବା କରେ, ହୁଏତ ଅଧିକତର ମର୍ଯ୍ୟାଦା ହାସଲ କରିବା ଲାଗି । ମିଷ୍ଟଭାଷିଣୀ ସୁହାସିନୀ କବିଟାର ମୁଣ୍ଡରେ ପୋକ ଚଢ଼ିଛି । ବଡ଼ଦି' ଡାକରେ ଭୋଳ ହୋଇଯାଇଛି । ନ ହେଲେ ସେ କେଉଁ ଗୋଟାଏ ହେଲେ ସାହିତ୍ୟିକ ସଭାସମିତିରେ ଯୋଗ ଦେଉ ନାହିଁ କାହିଁକି ଏବଂ କିଛି ହେଲେ କେବେ କହୁ ନାହିଁ କାହିଁକି, ତା'ର କେଉଁ ନୂଆ କବିତା କି ବହି ବିଷୟରେ ?

ଓଡ଼ିଶାର ସମ୍ପାଦକ ଓ ପ୍ରକାଶକମାନେ ପଚାରି ପଚାରି ଥକିଗଲେଣି ଯେ କାହିଁକି ସେ ଏମିତି ଚୁପ୍ ହୋଇ ବସିଛନ୍ତି । ଶୈଳ ପ୍ରଥମେ ପ୍ରଥମେ ଲେଖିଲା ଜଣେ ଅଧେଙ୍କୁ ଯେ ତା'ର ସମୟ ନାହିଁ ଏବଂ ପରେ କିଛି ଉତ୍ତର ଦେଲା ନାହିଁ । ଅନେକ ପାଠକପାଠିକା ବୁଝିଲେ ଦୁଃଖର ସହିତ ଯେ ଇଏ ଅନ୍ୟ ଏକ ଦୃଷ୍ଟାନ୍ତ ଯେ ପୁରସ୍କାରଲାଭ କିଭଳି କ୍ଷତି କରେ ସ୍ରଷ୍ଟାର ତଥା ସୃଷ୍ଟିର ଏବଂ ଥୋକେ ଛିଗୁଲେଇଲେ ଯେ ଅ-କବିଙ୍କର ଲାଙ୍ଗୁଡ଼ ମୋଟା ହୋଇଗଲାଣି 'ଗଂଗୋତ୍ରୀ' ପୁରସ୍କାର ପରେ । ତାଙ୍କଠୁଁ ଆଉ କ'ଣ ଆଶା କରୁଥିଲ ?

ତନୁ ସାହିତ୍ୟ ଜଗତରେ ନ ଥାଏ । କିନ୍ତୁ ଗଂଗୋତ୍ରୀ ପୁରସ୍କାର ବିଜେତା ମାଆକୁ ନେଇ ତା'ର ଯେଉଁ ଗର୍ବ ରହିଛି, ସେଥିରେ ଆଞ୍ଚ ଲାଗିଲା, ଯେତେବେଳେ ସେ କବି ଶୈଳଜାଙ୍କ ନିଷ୍କ୍ରିୟତା ବିଷୟରେ ନାନା କଥା ଶୁଣିବାକୁ ପାଇଲା,

ଗତଥର ଓଡ଼ିଶାକୁ ଯାଇଥିଲାବେଳେ । ଯାହା ଆଦୌ ରୁଚିକର ନୁହେଁ । ସେଇଠୁଁ ସେ ତା' ବୋଉକୁ ଆକ୍ରମଣ କଲା, କଲିକତାକୁ ଫେରିଆସିଲା ପରେ ଏବଂ ତା'ର ଉତ୍ତର ପାଇଲା ବୋଉର ହସିଲା ମୁହଁରୁ —

"ଆଲୋ ଝିଅ, କବିତା ଲେଖିବାଟା କ'ଣ ଏତେ ବଡ଼ କଥା ? ଜୀଅନ୍ତା ମଣିଷର ସତ ଦୁଃଖକୁ ଘୁଞ୍ଚେଇବାଠାରୁ ଅଧିକ ମୂଲ୍ୟବାନ୍ ?"

କିନ୍ତୁ ତନୁର ବିଶ୍ବାସ ହେଲା ନାହିଁ ଯେ ବୋଉ ଷୋଳଅଣା ସତକଥା କହୁଛି । ଯଦିଓ ସେ ଭାବୁଥିବ ସେମିତି ।

ହେଲେ କେହି ଜାଣିପାରିଲେ ନାହିଁ ଏବଂ କାହାରି ଜାଣିବାର ଉପାୟ ନ ଥିଲା ସେ ତା'ର ଏକୁଟିଆ ଘରେ କ'ଣ କରୁଥାଏ ବସି । କିଭଳି ଭାବଭାବନା ଥାଏ ତା' ନିଷ୍କ୍ରିୟତା ଭିତରେ, ଯାହାର ମୁକାବିଲା କରିବାକୁ ପଡ଼େ । କିଏ ବୁଝିବ ସେ କେମିତି ସମ୍ଭାଳି ରଖିଥାଏ ନିଜକୁ, ତା'ର ଦିନପିନ୍ଧା ପରିଧାନକୁ ଫିଙ୍ଗି ନ ଦେଇ ? ଏବଂ ହଜାରବାର କାଚି ଧୋଇଲେ ମଧ କେମିତି ସେଗୁଡ଼ାକ ସିକି ସିକି ଲାଗେ, ତା'ର ଦୁର୍ଗନ୍ଧ ଅସହ୍ୟ ହୋଇଉଠେ ବେଳେବେଳେ, ହେଲେ ସେ ନିଜକୁ କୁହେ ଯେ ତା'ର କୌଣସି ଦାବୀ ନାହିଁ ଶୁଭ୍ର ସ୍ୱଚ୍ଛ ପରିମଳ ଉପରେ ? ଅପରନ୍ତୁ ସେ ନିଜକୁ ଚେତାଇଦିଏ ଯେ ଜାମୁନ୍‌ପାଡ଼ା ବସ୍ତିର ଯେଉଁ ଅନୁଭବ ସେ ଘରକୁ ଆଣୁଛି, ରାଶି ରାଶି ଦୈନ୍ୟର ଦୁର୍ଗନ୍ଧ, ତାହାହିଁ ତା'ର ଜନ୍ମଗତ ପଙ୍କ, ପଦ୍ମିନୀ ବୋଲି ଏଇକ୍ଷଣି ସେ ଯେତେ ଫୁଲେଇ ହେଉ ପଛେ । ତା'କୁ ଭୁଲି ହେବ ନାହିଁ କି ଭୁଲିବା ଉଚିତ ନୁହେଁ । ବରଂ ସେଇ ହେବ ତା' ମୋକ୍ଷର ବାଟ ।

ଏବଂ କିଏ କହିଲା ଶୈଳଜା ପଣ୍ଡା କବିତା ଲେଖା ବନ୍ଦ କରିଦେଇଛି ? ସେ କିଛି ଛପଉ ନାହିଁ ସତ, କିନ୍ତୁ ଲେଖୁଛି । ଦିନକୁ ଦି'ଧାଡ଼ି ହେଉ ପଛେ । ଏବଂ କ'ଣ ଲେଖୁଛି ଜାଣିଛ ? କବିତା ନୁହେଁ, କାବ୍ୟ ! ଅତ୍ୟନ୍ତ ଗୋପନୀୟ ବ୍ୟାପାର । କାରଣ ସେ ତା'କୁ କେବଳ ନିଜପାଇଁ ଲେଖୁଛି । ତା' ନାଆଁ 'ଅହଲ୍ୟା' । ନାୟିକା ଜାଣିଶୁଣି ନିଜକୁ ପଥର କରିଦେଇଛି ଏବଂ ଅପେକ୍ଷା କରିଛି କେବେ ତା'ର ସାହସ ହେବ ନିଜକୁ ମୁକୁଳେଇବା ପାଇଁ । କିନ୍ତୁ ଯେଉଁ ଅନୁଭବଗୁଡ଼ାକ ଅସାଡ଼ ହୋଇଗଲା, ଯେଉଁ ପ୍ରବଣତା ସବୁ ପଥର ହୋଇଗଲା, ସେ ବିଷୟରେ କ'ଣ କିଛି କହି ହେବ ନାହିଁ ? ସେଇଥାକୁ ସେ କହୁଛି ପରା ଏଇକ୍ଷଣି ! ନା, ଧନ୍ୟବାଦ୍ । ସେଥିରେ କାହାରି ମୁଣ୍ଡ ପୂରେଇବାର ଦରକାର ନାହିଁ । ହୁଏତ ସେ ତା'କୁ ପ୍ରକାଶ କରିବ କେବେ, ଯେତେବେଳେ ତା'ର ବୋଧ ହେବ ଯେ ବେଳ ଆସିଛି ନିଜକୁ ମୁକୁଳେଇବା ପାଇଁ ।

କେବଳ ଜଣକୁ ଜଣାଇବ । ଯେ ତା'ର କବିପ୍ରାଣକୁ ବୁଝିଛନ୍ତି । ମହାକବି ରାମହରି ଦାସ । ଶୈଳ ଆଖି ବୁଜିଦିଏ । ତାଙ୍କୁ ଆବାହନ କଲାପରି, ତା'ର ଅନ୍ତରତମ ହୃଦୟରୁ । ସାର୍ ବୁଝିବେ ଯେ, ବୁଝିବେ...

## ପନ୍ଦର

କ୍ୟାପିଟାଲ୍‌ର ସାତ ନମ୍ବର ୟୁନିଟ୍‌ରେ ଥିବା ଫୁଟ୍‌ପାଥ୍‌ମାନଙ୍କରେ ଯେଉଁମାନେ ପ୍ରଭାତ ଭ୍ରମଣ କରନ୍ତି, ସେମାନଙ୍କ ମଧ୍ୟରେ ପ୍ରଫେସର ରାମହରି ଦାସ ଅନ୍ୟତମ । ତେବେ ତାଙ୍କ ଭ୍ରମଣର ବୈଶିଷ୍ଟ୍ୟ ହେଉଛି ଏହି ଯେ ସେ କେବେହେଲେ ତାଙ୍କ ଗତିକୁ କୋହଳ କରନ୍ତି ନାହିଁ । ଅନ୍ୟ କେଉଁ ଭ୍ରମଣକାରୀ ସହିତ ଦି'ପଦ କଥା ହେବାପାଇଁ, ପାନଦୋକାନ ଆଡ଼କୁ ଗଡ଼ିଯିବା ଲାଗି, ଅଥବା ଅଯଥାରେ ଅନାବନା ବଣବୁଦାକୁ ଛଡ଼ିରେ ପିଟିବାହେତୁ । ସେ ଏକମୁହାଁ ହୋଇ ଚାଲନ୍ତି ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଏବଂ 'ନମସ୍କାର ସାର୍' ବୋଲି କେହି ଅଭିବାଦନ କଲେ ମୁଣ୍ଡକୁ ଟୁଙ୍ଗାରି ଦେଇ ଆଗେଇ ଯାଆନ୍ତି । ଯେମିତିକି ସେ ତାଙ୍କ ଉପସ୍ଥିତ କର୍ତ୍ତବ୍ୟରେ ହେଳା କରିବା ଲୋକ ନୁହନ୍ତି ।

ତେବେ ଯଦି, କେହି ତାଙ୍କୁ ଦିନ ପରେ ଦିନ ଲକ୍ଷ୍ୟ କରୁଥାଆନ୍ତା, ତା'ହେଲେ ତା'ର ସନ୍ଦେହ ହୁଅନ୍ତା ଯେ କେତେଗୁଡ଼ିଏ 'ବ୍ୟତିକ୍ରମ ଦେଖାଗଲାଣି ତାଙ୍କର ଦୈନନ୍ଦିନ ପ୍ରଭାତ ଭ୍ରମଣରେ । ବୋଧହୁଏ ଏଇ ଛଅ ମାସ ବର୍ଷକ ଭିତରେ । ''ସାର୍, ନମସ୍କାର'' ସମ୍ଭାଷଣର ଉତ୍ତରରେ ସେ କ'ଣ ସବୁବେଳେ ମୁଣ୍ଡ ଟୁଙ୍ଗାରୁଛନ୍ତି ? ଏବଂ ଗତି କୋହଳ କରୁନାହାନ୍ତି ସିନା, ମଝିରେ ମଝିରେ ବସିପଡୁ ନାହାନ୍ତି କି ରାସ୍ତାକଡ଼ର କଲ୍‌ଭର୍ଟ ନମ୍ବରେ ? ତା'ଛଡ଼ା ଗୋଟାଏ ଘଟଣା ଘଟିବାର ଦେଖାଯାଇଛି, ଯାହା ତାଙ୍କ ଚରିତ୍ରଗୁଣର ସମ୍ପୂର୍ଣ୍ଣ ବିରୋଧୀ ବୋଲି ମନେହେବ । ଇଏ କ'ଣ ସତ ନୁହେଁ ଯେ ଦିନେ ସେ ପାଟି କରି ଉଠିଥିଲେ ଗୋଟାଏ ବଜାରି ଟୋକା ଉପରେ ଯେ କୌଣସି ମଦ୍ଦିଆ କୁତ୍ତାକୁ ପିଟିବାରେ ଲାଗିଥିଲା ? ସେ ତାଙ୍କ ଛଡ଼ି ମଧ୍ୟ ଉଞ୍ଚେଇଥିଲେ ତା' ଉପରକୁ । ଏହା ଏକାଧିକ ଲୋକ ହଲପ୍ ଦେଇ କହିପାରିବେ ।

କଲ୍‌ଭର୍ଟ ଉପରେ ବସିପଡ଼ିବା କଥା ଛାଡ଼ିଦିଅ, ତାହା ଷାଠିଏ ବର୍ଷ ପୂରିବାକୁ ଯାଉଥିବା ଭଦ୍ରଲୋକଙ୍କ ସାମୟିକ କ୍ଳାନ୍ତିବୋଧ ବୋଲି ଧରିନେବା ଉଚିତ । କିନ୍ତୁ ଅନ୍ୟ ଆଚରଣଗୁଡ଼ିକୁ କ'ଣ ପ୍ରକୃତରେ ବ୍ୟତିକ୍ରମ କୁହାଯିବ ? ବୋଧହୁଏ ନୁହେଁ । ବରଂ ମନେହେବ ଯେ ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କ ସଯତ୍ନପୋଷିତ ସ୍ୱଗୁଣ ଅଧିକ ବଳିଷ୍ଠ ଏବଂ ପ୍ରତ୍ୟକ୍ଷ ହୋଇ ଉଠିଲାଣି । ଯଥା 'ସାର୍, ନମସ୍କାର' ଅଭିବାଦନକୁ ସେ ପ୍ରାୟଶଃ ଗୋଟାଏ ଫମ୍ପା ଲୋକାଚାର ବୋଲି ଭାବି ନାହାନ୍ତି

କି ? ତଥାପି ସେ ସେଇ ଲୋକାଚାରକୁ ହୁଏତ ଟିକିଏ ସମ୍ମାନ ଦେଉଥିଲେ ମୁଣ୍ଡଟାକୁ ଈଷତ୍ ଟୁଙ୍ଗାରିଦେଇ । କିନ୍ତୁ ଆଜି ସେ ତା'କୁ ସ୍ଥଳବିଶେଷରେ ତତ୍କାଳ ସମ୍ମାନ ଦେଇପାରୁ ନାହାନ୍ତି, କାରଣ କୃତ୍ରିମତା ପ୍ରତି ବିସ୍ୱାଦ ଆହୁରି ବଳିଷ୍ଠ ହୋଇ ଉଠିଛି ତାଙ୍କ ମନରେ । ବିଶେଷତଃ କେହି ଜଣେ ଯେତେବେଳେ ତାଙ୍କୁ 'ସାର୍ ନମସ୍କାର—ଭଲ ଅଛନ୍ତି ?' ବୋଲି ପଚାରେ । ...କିଓ, 'ଭଲ ଅଛନ୍ତି'ର ଅର୍ଥ କଅଣ ? ମୁଁ କଅଣ ଖରାପ ଥାଆନ୍ତି, ତମ କୃପାରୁ ? ନା ମୁଁ ଏତେ ବୁଢ଼ା ହୋଇଗଲିଣି ଯେ ମୋର ଭଲ ରହିବା ସ୍ୱାଭାବିକ ନୁହେଁ ? ... ମଧ୍ୟ ବଳିଷ୍ଠ ହୋଇଉଠିଛି ତାଙ୍କର ବିସ୍ୱାଦରୁ ବଳି ଘୃଣା, ମିଥ୍ୟାଚାରୀ ମଣିଷମାନଙ୍କ ପ୍ରତି । ଯେଉଁମାନଙ୍କର କୌଣସି ଅଧିକାର ନାହିଁ ମୂକ, ନିରୀହ, ଅଥଚ ମଣିଷମାନଙ୍କଠାରୁ ମହତ୍ତର ପଶୁପକ୍ଷୀମାନଙ୍କ ପ୍ରତି ଏଭଳି ଦୁର୍ବ୍ୟବହାର କରିବେ । ପୂର୍ବେ ସେ ହୁଏତ ଚୁପ୍ ରହିଯାଉଥିଲେ, ଆଜିକାଲି ଚୁପ୍ ହୋଇ ରହିପାରୁ ନାହାନ୍ତି । ପ୍ରଭେଦ ଭିତରେ କେବଳ ଏତିକି ।

କିନ୍ତୁ ତାଙ୍କ ସାହିତ୍ୟ ? ମିଷ୍ଟିକ୍ କବିତା ? କବିର ଆଗ୍ରହ କ'ଣ କେବେହେଲେ ଊଣା ପଡ଼ିଯାଏ ବୟସ ବଢ଼ିଲାରୁ ? ସେହେତୁ ଭାବିବା ବିଷୟ ଯେ ପ୍ରଫେସର୍ ରାମହରି ଦାସ ଆଜିକାଲି ମିଷ୍ଟିକ୍ କବିତା କିମ୍ବା ଆଉ କେଉଁ ଧରଣର କବିତା ଲେଖୁ ନାହାନ୍ତି । ପଚାରିଲେ କହୁଛନ୍ତି— "ମୁଁ ଯାହା ଲେଖିଯାଇଛି, ସେଇ କ'ଣ ଯଥେଷ୍ଟ ନୁହେଁ ? ଆପଣ ତା'କୁ ସବୁ ପଢ଼ିଲେଣି ତ ?" ପ୍ରଶ୍ନକର୍ତ୍ତା ପସ୍ତେଇ ହୁଏ ତା'ର ନିର୍ବୋଧତା ଯୋଗୁଁ । ଭାବେ— ମୁଁ କେଉଁ ବୁଦ୍ଧିରେ ଏଭଳି ଏକ ପ୍ରଶ୍ନ ପଚାରୁଥିଲି ସ୍ୱନାମଧନ୍ୟ କବି ରାମହରି ଦାସଙ୍କୁ ? ଜାଣି ନ ଥିଲି ଯେ କେବଳ ଏହି ପ୍ରକାର ଉତ୍ତର ଆଶା କରାଯାଏ ତାଙ୍କଠାରୁ ?

ରାମହରିବାବୁଙ୍କୁ ମଜାଲାଗେ ଲୋକଟାର ପରାଭବ ଦେଖି । ...ଏଇ ଇଡ଼ିଅଟ୍‌ମାନଙ୍କୁ ବୁଝେଇ ହେବ ନାହିଁ ଯେ ମୁଁ ଅବଶ୍ୟ ଲେଖୁଛି ଓ ଲେଖୁଥିବି, ଯେତେଦିନଯାଏଁ ମୁଁ ଏଇ ମିଥ୍ୟାଚାରୀ ମଣିଷ ସଂସାରରେ ଘର କରି ମଧ୍ୟ ସତକଥାଟିଏ କହିବାପାଇଁ ଛଟପଟ ହୋଇ ଉଠୁଥିବି । କିନ୍ତୁ ତା'କୁ କ'ଣ ଖାଲି କବିତାରେ ଲେଖାଯାଏ, ଯାହାକୁ ତମେ ବୁଝି ନ ପାରି 'ମିଷ୍ଟିକ୍'ର ଛାପଟାଏ ମାରିଦେଇ ଆଡ଼େଇ ହୋଇଯିବ, ଅଥଚ ବାହାବା କରିବ ଦରକାର ପଡ଼ିଲେ ? ଯେହେତୁ ତମର ସାହିତ୍ୟପ୍ରେମକୁ ଜାହିର୍ କରିବାକୁ ହେବ, ନ ହେଲେ ସେମାନେ ତମକୁ ବାଣୀବର୍ଜିତ ଅର୍ଥାତ୍ ଖଦାଳ ବୋଲି କହିବେ ? ଧନ୍ୟବାଦ । ମୁଁ ଲେଖୁଛି ମୋ ପାଇଁ, ତମମାନଙ୍କ ପାଇଁ ନୁହେଁ । କାଲି କବିତା ଲେଖୁଥିଲି, ଆଜି ପ୍ରବନ୍ଧ ଲେଖୁଛି, କାଲି ବେଶୀ ଭାଗ ଓଡ଼ିଆରେ ଲେଖୁଥିଲି, ଆଜିକାଲି ଇଂରେଜୀରେ

ଲେଖୁଛି — ସେଥିରେ ଯାଏ କେତେ, ଆସେ କେତେ ? ମୁଁ ତଥାପି ଲେଖୁଛି । ପୂର୍ଣ୍ଣଚ୍ଛେଦ । ଏବଂ ଯଦି ସତକଥା ଜାଣିବାକୁ ଚାହଁ, ମୁଁ କବିତା ବି' ଲେଖୁଛି ବେଳେବେଳେ ଆତ୍ମଶାନ୍ତି ପାଇଁ । କାରଣ ଯେମିତିକା ଖଲାସ ଲାଗେ ଦି' ଧାଡ଼ି ଟାଣୁଆ ଓ ବିଷାକ୍ତ ପଦାବଳୀକୁ ଚର୍‌ଚର୍ ହୋଇ ଲେଖିପକେଇଲେ, ହଜାରେ ପ୍ରବନ୍ଧରେ ସେଭଳି ଆନନ୍ଦ ଆସେ ନାହିଁ । କିନ୍ତୁ ସେ ସବୁ ଛପେଇବାପାଇଁ ନୁହେଁ । ଧରିନିଅ ମୁଁ କବିତା ଲେଖା ଛାଡ଼ିଦେଇଛି । ସୋ ହ୍ୱାଟ୍ ? ତମ ମୁଣ୍ଡ କାହିଁକି ବଥଉଛି ସେଥିରେ ?

କ୍ୟାପିଟାଲ୍‌ରେ ଘର ଖଣ୍ଡେ ତୋଳି ସାରିଲେଣି ରାମହରିବାବୁ । ଯେଉଁଠି ସେ ତାଙ୍କ ଜୀବନର ଶେଷଯାଏଁ ରହିବେ ବୋଲି ସ୍ଥିର କରିଛନ୍ତି । ଆର୍କିଟେକ୍ଟକୁ ବରାଦ୍ ଦେଇଥିଲେ ଯେ ମୋ ଘରେ ଗୁଡ଼ାଏ କମରା ଥିବା ଦରକାର ନାହିଁ ଯେଉଁଠି ଚାକରବାକର ହାଉଜାଉ ହେବେ କିମ୍ବା ତଥାକଥିତ ଅତିଥିମାନେ ବିଳମ୍ବିତ ବିଶ୍ରାମ ନେବାକୁ ଚାହିଁବେ । କିନ୍ତୁ ଗଦାଗଦା ବହିର ଥାକ ଓ ଆଲମାରୀପାଇଁ ବ୍ୟବସ୍ଥା ହେବା ଦରକାର । ପୃଷ୍ଠା ଓଲଟେଇ ନ ପଢ଼ିଲେ ମଧ୍ୟ ବହିମାନେ ମୋ ସାଙ୍ଗରେ କଥା କହିବେ, ମୋର ଇଚ୍ଛା ଅନୁଯାୟୀ । ମୁଁ ଯେତେବେଳେ ମୋ ଲେଖାଲେଖିରୁ ଓହରି ଆସିବି ଟିକିଏ ବିଶ୍ରାମ ନେବାଲାଗି ଏବଂ ଅନେଇବି ସେମାନଙ୍କ ଆଡ଼କୁ । ଅନୁମାନ କରିବି ଯେ ଅଳ୍ପବହୁତ ସତକଥା କହିଥିବେ ସେମାନେ ଏବଂ ବୁଝୁଥିବେ ମୋର ସତକଥା ସବୁ । ଅବଶ୍ୟ ପୃଷ୍ଠା ଓଲଟେଇ ବସିଲେ ମୋତେ ଅଧିକାଂଶ କ୍ଷେତ୍ରରେ ନିରାଶ ହେବାକୁ ପଡ଼ିଛି । ତେବେ ବହିମାନେ ଯଥେଷ୍ଟ ଭଲ, ବକରବକର ହେଉଥିବା ମଣିଷମାନଙ୍କଠାରୁ । ହଁ, ମାନୁଛି ଯେ ସେଇ ମଣିଷମାନେ ହିଁ ବହି ଲେଖନ୍ତି । କିନ୍ତୁ ସେତେବେଳେ ସେମାନେ ଟିକିଏ ଭାବୁ ନ ଥିବେ କି ? ତାଙ୍କର ମନ ହେଉ ନ ଥିବ କି ଟିକିଏ ସତସତିକା ସତ କଥା କହିବାପାଇଁ ? ଏବଂ ଯଦି ମୁଁ କେଉଁ ଗୋଟିଏ ବହିକୁ ପଢ଼ିବସେ, ଆଉ ସତକଥାଟିଏ ପଡ଼ିଯାଏ ମୋ ଆଖିରେ, ଯାହାକି ଖାପ୍ ଖାଇଯାଏ ମୋର ଲେଖା ସାଙ୍ଗରେ—ଆଃ, କି ଅପୂର୍ବ ଆନନ୍ଦ ଆସିବ ସେତେବେଳେ ! ବୁଝିଲେ ନା ଆର୍କିଟେକ୍ଟ ମହାଶୟ, ଏଇ ଗୋଟାଏ ଅନୁରୋଧ ମୋର । ବିସ୍ତର ଜାଗା ଥାଉ ଅନେକ ଅନେକ ବହି ରଖିବା ପାଇଁ ।

ମନେଥିବ ଯେ ରାମହରିବାବୁ କହିଥିଲେ କେବେ ନିଜକୁ, ନାନୁର ମଲା ପରେ, ଯେ ଭବିଷ୍ୟତରେ ସେ ନିଜକୁ ପୂରାପୂରି ଏକୁଟିଆ କରିଦେବେ ଏବଂ ଭାବୁଥିଲେ ଯେ ଆକୁଆରିୟମ୍‌ଟାକୁ ବି' ଦେଇଦେବେ କାହାକୁ । କ'ଣ ଦରକାର ମଣିଷ ବଦଳରେ କୋଉ ପ୍ରାଣୀକୁ ଆଣି ଘରେ ରଖିବା, କ୍ଷତିପୂରଣରେ ବାଟ

ଖୋଜିଲା ପରି ? — ଏଇ ଥିଲା ତାଙ୍କ ବକ୍ତବ୍ୟର ସାର କଥା । କିନ୍ତୁ ନୂଆ ଘର କଲାବେଳକୁ ସେ ଆଉ ଗୋଟାଏ ଅନୁରୋଧ କଲେ ଆର୍କିଟେକ୍ଟଙ୍କୁ — ହଁ, ଶୁଣନ୍ତୁ । ଅଧିକରୁ ଅଧିକ ଜାଗା ଥାଉ ପ୍ରାଣୀମାନଙ୍କ ପାଇଁ, କୁକୁରଙ୍କ ପାଇଁ, କୁକୁଡ଼ାଙ୍କ ପାଇଁ, ଭଲି ଭଲି ଚଢ଼େଇଙ୍କ ପାଇଁ, ମାଛଙ୍କ ପାଇଁ, ଠେକୁଆଙ୍କ ପାଇଁ, କଇଁଛଙ୍କ ପାଇଁ । ବୁଝିଲେ ?

...କାରଣ ପ୍ରାଣୀମାନେ ମଣିଷ ନୁହନ୍ତି । ସେମାନେ ଭାବିବାକୁ ଅକ୍ଷମ । କିନ୍ତୁ ତାଙ୍କର ଯାବତୀୟ କାରବାର, ତାଙ୍କର ହାଉଁହାଉଁ, ଗାଉଁଗାଉଁ, କୁଉଁକୁଉଁ, ଭୋକ, ଆଉ ନିଦ, ଆଉ ମୈଥୁନ ଓଗେର, ତାହାହିଁ ମୁଁ ଦେଖିବାକୁ ଚାହେଁ । ଆହୁରି ପାଖରୁ ଏବଂ ନିତ୍ୟପ୍ରତ୍ୟହ । ଅନେକ ସତକଥାର ଖୋରାକ୍ ମିଳିଯିବ ମୋତେ, ତାଙ୍କ ଆଡ଼କୁ ଅନେଇଲେ, ତାଙ୍କୁ ଖୋଇଲେ ପେଇଲେ, ତାଙ୍କ ରୁମକୁ ଖୁସ୍‌ଖୁସ୍ କଲେ, ·ତାଙ୍କ ସାଙ୍ଗରେ ଖେଳିଲେ, ଅଥବା ତାଙ୍କୁ ଶାସ୍ତି ଦେଲେ । ହଁ, ମୋର କାମରେ ଆସିବେ ସେମାନେ ଏବଂ ତାଙ୍କ ସତ୍ୟାଚାର...

ଆର୍କିଟେକ୍ଟ ମାଧବ ମିଶ୍ର ଠିକଣା ଘରଟିଏ ତୋଳିଦେଇଛନ୍ତି ତାଙ୍କ ପାଇଁ, ତାଙ୍କ ବରାଦ୍ ମୁତାବକ ଏବଂ ରାମହରିବାବୁ କାଳବିଳମ୍ବ ନ କରି ଚାଲିଆସିଛନ୍ତି ସେଠିକି, ଅବସର ନେବାର ପ୍ରାୟ ବର୍ଷକ ପୂର୍ବରୁ । ଏବଂ ଯାହା କିଛି ଲେଖନ୍ତୁ ବା ନ ଲେଖନ୍ତୁ, ତାଙ୍କୁ ଯଥେଷ୍ଟ ସୁବିଧା ସୁଯୋଗ ମିଳୁଛି ଆଜିକାଲି, ଗଦାଗଦା ନିବୁଜ ବନ୍ଦିମାନଙ୍କ ସାଙ୍ଗରେ କଥାଭାଷା ହେବାପାଇଁ ତଥା ବିବିଧ ବିଚିତ୍ର ସତ୍ୟବାଦୀ ପଶୁପକ୍ଷୀମାନଙ୍କର ସାନ୍ନିଧ ପାଇବାର ।

ସାଙ୍ଗସାଥୀଙ୍କ ଅଭାବ ନାହିଁ ମୋର । ରାମହରିବାବୁ ଏହି ଜବାବ୍ ଦିଅନ୍ତି ତାଙ୍କ ଶୁଭାକାଂକ୍ଷୀମାନଙ୍କୁ, ଯେତେବେଳେ ସେମାନେ ତାଙ୍କ ନିଃସଙ୍ଗ ଜୀବନ ପ୍ରତି ସହାନୁଭୂତି ଦେଖାନ୍ତି । କିନ୍ତୁ ସେ ସେମାନଙ୍କୁ ନିମନ୍ତ୍ରଣ କରନ୍ତି ନାହିଁ ତାଙ୍କ ଘରକୁ ଆସି ସେଥିର ପ୍ରତ୍ୟକ୍ଷ ପ୍ରମାଣ ପାଇବାଲାଗି । ତାଙ୍କ ଦାଣ୍ଡ ଫାଟକ ଉପରେ ଲେଖା ଅଛି —"କୁକୁର ପ୍ରତି ସାବଧାନ" ଏବଂ ଅଧେ ଲୋକ ସେଇଆକୁ ଦେଖି ଡରିଯାଆନ୍ତି । ରାମହରିବାବୁଙ୍କର ବେଳେବେଳେ ମନ ହୁଏ ଛେଲୁଆ ଲୋକଗୁଡ଼ାଙ୍କ ସାଙ୍ଗରେ ଆଉ ଟିକିଏ ଖେଳିବା ପାଇଁ । ଭାବନ୍ତି, କାଠପଟାର ସେଇ ଚେତାବନୀ ତଳେ ଆଉ ଦି'ଧାଡ଼ି ଲେଖିଦେବେ । ମଧ ଗଞ୍ଜା କୁକୁଡ଼ା ପ୍ରତି ସାବଧାନ । ଭୁଆଁ ବିଲେଇ ପ୍ରତି ସାବଧାନ ।

...ଆଃ ! ନାନୁଟା ବଞ୍ଚି ରହି ନ ଥାଆନ୍ତା ! ତା'ହେଲେ ସେ ନିଶ୍ଚୟ ତାଳି ମାରନ୍ତା ମୋ ସାଙ୍ଗରେ, ଏମାନଙ୍କ ଦୁରବସ୍ଥା ଦେଖି । ଛାଡ଼, ସେ ବି' ଯେତେହେଲେ ମଣିଷ ପିଲା । ବଡ଼ ହେଲାରୁ ତା'ର ସ୍ୱଭାବ ଚରିତ୍ର

କ'ଣ ହୋଇଥାଆନ୍ତା, କିଏ ଜାଣିଛି ? ନା,' ଏଇ ଭଲ, ଏମିତିକା ଜୀବନ...ରାମହରିବାବୁ ଏହି ଭାବରେ ନାନୁର ସ୍ମୃତିକୁ ଫେରାଇଦିଅନ୍ତି । ତେବେ ଉଲ୍ଲେଖଯୋଗ୍ୟ ଯେ ସେହି ଦିନଠାରୁ ସେ କୌଣସି ସେବାକାରୀର ପିଲାଛୁଆଙ୍କୁ ଘରେ ପୂରେଇ ନାହାଁନ୍ତି ଏବଂ ଏଇ ନୂଆ ଘରେ ଯେଉଁ ତିନିଟା ସରଭ୍ୟାଣ୍ଟସ୍ କ୍ୱାଟର୍ସ ରହିଛି, ଖାସ୍ ତାଙ୍କ ଜନ୍ତୁଜୀବଙ୍କ ଖବର ବୁଝିବାପାଇଁ, ସେଥିରେ ସେ କୌଣସି ପିଲାଛୁଆବିଶିଷ୍ଟ ପରିବାରକୁ ଅନୁମତି ଦେଇ ନାହାନ୍ତି ରହିବାଲାଗି ।

କୌତୁକରେ ସେ ବେଳେବେଳେ ପଚାରନ୍ତି ତାଙ୍କ ଆଲ୍‌ସେସିଆନ୍ 'ଆଲୀ'କୁ—କହିଲୁ ଜନାବ୍, ତୁ ଥାଉ ଥାଉ କାହା ଜିଭରେ ହାଡ଼ ଅଛି କହିବ ଯେ ମୁଁ ଏକୁଟିଆ ? ଆଲୀ ଯେତେବେଳେ ତା'ରି ପାଇଁ ମଗା ହୋଇଥିବା ମାଂସକୁ ଖାଉଥାଏ, ତା' ଖାମିନ୍ଦଙ୍କ ହାତରୁ । ହାଉଁହାଉଁ ହୋଇ ଖାଉଥାଏ, ଅସମ୍ଭାଳ ହୋଇ ଏବଂ ରାମହରିବାବୁ ତା'କୁ କୁହନ୍ତି—ଧନ୍ୟବାଦ । ଯଥାର୍ଥ ସାଙ୍ଗ ନ ହୋଇଥିଲେ ତୁ କ'ଣ ଏଇ ଲଙ୍ଗଳା ଭୋକର ସତକଥାଟାକୁ ଫିଙ୍ଗି ଦେଇପାରିଥାଆନ୍ତୁ, ମୋ ଆଡ଼କୁ ?

ସେହିପରି ଭାବରେ ସେ ବାବାଜି ନାମକ ଭୁଆଁକୁ ଲକ୍ଷ୍ୟ କରନ୍ତି (ଅତୀତର 'ହାଣ୍ଡିଖାଈ'କୁ ଜବତ୍ କରିଥାଆନ୍ତା ଇଏ !), ସେ କେମିତି ଛକି ଛକି କୁଦା ମାରୁଛି କେଉଁ ବାସ୍ତବ ଅବା କାଳ୍ପନିକ ଅସରପା ଆଡ଼କୁ ଏବଂ ତା'କୁ ଧନ୍ୟବାଦ ଦିଅନ୍ତି । କୁହନ୍ତି, ତୁ କେଡ଼େ ଚମତ୍କାର ଭାବରେ ଜଣେଇଦେଉଛୁ ଯେ ଭୋକଠାରୁ ଆହୁରି ଜୀବନ୍ତ, ଆହୁରି ଜ୍ୱଳନ୍ତ ହେଉଛି ହିଂସା । କହିବାକୁ ଗଲେ ଭୋକ, ଏପରିକି ତା'ର ଧାରଣା ସାଙ୍ଗରେ ହିଂସାକୁ ମିଶେଇଦେଲେ ରୀତିମତ ଆନନ୍ଦ ଆସେ ନାହିଁ କି ? ଶିଶୁ ଯେମିତି ଭୋକ କରୁ ବା ନ କରୁ ମାଆର ଥନକୁ ମାଡ଼ିବସେ ଓ ତା' ଉପରେ ଅତ୍ୟାଚାର କରେ...

ସେକ୍‌ସ୍ ବି' ସେଇଆ । ଦେଖୁନା' ଆମ ସର୍ଦ୍ଧାର ଗଞ୍ଜା କୁକୁଡ଼ାର ଢଙ୍ଗ । ସେକ୍‌ସ୍ ଗୋଟାଏ ପଡିଆରା ମାତ୍ର । ଅସଲ ହେଉଛି ମାଈଗୁଡ଼ାଙ୍କୁ ମନଇଚ୍ଛା ମାଡ଼ିବସିବାର ଆନନ୍ଦ । କାଳୀ ମାଇକିନିଆ ହେଉ କି ଗୋରୀ ମାଇକିନିଆ, କି ଛାପିଛାପିକା, କିଛି ଯାଏ ଆସେ ନାହିଁ ସେଥିରେ । ଅସଲ ହେଉଛି ସେଗୁଡ଼ାକୁ ହୁରୁଡ଼େଇ, ଲଣ୍ଡଭଣ୍ଡ କରି, ଯା' ଉପରେ କି ତା' ଉପରେ ଚଢ଼ଉ କରିବା କଥା...

ସାରା ସୃଷ୍ଟିଟା ସେଇଆ । ମାଆ ପେଟରୁ ବାହାରିବା ଦିନଠାରୁ ସେଇ ଗୋଟାଏ ଅନୁଭବ ହିଁ ସବୁଠାରୁ କାମ୍ୟ । ସୃଷ୍ଟି ଉପରେ ଚଢ଼ଉ କରିବାର ସୁଖ । ସେଇଥିରେ ଅଛି ଭୋକର ପୂର୍ତ୍ତି, ହିଂସାର ଉଲ୍ଲାସ, ବଞ୍ଚିବାର ଆନନ୍ଦ ।

ନ ହେଲେ ମଣିଷଟା ମରିଯିବ ଯେ ! ମାଆକୁ କିଏ କହୁଥିଲା ତା'କୁ ଜନ୍ମ କରି ଏକୁଟିଆ ପକେଇଦେବାକୁ ଏ ସଂସାରରେ ?

ମୋ କବିତାରେ ଏଇଆ ଅଛି । ଏଇ ସତ୍ୟର ବିଭିନ୍ନ ପରିପ୍ରକାଶ । ନୈସର୍ଗିକ ବୈଷମ୍ୟର ଓ ବିରୋଧର ସଂଘର୍ଷ, ସଂଘର୍ଷ ବନାମ ସଙ୍ଗମ ଏବଂ ଶେଷକୁ ମାରଣ ଓ ମରଣର ଅପୂର୍ବ ଉପଲବ୍ଧି । ପୁଣି ଭୋକ ହେବାଯାଏଁ । କିନ୍ତୁ ତା'କୁ ଅନ୍ତବହୃତ ଘୋଡ଼େଇଦେବାକୁ ପଡ଼ିବ — ଶବ୍ଦ, ଛନ୍ଦ, ଚିତ୍ରକଳ୍ପ ଇତ୍ୟାଦିର ଚାତୁରୀ–ମାଧୁରୀ ଦେଇ । ନ ହେଲେ ତମେ ସବୁ ଭାବିବ ଯେ ରାମହରି ଦାସ ଗୋଟାଏ ରାକ୍ଷସ । କିନ୍ତୁ କେହି ବୁଝେ ନାହିଁ ମୁଁ କ'ଣ କହିବାକୁ ଚାହୁଁଛି । କୋଉଠୁ ବୁଝିବ ? ତମକୁ ପରା କୁହାହୋଇଛି ଯେ ଭଲପାଇବା ହିଁ ସଂସାରକୁ ଧରି ରଖିଛି ! ସେହେତୁ ରାମହରି ଦାସ ହେଉଛନ୍ତି ଜଣେ ମିଷ୍ଟିକ୍ କବି । ସହଜେ ବୁଝି ହୁଏ ନାହିଁ ତାଙ୍କ ଲେଖା, କିନ୍ତୁ ଯେଉଁ ଅଦ୍ଭୁତ ଅତୀନ୍ଦ୍ରିୟ ଅନୁଭବ ଆସେ ତା'କୁ ପଢ଼ିଲେ...ଇଡ଼ିଅଟସ୍ !

ଭାବୁଥିବ ଯେ ମୁଁ ଅନ୍ତତଃ ଭଲପାଏ ଏଇ ଆଲୀକୁ, ବାବାଜିକୁ, ସର୍ଦ୍ଦାର ଆଉ ଯେତେ ଜନ୍ତୁଜନ୍ତାମାନଙ୍କୁ ଯାହାଙ୍କୁ ମୁଁ ଖୁଆଇ ପିଆଇ ପୋଷୁଛି ମୋ ଘରେ, ଆଉ ଥେଇ ଥେଇ ହେଉଛି ସେମାନଙ୍କୁ ନେଇ । ଭୁଲ୍ । ଖାଲି ତାଙ୍କ ଉପରେ ଏକତରଫା ଅଧିକାର ଜମେଇପାରୁଛି ବୋଲି । ବାସ୍, ସେଇ ହେଉଛି ମୋ ସୁଖର ସାରକଥା । କୋଉ ମଣିଷକୁ ଭଲପାଇ ଏଭଳି ଅଧିକାର ଜମେଇ ହୁଅନ୍ତା କହିଲ ? ହୁଅନ୍ତା ନାହିଁ, କାରଣ ଯାହାକୁ ଭଲପାଅ, ସେ ବି' ତମକୁ ଭଲପାଆନ୍ତା, ମାନେ ଅଧିକାର ଜମେଇବାକୁ ଚାହାନ୍ତା । ସେଇଠୁଁ ଆରମ୍ଭ ହୁଅନ୍ତା ମିଥ୍ୟାଚାରର ପର୍ବ, ଅଧିକାର ଲାଳସାକୁ ଘୋଡ଼େଇଦେଇ ଆନୁଗତ୍ୟକୁ ଦେଖେଇ ହେବାର କାରସାଦି । କାହିଁକି ଭଲା ପଶିବି ଏଇ ଗଣ୍ଡଗୋଳିଆରେ ? ଏବଂ ଦରକାର ନାହିଁ ମୋର ଘଷରା ସବୁଦିନିଆ ସେକ୍ସ, କି କାନ୍ଦୁରା ଅପରଛନିଆ ପିଲାଛୁଆ । ମୁଁ ବେଶ୍ ଭଲ ଅଛି ମୋର ଏଇ ତଥାକଥିତ ଏକୁଟିଆ ସଂସାରରେ । ଯେଉଁଠି ମୋର ସମ୍ପର୍କ କେବଳ ଏଇମାନଙ୍କ ସାଙ୍ଗରେ । ରିଟାୟାର୍ କରିବାକୁ ଆଉ କେଇଟା ମାସ ରହିଲା । ଦିନଚର୍ଯ୍ୟାର ଗୋଟାଏ ବଡ଼ ରୁଟିନ୍ କଟିଯିବ । ନେଭର୍ ମାଇଣ୍ଡ୍ । ମୋର ବିଶେଷ କିଛି କ୍ଷତି ହେବ ନାହିଁ । ପ୍ରଭାତ ଭ୍ରମଣ ଓ ସାନ୍ଧ୍ୟଭ୍ରମଣ ଭିତରେ ସେ କେଇଟା ଘଣ୍ଟା ଏମିତି କେତେ କି ? ଆରେ, ତା'ହେଲେ ମୋତେ ବେଶୀ ସମୟ ମିଳିବ ମ ଏମାନଙ୍କୁ ଭଲ ପାଇବାପାଇଁ ! ନା କ'ଣ କହୁଛ ଆଲୀ ସାହେବ ? ମଲ୍ଲୀ ଦେଈ ? ମଲ୍ଲୀ ହେଉଛି ଦ୍ୱିତୀୟ କୁକୁର, ଡେଙ୍ଗା ଆଲ୍‌ସେସିଆନ୍ ।

'ଭଲପାଇବା' ନାମକ ବସ୍ତୁକୁ ଏମିତି ଛିଗୁଲେଇଲାବେଳେ ତାଙ୍କର ମନେପଡ଼େ ଯେ ମଣିଷ ସଂସାରର କେବଳ ଜଣେ କହି ଚାଲିଛି ଯେ ତା'ର ନିବିଡ଼ ସମ୍ପର୍କ ଅଛି ତାଙ୍କ ସାଙ୍ଗରେ । ତାହା ଜନ୍ମଗତ, ବୃତ୍ତିବ୍ୟବସାୟଗତ କିମ୍ବା ଦୈହିକ ନ ହେଲେ ମଧ୍ୟ । କାହିଁକିନା ସେ ଗୋଟାଏ କବି, ଆଉ ମୁଁ ତା'ର ମହାକବି । ମୁଁ ତା'ର ପ୍ରେରଣା, ମୁଁ ତା'ର ଗୁରୁ, ମୁଁ ତା'ର... । ହଉ, ହଉ, ଥାଉ ଏଇ ଧାରଣାଟା ତା' ମନରେ । କ'ଣ ମିଳିବ ମୋତେ, ତା'କୁ ଭାଙ୍ଗିଦେଲେ ? ସେ କ'ଣ କେବେହେଲେ ବିଶ୍ୱାସ କରିବ, ମୁଁ ଯଦି କହିଦିଏ ସତକଥାଟା ଯେ ମୁଁ ଲୋଷ୍ଟ୍ରବତ୍ ମନେକରେ ତା'କୁ, ଆଉ ତା'ର ପଚପଚିଆ ରୋମାଣ୍ଟିକ୍ କବିତାକୁ ?

କଲିକତିଆଣୀ କାହିଁକି ଚିଠିପତ୍ର ଦେଇ ନାହିଁ ଅନେକ ଦିନ ହେଲା । କେବେ ଥରେ ଲେଖିଥିଲା ସେ ସମାଜ ସେବା କରୁଛି । ବସ୍ତିର ଦୁଃଖୀ ଦରିଦ୍ରଙ୍କ ମୁହଁରେ ଟିକିଏ ହସ ଆଣିଦେବାଲାଗି । ଆ'—ହା ! ତୋ କବିତା ପଢ଼ିବାକୁ ଦେଉନୁ ତାଙ୍କୁ ? ଦେଖିବୁ ସେ ହସିବେ କେମିତି ? କିନ୍ତୁ ସେ କ'ଣ ସେଥିରେ ଏମିତି ମଜ୍ଜିଯାଇଛି ଯେ ଚିଠିଖଣ୍ଡେ ଦେବାକୁ ନାହିଁ ? ମୋତେ ଛାଡ଼ି ମଦର୍ ଟେରେସାଙ୍କୁ ଧରିଲାଣି ? ରାମହରିବାବୁ ହସି ଉଠିଲେ ତାଙ୍କ ରସିକତାରେ । ସେଇଠୁଁ ତାଙ୍କର ମନେପଡ଼ିଲା ଯେ ପୂର୍ବର ଚିଠିରେ ସେ କ୍ଷମା ମାଗିଥିଲା ତା'ର ବିଳମ୍ବ ଯୋଗୁଁ ଏବଂ ଆଉ ଗୋଟାଏ କଥା କହିଥିଲା, ଯେଉଁଥିରୁ ସ୍ପଷ୍ଟ ଜଣାପଡୁଛି ଯେ ତା'ର ଆନୁଗତ୍ୟ ତିଳେ ହେଲେ ଊଣା ହୋଇ ନାହିଁ । ଲେଖିଥିଲା—ସାର୍, ଗୋଟାଏ ସିକ୍ରେଟ୍ ଅଛି, କହିବି ଆପଣଙ୍କୁ । ମାନେ ସଁପିଦେଇ ଆସିବି ଆପଣଙ୍କ ହାତରେ । କିନ୍ତୁ ଏଇକ୍ଷଣି ନୁହେଁ । ଆଉ କିଛି ସମୟ ଲାଗିବ...

କଅଣ ସେ ସିକ୍ରେଟ୍ ? ତା'କୁ ସେ କ'ଣ ଗଢ଼ି ତୋଳୁଛି ଗୋଟାଏ ତାଜମହଲ ପରି ? କିଛି ଅସମ୍ଭବ ନୁହେଁ ରୋମାଣ୍ଟିକ୍ କବିମାନଙ୍କ ପକ୍ଷରେ । ଯାହାହେଉ ତା' ପାଖକୁ ଖଣ୍ଡେ ଚିଠି ଦେଲେ ହେବ...

କିନ୍ତୁ ରାମହରିବାବୁ ଚିଠି ନ ଦେଇ ରହିଗଲେ ସବୁଥର ପରି । କାରଣ ବିଶେଷ ଆବଶ୍ୟକତା ନ ଥିଲେ ସେ ଚିଠିଲେଖାର କଷ୍ଟ ସ୍ୱୀକାର କରିବାକୁ ଚାହାନ୍ତି ନାହିଁ । ଭାଗ୍ୟ ଭଲ ଯେ ଯେତେବେଳେ ସେ ଆତୁର ହେଲେ ଶୈଳ ସାଙ୍ଗରେ ଯୋଗାଯୋଗ କରିବାଲାଗି, ଅଥଚ ଭଲଭାବରେ ଚିଠି ଖଣ୍ଡେ ଲେଖିବାର ଅବସ୍ଥାରେ ନ ଥିଲେ, ସେତେବେଳେ ଶୈଳହିଁ ତାଙ୍କୁ ଉଦ୍ଧାର କଲା ଏବଂ ନିଜେ ଆସି ପହୁଞ୍ଚିଗଲା ତା'ର 'ସିକ୍ରେଟ୍'କୁ ନେଇ ।

ଘଟଣାବଳୀର କ୍ରମ ଏହି ପ୍ରକାର—

ରାମହରିବାବୁଙ୍କୁ ବାରମ୍ବାର ଥକା ଲାଗିଲା ତାଙ୍କ ପ୍ରଭାତ ଭ୍ରମଣବେଳେ ଏବଂ ତାଙ୍କୁ ଅନେକ ସମୟଯାଏଁ ବସି ରହିବାର ଦେଖାଗଲା ବିଭିନ୍ନ କଲ୍‌ଭର୍ଟ୍ ଉପରେ । ଏଣେ ସାନ୍ଧ୍ୟଭ୍ରମଣର ରୁଟିନ୍‌ଟାକୁ ସେ ଅନାବଶ୍ୟକ ମନେକଲେ । ଭାବିଲେ ଯେ ସହରରେ ଯେଉଁ ଧୂଳିଧୂଆଁର ପ୍ରାଦୁର୍ଭାବ ଏଇ ସମୟକୁ, ସେଥିରେ ଭ୍ରମଣ ନ କରିବାହିଁ ଶ୍ରେୟସ୍କର । ତେବେ କହିଲେ ଭୁଲ୍ ହେବ ନାହିଁ ଯେ ପ୍ରାୟଶଃ ତାଙ୍କୁ ଏତେ ଥକା ଲାଗେ ସଞ୍ଜବେଳକୁ ଯେ ତାଙ୍କର ଆଗ୍ରହ ନ ଥାଏ ବୁଲି ବାହାରିବାପାଇଁ ।

କ୍ରମଶଃ ସେ ଅନୁମାନ କଲେ ଯେ ବାର୍ଦ୍ଧକ୍ୟର ଶିଥିଳତା ଆସିଗଲାଣି ଏବଂ ତା'କୁ ଅସ୍ୱୀକାର କରି ଲାଭ ନାହିଁ । ଏପରିକି ତାଙ୍କର ସନ୍ଦେହ ହେଲା ଯେ କବିତା ଲେଖିବାକୁ ଇଚ୍ଛା ହେଉ ନାହିଁ, କାରଣ ସୃଜନ ପାଇଁ ଯେଉଁ ମାନସିକ ଶକ୍ତି ଖଟାଇବାକୁ ପଡ଼େ, ତା' ମଧ୍ୟ ଊଣା ପଡୁଛି । ଯଦିଓ ତତ୍‌କ୍ଷଣାତ୍ ସେ ତା'ର ଟାଣୁଆ ପ୍ରତିବାଦ କଲେ । ... ନା, ନା, ତା' ନୁହେଁ । ତା' ହୋଇ ନ ଥିବ କେବେହେଲେ । ମୁଁ ଜାଣିଶୁଣି କବିତା ଲେଖୁ ନାହିଁ, କାରଣ ମୋତେ ଚିଡ଼ି ମାଡ଼ିଲାଣି । ଯଥେଷ୍ଟ ଭୂତେଇଲେଣି ଆମ ନିର୍ବୋଧ ଲୋକଗୁଡ଼ାକୁ । ତା'ଛଡ଼ା ଏଣିକି ଲେଖାପଢ଼ା ଟିକିଏ ହାଲୁକା କରିଦେଲେ କ୍ଷତି କଅଣ ? ...ଏବଂ ସେ ନିଜକୁ ସ୍ମରଣ କରେଇଦେଲେ ଯେ ଯେତେହେଲେ ଗୋଟାଏ ରୋଗ ମଧ୍ୟ ଅଛି ତାଙ୍କ ଦେହରେ । ରକ୍ତଚାପ । ତାଙ୍କର ଠିକଣା ଖିଆପିଆ ଏବଂ ନିୟମିତ ଔଷଧ ସେବନ ହେତୁ ରୋଗଟା ତାଙ୍କ ଆୟତ୍ତରେ ଅଛି ଅବଶ୍ୟ । ତେବେ ଆଉ ଟିକିଏ ସାବଧାନ ହେଲେ ଯାଏ । ଏହି ଦୃଷ୍ଟିରୁ ସେ ପ୍ରଭାତ ଭ୍ରମଣର ରାସ୍ତାଟାକୁ ବି' ଛୋଟ କରିଦେଇ ସାରିଲେଣି । ମାନେ ଯେଉଁଆଡ଼େ ବଜାରି ଟୋକାମାନଙ୍କର କୁକୁରକୁ ପିଟିବାର ସମ୍ଭାବନା ଅଛି, ସେ ସେଆଡ଼କୁ ଯାଆନ୍ତି ନାହିଁ । କାଳେ ତାଙ୍କର ରାଗ ଚଢ଼ିଯିବ ଏବଂ ରକ୍ତଚାପ ବଢ଼ିଯିବ ।

କିନ୍ତୁ ଏତେ ସାବଧାନତା ସତ୍ତ୍ୱେ ଗୋଟାଏ ଘଟଣା ଘଟିଲା, ଯେଉଁଥିପାଇଁ ସେ ଆଦୌ ପ୍ରସ୍ତୁତ ନ ଥିଲେ । କଲ୍‌ଭର୍ଟ୍ ଉପରେ ବସି ଥକା ମେଣ୍ଟେଇବା ଗୋଟାଏ କଥା, କିନ୍ତୁ ଥକା ମାରୁ ମାରୁ ଢୁଳେଇପଡ଼ିବା ଦରକାର ନ ଥିଲା । କହିଲେ, "ହଁ ମୁଁ ଢୁଳେଇ ପଡ଼ିଥିଲି, ମୋ ମୁଣ୍ଡ ଘୂରେଇଯାଇ ନ ଥିଲା, ବେହୋସ୍ ହୋଇଯିବା ଦୂରର କଥା ।" କିନ୍ତୁ ତାଙ୍କର ସ୍ପଷ୍ଟୀକରଣକୁ ଅଗ୍ରାହ୍ୟ କଲେ ସେମାନେ, କେଇଟା ଅନାମଧେୟ ସାଧାରଣ ଲୋକ ଏବଂ କହିଲେ—"ଚାଲିପାରିବେ ତ ସାର୍ ? ନ ହେଲେ କୁହନ୍ତୁ, ଗୋଟାଏ ଟ୍ୟାକ୍ସି

ମଗେଇଦେବୁ ।'' ରାମହରିବାବୁ ତାଙ୍କୁ ନାଲି ଆଖି ଦେଖେଇ 'ଥ୍ୟାଙ୍କ୍ ୟୁ' ବୋଲି କହିଲେ ଓ ଚାଲିବାକୁ ଆରମ୍ଭ କଲେ । ତଥାପି ସେମାନେ ତାଙ୍କୁ ହାତ ଧରି ଧରି ନେଲେ ତାଙ୍କ ଘରଯାଏଁ, ତାଙ୍କ ଆପତ୍ତି ଉପରେ ଗୁରୁତ୍ୱ ନ ଦେଇ । ଏବଂ ତାଙ୍କ ସାଙ୍ଗରେ ତର୍କ କରିବାକୁ ବଳ ନ ଥିଲା ରାମହରିବାବୁଙ୍କର । ଯାହାହେଉ ରାମହରିବାବୁ ସେମାନଙ୍କୁ ଆନନ୍ଦର ସହ ଧନ୍ୟବାଦ ଦେଲେ ତଥା ନିଜର ଦୂରଦୃଷ୍ଟିକୁ, ଯେତେବେଳେ ସେମାନେ ଫାଟକର କଳାପଟାରେ ଲେଖା ହୋଇଥିବା ଚେତାବନୀକୁ ଦେଖି ଅଟକି ଗଲେ ଏବଂ କହିଲେ — ''ସାର୍, ଆମେ ଏଇଠୁଁ ବିଦାୟ ନେଉଛୁ ତା'ହେଲେ ।''

ଡାକ୍ତରମାନଙ୍କ କର୍ତ୍ତୃତ୍ୱକୁ ସେ ସବୁବେଳେ ଏଡ଼ାଇ ଦେଇ ଆସିଛନ୍ତି । କିନ୍ତୁ ଏଇ କଲ୍‌ଭର୍ଟ୍‌ରେ ଭୁଲାଇପଡ଼ିବା ଘଟଣାଟା ତାଙ୍କୁ ବିଚଳିତ କରିଦେଲା ଏବଂ ସେ ଡାକ୍ତରବନ୍ଧୁ ରଜନୀକାନ୍ତ ରାଉତର ଆଶ୍ରୟ ନେବାକୁ ବାଧ ହେଲେ । ଆଶା କଲେ ଯେ ସ୍କୁଲ୍‌ବେଳର ଏଇ ପୁରୁଣା ସାଙ୍ଗ ତା'ର ସ୍ୱରଚିତ ଦୁର୍ବିଷହ କବିତାକୁ ନେଇ ତାଙ୍କୁ ବୋର୍ କଲେ ମଧ କଥାଟାକୁ ପ୍ରଘଟ କରିବ ନାହିଁ । ସେଇଠୁଁ ଡାକ୍ତର ରାଉତଙ୍କ ପରୀକ୍ଷା ନିରୀକ୍ଷା ଦ୍ୱାରା ଜଣାପଡ଼ିଲା ଯେ ତାଙ୍କର ରକ୍ତଚାପ ଯେ କେବଳ ବଢ଼ିଯାଇଛି ବିପଦସୀମା ଅତିକ୍ରମ କରି, ତା' ନୁହେଁ । ତାଙ୍କର ରକ୍ତରେ ଚିନିଗୁଣର ଆଧିକ୍ୟ ମଧ ଦେଖାଗଲାଣି ? ...ଡାଏବେଟିସ୍ ? ଅସମ୍ଭବ ! ମୋ ବାପାଙ୍କର ନ ଥିଲା, ମୋ ବୋଉର ନ ଥିଲା... । କିନ୍ତୁ ଡାକ୍ତର ରାଉତ କେବଳ ହସିଦେଲେ । କହିଲେ ''ଲୁକ୍ ହିଅର୍, ରାମ୍ । ଏମିତି ହୁଏ । କିନ୍ତୁ ଏଥିରେ ବ୍ୟତିବ୍ୟସ୍ତ ହେବାର କିଛି ନାହିଁ । ଆଉ ଟିକିଏ ନିଜକୁ ଜଗିନେଲେ ହେଲା । ସବୁଠାରୁ ବଡ଼ ଔଷଧ ହେଉଛି ମନଟାକୁ ଶାନ୍ତ ରଖିବା ଏବଂ ଆହୁରି ଆହୁରି କବିତା ଲେଖିବା (ହୋଃ, ହୋଃ, ହୋଃ !)...'' ରାମହରିବାବୁ କଟମଟ କରି ଅନେଇଲେ ତା' ଆଡ଼କୁ । ପରେ ଗୋଟାଏ ସ୍ପେଶାଲିଷ୍ଟଠାରୁ ବୁଝିବାକୁ ଚାହିଁଲେ ଯେ ଘଟଣାଟା ପ୍ରକୃତରେ କଅଣ । କିନ୍ତୁ ସେ ମଧ ପୁଣି ଚେକେ ପରୀକ୍ଷାନିରୀକ୍ଷା ପରେ ସେଇ ଏକା କଥା କହିଲା ଏବଂ ତାଙ୍କୁ ସାବଧାନ କରେଇଦେବା ସଙ୍ଗେ ସଙ୍ଗେ ଆଉ ଗୋଟାଏ କଥା କହିଲା, ଯାହା ତାଙ୍କୁ ମୋଟେ ଭଲ ଲାଗିଲା ନାହିଁ । କହିଲା, ''ଆଜ୍ଞା, ଯେତେହେଲେ 'ଏଜିଙ୍ଗ୍ ପ୍ରୋସେସ୍' ବୋଲି ଗୋଟାଏ କଥା ଅଛି ତ ? ରୋଗଗୁଡ଼ାକ ଟିକିଏ ବେଶୀ ସକ୍ରିୟ ହୋଇ ଉଠନ୍ତି, ମଣିଷ ଯେତେବେଳେ ବୁଢ଼ା ହୋଇଯାଏ...''

...ରବିସ୍ ! ଷାଠିଏ ବର୍ଷ ହୋଇଛି କି ନାହିଁ, ମୁଁ ବୁଢ଼ା ହୋଇଗଲିଣି ? ଯେଉଁ ଯୁଗରେ ଏବଂ ଯେଉଁ ଦେଶରେ ବି' ଅଶୀବର୍ଷର ବୁଢ଼ାମାନେ ମୁଖ୍ୟମନ୍ତ୍ରୀ

ହୋଇପାରନ୍ତି, ସେଠି କବି ରାମହରି ଦାସଙ୍କୁ ବୁଢ଼ା କୁହାଯିବ ? କଥା ହେଉଛି ଯେ ଆମ ଓଡ଼ିଆ ଡାକ୍ତରମାନେ ପୁରୁଣାକାଳିଆ, ରହିଛନ୍ତି ସେଇ 'କଳିଷଠା ଷାଠିଏ'ର ଯୁଗରେ ! ରାମହରିବାବୁ ଦୟାକଲେ ଦେଶଜ ଡାକ୍ତରମାନଙ୍କ ଉପରେ ।

କଲେଜରେ ଯେଉଁ ବିଦାୟକାଳୀନ ସମ୍ବର୍ଦ୍ଧନା ଦିଆଗଲା ତାଙ୍କୁ ଏବଂ ତାଙ୍କର ଗୁଣକୀର୍ତ୍ତନ କରାଗଲା, କୁହାଗଲା ଯେ ଆପଣ ଶହେବର୍ଷ ବଞ୍ଚନ୍ତୁ ଏବଂ ଅଧିକରୁ ଅଧିକ ଯଶ ଲାଭ କରନ୍ତୁ, ସେହି ଶବ୍ଦଗୁଡ଼ାକ ତାଙ୍କୁ ସ୍ୱାଭାବିକ ଶଠତା ବୋଲି ମନେହେଲା ସତ, ହେଲେ ତାଙ୍କର କହିବାକୁ ଇଚ୍ଛା ହେଲା ଯେ ଆପଣଙ୍କର ତୁଣ୍ଡ ସୁତୁଣ୍ଡ ହେଉ । ଜୀବନର ଶକ୍ତି ଓ ସାମର୍ଥ୍ୟ ତଥାପି ମହଜୁଦ୍ ଅଛି ରାମହରି ଦାସ ପାଖରେ, ସେ କିଛି ଲେଖୁ ବା ନ ଲେଖୁ । ଏବଂ ସେ ଅନେକ କିଛି ଲେଖିଯାଇଛି, ଟାଣୁଆ ଦର୍ଶନରେ ଶାଣିତ ଓ ରସାଣିତ କବିତା, ତା'କୁ ତମେ ନ ବୁଝ କି ଭୁଲ୍ ବୁଝ, ଯାହାକୁ ନେଇ ତମେ ତା'କୁ ଆହୁରି ଅଧିକ ଯଶ ଆଣି ଦେଇପାରିବ । ଅବଶ୍ୟ ମାନୁଛି ଯେ ମୁଁ ତମ ଇତର ସାହିତ୍ୟସମାଜ ଓ ସେଥିର ପୁରସ୍କାରକୁ ତୁଚ୍ଛ ମନେକରେ ଏବଂ ମୋ 'ମେଘଦୂତ'କୁ କେବେଠୁଁ ମନା କରିଦେଇଛି ଅଧମଠାରେ ଲବ୍ଧକାମ ହେବାର ପ୍ରୟାସ ନ କରିବାପାଇଁ । ନ ହେଲେ କ'ଣ ମୁଁ ଜାଣିଶୁଣି ହାତଛଡ଼ା କରି ଦେଇଥାଆନ୍ତି ତମ 'ଗଂଗୋତ୍ରୀ' ପୁରସ୍କାରକୁ ?

କିନ୍ତୁ କେବେ ମୋତେ ଦେବ ତମର 'ବାଣୀସଂତାନ'ର ମେଡ଼ାଲ୍, ଯାହାକୁ ମୁଁ ଗୋଇଠା ମାରି ତଳେ ଗଡ଼େଇଦେବି ? ମୁଁ ଅନେଇ ରହିଛି ପରା ସେଇ ଅପୂର୍ବ ଅନବଦ୍ୟ ମୁହୂର୍ତ୍ତଟି ପାଇଁ ? ବ୍ଲଡ୍‌ପ୍ରେସର୍, ଡାଏବେଟିସ୍, ବାର୍ଦ୍ଧକ୍ୟ, କିଛିହେଲେ ମୋ ବାଟ ଓଗାଳିବା ଉଚିତ ନୁହେଁ । ସେଇ ପୁରସ୍କାର ଓ ପୁରସ୍କାର-ପ୍ରତ୍ୟାଖ୍ୟାନର ସୁଖ ମୋର ନ୍ୟୂନତମ ପାଉଣା ।

କିନ୍ତୁ ବିଦାୟ ସମ୍ବର୍ଦ୍ଧନାରେ ଜଣେ ହେଲେ କହିଲେ ନାହିଁ ତ — ସାର୍ 'ବାଣୀସଂତାନ' ଆପଣଙ୍କୁ ଅପେକ୍ଷା କରି ରହିଛି ? ହ୍ୟାପ ଖୋସାମତିଆଙ୍କ ଦଳ ! ସାର୍‌ଙ୍କ ହାତରେ ଯାହା କିଛି କ୍ଷମତା ଥିଲା, ପ୍ରଫେସର୍ ହିସାବରେ, ସେତକ ତ ଖତମ୍ ହୋଇଯାଇଛି । ଚାଟୁବାଣୀର ଦରକାର କ'ଣ ଆଉ ? ରାମହରିବାବୁ ନିରାଶ ହେଲେ ଏବଂ ଭାବିଲେ ଯେ ସତ୍‌ସତିକା କବି ଜଣେ ଥିଲେ ନିଶ୍ଚୟ ତା' ପାଟିରୁ ବାହାରିଥାଆନ୍ତା ସେଭଳି କିଛି । ସାରଥି ବେହେରା ପରି ଗୋଟାଏ କବି ଥିଲେ ହୁଏତ । ସେଇ ତ ପ୍ରଥମେ କହିଥିଲା ସେ କଥା, ସେଦିନର ଲାଇବ୍ରେରୀ ବୈଠକରେ ?

ଉହୁଁ, ପହିଲେ କହିଥିଲା ଆଉ ଜଣେ । ଆଉ ଜଣେ କବି, ପ୍ରତିଷ୍ଠିତ କବି, ଯାହାକୁ ମୁଇଁ ଆଣିଦେଇଛି ତା'ର ସ୍ୱପ୍ନଲଭ୍ୟ ପୁରସ୍କାର । ସେଇ ମୋର ଅନୁଗତା କଲିକତିଆଣୀ ଶୈଳଜା ପଣ୍ଡା । ଧ୍ୟାତ୍, କେବେଠୁଁ ଭାବୁଛି ତା' ପାଖକୁ ଖଣ୍ଡେ ଚିଠି ଲେଖିବି ବୋଲି, କିନ୍ତୁ ଲେଖି ହେଉନି । ହେଲେ ତା'ର କ'ଣ ହୋଇଛି ? କ'ଣ ଏମିତି ଛେନାଗୁଡ଼ ସମାଜସେବା କରୁଛି ଯେ ତା'ର ସମୟ ଅଣ୍ଟୁ ନାହିଁ ଖଣ୍ଡେ ଚିଠି ଲେଖିବାପାଇଁ ତା'ର ଗୁରୁଙ୍କ ପାଖକୁ ? ନ୍ୟାଯ୍ୟ ଅଭିମାନକୁ ଆହ୍ୱାନ କଲେ ରାମହରିବାବୁ ଏବଂ କହିଲେ ଯେ ସେଇ ଆଗେ ଚିଠି ଖଣ୍ଡେ ଦେଉ...

ବିଦାୟ ସମ୍ବର୍ଦ୍ଧନାର ପରବର୍ତ୍ତୀ ଦିନଗୁଡ଼ାକ ଅଧିକରୁ ଅଧିକ ବିରକ୍ତିକର ମନେହେଲା । ମିଥ୍ୟାଚାରୀ ସଂସାରର ଲୋକଗୁଡ଼ାକ ଏତେ ମିଥ୍ୟାବାଦୀ ବୋଲି ତାଙ୍କର ଧାରଣା ନ ଥିଲା । ତରୁଣ କବି ସାଗର ନାୟକ ଏବଂ ବରିଷ୍ଠ ଗାଳ୍ପିକ ଗଜାନନ ଷଡ଼ଙ୍ଗୀ, ଦିହେଁ ତାଙ୍କ ପାଖକୁ ଆସି ପ୍ରସ୍ତାବ ଦେଇଥିଲେ ଯେ ସାର୍, ଆପଣଙ୍କର ଯଦି ଅମତ ନ ଥାଏ, ଆମେ ଆପଣଙ୍କର ଷଷ୍ଠିପୂର୍ତ୍ତି ଉପଲକ୍ଷ୍ୟରେ ଗୋଟାଏ ବିରାଟ ସଭାର ଆୟୋଜନ କରିବୁ । ଆପଣଙ୍କୁ ଷାଠିଏ ପୂରିଲା ପୂର୍ବରୁ ଗୋଟାଏ ସ୍ମରଣିକା ପ୍ରକାଶ କରିବୁ, ଯେଉଁଥିରେ ରାଜ୍ୟ ତଥା ଦେଶର ବଛାବଛା ଗୁଣୀଜ୍ଞାନୀ ଲୋକଙ୍କଠାରୁ ଲେଖା ସଂଗ୍ରହ କରିବୁ ଆପଣଙ୍କ ସାହିତ୍ୟକୃତି ସମ୍ପର୍କରେ । କିନ୍ତୁ କୁଆଡ଼େ ଗଲା ସେଇ ବିରାଟ ସଭା ? କାହିଁ ସ୍ମରଣିକା ? ଶୁଣାଯାଏ ଯେ ସାଗର ନାୟକ ଦିଲ୍ଲୀର କୋଉ ପବ୍ଲିସିଂ ହାଉସ୍‌ରେ ଚାକିରି କଲାଣି ଏବଂ ଗୋଟାଏ ପଞ୍ଜାବୀ ଝିଅକୁ ବାହା ହୋଇ ସେଇଠି ବସା ବାନ୍ଧିଛି ଏବଂ ଗଜାନନ ଷଡ଼ଙ୍ଗୀଙ୍କର ପତ୍ତା ନାହିଁ, ଯଦିଓ ତାଙ୍କର ଲମ୍ବା ଲମ୍ବା ଗପସବୁ ବାହାରୁଛି ଏଠିକାର ପତ୍ର ପତ୍ରିକାରେ ।

ସେମିତି ୟୁନିଭର୍ସିଟିର ଦି'ଜଣ ଟୋକାଟୋକୀ ମୋତେ ଧମକେଇଲା ପରି କହିଥିଲେ ଯେ, 'ଆମେ' ଗବେଷଣା କରିବୁ ଆପଣଙ୍କ ଉପରେ ଏବଂ ଥିସିସ୍‌ର ନାଆଁ ହେବ ''ରାମହରି ଦାସ : ବିଶ୍ୱ ମିଷ୍ଟିକ୍ କବିତାରେ ଏକ ନୂତନ ସ୍ୱର'' । କିନ୍ତୁ କାହାନ୍ତି ସେମାନେ ? କ'ଣ ଗବେଷଣା କରୁ କରୁ କୋଉ ମିଷ୍ଟିକ୍ ମିଳନରେ ଜଡ଼ିତ ହୋଇପଡ଼ିଲେ ପରସ୍ପର ସହିତ ଏବଂ ଭୁଲିଗଲେ ଗୋଟାଏ ଛାର ଡକ୍ଟରେଟ୍ କରିବା କଥା ? ହ୍ୟାପ ଯେତେକ ଭଣ୍ଡ...ଖାଲି ଭଣ୍ଡ ନୁହେଁ, ନିପଟ ଛେରୁଆ—ସାହସ ହେଲା ନାହିଁ ରାମହରି ଦାସଙ୍କ ସାହିତ୍ୟ ଭିତରେ ପଶିବାପାଇଁ । ଟୁ ହେଲ୍ ଉଇଥ୍ ଦେମ୍ !

ହେଲେ ରିଟାୟାର୍ କଲା ପରେ ତାଙ୍କ 'ନିଃସଙ୍ଗତା' ମାଡ଼ିପଡ଼ିଲା ଅନ୍ୟମାନଙ୍କୁ । କେତେ ସୁପାରିଶ ଶୁଣିବାକୁ ପଡ଼ିଲା ତଥାକଥିତ ବନ୍ଧୁମାନଙ୍କଠାରୁ । ସାରଙ୍ଗ ପାତ୍ର (ବର୍ତ୍ତମାନ ସେ ଭାରତର ଅନ୍ୟତମ ତୁଙ୍ଗ ଶିଳ୍ପପତି) ତ କହିଲା ଯେ ସାର୍, ମୁଁ ଆପଣଙ୍କ ପାଇଁ ଗୋଟାଏ ପୂରା ଘର ଛାଡ଼ି ଦେଇପାରିବି, କ୍ୟାପିଟାଲ୍‌ରେ ହେଉ ବା କଟକରେ ଅଥବା ନୂଆଦିଲ୍ଲୀରେ ଏବଂ ଆପଣ ଆପଣଙ୍କର ସମସ୍ତ ଚିଡ଼ିଆଖାନାକୁ ମଧ୍ୟ ସେଠିକି ଉଠେଇ ନେଇପାରିବେ । ଏଣେ ସମ୍ପର୍କୀୟମାନେ ପ୍ରସ୍ତାବ କଲେ ଯେ ତାଙ୍କର କେହି ପୁତୁରା ଭଣଜା ଆସି ରହନ୍ତୁ ତାଙ୍କ ପାଖରେ, ବିପଦ ଆପଦରେ ସାହାଯ୍ୟ ହେବାଲାଗି । ସାନଭାଇ ଭଜହରିର ବାଲୁଙ୍ଗା ପୁଅ ବିନୋଦ ନିଜେ ଆସି ଲାଗିଥିଲା ତାଙ୍କ ସାଙ୍ଗରେ—"ବଡ଼ବାପା, ମୋର ଖାଲି ଖଟଟିଏ ଆଉ ଟେବୁଲ୍-ଚେୟାର୍ ଦରକାର । ଆଉ କିଛି ଲୋଡ଼ା ନାହିଁ । ଆପଣ ତ ନିଜେ ଗୋଟାଏ ଏନ୍‌ସାଇକ୍ଲୋପେଡ଼ିଆ !" କିନ୍ତୁ ରାମହରିବାବୁ ଅଡ଼ି ବସିଲେ ଯେ ସେ କେଉଁଠିକି ହେଲେ ଯିବାକୁ ଚାହାନ୍ତି ନାହିଁ ଏବଂ ଚାହାନ୍ତି ନାହିଁ ଯେ କେହି ଆସି ରହିବେ ତାଙ୍କ ପାଖରେ ଏବଂ ଅଯଥାରେ ଦୁଃଖ ପାଇବେ । ଭାଗ୍ୟକୁ ତାଙ୍କର କଲ୍‌ଭର୍ଟ୍‌ରେ ଡୁଳେଇପଡ଼ିବା କଥାଟା ପ୍ରଘଟ ହୋଇ ନ ଥିଲା । ନ ହେଲେ ହୁଏତ ସେ ବାଧ୍ୟ ହୋଇଥାଆନ୍ତେ ସେମାନଙ୍କ କଥା ମାନିବାଲାଗି ।

ଏଣୁକରି ସେ ରହିବାକୁ ଲାଗିଲେ କ୍ୟାପିଟାଲ୍‌ର ଦକ୍ଷିଣପୂର୍ବ ଉପକଣ୍ଠରେ ଥିବା ତାଙ୍କର ନୂଆ ଘରେ, ଯାହାର ଫାଟକରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି ଇଂରେଜୀରେ — ରାମହରି ଦାସ । ଆଗକୁ ପଛକୁ ଆଉ କିଛି ପଦପଦବୀ କି ବୃତ୍ତିବ୍ୟବସାୟର ଉଲ୍ଲେଖ ନାହିଁ । ସ୍ୱନାମଧନ୍ୟ ରାମହରି ଦାସକୁ କିଏ ନ ଜାଣେ ? ଏବଂ ଯିଏ ନ ଜାଣେ ତା' ସାଙ୍ଗରେ ମୋର ସମ୍ପର୍କ କଅଣ ? ସେ କାହିଁକି ଆସିବ ମୋ ଘରକୁ ? ହେଲେ ତା' ତଳକୁ କଳାପଟାରେ ଲେଖା ହୋଇଥିବା ସେଇ ଚେତାବନୀ — "କୁକୁର ପ୍ରତି ସାବଧାନ ।" ତେଣୁ ସମ୍ପର୍କର ଦାବୀ କରିବାକୁ ଚାହୁଁଥିବା ଲୋକମାନେ ମଧ୍ୟ ତାଙ୍କ ସତର ନମ୍ବର 'ଜୟନ୍ତୀ ନଗର'ଠାରୁ ଦୂରେଇ ରହିଲେ ।

'ନମସ୍କାର, ସାର୍ !' ଖାଲି ଏଇ ପଦକ ତଥାପି ଶୁଣିବାକୁ ମିଳେ ରାସ୍ତାଘାଟରେ ଚାଲିଲାବେଳେ । ମଧ୍ୟ ବିଭିନ୍ନ ସଭାସମିତିରେ ଯେଉଁଠିକି ସେ ଗଡ଼ିପଡ଼ନ୍ତି ଅକାଳେ ସକାଳେ । କିନ୍ତୁ କ୍ରମଶଃ ଏକ ଭୟାବହ ଧାରଣା ଉପୁନ୍ନ ହେଲା ତାଙ୍କ ମନରେ । ଯେ 'ସାର୍' ପଦର ସ୍ୱର ବଦଳିଯାଇଛି ଏବଂ ତାଙ୍କୁ ଯେଉଁ ସମ୍ମାନ ଦିଆଯାଉଛି

ଆଜିକାଲି, ଯଥା ସଭାଗୃହର ଆଗଧାଡ଼ିରେ ବସିବାପାଇଁ ଡାକି ନିଆଯାଉଛି କିମ୍ବା ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରଣ କରାଯାଉଛି, ତା'ର କାରଣ କେବଳ ଏତିକି ଯେ ସେ ବରିଷ୍ଠ । ଅନ୍ୟ ଅର୍ଥରେ ବୁଢ଼ା । ବୁଢ଼ାମାନଙ୍କୁ ସମ୍ମାନ ଦେବା ହେଉଛି ଏକ ବିଶିଷ୍ଟ ଭାରତୀୟ ପରମ୍ପରା । ସେହି ପରମ୍ପରା ହେତୁ ରାମହରି ଦାସ ନମସ୍ୟ । ତା'ଛଡ଼ା ସେ କବିତା ଲେଖୁଥିଲେ, ଅତଏବ ସେ ଜଣେ ବୁଢ଼ା କବି ।

କେହି ହେଲେ ସାର୍‌ଙ୍କୁ ପଚାରୁ ନାହାନ୍ତି ତାଙ୍କ ସଦ୍ୟତମ କବିତାବହି ବିଷୟରେ କିମ୍ବା ପଚାରୁ ନାହିଁ ଯେ ଆପଣଙ୍କର କୌଣସି କବିତା କାହିଁକି ଆଖିରେ ପଡୁ ନାହିଁ ଆଜିକାଲି । ସତେକି ସେମାନେ ଧରି ନେଇଛନ୍ତି ଯେ ସାର୍ ନିଷ୍କ୍ରିୟ ହୋଇଗଲେଣି । ସ୍ୱାଭାବିକ ।

ଏମିତି ଲୁପ୍ତ ହୋଇଯିବ କବି ରାମହରି ଦାସ । ନଟ୍ ଉଇଥ୍ ଏ ବ୍ୟାଂଗ୍, ବଟ୍ ଏ ହୁଇମ୍ପର୍ (not with a bang, but a whimper) । ଫୁସ୍‌କିଯାଇ ପବନରେ କିମ୍ବା କୁଉଁକିନି ହୋଇ ଅନ୍ଧାରରେ ।

ନା !! ବ୍ୟାଂଗ୍ ଚାହି । ଏକ ବିରାଟ ଆୱାଜ୍ ଶୁଣାଯିବ, ଶୁଣାଯିବା ଉଚିତ, ରାମହରି ଦାସ ନାମକ ଏକ ବିରାଟ ସ୍ତମ୍ଭ ଟଳିପଡ଼ିଲା ପୂର୍ବରୁ । ତାହାହିଁ ସୃଷ୍ଟିର ନିୟମ । ତାହାହିଁ ସ୍ୱାଭାବିକ ।

ରାମହରି ଦାସ ହେବ ଦେଶର ପରବର୍ତ୍ତୀ 'ବାଣୀସଂତାନ' । ହେଲେ ସେ ତା'କୁ ପ୍ରତ୍ୟାଖ୍ୟାନ କରିବ । ଦେଶର ସର୍ବଶ୍ରେଷ୍ଠ ସାହିତ୍ୟ ସମ୍ମାନ, ଯାହାକୁ ତିନିବର୍ଷରେ ଥରେ ଦିଆଯାଏ, କେବଳ ଜଣେ ମାତ୍ର ଭାରତୀୟ ନାଗରିକଙ୍କୁ ଯେ ବାଣୀଙ୍କ ବରପୁତ୍ର କି ବରପୁତ୍ରୀ ହେବାର ଯୋଗ୍ୟ ଏବଂ ଭାରତ ବାହାରୁ ଜଣେ ନୋବେଲ୍ ପ୍ରାଇଜ୍ ବିଜେତା କିମ୍ବା ସେହି ପ୍ରକାର ପ୍ରଖ୍ୟାତ ଲେଖକଙ୍କୁ ନିମନ୍ତ୍ରଣ କରାଯାଏ, ପୁରସ୍କାରଟିକୁ ଉକ୍ତ ସନ୍ତାନ ହାତକୁ ବଢ଼େଇ ଦେବାପାଇଁ, ସେ ସେହି ପୁରସ୍କାରକୁ 'ଛିଃ' କରିଦେବ । ଜଣେଇଦେବ ଯେ ତା'ର ସାହିତ୍ୟ ତମର ଏଇ ମିଥ୍ୟାଚାରୀ ଲୋକଦେଖାଣିଆ ପ୍ରେମଜୁଡୁବୁଡୁ ସାହିତ୍ୟର ଅନେକ ଅନେକ ଉର୍ଦ୍ଧ୍ୱରେ । ଅତଏବ ଧନ୍ୟବାଦ, କ୍ଷମା କରିବେ...

ଆଃ ! ସେଇ ହେବ ଠିକଣା ଆୱାଜ୍ । ଯାହା ମୋର ପ୍ରାପ୍ୟ । ନ ହେଲେ ଏମିତି ଚାଲିଯିବ ଦିନ ପରେ ଦିନ । ଆଲୀର କାନରେ ଘାଆ ହେବ ଓ ମୁଁ ତା'ର ଚିକିତ୍ସାପାଇଁ ଦୌଡ଼ିବି ଚିହ୍ନା ଡାକ୍ତର ପାଖକୁ । ପୁଣି ଗୋଟାଏ ବଡ଼ ମାଛ ଗିଳିଦେବ ଗୋଟାଏ 'ବ୍ଲାକ୍ ମଲ୍‌ଲୀ' କିମ୍ବା ସେହି ଜାତିର ଛୋଟ

ମାଛକୁ ଏବଂ ମୁଁ ଠିକ୍ କରିପାରିବି ନାହିଁ କେଉଁ ଦୁର୍ବୃତ୍ତ ଏଇ କାଣ୍ଡ କରିଛି, ତେଣୁ ତା'କୁ ନିକାଳିବାକୁ ପଡ଼ିବ ମୋ ଆକୁଆରିୟମ୍‌ରୁ । ସର୍ଦ୍ଦାରର ସେକ୍ସଲୀଳା ଦେଖି ଦେଖି ଚିଡ଼ି ମାଡ଼ିବ ଏବଂ ବେଳେବେଳେ ମନେହେବ ଆଜି ରାତିରେ ତା'କୁ ହଲାଲ୍ କରି 'ରୋଗନ୍ ଜୋଷ୍' ଖାଇବାପାଇଁ, ଯଦିଓ ମୁଁ ମାଛ ମାଂସ ଛାଡ଼ିଦେଇଛି କେବେଠୁଁ ଏବଂ ସେହି ଭୟାବହ ପଦ କେଇଟା ଶୁଣିବାକୁ ମିଳିବ କେଉଁ ଦୟାବିଗଳିତ କଣ୍ଠରୁ —"ସାର୍ ନମସ୍କାର । ଭଲ ଅଛନ୍ତି ?"

କିନ୍ତୁ କେଉଁଠି କେମିତି ଉଠେଇବି ସେଇ ଆୱାଜ୍ ? କିଏ ମୋତେ ଆଣିଦେବ ସେଇ ଲୀଳାକମଳ, ଯାହାକୁ ମୁଁ ମୁଠେଇ ଧରିବି ଆଉ ଦଳିଚକଟି ଫିଙ୍ଗିଦେବି ତଳକୁ ?

ପୁଣି ଗୁଡ଼ିଏ କବିତା ଲେଖି ଛପେଇବି ପତ୍ରପତ୍ରିକାରେ ? ୟା'କୁ ତା'କୁ ଅନୁରୋଧ କରିବି ନୂଆ କବିତା କବିତାକୁ ଅଧିକରୁ ଅଧିକ ଅନୁବାଦ କରିବାକୁ, ରିଭିଉ କରିବାକୁ, ଆଉ ତା'ର ବାନା ଉଡ଼େଇବାକୁ ବାଣୀ ମହଲରେ ? ଲେଖିବି କି ଆମେରିକାନ୍ ବନ୍ଧୁ ଆଶ୍ଲିଙ୍କ ପାଖକୁ ? ଲେଖିବି କି ଜାପାନର ୟାମାଗୁଚିଙ୍କ ପାଖକୁ, ଯାହାଙ୍କ ସାଙ୍ଗରେ ବ୍ୟାଂଗ୍‌କକ୍‌ର ଗୋଟିଏ ସମ୍ମିଳନୀରେ ଦେଖା ହୋଇଥିଲା ଏବଂ ଯେ ମୋର କବିତାକୁ 'ଜେନ୍' ତତ୍ତ୍ୱ ଉପରେ ଆଧାରିତ ଜାପାନୀ କବିତା ସାଙ୍ଗରେ ତୁଳନା କରିଥିଲେ, କାରଣ ସେଥିରେ ଉଭା ଯେତିକି, ପୋତା ତା'ଠାରୁ ଅନେକ ଅନେକ ଅଧିକ ? ନ ହେଲେ ଲେଖିବି କି 'ବାଣୀସଂତାନ' ଡକ୍ଟର ରଞ୍ଜନ ଶ୍ରୀବାସ୍ତବଙ୍କ ପାଖକୁ, ଯାହାଙ୍କ ପାଖକୁ ଥରେ ଲେଖିଥିଲି ଯେ ମୋ ନାଆଁ ଉଠେଇବେ ନାହିଁ 'ଗଂଗୋତ୍ରୀ' ପାଇଁ, ଯେ ... କ'ଣ ଲେଖିବି ?

ରାମହରିବାବୁ କଳାପରି କିଛି ହେଲେ କରିପାରିଲେ ନାହିଁ । ଖାଲି କାଁଭାଁ କେଇଟା ନୂଆ କବିତା ଲେଖି ଛପେଇଲେ । କୁଶଳ ସମ୍ଭାଷଣ ଜଣାଇଲେ କେତେଜଣ ବିଦେଶୀ ବନ୍ଧୁଙ୍କୁ । ପୂର୍ବାପେକ୍ଷା ଅଧିକ ଯିବାକୁ ଲାଗିଲେ କ୍ୟାପିଟାଲ୍‌ରେ ଅନୁଷ୍ଠିତ ସାହିତ୍ୟିକ ସଭାସମିତିକୁ, ଯେପରିକି ଲୋକେ ତାଙ୍କର ଅନବଦ୍ଦମିତ ବ୍ୟକ୍ତିତ୍ୱକୁ ପ୍ରତ୍ୟକ୍ଷରେ ଦେଖିବେ ଏବଂ ବୁଝିବେ ଯେ 'ସାର୍, ଭଲ ଅଛନ୍ତି ?' ଜାତୀୟ ପ୍ରଶ୍ନ ପଚାରିବା ନିତାନ୍ତ ଅବାନ୍ତର ଏବଂ ନିଜକୁ କହିଲେ ଯେ ଏହାଠାରୁ ବେଶୀ କିଛି କରିବା ଏକାନ୍ତ ଅନୁଚିତ । ...ମୁଁ ରାମା ଦାମା ଶାମା ନୁହେଁ କି ଶୈଳଜା ପଣ୍ଡା ନୁହେଁ ଯେ ମାତି ଯାଇପାରିବ ନିଜକୁ ପ୍ରଚାର କରିବା ଦିଗରେ । ମୋର ଗୋଟାଏ ଆତ୍ମସମ୍ମାନ ଅଛି । ଯାହାକି ଅର୍ଡ଼ିନାରୀ ଗାଆଣ କି ଭାଟଙ୍କଠାରୁ ଯଥେଷ୍ଟ ଉର୍ଦ୍ଧ୍ୱରେ ।

ଶୈଳଜ୍ଞା ପଣ୍ଡା ! ତା'କୁଇ ମୁଁ ଉପରକୁ ଉଠେଇଛି । ଗୁରୁ ହିସାବରେ ଯାହା କରିବା କଥା ତା'ଠାରୁ ଅନେକ ବେଶୀ ଏବଂ ସେଇ ନିଜେ ତ କହିଥିଲା ମୋତେ ଯେ ଯଦି କୌଣସି ପୁରସ୍କାର ମିଳିବା କଥା ମୋ ଭଳି ଜଣେ କବିଙ୍କୁ, ତା'ହେଲେ ସିଏ ହେଉଛି 'ବାଣୀସନ୍ତାନ' ପୁରସ୍କାର ? ତା'ହେଲେ ସିଏ କାହିଁକି ଲାଗିପଡ଼ିବ ନାହିଁ ମୋ ପାଇଁ ?

କିନ୍ତୁ ମୂର୍ଖ ଲାଗିପଡ଼ିଛି ଗୋଟାଏ ବାଜେ କାମରେ । କୁଆଡ଼େ କଲିକତାର ଯେତେକ ସ୍ଲମ୍‌କୁ ସଲଖେଇଦେବ, ଆଉ ସେମାନଙ୍କୁ ତାଙ୍କର ନ୍ୟାଯ୍ୟ ମାନବିକ ଅଧିକାର ଆଣିଦେବ ! ଏବେ ତା'ର ଗୋଟାଏ ଫଟୋ ବାହାରିଥିଲା କଲିକତାର ଷ୍ଟେଟ୍‌ସ୍‌ମ୍ୟାନ୍‌ରେ । ପାଖରେ କଲିକତାର ନୂଆ ମେୟର୍, ଯେ କି ପ୍ରତିଶ୍ରୁତି ଦେଇଛନ୍ତି... ଅଗଡ଼ମ୍ ବଗଡ଼ମ୍ । ଶାଳୀକୁ ଏ ବୁଦ୍ଧି କିଏ ଦେଲା ?

ଏହିପରି କଟିବାକୁ ଲାଗିଲା ଦିନ ପରେ ଦିନ । ରାମହରିବାବୁ ନିହାତି ବୁଢ଼ା ଦେଖାଗଲେ ତାଙ୍କ ବୟସ ଅନୁପାତରେ ଏବଂ ଥରେ ଯେତେବେଳେ ତାଙ୍କୁ ଡକାଗଲା 'ନବନୀତ' ନାମକ ସାରସ୍ୱତ ଅନୁଷ୍ଠାନ ତରଫରୁ, ଗୋଟାଏ ଉପାୟନ ଗ୍ରହଣ କରିବାପାଇଁ— ପୁରସ୍କାର ନୁହେଁ, ଉପାୟନ—ଯାହାକି ବରିଷ୍ଠ ଅର୍ଥାତ୍ ବୃଦ୍ଧ କଳାକାରମାନଙ୍କୁ ଦିଆଯାଏ, ସେ ଚିହିଁକି ଉଠିଲେ ଆମନ୍ତ୍ରଣ କରିବାକୁ ଆସିଥିବା ଲୋକଟା ଉପରେ ଏବଂ କେତୁଟା ଖରାପ ଶବ୍ଦ ପ୍ରୟୋଗ କଲେ, ତା'କୁ ତଡ଼ିବାଲାଗି । ଯେଉଁଥିପାଇଁ ସେ ପରେ ପସ୍ତେଇ ହେଲେ ।

ପରବର୍ତ୍ତୀ 'ବାଣୀସଂତାନ' ବଛା ହେବାକୁ ଆଉ ବର୍ଷେ ଉପରେ ଅଛି । ଶୈଳଜା ଇତିମଧ୍ୟରେ ଖଣ୍ଡେ ଅଧେ ଚିଠି ଦେଇଛି, କିନ୍ତୁ ସେଥିରେ ଖାଲି ତା'ର ସମାଜସେବା କଥା । ହେଲେ ମଝିରେ ମଝିରେ ସୂଚନା ଦେଇଛି ତା'ର 'ସିକ୍ରେଟ୍' ବିଷୟରେ । ଲେଖିଛି — ସାର୍, ଦୟାକରି ମୋତେ ଅନୁମତି ଦେବେ ତା'କୁ ସଁପିଦେଇ ଆସିବାପାଇଁ ଆପଣଙ୍କୁ । ରାମହରିବାବୁ ତା'ର ପ୍ରତ୍ୟେକ ଚିଠିକୁ ରାଗିମାଗି ଛିଣ୍ଡେଇଦେଇଛନ୍ତି ।

ବାଆଷଠି ବର୍ଷ ପୂରିବାର କେଇଦିନ ପୂର୍ବରୁ ସେ ହଠାତ୍ ଟଳିପଡ଼ିଲେ ତାଙ୍କ ଦାଣ୍ଡଘରେ । କେବଳ ଆଲୀ ସେହି ପତନର ସାକ୍ଷୀ ହୋଇଥିଲା ଏବଂ ଭାଉ ଭାଉ ହୋଇ ପୃଥିବୀ କମ୍ପେଇଦେଲା, ଅଚେତ ଖାମିନ୍ଦକୁ ଚେତା କରାଇବାଲାଗି । ସର୍ଭାଣ୍ଟସ୍ କ୍ୱାଟର୍ସରୁ ଗୋବିନ୍ଦ ଦୌଡ଼ିଆସିଲା କ'ଣ ହେଲା ବୋଲି ଏବଂ ଡାକ୍ତରଙ୍କୁ ଫୋନ୍ କଲା ସାହେବଙ୍କ ଅବସ୍ଥା ଦେଖି । ଡାକ୍ତର ରଜନୀ ରାଉତ ବିନା ଦ୍ୱିଧାରେ ଘୋଷଣା କଲେ ଯେ ତା' ସାହେବଙ୍କୁ 'ଷ୍ଟ୍ରୋକ୍' ହୋଇଛି ଏବଂ ତୁରନ୍ତ ତାଙ୍କୁ ଗୋଟାଏ ନର୍ସିଂ ହୋମ୍‌କୁ ନେଇଯିବାର ବ୍ୟବସ୍ଥା କଲେ ।

ଯଥାକ୍ରମେ ଖବର ଫଉଲିଗଲା ଚାରିଆଡ଼େ ଏବଂ ବିଭିନ୍ନ ଲୋକ ତାଙ୍କୁ 'ଗେଟ୍ ୱେଲ୍' କାର୍ଡ଼ ପଠେଇଲେ, ତାଙ୍କ ସହିତ ଦେଖା କରି ନ ପାରି । ଯାହା ହେଉ ପଞ୍ଚମ ଦିନ ବେଳକୁ ତାଙ୍କର ଚେତା ଆସିଲା ଏବଂ ତାଙ୍କ ଓଠରେ ଯତ୍‌ସାମାନ୍ୟ ହସ ଚହଟିଲା, ଯେତେବେଳେ ସେ ଦେଖିଲେ ଯେ ଶୈଳଜା ବସିଛି ତାଙ୍କ ଆଖି ସାମ୍ନାରେ । ସେଇଠୁଁ ସେ କହିଲେ ଖନି ଖନି କଣ୍ଠରେ—

"ମୁଁ ଚାହୁଁଥିଲି...ଅନେକ ଦିନ ହେବ ଚାହୁଁଥିଲି...ତମକୁ ଥରେ ସ୍ୱପ୍ନ ବି' ଦେଖିଥିଲି...

ଶୈଳଜାର ଆଖିରେ ଲୁହ ଭରିଗଲା ।

ଶୈଳଜାର ଅଶ୍ରୁପ୍ରବଣତାରେ କେବଳ ଦୁଃଖ ନ ଥିଲା, ସାର୍‌ଙ୍କର ଏଭଳି ଦୟନୀୟ ଅବସ୍ଥା ଦେଖି । ତା'ଠାରୁ ଅଧିକ ଥିଲା ତା'ର ଆତ୍ମଗ୍ଲାନି । କାରଣ ସେ ବି' ଗୋଟାଏ ସ୍ୱପ୍ନ ଦେଖିଥିଲା ଏଠିକି ଆସିବା ପୂର୍ବରୁ । ରାମହରିବାବୁଙ୍କ ଷ୍ଟ୍ରୋକ୍ ଓ ସଂଜ୍ଞାହୀନତା ବିଷୟରେ ସେ ଯେଉଁ ଓଡ଼ିଆ ଭଦ୍ରଲୋକଙ୍କଠାରୁ ଶୁଣିଲା କଲିକତାରେ, ସେ କଥାଟାକୁ କେମିତି ଭାବରେ କହିଲେ କେଜାଣି, ସେଥିରୁ ତା' ମନରେ ପାପ ଛୁଇଁଲା ଏବଂ ତହିଁରୁ ଉଦ୍ଭୂତ ହୋଇଥିଲା ତା'ର ସେଇ ଭୟାବହ ସ୍ୱପ୍ନ । ... ସାର୍ ନାହାନ୍ତି । ମରଶରୀର ଛାଡ଼ି ଚାଲିଯାଇଛନ୍ତି ଏବଂ ପଛରେ ପଡ଼ିରହିଛି ତାଙ୍କର ଅଦ୍ଭୁତ-ସୁନ୍ଦର କାବ୍ୟକବିତାର ଅବଦାନ, ଯାହାକୁ ଆମ ସଂସାରର ଇତର ଜନତା ବୁଝିଲା ନାହିଁ କି ବୁଝିବାକୁ ଚେଷ୍ଟା କଲା ନାହିଁ । କିନ୍ତୁ ବୁଝିବ ଭବିଷ୍ୟତ । ହେଲେ ତା'ର ଦାୟିତ୍ୱ ନେବ କିଏ ? କିଏ ତା'କୁ ଉଚିତ ଭାବରେ ଉପସ୍ଥାପିତ କରିବ ଭବିଷ୍ୟତ ଆଗରେ ? ସାର୍ ଏକୁଟିଆ । ଏକେ ସ୍ତ୍ରୀପିଲା ନାହାନ୍ତି । ଜ୍ଞାତିକୁଟୁମ୍ବଙ୍କ ମଧ୍ୟରୁ ବି' କେହି ତାଙ୍କ ବିଶେଷ ନିଜର ନୁହେଁ, ଯାହା ତାଙ୍କ କଥାରୁ ଜଣାପଡ଼େ ଏବଂ ପାଠକପାଠିକାମାନେ ମଧ୍ୟ କେହି ତାଙ୍କୁ ପଚାରିଲେ ନାହିଁ । ସତକଥା କହିବାକୁ ଗଲେ କିଏ ତାଙ୍କୁ ବୁଝିଛି ଯେ, ମୋ ଛଡ଼ା ? ତେଣୁ ଶୈଳଜା ପଣ୍ଡା ତାଙ୍କ ସ୍ମୃତି ତଥା କାବ୍ୟସମ୍ଭାରକୁ ସାଇତି ରଖିଛି । ଗୋଟାଏ ଲାଇବ୍ରେରୀସମେତ ସ୍ତୂପ ଅଥବା ମନ୍ଦିର ତୋଳିଛି । ସାର୍ ଗର୍ଭଗୃହରେ ଚକାମାଡ଼ି ବସିଛନ୍ତି ବୁଦ୍ଧଙ୍କ ପରି । ଚିକିଚିକି ତାମ୍ରବର୍ଣ୍ଣ ବୁଦ୍ଧ । ଗୋଲାକାର ବିରାଟ ହଲ୍‌ର ଚାରି ଦିଗରେ ବହି । ସାର୍ କ'ଣ ଏତେ ବହି ଲେଖିଥିଲେ ? ନା ଯେ, କିନ୍ତୁ ସେ ଯାହା ଲେଖିଥାଆନ୍ତେ କିନ୍ତୁ ଲେଖିପାରି ନାହାନ୍ତି, ତା' ବି' ଏଇଠି ଅଛି । ଶୈଳ ପରିବ୍ରାଜକମାନଙ୍କୁ ଚିହ୍ନେଇଦେଉଛି ଗୋଟି ଗୋଟି କରି ଏବଂ ତା'ର ତାତ୍ପର୍ଯ୍ୟ ବୁଝେଇଦେଉଛି । ତା'ପରେ ସେ ସେମାନଙ୍କୁ ନେଇଯାଉଛି ସେଇ ବୁଦ୍ଧମୂର୍ତ୍ତି ଆଡ଼କୁ, ମାନେ ସାର୍‌ଙ୍କ ନିକଟକୁ ।

ପରିବ୍ରାଜକ ବିଗ୍ରହକୁ ସଭକ୍ତି ପ୍ରଣାମ କରୁଛି ଏବଂ ଗର୍ବ ଓ ଗୌରବରେ ଫୁଲିଉଠୁଛି ଶୈଳଜାର ଛାତି । ମୋରି ଯୋଗୁଁ ତାଙ୍କୁ ମିଳିଲା ଏହିଭଳି ସମ୍ମାନ ! ଏହା ହିଁ ମୁଁ ଚାହୁଁଥିଲି...

ହେ ଭଗବାନ୍ ! କାହିଁକି ମୁଁ ଏମିତିକା ସ୍ୱପ୍ନ ଦେଖିଲି ? ଅଥଚ ସାର୍ ଯେଉଁ ସ୍ୱପ୍ନ ଦେଖିଥିବେ ମୋତେ ନେଇ, ସେଥିରେ ସେ ମୋର ସାହଚର୍ଯ୍ୟ ଚାହୁଁଥିବେ, ମୋତେ ଲୋଡୁଥିବେ, ମୋ ହାତ ଧରି ଫେରିଆସିବାକୁ ଚାହୁଁଥିବେ ବାଣୀଜଗତକୁ, ତାଙ୍କ ରୋଗବଇରାଗକୁ ପଛରେ ପକେଇ । ଆଉ ମୁଁ ଅଲକ୍ଷଣୀ, ତାଙ୍କୁ ଏଇ ସାହଚର୍ଯ୍ୟ ଦେଲି ମୋ ସ୍ୱପ୍ନରେ ! ଏମିତି ଉଠେଇ ଆଣିଲି ତାଙ୍କ ରୋଗଶଯ୍ୟାରୁ !

ଛାଡ଼ଃ ! ଶୈଳଜା ଲୁହ ପୋଛିଲା । ସ୍ୱପ୍ନକୁ ମାର ଗୋଲି । ସେ ସତସତିକା ଫେରି ଆସିଛନ୍ତି । ଖନି ଖନି ହେଲେ ମଧ କଥା କହୁଛନ୍ତି । ହସ ବି' ଫୁଟିଉଠୁଛି ତାଙ୍କ ଓଠରେ । ତା'ର ଅର୍ଥ, ଭଗବାନ୍ ଶୁଣିଛନ୍ତି ମୋ ମନ ଗହୀରର ଡାକ, ସ୍ୱପ୍ନର ମିଛକୁ ଅମାନ୍ୟ କରି । ଧନ୍ୟବାଦ, ଧନ୍ୟବାଦ ତମକୁ । କୋଟି କୋଟି ଜୁହାର ।

ସେଇଠୁଁ ଶୈଳଜା ସ୍ଥିର କଲା ସେ କରିବ, ଯାହା ସେ କରିବ କି ନାହିଁ ବୋଲି ଦୋ'ଦୋ'ପାଞ୍ଚ ହେଉଥିଲା । 'ଅହଲ୍ୟା' କାବ୍ୟଟି ଅସମ୍ପୂର୍ଣ୍ଣ ହେଲେ ମଧ ସେ ତା'କୁ ସାଙ୍ଗରେ ନେଇ ଆସିଥିଲା ସାର୍‌ଙ୍କୁ ଦେଖେଇବ ବୋଲି, ଯଦି ସେ ତା'କୁ ପଢ଼ିବାର ଅବସ୍ଥାରେ ଥାଆନ୍ତି । ବର୍ତ୍ତମାନ ସେ ସ୍ଥିର କଲା ଯେ ସେ କେବଳ ତା'କୁ ଦେଖେଇବ ନାହିଁ, ତା'କୁ ସଁପିଦେବ ତାଙ୍କ ହାତରେ । କହିବ ଏଇ ହେଉଛି ମୋ ସିକ୍ରେଟ୍, ମୁଁ ଯାହାର ଉଲ୍ଲେଖ କରିଥିଲି ମୋ ଚିଠିରେ । "ଏଉଟି ଆପଣଙ୍କର । ଆପଣଙ୍କ ଉଦ୍ଦେଶ୍ୟରେ ବହିଟିକୁ ଉତ୍ସର୍ଗ କରିବି, ଯାହା ଆଜିଯାଏଁ କରିପାରି ନ ଥିଲି । କିନ୍ତୁ ଖାଲି ତା' ନୁହେଁ, ଇଏ ହେଉଛି ମୋ ଅନ୍ତରର ନୈବେଦ୍ୟ ଆପଣଙ୍କ ପାଇଁ । ଆପଣଙ୍କଠାରୁ ଯାହା ପାଇଛି ମୋ ଜୀବନରେ, ତା'ର ସାମାନ୍ୟତମ ଅଙ୍ଗୀକାର ମାତ୍ର ।

ତା' ପରଦିନ ସେ ଏଇ ଭାବଧାରାକୁ କୌଣସିମତେ ପ୍ରକାଶ କଲା, ମୁହଁ ତଳକୁ ଉପରକୁ କରି, ଅଳ୍ପବହୁତ ଲାଜଲାଜ ହୋଇ ଏବଂ କ୍ଷମା ମାଗିଲା ପରି, ରାମହରିବାବୁଙ୍କଠାରୁ ବିଦାୟ ନେଲା ପୂର୍ବରୁ ଏବଂ ତିନିଶହ ଦଶ ପୃଷ୍ଠାର ଅସମ୍ପୂର୍ଣ୍ଣ କାବ୍ୟଟିକୁ ବଢ଼େଇଦେଲା ତାଙ୍କ ହାତକୁ । ସେଇଠୁଁ କହିଲା —

"ୟା'କୁ ଦୟାକରି ପଢ଼ିବେ ସାର୍ । କିନ୍ତୁ ଏଇକ୍ଷଣି ନୁହେଁ, ଯେତେବେଳେ ଆପଣ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ସାରିଥିବେ । ମୁଁ ଗାଆଁକୁ ଯାଉଛି, ବୋଉକୁ

ଦେଖି ନାହିଁ ଅନେକଦିନ ହେଲା । ତା'ପରେ କେତେଜଣ ବନ୍ଧୁବାନ୍ଧବଙ୍କ ଘରକୁ ଯିବି କିଛି ଦିନପାଇଁ । ପ୍ରାୟ ତିନି ସପ୍ତାହ ପରେ ଫେରିଯିବି କଲିକତାକୁ, ଏଇ ବାଟ ଦେଇ । ମୋର ପୂର୍ଣ୍ଣ ବିଶ୍ୱାସ, ଆପଣ ପୂର୍ବାବସ୍ଥାକୁ ଫେରି ଆସିଥିବେ ସେତେବେଳକୁ ଏବଂ ଆପଣ ମୋତେ କହିବେ ମୋର ଅଧିକାର ଅଛି କି ନାହିଁ, ଯୋଗ୍ୟତା ଅଛି କି ନାହିଁ, ଏଭଳି ଗୋଟିଏ ମହାକାବ୍ୟରେ ହାତ ଦେବାପାଇଁ । କହିବେ ନା ?..."

ଶୈଳ ବୁଝିପାରିଲା ନାହିଁ ସାର୍ ତା' ଆଡ଼କୁ ଅନେଇଛନ୍ତି କାହିଁକି, ଜଳଜଳ ହୋଇ । ସତେକି କୋଉ ଜ୍ୟୋତିର୍ମୟ ପିଣ୍ଡୁଳା ଦିଶିଯାଉଛି ତାଙ୍କୁ ।

X X X ପାଲିକିଂପୁର ଏବଂ ବିଭିନ୍ନ ଜ୍ଞାତିକୁଟୁମ୍ବଙ୍କ ଘରେ ତିନି ସପ୍ତାହ ବିତେଇ ପୁଣି ସାର୍‌ଙ୍କୁ ଭେଟିଲାବେଳେ ଶୈଳ ଖୁସି ହେଲା ଦେଖି ଯେ ସାର୍ ଆଶାତୀତ ଭାବରେ ସତେଜ ଦିଶୁଛନ୍ତି । ସତେକି ଏଇ ରୋଗ ତାଙ୍କୁ ପଛକୁ ଫେରାଇଦେଇଥିଲା, କେବଳ ଶକ୍ତି ସଞ୍ଚୟ ପୂର୍ବକ ଗୋଟାଏ ବିରାଟ ଲମ୍ଫ ଦେବାଲାଗି ।

ବର୍ତ୍ତମାନ ବି' ସେ ଜଳଜଳ ହୋଇ ଅନେଇଛନ୍ତି ତା'କୁ । କିନ୍ତୁ ଚାହାଣିରେ ବିସ୍ମୟ ନାହିଁ । ସଂଶୟ ନାହିଁ । କେବଳ ଏକ ଆକ୍ରମକ ଜ୍ୟୋତିର ପ୍ରସାର ।

"ପଢ଼ିଲି ତମର କାବ୍ୟ । ଭଲ ହୋଇଛି ।"

"ଥ୍ୟାଙ୍କ୍ସ । କିନ୍ତୁ ତା'କୁ କେବେ ସାରିବି କେମିତି ସାରିବି ବୋଲି ଭାବିପାରୁ ନାହିଁ ।"

"ଯା'ରି ଭିତରେ ସାରିଦିଅ । ଯେମିତିକି ତା'କୁ ବିଚାରକୁ ନିଆଯାଇପାରିବ ଆସନ୍ତା 'ବାଣୀସଂତାନ' ପୁରସ୍କାର ପାଇଁ —"

"ସାର୍ ?? କ'ଣ କହୁଛନ୍ତି ଆପଣ ?" ଶୈଳର ମୁହଁରେ ଘୋର ଆଶ୍ଚର୍ଯ୍ୟର ଭାବ । ମୁଁ, ଆଉ ବାଣୀସଂତାନ ! ତା'ଛଡ଼ା ମୁଁ ଆଉ ନାହିଁ ସେ ରାଜ୍ୟରେ କହିଲେ ଚଳେ । ଖାଲି ଏଇ 'ଅହଲ୍ୟା' ମୋତେ ବାଧ କରୁଛି ଯାହା..."

"ତମର ବ୍ୟସ୍ତ ହେବା ଦରକାର ନାହିଁ । ସମ୍ପୂର୍ଣ୍ଣ କାବ୍ୟଟି ମୋର ହେବ, ତମର ନୁହେଁ । ତମେ ମୋତେ ଦେଇସାରିଛ ବହିଟିକୁ ।"

"ହଁ, ହଁ, ଅବଶ୍ୟ..."

"ଆରେ, ସେଇ ହେଉଛି ମୋର ଗୁରୁଦକ୍ଷିଣା ପରା ? ଏତିକି ବୁଝୁ ନାହଁ ?" ରାମହରିବାବୁ ଉଚ୍ଚ ସ୍ୱରରେ ହସିବାକୁ ଲାଗିଲେ । "ଏକଲବ୍ୟ ତାଙ୍କ ହାତର ଆଙ୍ଗୁଠି କାଟିକରି ଦେଇଥିଲେ ତାଙ୍କ ଗୁରୁଙ୍କୁ, ଆଉ ତମେ ଏତିକି ଦେଇପାରିବ ନାହିଁ ମୋତେ ? ବହି ଛପା ହେବ ଏଇ ବର୍ଷ ଭିତରେ, ରଚୟିତା ଶ୍ରୀ ରାମହରି ଦାସ...ହୋଃ, ହୋଃ...ଚିନ୍ତା ନାହିଁ, ମୁଁ ତମ କାବ୍ୟକୁ ଏମିତି ବାଗେଇଦେବି

ମୋର ସ୍ପେଶାଲ୍ ମିଷ୍ଟିକ୍ ଟଚ୍ ଦେଇ ଯେ କାହାରି କିଛି ସନ୍ଦେହ ରହିବ ନାହିଁ । କିନ୍ତୁ ତମେ ଯା'କୁ ଲେଖୁଛ ବୋଲି କାହାରିକୁ ଜଣାଇ ନାହଁ ତ, ମୋ ଛଡ଼ା ?''

ଶୈଳ ନୀରବରେ ମୁଣ୍ଡ ହଲାଇଲା ଯେ ଆଉ କେହି ଜାଣନ୍ତି ନାହିଁ ଏ ବିଷୟରେ । ହେଲେ ତା'ର ମନେ ହେଲା ଯେ ଯେଉଁ ବୁଦ୍ଧଦେବତାଙ୍କୁ ତା'ର ମନ୍ଦିରରେ ବସେଇଥିଲା, ସେ ହଠାତ୍ ପାଗଳ ହୋଇ ଉଠିଛନ୍ତି । କିନ୍ତୁ କାହିଁକି ? ଆଉ ତାଙ୍କ ଦେହର ତମ୍ବାରଙ୍ଗଟା ଏମିତି ବିନ୍ଧୁଛି କାହିଁକି ଆଖିକୁ ?

କିନ୍ତୁ 'ଆଲୀ'ର ହାବଭାବରେ ତିଳେହେଲେ ବିସ୍ମୟ ନ ଥିଲା । ସେ ଆରାମରେ ସେ ଦି'ଜଣଙ୍କ ପାଖରେ ବସି ରହି ତା' ଲାଙ୍ଗୁଡ଼ ଝାଡୁଥିଲା । ଖାମିନ୍ଦଙ୍କ ଚାହାଣିରେ ଥିବା ଅସ୍ୱାଭାବିକ ଜ୍ୟୋତି, କିମ୍ବା ଅତିଥିଙ୍କ ଚାହାଣିରେ ଥିବା ଘନଘୋର କୁହୁଡ଼ି, କେଉଁଥିରେ ହେଲେ ତା'ର ଭାବାନ୍ତର ଆସୁ ନ ଥିଲା । ସତେକି ସେ ଦେଖି ଦେଖି ଥୋବରା ହୋଇଗଲାଣି ଏଇ ବିଚିତ୍ର ମଣିଷଗୁଡ଼ାଙ୍କ କାରବାର !

## ଷୋଳ

ନିଉୟର୍କର ଅନ୍ୟତମ ପଞ୍ଚତାରକା ହୋଟେଲ୍‌ର ଗୋଟିଏ ସ୍ୱତନ୍ତ୍ର ବିଶ୍ରାମାଳାପର ପ୍ରକୋଷ୍ଠ । ନୋବେଲ୍ ପୁରସ୍କାର ବିଜେତା ସୁପ୍ରସିଦ୍ଧ ଆମେରିକାନ୍ କବି ମାଇକେଲ୍ ଗୋଲ୍‌ଡ୍‌ଷ୍ଟିନ୍ ଗୋଟିଏ ଇଂରେଜୀ କବିତା ପୁସ୍ତକର ପୃଷ୍ଠା ଓଲଟାଉଛନ୍ତି । ହେଲେ ବାରମ୍ବାର ଅଟକିଯାଉଛନ୍ତି କିଛି ସମୟ ଏବଂ ମୁରକିହସା ଦେଉଛନ୍ତି ।

କେ-ବି-କେ ତାଙ୍କର ସ୍ମିତହାସକୁ ଲକ୍ଷ୍ୟ କରି ଭାବିଲେ ଯେ ତାଙ୍କର ଉଦ୍ଦେଶ୍ୟ ସଫଳ ହୋଇଛି । ହସରେ ବିଦ୍ରୂପ ଥିଲାପରି ଲାଗୁ ନାହିଁ । କବିଙ୍କ କବିତା ନିଶ୍ଚୟ ତାଙ୍କ ମନକୁ ଛୁଇଁଛି । ମାଷ୍ଟର୍ ହିସାବରେ ତା'କୁ ଶହେରୁ କେତେ ମାର୍କ ଦେବେ, ସେ କଥା ଭିନ୍ନ ।

ଗୋଲ୍‌ଡ୍‌ଷ୍ଟିନ୍ ସାଂପେନ୍ ଗ୍ଲାସ୍‌ରେ ଆଉ ଗୋଟିଏ ଚୁମୁକି ଦେଇ ତାଙ୍କ ବହଳ ନିଶକୁ ରୁମାଲ୍‌ରେ ପୋଛିଆଣିଲେ ଏବଂ ମୁଣ୍ଡ ଟେକିଲେ । ସେଇଠୁଁ ପଦୁଟିଏ ତାଙ୍କ ମୁହଁରୁ ବାହାରିଲା—

''ଇଣ୍ଟରେଷ୍ଟିଂ !''

କେ-ବି-କେ ଆମେରିକାନ୍‌ମାନଙ୍କୁ ଜାଣନ୍ତି । ତଥା ସେମାନଙ୍କ କଥାକୁହା ଭାଷାର ଚାତୁରୀ । ସେହେତୁ ସେ ନିରାଶ ହେଲେ । ସତେକି ଅତିଥିଙ୍କୁ ବିଶେଷ ଭଲ ଲାଗୁ ନାହିଁ ହୋଷ୍ଟେସ୍‌ଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ବ୍ୟଞ୍ଜନ, ହେଲେ ସେ ଏଇ ଅପ୍ରିୟ ସତ୍ୟଟିକୁ ପ୍ରକାଶ କରିପାରୁ ନାହାନ୍ତି । ତେଣୁ କହିଲେ କ'ଣ

ନା ବସ୍ତୁଟି ଇଣ୍ଟରେଷ୍ଟିଂ, ଅଭିନବ । ଠିକ୍ ଅଛି । ମାତ୍ର ଏଇ ଗୋଟିଏ ବିଦେଶୀ କବି ନାହାନ୍ତି ମୋ ନଜରରେ, ଏବଂ ମୋ ଜଣାଶୁଣା ମହଲର ଘେରରେ ଯେ କି ମୋ କାମରେ ଆସିପାରିବେ । ମାନେ ଶୈଳକୁ ଉଦ୍ଧାର କରିବା ଦିଗରେ ସାହାଯ୍ୟ କରିପାରିବେ । କିନ୍ତୁ ମୁଁ କଥାଟାକୁ ମାନି ନେବି ନାହିଁ ଏମିତି, ତମ ଘରେ ତମେ ଯେତେ .ବଡ଼ ହୁଅ ପଛେ । ମୁଁ ତମକୁ ଜେରା କରିବି । ଏହିଭାବରେ ସେ ପଚାରି ବସିଲେ ନୋବେଲ୍ ପୁରସ୍କାର ବିଜେତା ବରିଷ୍ଠ କବିଙ୍କୁ,

''ତା'ମାନେ ସାର୍, ଆପଣଙ୍କୁ ବିଶେଷ ଭଲ ଲାଗିଲା ନାହିଁ, ଏଇ କବିତାଗୁଡ଼ାକ — ନା କଅଣ ?''

ଗୋଲ୍‌ଡଷ୍ଟିନ୍ ସ୍ଥିର ଚାହାଣିରେ ଅନେଇଲେ କେ-ବି-କେଙ୍କୁ । ଗୋଟିଏ ନିର୍ବୋଧ ଛାତ୍ରକୁ ଚିହ୍ନିରଖିଲାପରି । ସେଇଠୁଁ କହିଲେ ଦୃଢ଼ କଣ୍ଠରେ,

''ଶୁଣନ୍ତୁ ମିଷ୍ଟର୍ କର୍ । ଆପଣଙ୍କୁ ବେଶୀ କିଛି ବୁଝେଇବାକୁ ପଡ଼ିବ ନାହିଁ, କାରଣ ଆପଣ ଏକଦା ନୀଲ୍‌ଙ୍କୁ ବାହା ହୋଇଥିଲେ । ସେ ନିଜେ କବି ନ ଥିଲେ ଅବଶ୍ୟ, କିନ୍ତୁ କବିତ୍ୱର ଅତୀତ, ବର୍ତ୍ତମାନ, ଭବିଷ୍ୟତ, ସବୁ ତାଙ୍କୁ ଜଣା ଥିଲା...'' । ଗୋଲ୍ଡଷ୍ଟିନ୍ ଅନ୍ୟମନସ୍କ ହୋଇଗଲେ ନୀଲ୍‌ଙ୍କ ଆତିଥ୍ୟକୁ ମନେପକେଇ, ଯେତେବେଳେ ସେ ଦିଲ୍ଲୀକୁ ଯାଇଥିଲେ କିଛିଦିନପାଇଁ ଏବଂ ରାଷ୍ଟ୍ରପତି ଭବନରେ ରହୁଥିଲେ ମଧ ରାଜଧାନୀର ବଛା ବଛା ସଂସ୍କୃତିପ୍ରେମୀଙ୍କ ସହିତ ଯଥାଯୋଗ୍ୟ ସମ୍ପର୍କ ସ୍ଥାପିତ କରିପାରିଥିଲେ । ଏବଂ ସେମାନଙ୍କ ମଧରେ ଏଇ ନୀଲ୍ ନାମକ ଭଦ୍ରମହିଳା ଜଣଙ୍କୁ ଏକ ବିଶେଷ ଉଚ୍ଚ ଆସନରେ ନ ବସେଇ ରହିପାରି ନ ଥିଲେ । ଯାହାହେଉ ନୀଲ୍‌ଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ବିରାଟ ଦୀର୍ଘନିଃଶ୍ୱାସ ଛାଡ଼ି ସେ କହିବାକୁ ଲାଗିଲେ,

''କବିତାରେ ଭଲମନ୍ଦ ବାଛିବସିବା ନିରର୍ଥକ । ଏବଂ ମୁଁ ଯଦି କୁହେ ମୋତେ ଭଲଲାଗୁଛି, ଆପଣ ହୁଏତ ଭାବିବେ ଯେ ମୁଁ କବିତାକୁ ଭଲ ବୋଲି କହୁଛି । କିନ୍ତୁ ମୋର ଉଦ୍ଦେଶ୍ୟ ତା' ନୁହେଁ । ତେଣୁ ମୁଁ ଜାଣିଶୁଣି ତାକୁ ଇଣ୍ଟରେଷ୍ଟିଂ ବୋଲି କହିଲି...''

କେ-ବି-କେ ଓଠ ଚିପି ନୀରବ ରହିଲେ । ଯେତେକ ଅଗଡ଼ମ୍ ବଗଡ଼ମ୍, ଯାହା ତମ ସାହିତ୍ୟବାଲାଙ୍କ ତୁଣ୍ଡରୁ ବାହାରେ ଖାସ୍ ଆମକୁ ଭୂତେଇବାପାଇଁ ! କିନ୍ତୁ ଅତିଥିଙ୍କର ବକ୍ତବ୍ୟ ସରି ନ ଥିଲା । କହିଲେ,

''ଇଣ୍ଟରେଷ୍ଟିଂର ମାନେ ମୋତେ ଗୁଡ଼ିଏ ଶବ୍ଦ, ଛବି ଓ ସେଥିର ଭାବ ପୁରୁଣା ଘଷରା ଲାଗିଲା ନାହିଁ । ଥରେ ପଢ଼ି ଆଉଥରେ ପଢ଼ିବାକୁ ଇଚ୍ଛା ହେଲା । ବେଳେବେଳେ ମୋର ମନେହେଲା ଯେ ରୋମାଣ୍ଟିକ୍ କବିମାନଙ୍କର

ରାଜକୁମାର ଜନ୍ କୀଟ୍‌ସ୍ ଯେଉଁ ସ୍ୱପ୍ନ ଦେଖିଥିଲେ, ଯାହାକୁ ମୁଁ କହିବି ଦୁଃସ୍ୱପ୍ନ — ଏକ୍ସକିଉଜ୍ ମି ! — ତା'କୁ ଭଦ୍ରମହିଳା ଅଦ୍ଭୁତ ଭାବରେ ଆଦରି ନେଇଛନ୍ତି । ସତେକି ସେ ନିଜେ ପୋକଟିଏ ହୋଇ ଚାଲୁଛନ୍ତି, ଡଗଡଗ ହୋଇ, କୋଉ ଶାଗୁଆ ପତର ଉପରେ, ଆଉ ତା'କୁ ଅଥାନ ଥାନରେ ଶୁଙ୍ଘିବାର ଆନନ୍ଦ ପାଉଛନ୍ତି, ଯାହାକି ଅସାଧାରଣ...''

''ଆଇ ସି'', କେ-ବି-କେ କହିଲେ, ଯଦିଓ କିଛି ହେଲେ ଦୃଶ୍ୟ ହେଲା ନାହିଁ ତାଙ୍କୁ ।

''ଅସାଧାରଣର ଅର୍ଥ ଏହି ଯେ ଏଭଳି ସାହିତ୍ୟ ଆଖିରେ ପଡ଼ିବ । ପଡ଼ିବା ଉଚିତ'' ଗୋଲ୍ଡଷ୍ଟିନ୍ ଆଉ ଥରେ ଚୁମୁକି ଦେଲେ ତାଙ୍କ ପାନପାତ୍ରରେ ଏବଂ ତାଙ୍କ ନିଶ ପୋଛିଲେ, ''ଯଥାକ୍ରମେ ସିଏ ଘଷରା ହେବା ପୂର୍ବରୁ । ଅତଏବ କବିଙ୍କୁ କୁହ ଆହୁରି ଲେଖନ୍ତୁ ଏମିତି । ଆହୁରି ଆହୁରି ...ଯେମିତିକି କୀଟ୍‌ସ୍ ନିଶ୍ଚିହ୍ନ ହୋଇଯିବେ ସବୁଦିନପାଇଁ ... ହୋଃ-ହୋଃ- ଏକ୍ସକିଉଜ୍ ମି...''

''ମୁଁ ତ ସେଇଆ କହୁଛି ସାର୍ !''

''ହ୍ୱାଟ୍ ଡୁ ୟୁ ମିନ୍ ?''

''ମାନେ ସେ ଆହୁରି ଆହୁରି ଲେଖନ୍ତୁ । ଅଥଚ...''

କେ-ବି-କେ ନିଜକୁ ସଂଯତ କରିନେଲେ । ଥାଉ । ୟାଙ୍କୁ ଜଣାଇବା ଦରକାର କ'ଣ ଯେ କବି ଲେଖାଲେଖି ଛାଡ଼ିଦେଇ କୋଉ ଅପରଛନିଆ ପିଲାର ବଥ ଚିପୁଛନ୍ତି ? ଏବଂ ତାଙ୍କ ଜ୍ୟୋତିର୍ମୟୀ ଝିଅ କାନ୍ଦୁଛି, ଆଉ ଅଧିଆ ପଡ଼ିଛି ତା' ଉପକାରୀ ଅଙ୍କଲ୍‌ର ଦରବାରରେ ? ବିଶ୍ୱବିଖ୍ୟାତ କବି ସ୍ପଷ୍ଟ ଭାବରେ କହିଛନ୍ତି ଯେ ଶୈଳ କବିର ଆହୁରି ଆହୁରି ଲେଖିବା ଦରକାର ଏହିପ୍ରକାର କବିତା । ସେଇ କ'ଣ ଯଥେଷ୍ଟ ନୁହେଁ ? ସେଇଠୁଁ ସେ ଗୋଟାଏ ପ୍ରସ୍ତାବ କଲେ, ସାହସର ସହିତ,

''ସାର୍, ଯଦି ମୋତେ ଅନୁମତି ଦିଅନ୍ତେ, ମୁଁ ଗୋଟାଏ ଅନୁରୋଧ କରିପାରେ କି ? ଆଶା କରେ ତା'କୁ ମୋର ଧୃଷ୍ଟତା ବୋଲି ଭାବିବେ ନାହିଁ —''

ଗୋଲ୍ଡଷ୍ଟିନ୍ ଆଖି ମିଟିମିଟି କଲେ । କୌତୂହଳର ପାରା ବଢ଼ିଗଲେ ଯେଉଁ ଲକ୍ଷଣ ଦେଖାଯାଏ ତାଙ୍କ ମୁହଁରେ ।

ଯାହା କହିଲେ ଆପଣ, ସେଇଆକୁ ନେଇ ଦି'ପଦ ଲେଖିବେ କି 'ଲିଟରାରୀ କ୍ରାଇଟିରିଅନ୍'ରେ ? ଆଇ ଶାଲ୍ ବି ଗ୍ରେଟ୍‌ଫୁଲ୍ ଟୁ ୟୁ—''

କେତେ ଲେଖକ ଲେଖିକା ତାଙ୍କୁ ଅନୁରୋଧ କରି ଆସିଛନ୍ତି ତାଙ୍କ ଜୀବନରେ, ସେମାନଙ୍କ ଲେଖାର ଗିଭିଉପାଇଁ ଏବଂ ଅଧିକାଂଶ ଅନୁରୋଧକୁ ସେ ସ୍ୱାର୍ଥପ୍ରଣୋଦିତ ବୋଲି ଗ୍ରାହ୍ୟ କରି ନାହାନ୍ତି, ହସି ହସି 'ଦେଖିବା' ବୋଲି ଗୋଟାଏ ଅନିର୍ଦ୍ଦିଷ୍ଟ ଆଶ୍ୱାସନା ଦେଲେ ମଧ୍ୟ । କିନ୍ତୁ ଇଏ ହେଉଛି ସ୍ୱର୍ଗୀୟା ଡିଅର୍ ନୀଲ୍‌ଙ୍କ ଭଉଣୀର କବିତା । ଯାହା ମୋତେ ଜଣେଇଛନ୍ତି ଏଇ ଭଦ୍ରଲୋକ । କେଇଟା ହୋଷ୍ଟେସ୍ ଅଛନ୍ତି ନୀଲ୍‌ଙ୍କ ପରି ? ନା କେଇଟା ଇଣ୍ଡିଆନ୍ ? ତା'ଛଡ଼ା କୀଟ୍‌ସ୍‌ଙ୍କୁ ପାଠ ପଢ଼ୁଉଥିବା ଏଇ ସ୍ତ୍ରୀଲୋକଟିର କବିତା ପ୍ରକୃତରେ ଇଣ୍ଟରେଷ୍ଟିଂ ନୁହେଁ କି ? ବିଶ୍ୱବିଖ୍ୟାତ କବି ସହାସ୍ୟବଦନରେ ହାତ ଉପରକୁ ଉଠେଇଲେ, 'ତଥାସ୍ତୁ'ର ମୁଦ୍ରାରେ କହିଲେ,

"ମୁଁ ଲେଖିବି । ଲେଖିବି..."

କେ-ବି-କେ କୃତକୃତ୍ୟ ହେଲେ ।

ତନୁ କେବେଠୁଁ ତା'ର ହୋମ୍‌ୱାର୍କ୍ କରି ସାରିଲାଣି । କହିବାକୁ ଗଲେ ଉଚିତରୁ ଅଧିକ । କାରଣ ସେ କେବଳ ଶୈଳଜା ପଣ୍ଡାଙ୍କ ଇଂରାଜୀରେ ଅନୂଦିତ ସମସ୍ତ କବିତା ପୁସ୍ତକଙ୍କୁ ତାଙ୍କ ପାଖକୁ ପଠେଇ ଦେଇଛି ନୁହେଁ, ମଧ୍ୟ ହିନ୍ଦୀ ବଙ୍ଗଳା ଆଦି ଭାରତୀୟ ଭାଷାରେ ଅନୂଦିତ କେତୋଟି ବହି, ଏପରିକି କେତୋଟି ମୌଳିକ ଓଡ଼ିଆ ରଚନା ! କେ-ବି-କେ ତା'ର ନିଷ୍ଠା ଓ ଅଧ୍ୟବସାୟରେ ମୁଗ୍ଧ ହେଲେ । ବିଦେଶରେ ଥାଇ ତା' ନିଜର ପଢ଼ାପଢ଼ି ଓ ଗବେଷଣାର ଚାପ ସତ୍ତ୍ୱେ ସେ ଭାରତରେ ଥିବା ବିଭିନ୍ନ ପ୍ରକାଶକ ଓ ବନ୍ଧୁମାନଙ୍କ ଜରିଆରେ ଏତେ କଥା କରିପାରିଲା, ପୁଣି ଏତେ ଅଳ୍ପ ସମୟ ଭିତରେ, ଏଥିରେ କିଏ ମୁଗ୍ଧ ନ ହେବ ? କିନ୍ତୁ ତା' ସାଙ୍ଗକୁ ଆଉ ଗୋଟିଏ ଭାବ ତାଙ୍କ ମନକୁ ଆକ୍ରମଣ କଲା — ଦେଖିଲୁ ତ ? ଝିଅ ବୋଲି ସିନା ଏଭଳି ସ୍ୱାର୍ଥତ୍ୟାଗ କରିପାରୁଛି ତା' ମାଆ ପାଇଁ ? ଆଉ ତୁ'ଟା ଏଡ଼େ ଅପଦାର୍ଥ ଯେ କେହି ହେଲେ ରହିନାହାନ୍ତି ତୋ' ପଛକୁ । ଆସି ବୁଢ଼ାଟିଏ ହେଲୁଣି...

ହେଲେ କେ-ବି-କେ ତା'ର ମୁକାବିଲା କରିବାକୁ ପଛେଇଲେ ନାହିଁ । କହିଲେ, ହଁ-ହଁ, ମୁଁ ଜାଣିଛି ସେକଥା, ଜାଣିଛି । କିନ୍ତୁ ମୁଁ ଏତେ ନୀଚ ନୁହେଁ ଯେ ଖାଲି ନୀଲ୍‌କୁ ଦୋଷ ଦେବି ସେଥିପାଇଁ । ମୁଁ ମଧ୍ୟ ଦାୟୀ । ହେଲେ ମୋର ଦ୍ୱିତୀୟ ସ୍ତ୍ରୀ ଡୋରାର ପ୍ରଥମ କାମ୍ୟ ହେଲା ପିଲା ଜନ୍ମକରିବା । ସେଇ ଗୋଟିଏ ବିଫଳତା ବାକୀ ଥିଲା ମୋ ଜୀବନରେ । ଦେଖିବ ମୁଁ ତା'କୁ କେମିତି ପୂରା କରିଦେଉଛି ।

...କିନ୍ତୁ ମୁଁ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ରକ୍ତସମ୍ପର୍କ ନ ଥିଲେ ସ୍ୱାର୍ଥତ୍ୟାଗ ସମ୍ଭବ ନୁହେଁ । ତନୁ ମୋ ପାଇଁ କ'ଣ କହୁନା' ? ମୋର ଝିଅ କି ଝିଆରୀ ନୁହେଁ । ତା'ର ମାଆ ସାଙ୍ଗରେ ବି' ମୋର କୋଉ ମଧୁର ସମ୍ପର୍କ ନାହିଁ ଯେ ମୁଁ ହମହମ ହେଉଛି ତା'ର ତଥାକଥିତ ମଙ୍ଗଳ କରିବାଲାଗି । ଯେତିକି ମଙ୍ଗଳ କରିବାର ଥିଲା, ତା' କରି ସାରିଲିଣି ନୀଲର ଖାତିର୍‌ରେ । ଏଇକ୍ଷଣି ଯାହା କରୁଛି ତା'ର କୌଣସି ଆବଶ୍ୟକତା ନାହିଁ । ତଥାପି ମୁଁ କରୁଛି । ଲଣ୍ଡନ୍‌ରୁ ନିଉୟର୍କ ଧାଇଁଆସୁଛି କିଛି ଗୋଟାଏ କାମର ବାହାନା କରି । ଯେମିତି ବର୍ଲିନ୍ ଯାଇଥିଲି, ଟୋକିଓ ଯାଇଥିଲି । ହାତରୁ ବି' କିଛି କମ୍ ପଇସା ଖର୍ଚ୍ଚ ହୋଇ ନାହିଁ । କିନ୍ତୁ ମୁଁ ଚାହେଁ ଶୈଳକୁ ଚିହ୍ନେଇବି ବିଶ୍ୱଦରବାରରେ । ଭାରତର ବାହାରେ ବି' ମୋର ନେଟ୍‌ୱାର୍କ ରହିଛି । ଚିହ୍ନେଇବି ଏବଂ ଠିକଣା ପତ୍ରପତ୍ରିକାରେ ଛପେଇବି କେଇଟା ରିଭିଉ, ତା' କବିତା ଉପରେ । ରିଭିଉ, ପ୍ରବନ୍ଧ, ଫିଚର ଓଗେର, ନୂତନ ଭାରତୀୟ ସାହିତ୍ୟକୁ ଚିହ୍ନେଇବା ଆଳରେ ।

କାହିଁକି, କାହିଁକି ମୁଁ ଲାଗିପଡ଼ିଛି ଏମିତି ? ଖାଲି କ'ଣ ଦୟାରେ ବିଗଳିତ ହୋଇପଡ଼ିଲି ତନୁ ପାଇଁ ? ହଁ, ଅବଶ୍ୟ କରୁଣା । ଅବଶ୍ୟ ଭଲପାଇବା, ସତେ କି ସେ ମୋ ନିଜର ଝିଅ । କିନ୍ତୁ ସର୍ବୋପରି କୁଳଭୂଷଣ୍ କରର ଜିଦ୍‌ଦି । ସେ ଯଦି ଚାହିଁଲା କିଛି ଗୋଟାଏ କାମ କରିବ, ଜିତିଲା କି କାହାକୁ ଜିତେଇଲା ପରି, ତା'ହେଲେ ସେ ତା'କୁ ଅଲ୍‌ବତ୍ କରିବ । ଇଏ ହେଉଛି ତା' ଚରିତ୍ରର ଅନ୍ୟତମ 'ଦୋଷ' । ଅତଏବ ତନୁ ଯେମିତି ଲାଗିପଡ଼ିଛି, ମୁଁ ବି' ସେମିତି ଲାଗିପଡ଼ିଛି । କିଛି ଆପତ୍ତି ଅଛି ?

ଦୁନିଆଁଯାକର ଚାପ ପଡ଼ିବ ଶୈଳ ଉପରେ, ମହାମହାରଥୀଙ୍କର ଆଡୁ । ବିଶ୍ୱବିଖ୍ୟାତ କବି, ସାମ୍ବାଦିକ, ସାହିତ୍ୟିକମାନଙ୍କଠାରୁ ଆରମ୍ଭ କରି ଇଣ୍ଡିଆର ସାହିତ୍ୟିକ ବଡ଼ବଡ଼ିଆଙ୍କ କଲମରୁ । ଏବଂ ରିଭିଉ ଇତ୍ୟାଦିର କଟିଙ୍ଗ୍ ଯାଇଁ ପହୁଞ୍ଚିବ ତା' ପାଖରେ, କେଉଁ ଶୁଭାକାଙ୍କ୍ଷୀ ତରଫରୁ । ତଥା ସିଧାସଳଖ ଖୋସାମତିଆ ଫ୍ୟାନ୍ ମେଲ୍ —'ମ୍ୟାଡ଼ାମ୍, ମୁଁ ଅଭିଭୂତ ହୋଇପଡ଼ିଲି ଆପଣଙ୍କର ଏଇ ଲେଖାଟିକୁ ପଢ଼ି । ଏମିତିକା ଆଉ କ'ଣ ବାହାରିଛି କି ଏବେ, ଯାହାକୁ ପଢ଼ି ମୁଁ ନିଜକୁ ଧନ୍ୟ ମନେ କରିବି ?

ଶୈଳ, ମୁଁ ତୁଚ୍ଛାଟାକୁ ତୋ କୁଳଭାଇନା ହୋଇ ନାହିଁ, ବୁଝିଲୁ ? ଏକେ ତୋ ଧନୁର୍ଦ୍ଧାରିଣୀ ଝିଅ, ଦୁଜେ ତୋ'ର ଜିଦିଖୋର୍ ଭାଇନା— ତୁ ଯିବୁ କୁଆଡ଼େ ? ତୋର ଆଜେବାଜେ ଅସନା କାମ ଛାଡ଼ିଦେଇ ତୁ କରିବୁ ତୋର ଯାହା କରିବା କଥା । ବାଣୀପୂଜା ।

ଏକା ମାଧିଆ ବାଇଶି ପଳ । ଖାଲି ଏଇ ଗୋଲ୍ଡଷ୍ଟିନ୍‌ଙ୍କର ଦି'ପଦ କଥା ଯେତେବେଳେ ବାହାରିବ 'ଲିଟରାରୀ କ୍ରାଇଟିରିଅନ୍'ରେ ଓ ତା'ର ପୁନର୍ମୁଦ୍ରଣ ହେବ 'ଟାଇମ୍‌ସ୍ ଅଫ୍ ଇଣ୍ଡିଆ', 'ଟେଲିଗ୍ରାଫ୍' ଆଦି ଦେଶୀ ପତ୍ରିକାରେ, ଆଉ ତୁ ଦେଖିବୁ ଯେ ଏଭଳି ଏକ ମହାମହିମ କବି ମଧ ତୋତେ ଉତ୍ସାହିତ କରୁଛନ୍ତି ଆହୁରି ଆହୁରି ଲେଖିବାପାଇଁ, ସେତେବେଳେ ତୋ ହାତରୁ କୋଉ ଗନ୍ଧିଆ ପୂଯରକ୍ତମଖା ତୂଳାଖଣ୍ଡକ ଖସିପଡ଼ିବ ନାହିଁ ? ତୋ'ର ଅନ୍ତରାତ୍ମା କାନ୍ଦିଉଠିବ ନାହିଁ କଲମ ଧରିବାକୁ ?...

ତା' ପରଦିନ କେ-ବି-କେ ତାଙ୍କ ସଦ୍ୟତମ କୃତିତ୍ୱର ଭେଟି ଦେଇ ଆସିଲେ ତନୁଶ୍ରୀଙ୍କୁ, ଯେ ଆଜିକାଲି ନିଉୟର୍କରେ ଅଛି । ଜର୍ଣ୍ଣାଲିଜ୍‌ମ୍‌ର ଡିପ୍ଲୋମା ପାଇସାରିଲା ପରେ ନିଉୟର୍କ ଟାଇମ୍‌ସ୍‌ର ଅନ୍ୟତମ ସମ୍ବାଦଦାତା ହୋଇ । ତନୁ କୁଣ୍ଢେଇ ପକେଇଲା ତା' ଅଙ୍କଲ୍‌ଙ୍କୁ । କହିଲା,

''ଅଙ୍କଲ୍, ୟୁ ଆର୍ ଗ୍ରେଟ୍ !''

''ଥ୍ୟାଙ୍କ୍ ୟୁ ।'' ତା'ପରେ କେ-ବି-କେ ବିଜୟସୂଚକ 'ଭି'ର ମୁଦ୍ରା ଦେଖେଇଲେ ତାଙ୍କ ହାତରେ । ଏବଂ ତନୁ ମଧ ଅନୁରୂପ ମୁଦ୍ରାର ଅଙ୍ଗୀକାର ଦେଲା । ଆମେ ଜିତିବା !

X X X କୋଉଠି ଥିଲା ଏତେ ଆଦର, ଏତେ ଆଗ୍ରହ, ଶୈଳଜା ପଣ୍ଡାର କବିତାକୁ ନେଇ ? ପୁଣି ଗଂଗୋତ୍ରୀର ଏତେବର୍ଷ ପରେ ? ସତେକି ନିଆଁଟା ଛପି ରହିଥିଲା ପାଉଁଶ ଭିତରେ, ଆଉ ତା'କୁ କିଏ ପଦାକୁ ନେଇଆସିଛି । ପଦାକୁ ନେଇଆସିଛି, ଆଉ ତା'କୁ ତେଜୁଛି ! ଶୈଳ ବିସ୍ମିତ ହୁଏ, ପତ୍ରପତ୍ରିକାରେ ଯେଉଁସବୁ ଚର୍ଚ୍ଚା ବାହାରୁଛି ଆଜିକାଲି ତା' କବିତାକୁ ନେଇ, ତା' ଉପରେ ଆଖି ପଡ଼ିଲାରୁ । ସାରସ୍ୱତ ପ୍ରଣତିରେ ନଇଁଆସେ ତା'ର ମଥା ।

କିନ୍ତୁ ତା'ର ଗର୍ବ ଓ ବିନୟ ଫୁଲିଉଠି ଅବିଳମ୍ବେ ସଳଖିଯାଏ ତା' ମନ ଭିତରେ । ... ଏଇକ୍ଷଣି ମୋର ଅନ୍ୟ କାମ ଅଛି, ଯାହାକି ମୋ ବଞ୍ଚିବାର ଆଧାର । ଭିନ୍ନ ଉଦ୍‌ବେଗ, ଭିନ୍ନ ଆନନ୍ଦ । ପ୍ରକୃତିର ସବୁଠୁଁ ଅନ୍ତରଙ୍ଗ, ତା'ରି କାଦୁଅ, ପାଣି, ବାଆବତାସ, କୁହାଟ ଓ କାନ୍ଦଣାକୁ ନେଇ ଲାଳିତ ପାଳିତ ହାରୁଖୁକୀଙ୍କ ଦଳ, ଯେଉଁମାନେ ବିଛେଇ ହୋଇଯାଇଛନ୍ତି କଲିକତାଯାକ, ଆଉ ଯେଉଁମାନେ ତାଙ୍କ ବଡ଼ଦିଙ୍କ ସ୍ପର୍ଶଟିକୁ ଚାହିଁବସିଛନ୍ତି, ତାଙ୍କରି ସୁଖଦୁଃଖରେ ଗଢ଼ା । ବଡ଼ଦି ଡାକ୍ତରାଣୀକୁ କହିଲେ ସେ ରାଜି ହୋଇଯିବେ । ବଡ଼ଦି କେମିଷ୍ଟକୁ କହିଲେ ସେ କେଉଁଠୁ ହେଲେ ସେଇ ଦୁର୍ଲଭ ଔଷଧଟାକୁ ଯୋଗାଡ଼ କରି ଆଣିବ । ବଡ଼ଦି କହିଲେ କର୍ପୋରେସନ୍ ଆଲୁଅ ଜଳେଇଦେବ ତାଙ୍କ ରାସ୍ତାରେ, ପଚାଗଡ଼ିଆକୁ

ପରିଷ୍କାର କରିଦେବ । ମରିବାକୁ ଫୁରୁସତ୍ କାହିଁ ଶୈଳଜାର ଯେ ସେ କୋଉ ନୂଆ କବିତା ଲେଖିବ ତା'ର ବିଦଗ୍ଧ ପାଠକପାଠିକାମାନଙ୍କୁ ଖୁସି କରିବାଲାଗି ? ତା'ଛଡ଼ା ତାଙ୍କ ଖୁସିରୁ ଯେଉଁ ଆନନ୍ଦ ମିଳିବ ମୋତେ, ତା'ଠୁ କ'ଣ ଶହେଗୁଣା ଆନନ୍ଦ ମିଳିବ ନାହିଁ, ଯେତେବେଳେ,

— ମାନିକ୍‌ତାଲା ବସ୍ତିର ମନ୍ଦିରା ସୁସ୍ଥ ହୋଇ ଉଠିବ, ଆଉ ଜଣାପଡ଼ିବ ଯେ ତା'କୁ ଏଡ଼୍‌ସ୍-ଫେଡ଼୍‌ସ୍ କିଛି ରୋଗ ହୋଇ ନାହିଁ ? କେଡ଼େ ମିଠା ଗଳା ଖଣ୍ଡେ ପାଇ ନାହିଁ ଝିଅଟା !

—ଗୋଲ୍‌ପାଡ଼ା ବସ୍ତିର ଗୋପୀଦାଦା ଫେରି ପାଇବ ତା' କୁଡ଼ିଆଖଣ୍ଡକ ସାହୁକାରର କବଳରୁ ?

—ଭୋଳା ମିଆଁ ବସ୍ତିରେ ଆଲୁଅ ଜଳିବ, ଆଉ ଖୁକୀ ବୟସର ପିଲାଗୁଡ଼ାକ ବର୍ତ୍ତିଯିବେ ଗୁଣ୍ଡାମାନଙ୍କ ଦାଉରୁ ?

—ହାରୁ ତା' ସ୍କୁଲ୍‌ରେ ପ୍ରାଇଜ୍ ପାଇବ...

—ଆଉ 'ଆମ' ବସ୍ତିରେ ପୁଣି ଶୁଣାଯିବ ସେଇ ମନମତାଣିଆ ନାଚଗୀତର ଧ୍ୱନି, ହାରୁର ସତସତିକା ବଡ଼ଦି ଚାନ୍ଦ୍‌ବଦନୀ ଫେରିଆସିବ ତା' ପାଖକୁ ଏବଂ ମୋର ପ୍ରଥମ ମନସ୍କାମନା ପୂର୍ଣ୍ଣ ହେବ ? ମାନେ ମୁଁ ମନଖୁସିରେ ତାଳ ଦେଇ ନାଚିବି ସେମାନଙ୍କ ସାଙ୍ଗରେ ?

ଯାହାହେଉ ମୋର ଆଉ ଗୋଟିଏ ରାତିରେ ଆଉ ଦି'ଧାଡ଼ି ଯୋଡ଼ି ହୋଇଯିବ, ଅହଲ୍ୟାର ଅନୁଭବକୁ ନେଇ । ଆଉ ତା'ର ପଥର ଆତ୍ମାକୁ କଲବଲ କରିବ । ଏଇ ଅଭିଶପ୍ତ ମଣିଷଙ୍କ ଲୁହ, ଝାଳ, ରକ୍ତ ଓ ବୀର୍ଯ୍ୟର ସଂଘାତ, ଯାହା ପଥରକୁ କଣା କରିଦେଉଛି, କାଟିଦେଉଛି, ଚାଞ୍ଛିଦେଉଛି, ଦିନ ପରେ ଦିନ ଏବଂ କେବେହେଲେ ତା'କୁ ନିଶ୍ଚିହ୍ନ କରିଦେବ । ଅହଲ୍ୟାକୁ ମୁକ୍ତି ଦେବ । ହେଲେ ମୁଁ ଅପେକ୍ଷା କରି ରହିବି, ବ୍ୟସ୍ତ ହେବି ନାହିଁ । ଆଜି ପାଇଁ ଏଇ ଦି'ଧାଡ଼ି ଲେଖି ହୋଇଯାଉଛି ରାତିର ନିରୋଳାରେ, ସେଇ ମୋର ସୌଭାଗ୍ୟ । ମାଆ ସରସ୍ୱତୀଙ୍କ ଆଶୀର୍ବାଦ । କିନ୍ତୁ କେଉଁ ପାଠକ-ପ୍ରକାଶକ ବୁଝିବ ତା' ମହତ୍ତ୍ୱ ? ନା, ସିଏ ଥିବ ମୋ ପାଖରେ । ସେଇ ତ ମୋ ଗୋପନ ଧନ ! କେବଳ ଆଉ ଜଣକର ଆଖି ପଡ଼ିବ ତା' ଉପରେ, ଯଥାସମୟରେ...

ଫୁଲି ଉଠିଥିବା ଗର୍ବ ଓ ବିନୟ ଏମିତି ସଳଖି ହୋଇଯାଏ ଏବଂ ବଡ଼ଦି ପୁଣି ତା' କାମରେ ଲାଗିଯାଏ ।

କିନ୍ତୁ ବେଳେବେଳେ ସମୟ ଲାଗେ ଉଦ୍‌ବେଳ ତରଙ୍ଗକୁ ଶାନ୍ତ କରିବାଲାଗି । ଯେମିତିକି ଥରେ ମିଷ୍ଟର୍ ପାରୁଲ୍ ତା'କୁ ଚମକେଇ ଦେଇଥିଲା ଷ୍ଟେଟ୍‌ସ୍‌ମ୍ୟାନ୍‌ର ଗୋଟିଏ ପୃଷ୍ଠା ବଢ଼େଇଦେଇ ତା' ହାତକୁ । ଉଲ୍ଲାସରେ ଅଣନିଃଶ୍ୱାସୀ ହୋଇ । ଆଉ କହିଲା,

"ଦେଖିଛ, ଦେଖିଛ ବଡ଼୍‌ଦି, ଏଇ ଯେଉଁ ଆର୍ଟିକଲ୍ ବାହାରିଛି ତମ ଉପରେ ? ଆଉ କେଡ଼େ ସୁନ୍ଦର ଦେଖାଯାଉଛ ତୁମେ ଏଇ ଛବିରେ, ସାକ୍ଷାତ୍ କନିଆଁଟିଏ ପରି । 'ଦି' ସାଇଲେଣ୍ଟ୍-ଜିନିୟସ୍' ...ବଡ଼୍‌ଦି, ମୁଁ ଜାଣିଛି ତମେ ଲେଖାଲେଖି କର, କ'ଣ ସବୁ ପୁରସ୍କାର ବି' ପାଇଛ, କିନ୍ତୁ ମୋତେ ଜଣା ନ ଥିଲା ତମେ ଏତେ ବଡ଼ କବି ବୋଲି..."

ନିଜର କନିଆଁ ଛବିଟିଏ କୋଉଠୁ ପହଞ୍ଚିଲା ଏଇ ଅଚିହ୍ନା ଛଦ୍ମନାମଧାରୀ 'ଜନ୍ମେଜୟ'ଙ୍କ ପାଖରେ ଏବଂ ଯାହା ଲେଖା ହୋଇଛି ତା' ବିଷୟରେ, ତାହା କେତେଦୂର ସତ କି ମିଛ ବୋଲି ଚିନ୍ତା ନ କରି ଶୈଳ ମୁଠେଇ ଧରିଲା ପାରୁଲ୍‌ର ହାତକୁ ଏବଂ କ୍ଷଣକପାଇଁ ତା'ର ମନେହେଲା ଯେ ଏଇ ଜନ୍ମେଜୟ ଜଣକ ଆସିଛନ୍ତି ମାଆ ସରସ୍ୱତୀଙ୍କ ପାଖରୁ ଏବଂ ତା'କୁ ଡାକୁଛନ୍ତି— ଆ' ମ, ଆ', ଅନେକ ଦିନ ହେଲାଣି ଦୂରେଇ ରହିଛୁ ମୋଠୁଁ । ବାଧିଲାଣି ମୋତେ...

...ନାଇଁ ଲୋ ମାଆ, ଦୂରେଇ ରହିଛି କୋଉଠୁଁ ? ଅହଲ୍ୟାର ଯନ୍ତ୍ରଣା କ'ଣ ତୁ ବୁଝିପାରୁ ନାହୁଁ ? ନା ତା'ର ମୁକ୍ତିରେ ତୁ ଖୁସି ହୋଇଉଠିବୁ ନାହିଁ ? କିନ୍ତୁ ଏଇକ୍ଷଣି ନୁହେଁ ମା । ଅନେକ ଡେରି ଅଛି ସେଥିପାଇଁ । ଅନେକ ପାପର ପ୍ରାୟଶ୍ଚିତ୍ତ...

ଶୈଳର ହାତମୁଠା ସହଜେ କୋହଳ ହୋଇଆସେ ନାହିଁ ଏବଂ ପାରୁଲ୍ ମୁଗ୍ଧ ହୁଏ ବଡ଼୍‌ଦିଙ୍କର ଏଇ ନୂତନ ଭାବାକୁଳ ଶ୍ରୀମୂର୍ତ୍ତିକୁ ଦେଖି । ...ଅତି ଅଦ୍ଭୁତ ଆମର ଏଇ ବଡ଼୍‌ଦି ଜଣକ ! ଆମେ ଦୁନିଆଁ ଧାଁଧପଡ଼ କରୁ, ସେବାଶୁଶ୍ରୂଷା କରୁ, ଯେତେକ ଡାକ୍ତର, ନର୍ସ୍, ସମାଜସେବିକା ଓଗେର, କିନ୍ତୁ ବସ୍ତିବାଲାମାନେ ଚାହିଁ ରହିଥାଆନ୍ତି ଖାସ୍ ତାଙ୍କରି ମୁହଁରୁ ପଦେ ଶୁଣିବାପାଇଁ, ତାଙ୍କରି ଆଶ୍ୱାସନା ପାଇବାଲାଗି । ମଲା ପୂର୍ବରୁ ବି' ବିକଳ ହୁଅନ୍ତି ତାଙ୍କରି ହାତ ଆଉଁଶା ପାଇବାକୁ । ଏମିତି କ'ଣ ଅଛି ତାଙ୍କଠି ? ସିଏ ପୁଣି ଗୋଟାଏ 'ସାଇଲେଣ୍ଟ୍ ଜିନିୟସ୍' !

ଈର୍ଷାନ୍ୱିତ ହେଲେ ମଧ ପାରୁଲ୍ ମୁଗ୍ଧ ହୋଇ ଚାହିଁରହେ ବଡ଼୍‌ଦିଙ୍କୁ । କିନ୍ତୁ କରୁଣାମୟୀର ଭାବଦୀପ୍ତ ମୁହଁରେ ସେ ଯାହା କିଛି ଦେଖିବାକୁ ପାଏ, ସେଥିରେ ବିଷାଦ କ'ଣ କେବେହେଲେ ଛୁଏଁ ତା' ମନକୁ ? ନା ସେ ଶୁଣିପାରେ ଅହଲ୍ୟାର

ଭୟଭୀତ କାନ୍ଦଣାର ସ୍ୱର — ସତେ କ'ଣ ମୋର ବ୍ରତ ଶେଷ ହେବ, ଆଉ ମୁଁ ମୁକ୍ତ ହେବି ମୋ ପଥରପଣରୁ ?

"ପାଖ ଘରେ ସେ ଶୋଇଛନ୍ତି । ପରଦା ଆଡ଼େଇଦେଲେ ତାଙ୍କୁ ବେଶ୍ ଦେଖିହେବ । ଏପରିକି ତାଙ୍କ ଛାତିର ଉଠାପକା । କିନ୍ତୁ ଦିନେ ଯେଉଁ ସୁଖସ୍ୱପ୍ନର ପରିଚୟ ମିଳୁଥିଲା ତାଙ୍କ ଓଠରେ, ଥରେ ନୁହେଁ ଥରକୁ ଥର ଏବଂ ମୋତେ ବିଚଳିତ କରିଥିଲା, ତା'ର ଚିହ୍ନବର୍ଣ୍ଣ ନାହିଁ ଏଇକ୍ଷଣି । ତା'ର କାରଣ ବି' ମୋତେ ଜଣା ଅଛି ମିଷ୍ଟର୍ ! ...ଶୈଳ ପରଦା ଫାଙ୍କରୁ ଅନାଏ ସନାତନବାବୁଙ୍କ ଶୋଇଲା ଚେହେରାକୁ, ତା' ଅଧରାତିର ଦି'ଧାଡ଼ିଆ ଲେଖା ମଝିରେ ଏବଂ ଗୋଟାଏ ବେଦନା ଅନୁଭବ କରେ, ଯାହାକୁ ଛଟପଟ କୁହାଯିବ । ସତେକି ସେଇ ଆନ୍ଦୋଳିତ ଛାତି ମଧ ତା'ର ସ୍ପର୍ଶକୁ ଅପେକ୍ଷା କରି ରହିଛି । କହୁଛି ତା' ସ୍ୱାମୀତ୍ୱର ଅଧିକାର କେବେଠୁଁ ତୁଟିଗଲାଣି ସତ, କିନ୍ତୁ ସେ ବି' କ'ଣ ଜଣେ ଦୁଃଖୀରଙ୍କି ଦୁଃଖୀରଙ୍କି ନୁହେଁ ବସ୍ତିର ହତଭାଗାମାନଙ୍କ ପରି ? ଇଏ ବସ୍ତି ନୁହେଁ, ସିନିୟର, ଏକ୍ଜିକିଉଟିଭ୍‌ର କୋଠାଘର, ତା' ବୋଲି କ'ଣ ଶୂନ୍ୟତାର ପ୍ରବେଶ ନାହିଁ ଏଠି ? ବରଂ ବେଶି ଅଛି ଶୈଳ, ବେଶୀ ଗୁଡ଼ାଏ ଜାଗା ଥିବାରୁ ଖାଁ ଖାଁ ହେଉଛି ପରା ! ଦୟା ଆସେ ଶୈଳର ମନରେ, ଯଦିଓ ସେ ତା' ଛଟପଟକୁ ଯଥାଶୀଘ୍ର ଶାନ୍ତ କରିଦିଏ ।

...ମୁଁ ଜାଣିଛି ଗୋ ମିଷ୍ଟର୍, ଜାଣିଛି । ଚିନ୍ମୟୀଙ୍କୁ କେବେଠୁଁ ବିସର୍ଜନ ଦେଲଣି । ଆଉ ଯାଉ ନାହଁ ସେଇ ଆପାର୍ଟମେଣ୍ଟ୍‌କୁ ପ୍ରତ୍ୟେକ ଦିନ । କେଇଜଣ ବନ୍ଧୁଙ୍କୁ ନେଇଯାଉଛ କୋଉ ଅନାମଧେୟ ରେସ୍ତୋରାଁକୁ । ନ ହେଲେ ହୁଗ୍‌ଲୀ ନଈର କୂଳକୁ । ଦି'ପହରଟାରେ ସେଇଠି ଯାଇଁ ବସୁଛ କୋଉ ଗଛର ଛାଇ ତଳେ । ଆଉ ଆକାଶ ପାତାଳ ଭାବି ହେଲାପରି ମନେ ହେଉଛ । ସବୁ ଖବର ପହୁଞ୍ଚିଛି ମୋ ପାଖରେ, ଆପେ ଆପେ । କଅଣ ଏତେ ବେଶି ଭାବୁଛ ? ସନ୍ତାପ ? କେଉଁ ନୂଆ ଯୋଜନା ? ଅପରେକ ଚିନ୍ମୟୀ, ନା କମ୍ପାନୀର ପ୍ରୋଜେକ୍ଟ ?

ତମକୁ ନିଶ୍ଚୟ ବାଧୁଥିବ ମୁଁ ଯେତେବେଳେ ହସିଉଠିଲି ସେଦିନ । କହିଲ କଲିକତା ଆଉ ଭଲ ଲାଗୁ ନାହିଁ ତମକୁ । ପୁଣି ଗୋଟାଏ ନୂଆ ଅଫିସ୍ ଖୋଲୁଛି ହାଇଦ୍ରାବାଦ୍‌ରେ, ଆଉ ସେମାନେ ପ୍ରସ୍ତାବ କରୁଛନ୍ତି — । ମୁଁ ହସି ଉଠିଲି । କହିଲି — 'ଗୁଡ୍, ଭେରୀ ଗୁଡ୍ ! ତମର ଯିବା ଉଚିତ ପ୍ରମୋସନ୍‌ରେ । କିନ୍ତୁ କ୍ଷମା କରିବ, ମୁଁ ଯାଇପାରିବି ନାହିଁ ତମ ସାଙ୍ଗରେ । ତା'ର କାରଣ କ'ଣ ମୋତେ କହିବାକୁ ପଡ଼ିବ ?' ତମେ ବୁଝିଲ ଓ ଶୁଖିଲା ମୁହଁରେ କହିଲ

ଯେ ମୋତେ ବାଧ କରିବ ନାହିଁ । କିନ୍ତୁ ମୋର ବିଦ୍ରୂପ ହସ ଗଳିଯାଇଥିବ ତମ ଛାତି ଭିତରେ । ସରି, ମାଇ ଡିଅର୍ !

ଶେଷକୁ ଗଲ ନାହିଁ କୋଉଠିକି । କ'ଣ ନିଜକୁ ଶାସ୍ତି ଦେଉଛ ? ନା ଆଶା ଅଛି ଯେ କାଳକ୍ରମେ ମୁଁ ଟାଣି ହୋଇ ଆସିବି ତମ ପାଖକୁ ? ମୋ କମରାର ଆଁଲୁଅ ଲିଭେଇଦେବି, ଚୁପ୍ କରି ଲୋଟିଯିବି ତମ ପାଖରେ, ଆଉ ତମ ଛାତିରେ ହାତ ପକେଇବି ? ବିଚରା !...

ଶୈଳ ଅନୁମାନ କରେ ସେ ଶୁଖି 'ଶୁଖି ଯାଉଛନ୍ତି । ଉପରକୁ ଯେତେ ଟାଣ ଦେଖେଇଲେ ମଧ ତାଙ୍କର ପୂର୍ବର ତେଜ ଚାଲିଗଲାଣି । ଭାବେ, ଇଚ୍ଛା କଲେ ମୁଁ ତାଙ୍କୁ ଫେରାଇ ଆଣିପାରିବି । ସତକୁ ସତ ଆଲୁଅ ଲିଭେଇଦେବି ଆଉ ଚୁପ୍‌କିନି ଲୋଟିଯିବି ତାଙ୍କ ପାଖରେ । ତାଙ୍କୁ ଚମକେଇଦେବି । ସେ ଚମକି ଉଠିବେ, ବିସ୍ମୟରେ ବାଉଳା ହୋଇଉଠିବେ ଓ ତା'ପରେ — । କିନ୍ତୁ ମୁଁ କେମିତି ଭଲା କରିବି ସେ କଥା କହୁନ' ? ମୋର ମାନ ତଳକୁ ଖସିଯିବ, ସେକଥା ନୁହେଁ । କିନ୍ତୁ ଅହଲ୍ୟାର ବ୍ରତ ମାରା ହେବ ନାହିଁ ?

ହଁ, ହୁଏତ ମୁଁ ତମର ବି' ବଡ଼୍‌ଦି ହୋଇପାରିବି । ତମ କପାଳରେ ହାତ ବୁଲେଇପାରିବି । କିଛି ଆପତ୍ତି ନାହିଁ । ହଉ ସେଇଆ କରିବି, ଆଉ ଦିନେ...

କିନ୍ତୁ ଦି'ଦିନ ପରେ ସେ ଯେତେବେଳେ ତା' ରୁମ୍‌ରୁ ତାଙ୍କ ରୁମ୍‌କୁ ପଶିଆସିଲା ଆତୁର ହୋଇ, ରାତି ଦଶଟା ଏଗାରଟା ବେଳକୁ, ତା'ର କାରଣ ଭିନ୍ନ ଥିଲା । ବିଛଣାରେ ଲୋଟିପଡ଼ି ମ୍ୟାଗାଜିନ୍‌ଟିଏ ଧରି କ୍ରମଶଃ ଆଖି ବୁଜିବାକୁ ବସିଥିବା ସନାତନବାବୁ ଅବଶ୍ୟ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ପ୍ରେମବାଉଳା ହୋଇ କିଛି ଗୋଟାଏ କରିବାର ଅବକାଶ ନ ଥିଲା । ଅପରନ୍ତୁ ସେ ପ୍ରମାଦ ଗଣିଲେ, ଶୈଳର ବିକ୍ଷୁବ୍ଧ ଚେହେରା ଦେଖି । ମନେହେଲା 'ବଡ଼୍‌ଦି'କୁ କିଏ ଗୋଟାଏ ଅପମାନ ଦେଇଛି ଏବଂ ସେ ସହଜେ ତା' ସ୍ୱାମୀ ପାଖକୁ ଆସିଛି । ତେଣୁ ତାଙ୍କର କିଛି କରିବା ଦରକାର । ସେ ତତ୍‌କ୍ଷଣାତ୍ ଉଠି ବସିଲେ ଏବଂ ଶୈଳକୁ ପଚାରିଲେ, ସେ କିଛି କହିବା ପୂର୍ବରୁ —

"କ'ଣ ହେଲା ? ବସ । ବ୍ୟସ୍ତ ହୁଅ ନାହିଁ ।"

"ନା, ମୁଁ ବ୍ୟସ୍ତ ହେଉ ନାହିଁ । କିନ୍ତୁ ଗୋଟାଏ ଦୁଃସମ୍ବାଦ ଅଛି । ରାମହରିବାବୁଙ୍କୁ ଷ୍ଟ୍ରୋକ୍ ହୋଇଛି । ଅବସ୍ଥା ସାଂଘାତିକ । ମୁଁ ଯାଉଛି ସେଠିକି..."

ସନାତନବାବୁଙ୍କର ମୁହଁରେ ଚେହେରା ପୂରାପୂରି ବଦଳିଗଲା । ଉଦ୍‌ବିଗ୍ନତା ଉଭେଇଗଲା ଏବଂ ଗୋଟାଏ କଠୋର ସ୍ୱାମୀପଣର ଉଦ୍ରେକ ହେଲା । କହିଲେ,

"ଆଚ୍ଛା ? କିନ୍ତୁ ତମର ମନେ ଥିବ ତନୁ ଆସୁଛି କିଛି ଦିନ ପରେ ।"

"ଜାଣିଛି । କିନ୍ତୁ ଏଇକ୍ଷଣି ନୁହେଁ, ମାସ ଶେଷ ବେଳକୁ । ସେତେବେଳକୁ ମୁଁ ଫେରିଆସିଥିବି । ରାମହରିବାବୁ ଭଲ ହୋଇ ଆସୁଥିଲେ ଆମ ଘରକୁ ଯିବାକୁ ଭାବିଛି କିଛିଦିନ ପାଇଁ । ନ ହେଲେ..."

ସନାତନବାବୁ ବାକ୍ୟର ଅବଶିଷ୍ଟାଂଶକୁ ଧରିନେଲେ । ନ ହେଲେ ଦାହକ୍ରିୟାରେ ଯୋଗ ଦେବାକୁ ହେବ, ଶୋକ ମଧ୍ୟ ମନେଇବାକୁ ପଡ଼ିବ, କିନ୍ତୁ ତା'ପରେ ଫେରିଆସିବି । ଏଇଆ କହୁଛ ତ ? ଠିକ୍ ଅଛି, ତମ ଇଚ୍ଛା । ତମେ ନ ଥିଲେ ଯେ ତନୁର ବିଶେଷ କିଛି କ୍ଷତି ହେବ, ତା' ନୁହେଁ । ତେବେ ତମେ ତା'ର ମାଆ ଯେତେହେଲେ, ସେ ହିସାବରେ ତମକୁ ଚେତେଇଦେବା ମୋର କର୍ତ୍ତବ୍ୟ । କହିଲେ,

"ଠିକ୍ ଅଛି । ଯାହା ଉଚିତ ମନେ କରୁଛ । ଇଟ୍ ଇଜ୍ ଏଣ୍ଟାୟାର୍‌ଲି ଅପ୍ ଟୁ ୟୁ..."

ଶୈଳ ଚାଲିଗଲା ପରେ ସନାତନବାବୁଙ୍କର ଖିଆଲ୍ ହେଲା ଯେ ଭଦ୍ରତା ଖାତିର୍‌ରେ ତାଙ୍କର ଆଉ ପଦେ କହିବା ଉଚିତ ଥିଲା, ଦୁଃସମ୍ବାଦ ଶୁଣିଲା ପରେ । 'ଆଇ ଆମ୍ ସରି ଟୁ ହିଅର୍ ଇଟ୍' କିମ୍ବା ସେହିପ୍ରକାର କିଛି । ଛାଡ଼ଃ ! ଶୈଳ ବି' କୋଉ ବସିଲା ଟିକିଏ ମୋ ପାଖରେ, ମୋର ଆହା-ଚୁ'ଚୁ' ଶୁଣିବାଯାଏଁ ?

X X X ଶୈଳ ପାଖରୁ ଚିଠି ଆସିଥିଲା ଯଥାସମୟରେ ଯେ ଚିନ୍ତାର କାରଣ ନାହିଁ ଏବଂ ଘରେ ଦି'ହପ୍ତା ଖଣ୍ଡେ ରହି ଫେରିଲାବେଳକୁ ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଉଠିଥିବେ, ଏଥିରେ ସନ୍ଦେହ ନାହିଁ । ... ଅର୍ଥାତ୍ ଫେରିବା ବାଟରେ ମଧ୍ୟ ତମେ ତାଙ୍କ ସାଙ୍ଗରେ ଦେଖାକରି ଆସିବ କ୍ୟାପିଟାଲ୍‌ରେ । ତାଙ୍କର ସମ୍ପୂର୍ଣ୍ଣ ଆରୋଗ୍ୟର ଆଶ୍ୱାସନା ନେଇ ଆସିବ । ଉତ୍ତମ । ଆସି ଦ୍ୱିଗୁଣ ତେଜରେ ଲାଗିଯିବ ତମ କାମରେ । ହୁଏତ ତନୁକୁ ବି' ଡାକିନେବ ତମ ଇଲାକା ଆଉ ତମ ପ୍ରଜାମାନଙ୍କୁ ଚିହ୍ନେଇବାଲାଗି । ପୂର୍ବଥର ଯେମିତି କରିଥିଲ । ଆଉ ବିଚାରୀ ତନୁ ମୋତେ କ'ଣ କହିବ କହିବ ହୋଇ କହିପାରିଲା ନାହିଁ । କଅଣ କହିବାକୁ ଚାହୁଁଥିଲା ? ସନାତନବାବୁ ଚିଠିଟିକୁ ରଖିଦେଲେ ଯଥା ସ୍ଥାନରେ ।

ବସ୍ତୁ ହେଉ କି ଭାବ, ଜିନିଷଟାକୁ ଯଥା ସ୍ଥାନରେ ରଖିଦେବା ତାଙ୍କର ଅଭ୍ୟାସ, ଯାହାକୁ ସେ ଗୋଟାଏ ଭଲ ଅଭ୍ୟାସ ବୋଲି ଜାଣିଛନ୍ତି । ସେଥର ସାମାନ୍ୟ ସନ୍ଦେହ ହେଉଥିଲା ତାଙ୍କ ମନରେ ଯେ ତନୁ ବୋଧହୁଏ ଲକ୍ଷ୍ୟ କରିଥିବ ବାପମାଆଙ୍କର ବିଭିନ୍ନ କମରା ଏବଂ ବିଭିନ୍ନ ବିଛଣା । ହେଲେ ତା'କୁ ମଧ ସେ ଯଥାସ୍ଥାନରେ ରଖିଦେଇଥିଲେ । ପଛ ଥାକରେ । ଏଇକ୍ଷଣି ମନେପଡ଼ିଲା ସେ କଥା । କିନ୍ତୁ ଭାବିଲେ ଯେ ଏଥର ବି' ସେଇ ଦୃଶ୍ୟ ଦେଖିଲାରୁ ତା'ର ଅକୁହା ପ୍ରଶ୍ନ ଚେଇଁଉଠିବ, ଏଭଳି ଆଶଙ୍କା ଅକାରଣ । ବରଂ ଆମେରିକାରେ ପାକଳ ହୋଇ ଆସିଥିବା ତରୁଣ ଜର୍ଣ୍ଣାଲିଷ୍ଟ୍ ଯା'କୁ ଅନ୍ୟତମ ଦାମ୍ପତ୍ୟ ଦୃଶ୍ୟ ବୋଲି ଧରିନେବ, ଯାହାକି ବିରଳ ନୁହେଁ ଆଜିର ସ୍ୱାବଲମ୍ବୀ ସମାଜରେ । ତଥାପି ତାଙ୍କ ମନ ମାନିଲା ନାହିଁ, ପଛଥାକରେ ଥିବା ଭାବଟାକୁ ସ୍ୱସ୍ଥାନରେ ରହିଥା' ବୋଲି କହିବା ସତ୍ତ୍ୱେ । କିଏ ଜାଣେ, ହୁଏତ ଦେଖେଇ ଦେଖେଇ ଗୋଟାଏ ଲେକ୍‌ଚର୍ ଝାଡ଼ିପାରେ ଆମ ଉପରେ, କେଉଁ ବହିପଢ଼ା ବୈଜ୍ଞାନିକ ତଥ୍ୟ ଶୁଣାଇବା ଆଳରେ । କିଛି ଅସାଧ ନୁହେଁ ଆମ ଗୁଣବତୀ ଝିଅ ପକ୍ଷରେ !

ତନୁ ଆସି ପହୁଞ୍ଚିଥିଲା ଶୈଳ ଫେରିବା ପୂର୍ବରୁ ଏବଂ ବାପଝିଅ ଦିହେଁ ଯାଇଥିଲେ ହାଓଡ଼ା ଷ୍ଟେସନ୍‌କୁ, ତା'କୁ ପାଛୋଟି ଆଣିବାଲାଗି । ଶୈଳ ଝିଅକୁ କୁଣ୍ଢେଇ ପକାଇଲା ଏବଂ ସ୍ୱାମୀଙ୍କ ସସ୍ମିତ ସ୍ୱାଗତର ଅନୁରୂପ ପ୍ରତିଦାନ ଦେଲା । କିନ୍ତୁ ସନାତନବାବୁ ଗୋଟାଏ ଭୁଲ୍ କାମ କଲେ । ମୂଳରୁ ପଚାରିଲେ —

"ସୋ ? ରାମହରିବାବୁ ପୂରାପୂରି ଫିଟ୍ ? ପୁନର୍ଜନ୍ମ ପାଇଛନ୍ତି ଯେତେବେଳେ, ଗୋଟାଏ ନୂଆ କିଛି ଲେଖନ୍ତୁ ଏଥର..."

ପ୍ରଶ୍ନରେ ସାମାନ୍ୟ ରସିକତା ଥିଲେ ମଧ କ'ଣ ସହାନୁଭୂତିର ଅଭାବ ଥିଲା ? ନା ପ୍ରଶ୍ନଟା ଏମିତି ଅସ୍ୱାଭାବିକ ? କିଛି ଉତ୍ତର ନ ଦେଇ ଶୈଳ ଯେମିତି ଅନେଇଲା ତାଙ୍କ ଆଡ଼କୁ, ସନାତନବାବୁ ଶଙ୍କିଗଲେ ସେଥିରେ । କଥା କଅଣ ? ତନୁ ମଧ ସାକ୍ଷୀ ଥିଲା ସେଇ କ୍ରୋଧୀ ନିରୁତ୍ତରତାର । କିନ୍ତୁ ତା'ର ମନେହେଲା ଯେ ବୋଉ ବାପାଙ୍କ ଉପରେ ରାଗୁ ନାହିଁ, ରାଗୁଛି ତା' ନିଜ ଉପରେ ।

ହାଓଡ଼ା ପ୍ଲାଟ୍‌ଫର୍ମରେ ଗୋଟାଏ ପାଗଳୀ ଅଳ୍ପବୟସୀ ଭିଖାରୁଣୀକୁ ଗୋଡ଼ଉଥିଲେ ଦି'ଟା ଟୋକା । ପାଗଳୀ ଖିଲିଖିଲି ହୋଇ ହସୁଥାଏ । ଦୃଶ୍ୟଟା ଯେତିକି ଅଶ୍ଳୀଳ, ସେତିକି ଦୁଃଖଦ । ସ୍ୱଭାବତଃ 'ବଡ଼ଦି'ଙ୍କୁ କଷ୍ଟ ହେବ ଏବଂ ସେ ଅଟକିଯିବେ କିଛି ସମୟ କୁଲିର ପଛେ ପଛେ ନ ଯାଇ, ଏଥିରେ ବିଶେଷ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ବାପଝିଅ କେହି ଅନୁମାନ କରିପାରି ନ ଥିବେ ଯେ ଇଏ ବଡ଼ଦିର ଦୁଃଖ ନ ଥିଲା । ଥିଲା ଶୈଳର ଦୁଃଖ । ଯେ ଏଭଳି

ନିଷ୍ଠୁର ଉପହାସ କରାଯାଇପାରେ ଜଣେ ଦୁଃଖିନୀ ପ୍ରତି, ଯାହାକୁ ଅଦୃଷ୍ଟ ଠକେଇ ଦେଇସାରିଛି । ଆଃ ! ସେ କ'ଣ ଆପେ ଆପେ ଧରାଦେବ ତାଙ୍କ ହାତରେ, ତା'ର ଅନିବାର୍ଯ୍ୟ ଧର୍ଷଣ ପାଇଁ ? ଆଉ ସେତେବେଳେ ମଧ କ'ଣ ପାଗଳୀ ହସୁଥିବ ଏମିତି ?

ତନୁ ବାପାମାଆଙ୍କ ପାଖରେ ମାସେ ଖଣ୍ଡେ ରହି ଦିଲ୍ଲୀ ଯିବ । ସେଇଠି ତା'ର ନୂଆ ଚାକିରି, 'ଟାଇମ୍‌ସ୍ ଅଫ୍ ଇଣ୍ଡିଆ' ଗ୍ରୁପ୍‌ରେ । ଆମେରିକାରୁ ଚିହ୍ନା ହୋଇଥିବା ସାଗର ମାଲ୍‌ହୋତ୍ରା ମଧ ଦିଲ୍ଲୀକୁ ଆସୁଛି, ତନୁଶ୍ରୀ ପଣ୍ଡାର ହାତ ଧରିବା ପାଇଁ । କମ୍ପ୍ୟୁଟର୍-ବୈଜ୍ଞାନିକ ସାଗର ଆମେରିକାରେ ରହିଯାଇ ପାରିଥାଆନ୍ତା । କିନ୍ତୁ ସେ ବି' ଆସୁଛି ତା' ପଛେ ପଛେ । ପ୍ରେମର ଆକର୍ଷଣ ! ତନୁ ଆମୋଦିତ ହୋଇଛି ତା' ଚିଠିକୁ ପଢ଼ି । ପୁଅଗୁଡ଼ାକ ଜାଣିଶୁଣି ଏମିତି ଖୋସାମତିଆ ହୁଅନ୍ତି କାହିଁକି ? ଆମକୁ ଏତେ ନିର୍ବୋଧ ବୋଲି ଭାବନ୍ତି କାହିଁକି ? ହଁ, ଜାଣେ ତମେ ମୋତେ ପ୍ରେମ କର । କିନ୍ତୁ ତମର ବି' କ'ଣ ଫାଇଦା ହେବ ନାହିଁ, କ୍ୟାରିଅର୍ ଦୃଷ୍ଟିରୁ, ଆମର ଏଇ ନୂତନ ଭାରତରେ ?

ତନୁର ଆଦୌ ଭୟ ନାହିଁ ଯେ କଲିକତାରେ ବେଶି ଦିନ ରହିଗଲେ ତା'ର ବିଶେଷ କିଛି କ୍ଷତି ହେବ, କ୍ୟାରିଅର୍ ଅଥବା ପ୍ରେମ ଦୃଷ୍ଟିରୁ । କିନ୍ତୁ ତା'ର ଆଶା ଅଛି ଯେ ଅଳ୍ପ କେତେକ ଦିନ ଭିତରେ ସେ ବୋଉର ମତିଗତିକୁ ପରଖି ନେଇପାରିବ ଏବଂ ଆଶ୍ୱସ୍ତ ହେବ ଯେ ଅଙ୍କଲ୍‌ଙ୍କ ସାଙ୍ଗରେ ସଲା ହୋଇ ସେ ଯେଉଁ ଚାପ ପକେଇଛି ବୋଉ ଉପରେ, ତା'ର ସୁଫଳ ଫଳିଛି । ବୋଉ ବାଟକୁ ଫେରିଆସିଛି । ଲେଖୁଛି । ହୋଇପାରେ ସେ ମୋର ବୋଉ । ତା' ବୋଲି ତା' ଜିଦ୍‌ବି କ'ଣ ବଳିଯିବ ମୋଠୁଁ ?

ତନୁ ଲକ୍ଷ୍ୟ କଲା ଯେ 'ବଡ଼ଦି'ଙ୍କ ଇମେଜ୍ ଅଧିକ ବଳିଷ୍ଠ ଓ ସୁଦୃଶ୍ୟ ହୋଇଯାଇଛି ଯା' ଭିତରେ । କେବଳ ହତଭାଗା ବସ୍ତିବାଲାଙ୍କ ସଂସାରରେ ନୁହେଁ, ମଧ ମିଡ଼ିଆ ଆଖିରେ ଏବଂ ସମାଜସେବା-ପ୍ରବଣ ଏଲିଟ୍ ମହଲରେ । ହଉ । ତଥାପି ସେ ଖୁସି ଯେ ଯେଉଁ ଷଡ଼ଯନ୍ତ୍ରର ଚାପ ପଡ଼ିଛି ତା' ଉପରେ, ଥ୍ୟାଙ୍କ୍ସ ଟୁ ଅଙ୍କଲ୍, ତା'କୁ ବୋଉ ଏଡ଼ାଇଦେଇ ପାରି ନାହିଁ । ନ ହେଲେ କ'ଣ ଖବରକାଗଜରେ ବାହାରିଥିବା 'ବଡ଼ଦି' ଟାଇପ୍ କଟିଙ୍ଗଠାରୁ 'କବି' ଟାଇପ୍ କଟିଙ୍ଗ୍ କେଇଟାକୁ ସେ ବେଶୀ ପ୍ରାଧାନ୍ୟ ଦେଇଥାଆନ୍ତା ? ନାଲିଗାର ଦିଆ ସେଇ ସବୁ ରିଭିଉ, ଆର୍ଟିକଲ୍ ଇତ୍ୟାଦିକୁ ଏତେ ଯତ୍ନରେ ସାଇତି ରଖିଥାଆନ୍ତା ତା' ଖାସ୍ କମରାରେ ? ତା'ଛଡ଼ା ସେ ଦେଖୁଛି ଯେ ଦିନସାରା ଯେତେ ବ୍ୟସ୍ତ

ଥିଲେ ମଧ୍ୟ ସେ ରାତିରେ ବସି ଲେଖୁଛି, ଟେବୁଲ୍ ଲ୍ୟାମ୍ପ ତଳେ । କ'ଣ ରାମ୍ପି ଚାଲିଛି, ଦିନଚର୍ଯ୍ୟାର କ୍ଷତିପୂରଣ କଲା ପରି ।

କିନ୍ତୁ...କିନ୍ତୁ...ତା'ର ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିବ ନାହିଁ ଏଥିରେ ? ଦିନ ଓ ରାତିକୁ କେମିତି ଏକାଠି କରି ଦେଇପାରିବ ? ଏକା ସାଙ୍ଗରେ ଉତ୍କୃଷ୍ଟ କବି ଏବଂ ଉତ୍କୃଷ୍ଟ ବଡ଼୍‌ଦି ହୋଇପାରିବ ?

ବୋଉକୁ ପଚାରିବ ପଚାରିବ ହୋଇ ସେ ବାପାଙ୍କୁ ପଚାରିଲା ଯେ ବୋଉକୁ ବିଶ୍ରାମ୍ ଦେବାପାଇଁ କ'ଣ କରିବା ଦରକାର । ଯେତେହେଲେ ବାପା ବୋଉକୁ ଭଲ ପାଆନ୍ତି । ଅବଶ୍ୟ ଭଲ ପାଆନ୍ତି, ତା'ଠୁଁ ଯେତେ ଦୂରେଇ ରହିଲେ ମଧ୍ୟ । କିନ୍ତୁ ବାପା ଯାହା ଉତ୍ତର ଦେଲେ, ସେ ତା'ର ଅର୍ଥ ବୁଝିପାରିଲା ନାହିଁ । କହିଲେ, ସେ ଆଗେ ଏମିତି ଲେଖୁ ନ ଥିଲା, ରାତିସାରା ଅନିଦ୍ରା ହୋଇ । ଏଥର ଓଡ଼ିଶାରୁ ଫେରିଲା ଦିନଠୁଁ ସେ ଲେଖୁଛି ଏମିତି, ପାଗଳଙ୍କ ପରି ।

ଭାବୁ ଭାବୁ ତନୁ ହଠାତ୍ ଗୋଟାଏ କାରଣ ଆବିଷ୍କାର କଲା ଏବଂ ରାଗିଉଠିଲା — ଲେଖିବ ନାହିଁ ପାଗଳଙ୍କ ପରି ? ତା'ର ପ୍ରେରଣା, ବୃଦ୍ଧ ଜରଦ୍‌ଗବ ରାମହରି ଦାସ ପରା ବସିଛନ୍ତି ଓଡ଼ିଶାରେ ? ଆଉ ବୋଉ ଯାଉଣୁ ଆସୁଣୁ ପରା ଦେଖା କରିଆସିଛି ତାଙ୍କ ସାଙ୍ଗରେ ? କିଏ ଜାଣେ କୋଉ ପାଠ ସେ ପଢ଼େଇଛନ୍ତି ତା'କୁ...

ଯାହାହେଉ ବୋଉ ଲେଖୁଛି ଏହାହିଁ ସୌଭାଗ୍ୟର ବିଷୟ ବୋଲି ତନୁ କହିଲା ନିଜକୁ । ନିଶ୍ଚୟ କାବ୍ୟକବିତା ଲେଖୁଥିବ, କୋଉ ରିପୋର୍ଟ୍ ଲେଖୁ ନ ଥିବ ବସ୍ତିବିଶେଷର ସମସ୍ୟା ଉପରେ । ଯଥାସମୟରେ ସେ ଧୀରେସୁସ୍ଥେ ଲେଖିବ, ଭଲମଣିଷଙ୍କ ପରି । ତନୁ ଆଶା କରିବାକୁ ଲାଗିଲା ଯେ ତା'କୁ ଅଟକିଯିବାକୁ ପଡ଼ିବ ନାହିଁ କଲିକତାରେ, କି ବିଚରା ସାଗର ବାଧ୍ୟ ହୋଇ ଆସିବନି' ଏଠିକି ।

ଏବଂ ତା'ର ଆଶା ଦୃଢ଼ୀଭୂତ ହେଲା ଯେତେବେଳେ ତା'ର ଆଖି ପଡ଼ିଲା ଗୋଟିଏ ନୂଆ ପେପର୍ କଟିଙ୍ଗ୍ ଉପରେ । ଯାହାକୁ ବୋଉ ଏବେ ଥୋଇଛି, ତା' କାଚ ଆଲମାରୀରେ ଥିବା ସାଇତା କାଗଜର ସବା ଉପରେ । ଅଙ୍କଲ୍ ଯେଉଁ ବିଶିଷ୍ଟ କୃତିତ୍ୱର ଭେଟି ତା'କୁ ଦେଇ ଆସିଥିଲେ ନିଉୟର୍କରେ, ତା'ରି ଅପେକ୍ଷିତ ପରିଣାମ । ନୋବେଲ୍ ପ୍ରାଇଜ୍ ବିଜେତା ଗୋଲ୍ଡଷ୍ଟିନ୍‌ଙ୍କର 'ଲିଟରାରୀ କ୍ରାଇଟିରିଅନ୍'ରେ ପ୍ରକାଶିତ ପ୍ରବନ୍ଧ, 'ନିଉ ରାଇଟିଙ୍ଗ୍ ଇନ୍ ଇଣ୍ଡିଆ' ଉପରେ,

ଯେଉଁଥିରେ ଶୈଳଜା ପଣ୍ଡାଙ୍କର କବିତାକୁ ଅଭିନବସୁନ୍ଦର ବୋଲି କୁହାଯାଇଛି ଏବଂ ତାଙ୍କୁ ଅଧିକରୁ ଅଧିକ ଲେଖିବାପାଇଁ ଉଦ୍‌ବୋଧନ ଦିଆଯାଇଛି । ତନୁଶ୍ରୀର ଛାତି କୁଣ୍ଢେମୋଟ ହୋଇଗଲା ଏବଂ ତା'ର ଗୋଟାଏ ପିଲାଦିନିଆ ଅଭ୍ୟାସ ମନେପଡ଼ିଲା । ସେ ନିଜ ହାତକୁ ଚୁମା ଦେଲା, ଆପଣାକୁ ବଧେଇ ଦେବାଲାଗି ।

କିନ୍ତୁ ଠିକ୍ ସେଇଦିନ ଅଧରାତିରେ ନିଦ ଭାଙ୍ଗିଗଲାରୁ ସେ ବାଲ୍‌କନିକୁ ଆସି ଗୋଟାଏ ଦୃଶ୍ୟ ଦେଖିଲା ଏବଂ ଫେରିଯାଇପାରିଲା ନାହିଁ ତା' ବିଛଣାକୁ । ବୋଉ କାନ୍ଦୁଛି । ଆଖିରୁ ଲୁହ ବହୁ ନାହିଁ । କାନ୍ଦଣାର ଶବ୍ଦ ମଧ ନାହିଁ । ଖାଲି ଅନେଇଛି ଶୂନ୍ୟକୁ ଏବଂ ସେଇ ଚାହାଣିର ବ୍ୟଥାକୁ କଳି ହେବ ନାହିଁ । ସତେକି ସେ କହୁଛି — ଆଉ କିଛି ନାହିଁ । ସବୁ ସରିଯାଇଛି । ଆଉ ତା' ସାମ୍ନାରେ ଗୋଟାଏ ମୋଟା ବନ୍ଧେଇ ଖାତା ଖୋଲା ହୋଇ ପଡ଼ିଛି ।

...ବୋଉ, କ'ଣ ହୋଇଛି ତୋ'ର ? ତନୁର ମନ ହେଲା ସେ ତତ୍‌କ୍ଷଣାତ୍ ଧାଇଁଯିବ ବୋଉ ପାଖକୁ ଏବଂ କହିବ — ନା, ନା, ନା ! ତନୁର ମାଆ ଏମିତି କାନ୍ଦିପାରେ ନାହିଁ । ଏତେ ବଡ଼ କବି, ପୁଣି ବଡ଼ୁଦି, ଏମିତି କାନ୍ଦିପାରେ ନାହିଁ ! ପୁଣି ବିଶ୍ୱବିଖ୍ୟାତ ଗୋଲ୍ଡଷ୍ଟିନ୍‌ଙ୍କର ସାର୍ଟିଫିକେଟ୍ ମିଳିଲା ପରେ ପରେ ? ନା, କିଛି ଗୋଟାଏ ଘଟିଛି ମୋ ବୋଉର । ଯାହା ମୋର ଜାଣିବା ଦରକାର । ମୋ ଛଡ଼ା ଆଉ କିଏ ଭଲା ଅଛି ତା'ର ଯେ ତା'କୁ ରକ୍ଷା କରିପାରିବ ?...

ତନୁ ଅବଶ୍ୟ ତା'ର ଆବେଗକୁ ଆୟତରେ ରଖିଲା ଏବଂ ଧାଇଁଗଲା ନାହିଁ ଶୈଳ ପାଖକୁ । କିନ୍ତୁ ସେ ବଦ୍ଧପରିକର ହେଲା ଯେ ସେ ଯେମିତି ହେଲେ ବୁଝିବ ବୋଉର ଦୁଃଖ କେଉଁଠି ଏବଂ ତା'ର ପ୍ରତିକାର କରିବ ।

କିନ୍ତୁ ଶୈଳ କ'ଣ ସତରେ କାନ୍ଦୁଥିଲା ? ତା'କୁ ପଚାରିଲେ ସେ ବୋଧହୁଏ କହିଥାଆନ୍ତା ଯେ ଏଭଳି ଆଚମ୍ବିତ କଥା ତା' କାନ ଶୁଣି ନାହିଁ । ...କିଓ, ଆଜି ପରା ମୋ 'ଅହଲ୍ୟା' ସରିଯାଇଛି, ତେଣୁ ମୁଁ ଖୁସିଟାଏ ନ ହୋଇ କାନ୍ଦିବାକୁ ଯିବି କାହିଁକି ? ମୋର କ'ଣ ମୁଣ୍ଡ ଖରାପ ?

ଅହଲ୍ୟା ସରିଯାଇଛି । ଯେଉଁ ମହାକାବ୍ୟକୁ ଧିମେଇ ଧିମେଇ ଲେଖୁଥିଲି ପ୍ରତି ରାତିରେ ମାତ୍ର ପାଞ୍ଚଛଅ ଧାଡ଼ି ଯୋଡ଼ିଦେଇ ଏବଂ ଭାବି ହେଉଥିଲି ଇଏ କେବେ ସରିବ, ତା'କୁ ଆଜି ସାରିଦେଇଛି । ଧନ୍ୟବାଦ । ଗୋଟାଏ ବୋଝ ଖସିଯାଇଛି ମୋ ମୁଣ୍ଡରୁ । ଶୈଳଜା ମୁକ୍ତ, ଅହଲ୍ୟା ମୁକ୍ତ । ଆଉ ଚିନ୍ତା କ'ଣ ?

ସାରିଦେଇଛି, ସରିଯାଇଛି । ପଢୁନା' ମୋ କାବ୍ୟର ଶେଷ କଥାଟିକୁ ?—
ଜୀବନର ସବୁ ପ୍ରଶ୍ନ, ସମସ୍ତ ଉତ୍ତର
ସବୁ କିଛି ସରିଗଲା ଆଜି,
ସାରିଦେଲି ଶ୍ରୀପଦରେ ଅର୍ଘ୍ୟ ଦେବି ବୋଲି;
ତୁମେ ଛାଣ ପଥରକୁ ପ୍ରାଣ ଦେବ
ପ୍ରାଣକୁ ବା ପଥର କରିବ ।
ହେଲେ, ଅଶ୍ରୁହୀନା ଅହଲ୍ୟାର ମେଲାଣି ଘେନିବ,
ଶ୍ରୀପୟରେ ଏତିକି ମାଗୁଣି ।

ବୁଝିଲ ଏଥର ? ଅଶ୍ରୁହୀନା କାନ୍ଦିବ କେଉଁବାଟେ ? ଯାହା ସରିଗଲା, ତାହା ମରିଗଲା । ହଜାରେ ଗୋଲ୍ଡଷ୍ଟିନ୍ ବି' ତା'କୁ ବଞ୍ଚେଇପାରିବେ ନାହିଁ । ହଉ, କ୍ଷତି କଅଣ ? ଏକଲବ୍ୟ କ'ଣ ପୁଣି ଅସ୍ତ୍ର ଧରିପାରିଥିଲା, ତା' ବୁଢ଼ା ଆଙ୍ଗୁଠି କାଟିଦେଲା ପରେ ? କିନ୍ତୁ ସାର୍, ଆପଣଙ୍କ ସତ କେବେହେଲେ ମିଛ ନ ହେଉ, ମୋ ଦେଉଳ ଭୁଷୁଡ଼ି ନ ଯାଉ, ମୋର ଏତିକି ପ୍ରାର୍ଥନା । ତା'ଯଦି ହୁଏ, ତା'ହେଲେ ମୁଁ ସତସତିକା ମରିଯିବି...

କେତେବେଳକେ ତନୁ ତା' ବିଛଣାକୁ ଫେରିଲା । କିନ୍ତୁ ଯୋଡ଼ାଏ ବୋଉ-ଆଖିର ଚାହାଣି, ସେଇ ବିରାଟ ଆଖି ଦି'ଟାର ଶୂନ୍ୟତା ତା'କୁ ଶୁଆଇଦେଲା ନାହିଁ । କହିଲା, ତୁ'ଇ ଏକା ଅଛୁ ଲୋ ଝିଅ, ଯିଏ ତା' ବୋଉକୁ ଫେରାଇ ଆଣିପାରିବ, ସେ ଲେଖୁ ବା ନ ଲେଖୁ, ବସ୍ତିରେ ଘର କରୁ ଅବା ତୋ ବାପାର ପ୍ରାସାଦରେ । ଖାଲି ତା' ଚାହାଣିର ସରାଗ ଫେରିଆସିଲେ ହେଲା...

ତା' ପରଦିନ ସରାଗର ତିଳେ ମାତ୍ର ଲକ୍ଷଣ ଦିଶୁ ନ ଥିଲା ଶୈଳର ଚାହାଣିରେ । ଅପରନ୍ତୁ ଅବସାଦର କାଳିମା, ରାଶି ରାଶି କାଳିମା ଦୃଶ୍ୟ ହେଉଥିଲା । ହେଲେ ତନୁ ବୁଝି ନ ଥିବ ତା' ବୋଉ ତା'କୁ ଗ୍ରାହ୍ୟ କରିବାକୁ ନାରାଜ । ବଡ଼୍‌ଦିର ମରିବାକୁ ଫୁରୁସତ୍ ନାହିଁ । ଅନେକ କାମ ଅଛି ତା'ର, ଅନେକ କାମ । ନୂଆ ମେୟରଙ୍କ ସାଙ୍ଗରେ ଦେଖା କରିବାକୁ ହେବ, ନାଏକପାଡ଼ାର ନଳାନର୍ଦ୍ଦମାକୁ ନେଇ...ଦାଦା ଶୋଭାନ୍ ମିଆଁ ସାଙ୍ଗରେ ବି' ଦେଖା କରି ତା'କୁ ବୁଝେଇବାକୁ ପଡ଼ିବ, ନେହୁରା ହେଲା ପରି କହିବାକୁ ପଡ଼ିବ ଯେ — ମାମୁନି ବସ୍ତିର କେହି ହେଲେ ତୋ ଶତ୍ରୁ ନୁହନ୍ତି, ତାଙ୍କୁ ଦୟା କରି ଛାଡ଼ିଦେ ଭଲା ! ...ମୁମୂର୍ଷୁ ଝୁମ୍‌ରୁ ପାଖକୁ ଯିବାକୁ ହେବ, ଏଠୁ ଅନେକ ବାଟ, ହେଲେ ଯିବାକୁ ହେବ, କାହିଁକିନା କୁଆଡ଼େ ଅନେଇ ବସିଛି ବଡ଼୍‌ଦିଠାରୁ ଗୋଟାଏ ରୀତିମତ ଚୁମା ପାଇବ ବୋଲି ।

ଶୈଳ ଆଉ ମୁହୂର୍ତ୍ତେ ଏଠି ରହିପାରିବ ନାହିଁ ବୋଲି ମନେ ହେଉଥିଲା । ହାତରେ ଗୋଟାଏ ବିରାଟ ପ୍ୟାକେଟ୍, ଆଉ ଗୋଟାଏ ଲଫାପା । ତା'କୁ ବି' ପୋଷ୍ଟ ଅଫିସ୍‌ରେ ଦାଖଲ କରିବାକୁ ପଡ଼ିବ । ଏହି ସମୟରେ ଶୈଳର ଆଖି ପଡ଼ିଲା ତନୁ ଉପରେ । ...ସେ ବି' ତ ବାହାରକୁ ବାହାରିଛି, ତା'ର ନାନାଦି କାମରେ । ଝିଅ ଏତିକି କରିପାରିବ ନାହିଁ ତା' ବୋଉପାଇଁ ? ଆରେ, ସେ ମୋ ଆଡ଼କୁ ଅନେଇଛି କାହିଁକି ମ ଏମିତି ? ସତେକି ସେ ନିଜେ ମାଗୁଛି ଗୋଟାଏ କିଛି କାମ ତା' ବୋଉଠାରୁ...

ତନୁ ଚଟ୍‌କିନି ବୁଝିନେଲା ତା'କୁ କ'ଣ କରିବାକୁ ହେବ । କହିଲା,

"ଓ-କେ । ତୋର ଚିନ୍ତା କରିବା ଦରକାର ନାହିଁ । ମୁଁ ଏଇ ଚିଠି ଓ ପ୍ୟାକେଟ୍‌କୁ ଏକାଠି କରି ଗୋଟାଏ ବଡ଼ ପ୍ୟାକେଟ୍‌ରେ ପୂରେଇବି । କନାଦିଆ ପ୍ୟାକେଟ୍ । ଆଉ ତା' ଉପରେ ଠିକଣା ଲେଖା ହେବ ବଡ଼ ବଡ଼ ଅକ୍ଷରରେ, ଚିଠିରେ ଯେଉଁ ଠିକଣା ଲେଖା ହୋଇଛି । ଏଇଆ ତ ? ଫାଇନ୍ । ଆଇ ଉଇଲ୍ ଡୁ ଇଟ୍ ।"

କିଏ କହିଲା ବୋଉର ବୟସ ହେଲାଣି ? ଆଖି ତଳେ ଯେତେ କଳା ଦାଗ ଥାଉ କି ମୁହଁଟା ପାଉଁଶିଆ ଦେଖାଯାଉ, ତା' ସୁନ୍ଦର ହସକୁ କିଏ ଜିଣିପାରିବ ? ତନୁ କୃତକୃତ୍ୟ ହେଲା, ଶୈଳ ଯେତେବେଳେ ଛୋଟିଆ ହସଟିଏ ବଢ଼େଇଦେଲା ଝିଅ ଆଡ଼କୁ, 'ଥ୍ୟାଙ୍କ୍ସ" ବୋଲି କହି ।

ସେତେବେଳଯାଏଁ ସେ ଭଲଭାବରେ ଦେଖି ନ ଥିଲା ଲଫାପାକୁ, ଯାହା ଉପରେ ଲେଖା ହୋଇଥିବା ଠିକଣା ଉତାରିବାକୁ ହେବ ବଡ଼ ପ୍ୟାକେଟ୍ ଉପରେ । ତା'କୁ ସେ ଦେଖିଲା, ବୋଉ ତଳକୁ ଓହ୍ଲେଇଗଲା ପରେ ଏବଂ ଚିହିଁକି ଉଠିଲା ।

...କଅଣ ପଠା ହେଉଛି ଲୋକଟା ପାଖକୁ ? କ୍ଷମା କର ବୋଉ, ମୋତେ ଦେଖିବାକୁ ପଡ଼ିବ, ଜାଣିବାକୁ ପଡ଼ିବ । ମୋତେ ଯୋଉ ଶାସ୍ତି ଦେଲେ ଦେ' ପଛକେ, ଆଇ ମଷ୍ଟ୍ ନୋ । ମୋତେ କିଛି ଭଲ ଦିଶୁ ନାହିଁ କଥାଟା । କାହିଁକିନା ଲୋକଟା ଖରାପ, ଏ ରିଏଲ୍ ଡେଭିଲ୍...

## ସତର

ଯାହା ପାପ ତାହାହିଁ ପୀୟୂଷ
ମୃତ୍ୟୁମୁଖୀ ଶକ୍ତିର ସଞ୍ଚାର
ସେହି ମୋର ପ୍ରେମ ସଖି, ସେହି ମୋର ପ୍ରେମ,

ସଂଗମର ପ୍ରଚଣ୍ଡ ଆବେଗ ତଥା
ରାହୁର ଉଲ୍ଲାସ...

"ଫାଷ୍ଟ କ୍ଲାସ୍ ! ସାର୍, ଯା'କୁ ମିଷ୍ଟିକ୍ କବିତା କହିବ କାହିଁକି ? ଯା'ର ଭାବାର୍ଥ ତ ପୂରାପୂରି ସ୍ପଷ୍ଟ । ମାନେ ଆପଣ କହୁଛନ୍ତି ଯେ ଗ୍ରାସର ଉଲ୍ଲାସରେ ହିଁ ପ୍ରେମର ତୀବ୍ରତମ ଉପଭୋଗ — ଏଇଆ ନା ?"

"ଏକ୍ଜାକ୍ଟ୍ଲି । କିନ୍ତୁ କିଏ କହୁଛି ମିଷ୍ଟିକ୍ ବୋଲି ? ମୁଁ ତ କହୁନି ? ତମେମାନେ ହିଁ କହୁଛ । ସେଥିକୁ ମୁଁ କ'ଣ କରିବି ?" ରାମହରିବାବୁ ହସି ହସି ଉତ୍ତର ଦେଲେ ତାଙ୍କର ଗୋଟିଏ ପୁରୁଣା କବିତା 'ପ୍ରେମପୀୟୂଷ'କୁ ଆବୃତ୍ତି କରିଥିବା ସ୍ନାତକୋତ୍ତର ଛାତ୍ର ସଂଜୀବ ପରିଡ଼ାକୁ ।

"ନାଇଁ ସାର୍ । ମୁଁ ମାନିବି ନାହିଁ ସେ କଥା" ବୈଠକରେ ଯୋଗ ଦେଇଥିବା ଅନ୍ୟତମ ସାହିତ୍ୟପ୍ରେମୀ ଛାତ୍ରୀ ଅରୁନ୍ଧତୀ ମିଶ୍ର ପ୍ରତିବାଦ କଲା । "ଇଏ ଆପଣଙ୍କର ପିଲାଦିନର ଲେଖା, ଯେତେବେଳେ ଆପଣ କୌଣସି କାରଣରୁ ରାଗିବାକୁ ଚାହୁଁଥିଲେ ପୃଥିବୀ ଉପରେ, ସମାଜ ଉପରେ । କିନ୍ତୁ କ୍ରମଶଃ ଆପଣ ବଡ଼ ହେଲେଣି, ଦାର୍ଶନିକ ହେଲେଣି । ପ୍ରେମ, ଘୃଣା, ହିଂସା, ଅହିଂସା, ସବୁକିଛି ସମାହିତ ହୋଇଗଲାଣି ଆପଣଙ୍କ ଜୀବନଦର୍ଶନରେ । ତେଣୁ ଆପଣଙ୍କ ଚନ୍ଦ୍ର ଶୀତଳ କି ତପ୍ତ ନ ହୋଇ ଅସନ୍ତୋଷିଆ ଝାଳ ବୁହାଏ, ନାଲି କି ରୁପେଲି ନ ହୋଇ ପୋଇଗୁଲିଆ ହେବାକୁ ଭଲପାଏ ଏବଂ ଜିଘାଂସା ଓ ଜିଜୀବିଷା ଏକାଠି ହୋଇ ଏକ ଅପୂର୍ବ ଭାବର ସୃଷ୍ଟି କରେ, ଯାହାକୁ 'ମିଷ୍ଟିକ୍' ଛଡ଼ା ଆଉ କିଛି କହି ହେବ ନାହିଁ । ଅନୁଭବ ଏଭଳି ଏକ ପର୍ଯ୍ୟାୟରେ ପହୁଞ୍ଚେ, ଯେଉଁଠୁ ଉପଲବ୍ଧି ବେଶି ଦୂର ନୁହେଁ ।"

"ଥ୍ୟାଙ୍କ୍ ୟୁ । ଥ୍ୟାଙ୍କ୍ ୟୁ । ହୋଇପାରେ ତାହା । ଯାହାହେଉ ମୋତେ ଗୋଟାଏ କଥା ମାନିବାକୁ ପଡ଼ିବ । ମୋର ପାଠିକାମାନେ ହିଁ ମୋତେ ବେଶି ଭଲଭାବରେ ବୁଝିଛନ୍ତି ବୋଲି ମୋର ମନେହୁଏ ।" ରାମହରିବାବୁ କହିଲେ, ରସିକତା କରି ଏବଂ ଗୋଟାଏ ଅଜାସୁଲଭ ଆଖିମିଟିକା ମାରିଲେ ଅରୁନ୍ଧତୀ ଆଡ଼କୁ ।

କହିଲେ ଭୁଲ୍ ହେବ ନାହିଁ ଯେ ଗତ ବେମାରିରୁ ଉଠିଲା ଦିନଠୁଁ ରାମହରିବାବୁଙ୍କ ଆଚାର ବ୍ୟବହାର ପୂରାପୂରି ବଦଳିଯାଇଛି । ଯେଉଁ ଲୋକ ଏକାଧିକ ବିଦ୍ୟାର୍ଥୀଙ୍କୁ ଘଉଡ଼େଇଦେଇଛି, କହିଛି ବୃଥା ଚେଷ୍ଟା କର ନାହିଁ ମୋ ଉପରେ ଡକ୍ଟରେଟ୍ କରିବାଲାଗି, ସେ ଆଜି ସେମାନଙ୍କୁ କେବଳ ପ୍ରଶ୍ରୟ ଦେଉ ନାହିଁ, ସ୍ୱକୀୟ କୃତି ଉପରେ ଆଲୋଚନା କରିବାପାଇଁ, ମଧ୍ୟ ଆଖିମିଟିକା ମାରୁଛି କେଉଁ ବିଦ୍ୟାର୍ଥିନୀ

ଆଡ଼କୁ, ଅଜାପଣର ଆତ୍ମୀୟତା ଦେଖାଇ, କିଏ ଏହା ଆଶା କରିଥିଲା ? ଆଜିକାଲି ସେ କ୍ଷୁଣ୍ଣ ହୁଅନ୍ତି ନାହିଁ, କେହି ଯଦି ତାଙ୍କୁ 'ସାର୍, ଭଲ ଅଛନ୍ତି ?' ବୋଲି ପଚାରେ । କହନ୍ତି, 'ଧନ୍ୟବାଦ । ଭଲ ଅଛି, ଆପଣମାନଙ୍କ ଆଶୀର୍ବାଦରୁ ।'

ଆଜିକାଲି ସେ ଯଥାସମ୍ଭବ ଯୋଗ ଦେଉଛନ୍ତି ବିଭିନ୍ନ ସାହିତ୍ୟିକ ସଭା ସମିତିରେ ଏବଂ ଆଲୋଚନାରେ ମଧ୍ୟ ଅଂଶଗ୍ରହଣ କରୁଛନ୍ତି ବେଳେବେଳେ । ନିଜର କାବ୍ୟିକ ଆଭିମୁଖ୍ୟକୁ ବୁଝାଇବାକୁ ଚେଷ୍ଟା କରୁଛନ୍ତି ଯେ ପରସ୍ପରକୁ ଅଧିକାର କରିବାର ଇଚ୍ଛା ଅବା ପୃଥିବୀକୁ ଅଧିକାର କରିବାର ରାଜକୀୟ ତୃଷ୍ଣା, ଏକ ଦାର୍ଶନିକ ତଥ୍ୟ, ଯାହା ପ୍ରଣିଧାନଯୋଗ୍ୟ ଏବଂ ତାହା ମଧ୍ୟ ଅନ୍ୟତମ ଉତ୍ତରଣର ପନ୍ଥା ।

ଆଜିକାଲି ସେ ସସ୍ମିତ ଦିଶୁଛନ୍ତି, ଅଧିକାଂଶ ସମୟରେ ।

ରାମହରିବାବୁ ନିଜକୁ ପହୁଞ୍ଚେଇଛନ୍ତି ସୁଧୀସମାଜ ପାଖରେ ଏକ ନବଜାଗ୍ରତ, ହେଲେ ଅଦମ୍ୟ ଆତ୍ମବିଶ୍ୱାସ ହେତୁ । ତା'ର ଅନ୍ତରାଳରେ ଯେଉଁ କାମନା ଉଙ୍କି ମାରୁଥିଲା ଏବଂ ଯାହାକୁ ସେ କାହାରି ଆଗରେ ପ୍ରକାଶ କରି ନାହାନ୍ତି, କେବଳ 'ଆଲୀ' ଛଡ଼ା, ତାହା ହେଉଛି ଏଇ ଯେ—

ଆସନ୍ତା 'ବାଣୀସଂତାନ' ହେବ ଏବଂ ହେବା ଉଚିତ କେବଳ ଜଣେ । ଅନନ୍ୟ ବରିଷ୍ଠ କବି ରାମହରି ଦାସ । ଯୋଗ୍ୟତାର ମାପକାଠିରେ ତା'କୁ କେହି ବଳିଯିବ ନାହିଁ । ସେମାନେ ନିଶ୍ଚୟ ସେ କଥା ବୁଝିଲେଣି । ମୁଁ ମଧ୍ୟ ପ୍ରକାରାନ୍ତରେ ଜଣାଇଦେଇଛି ଡକ୍ଟର ଶ୍ରୀବାସ୍ତବଙ୍କୁ ଯେ ଏଥର ମୋର ଆପତ୍ତି ନାହିଁ । ତା'ଛଡ଼ା ଓଡ଼ିଶାର କାହାକୁ ହେଲେ ମିଳି ନାହିଁ ଏଇ ପୁରସ୍କାର ଆଜିଯାଏଁ । ଅନ୍ୟାୟ । ଯେଉଁଠି ରାମହରି ଦାସଙ୍କ ଭଳି ଜଣେ କବି ରହିଛନ୍ତି, ଯେ କେବଳ କବି ନୁହେଁ, ମଧ୍ୟ ଏକ ମହାଜ୍ଞାନୀ, ବିରାଟ ଦାର୍ଶନିକ, ତାଙ୍କୁ ତୁମେ ଭୁଲିଯାଉଛ କେମିତି ?

ହଁ, ଗୋଟାଏ କଥା କହିପାର ତୁମେ ସବୁ ଯେ ବହୁବର୍ଷ ହେଲା ତାଙ୍କର କୌଣସି ନୂଆ ଲେଖା ପ୍ରକାଶ ପାଇ ନାହିଁ । ତେଣୁ ସନ୍ଦେହ ହେବ ଯେ ସେ ବାଣୀଜଗତରୁ ଦୂରେଇଗଲେଣି । କିନ୍ତୁ ସେହି ସନ୍ଦେହ ମଧ୍ୟ ଅଚିରେ ଲୋପପାଇବ । ଯେତେବେଳେ ତାଙ୍କ ନୂଆ କାବ୍ୟ, ସମ୍ପୂର୍ଣ୍ଣ ନୂଆ ଧରଣର କାବ୍ୟ ତମ ଆଖିରେ ପଡ଼ିବ । ଅହଲ୍ୟା ! ଅଧିକୃତା କବଳିତା ଅହଲ୍ୟା ! ରାମହରିସୁଲଭ ରହସ୍ୟବାଦର ନୂତନତମ ଅବଦାନ । ମୁଁ ତା'କୁ ଏମିତି ବାଗେଇଦେବି ଯେ ରୋମାଣ୍ଟିକ୍‌ପଣର ନାଆଁ ଗନ୍ଧ ରହିବ ନାହିଁ, ଅଥଚ କେହି ତା'କୁ ଆଡ଼େଇଦେଇପାରିବ ନାହିଁ । ମନେହେବ ସତେକି ଅହଲ୍ୟା ନାମକ ନାରୀ ଏବଂ ଅହଲ୍ୟା ନାମକ ପଥର ଏକ ଅଫୁରନ୍ତ ଖେଳ ଖେଳୁଛନ୍ତି ପରସ୍ପର ସହିତ,

ଯାହାକି କେତେବେଳେ ସ୍ୱର୍ଗୀୟ ପ୍ରେମ ତ କେତେବେଳେ ଦାରୁଣ ସେକ୍ସ, କେତେବେଳେ ଜୀବନ ଓ କେତେବେଳେ ମରଣ...କେହି ମୁଗ୍ଧ ନ ହୋଇ ରହିପାରିବ ନାହିଁ ଏଭଳି ଏକ ଲେଖାକୁ ପଢ଼ି । ତା'ର ଅନୁବାଦ ମଧ୍ୟ ହେବ ଯଥାଶୀଘ୍ର । ମୁଁ ତା'ର ବ୍ୟବସ୍ଥା କରିସାରିଛି । ଅନ୍ତତଃ ଇଂରାଜୀରେ ଓ ହିନ୍ଦୀରେ ଏବଂ ତା'ର କପି ଖଣ୍ଡେ ଖଣ୍ଡେ ପଠେଇବି ଭାବିଛି, କେତେଜଣଙ୍କ ପାଖକୁ ।

ରାମହରି ଦାସ ହେବ ଦେଶର ନୂତନତମ ବାଣୀସଂତାନ ! ନିଶ୍ଚିତ । କିନ୍ତୁ ତା'ପରେ...

ପ୍ରତ୍ୟାଖ୍ୟାନ !

ଦେଶରେ ଚହଳ ପଡ଼ିବ । 'ବାଣୀସଂତାନ' ପରି ବିଶ୍ୱବିଖ୍ୟାତ ଜାତୀୟ ସମ୍ମାନକୁ ପଦାଘାତ କରିଛନ୍ତି କବି ରାମହରି ଦାସ । ଯାହାକି କେବେହେଲେ କେହି କରିନାହାନ୍ତି ଏଥିପୂର୍ବରୁ ଏବଂ ସେହି ହେବ ମୋର ଅନ୍ତିମ ତିରସ୍କାର, ତମର ସମାଜ ଓ ତା'ର ସାହିତ୍ୟ ପ୍ରତି । ତା'ର ଶଠ ଭଲପଣିଆ ପ୍ରତି । ଆଃ, ସେଇ ଅପୂର୍ବ ରେପ୍‌ର ଉଲ୍ଲାସ — ଉପଲବ୍ଧି ଆଉ କାହାକୁ କୁହନ୍ତି ?

ଉତ୍ତେଜିତ ହୋଇ ରାମହମରିବାବୁ 'ଆଲୀ'କୁ ଡାକ ଛାଡ଼ନ୍ତି ପରସ୍ତେ ଖେଳନ୍ତି ତା' ସାଙ୍ଗରେ ଲଢ଼େଇ କଲାପରି ଏବଂ ତା'କୁ ନୟାନ୍ତ କରିଦିଅନ୍ତି ।

ଡକ୍ଟର ଶ୍ରୀବାସ୍ତବ ଥରେ କହିଥିଲେ କଥା ପଦୁ ପଦୁ ଯେ 'ବାଣୀସଂତାନ'ର ସମ୍ମାନ କେବଳ ଅତି ଉଚ୍ଚମାନର ସାହିତ୍ୟପାଇଁ ଦିଆଯାଏ ନାହିଁ । ସେଥିପାଇଁ ଆଉ ଏକ ବିଶେଷ ଯୋଗ୍ୟତା ଥିବା ଆବଶ୍ୟକ । ଅତି ଉଚ୍ଚ ମାନର ବ୍ୟକ୍ତିତ୍ୱ । ଯାହା ପ୍ରକୃତରେ ସମ୍ମାନାସ୍ପଦ, ତା'ର ନାନାଦି ଗୁଣ, ଜ୍ଞାନ ଓ ଚରିତ୍ରର ଗାରିମାକୁ ନେଇ । ରାଷ୍ଟ୍ରପତି ନିଜେ ବିଚାର କରନ୍ତି ସେ ବିଷୟରେ । ଯଦିଓ ସେ ପ୍ରଧାନମନ୍ତ୍ରୀଙ୍କ ସୁପାରିଶ, ଯେତେକ ଜୀବିତ ବାଣୀସଂତାନଙ୍କ ପରାମର୍ଶ ଏବଂ ସ୍ୱନିର୍ବାଚିତ କେତେକ ବିଶିଷ୍ଟ ନାଗରିକମାନଙ୍କ ମତାମତ ଲୋଡ଼ନ୍ତି । ଏହି ତ ଆମ ସାରସ୍ୱତ ସାଧନାର ସର୍ବଶ୍ରେଷ୍ଠ ସ୍ୱୀକୃତି । ତା'ର ଦାୟିତ୍ୱ ତୁଲେଇବା କ'ଣ କମ୍ କଥା ! କହୁ କହୁ ଗଦ୍‌ଗଦ ହୋଇ ଉଠିଥିଲେ ବାଣୀସଂତାନ ରଞ୍ଜନ ଶ୍ରୀବାସ୍ତବ । ତାଙ୍କର ଗୁରୁଗମ୍ଭୀର ହାଡୁଆ ମୁହଁ ଝଳି ଦିଶୁଥିଲା ।

ରାମହରିବାବୁଙ୍କର ମନେ ପଡ଼ିଯାଉଥିଲା ତାଙ୍କର ସେଇ ଚେହେରା । ଏକ ତଥାକଥିତ ବିରାଟ ବ୍ୟକ୍ତିତ୍ୱର ଆତ୍ମପ୍ରସାଦ । ...ହୁଁଃ ! ଅବଶ୍ୟ ତୁମେ ଜଣେ ବିରାଟ ପଣ୍ଡିତ, ଭାରତର ପ୍ରାଚୀନ ସଭ୍ୟତା ଉପରେ ଯେଉଁଭଳି ଗବେଷଣା କରି ପ୍ରମାଣ କରିଦେଇଛ ଯେ ଛତ୍ରେ ଛତ୍ରେ ତାହାହିଁ ଗ୍ରୀକ୍-ରୋମାନ୍ ସଭ୍ୟତାର

ଜନକ, ତାହା ବିଶେଷ ପ୍ରଶଂସାର ପାତ୍ର । କେଇଟା ଉପନ୍ୟାସ ବି' ଲେଖିଛ । କିନ୍ତୁ ତୁମ ବ୍ୟକ୍ତିତ୍ୱଟି କେଉଁଠି ରହିଛି କହିଲ ? ରୋମୀ ସେନ୍‌ଙ୍କର କାନି ତଳେ ? ନା ଆଉ କେଉଁଠି ?

ବ୍ୟକ୍ତିତ୍ୱ, ମାଇ ଫୁଟ୍ ! ପ୍ରତିଷ୍ଠାର କ୍ରୀତଦାସ । ଯେ କୌଣସି ଦିଗରେ ଏବଂ ଯେ କୌଣସି ଭାବରେ ପ୍ରତିଷ୍ଠିତ ହୋଇପାରିଲେ ବ୍ୟକ୍ତିତ୍ୱ ଧରାହୋଇ ଆସେ ତା' ସାଙ୍ଗରେ, ଆଉ ତମେ ତା'କୁ ନମସ୍କାର କର । ସେ ଯେତେ ନିଷ୍ଠୁର ହୋଇଥାଉ ନା କାହିଁକି ତା'ର ପୋଷା କୁକୁର ଉପରେ, ଯେତେ ଲୋଳଜିହ୍ୱ ହୋଇଥାଉ ନା କାହିଁକି ତା' ନାରୀ ପାଖରେ, କି ଯେତେ ଛେରୁଆ ହେଲେ ହୋଇଥାଉ ମନ୍ତ୍ରୀଙ୍କ ଦରବାରରେ ।

ବାଣୀସଂତାନ କର୍ମକାରଙ୍କୁ ମଧ ଦେଖିପାର । ବଙ୍ଗଳାର ପ୍ରଖ୍ୟାତ ନାଟ୍ୟକାର । କିନ୍ତୁ ତାଙ୍କର ଯେଉଁ ଆସକ୍ତି ରହିଛି ସୁନ୍ଦରିଆ ଟୋକାମାନଙ୍କ ପ୍ରତି, ସେ ବିଷୟରେ କିଏ ନ ଜାଣେ ? 'ନା କିଏ ନ ଜାଣେ ବିଖ୍ୟାତ ଔପନ୍ୟାସିକା ବାଣୀସଂତାନ ସତ୍ୟବତୀ ଖନ୍ନାଙ୍କ ଅବୈଧ ପ୍ରେମକାହାଣୀ ? ତଥା ବାଣୀସଂତାନ ନାରାୟଣ ସ୍ୱାମୀ, ଇଂରେଜମାନଙ୍କ ବୋକଚାବୁହା । ଅଗଷ୍ଟ ବିପ୍ଳବବେଳେ ତାଙ୍କର ଭୂମିକା କ'ଣ ଥିଲା ଚିଙ୍ଗଲ୍‌ପୁଟର ଜିଲ୍ଲା ମାଜିଷ୍ଟ୍ରେଟ୍ ହିସାବରେ, ତା'ର ହିସାବକିତାବ କରିବା କ'ଣ ଦରକାର ନୁହେଁ, ତାଙ୍କ ବ୍ୟକ୍ତିତ୍ୱକୁ ତଉଲିବାରେ ? ଏକରୁ ଆନ ବଳୀୟାନ ।

ସେଇ ହିସାବରେ ଦେଖ ରାମହରି ଦାସକୁ । ତା'ର ପ୍ରଚଣ୍ଡ ପ୍ରତିଭାକୁ ଛାଡ଼ିଦିଅ । ମନେରଖିବା କଥା ଯେ ସେ କେବେହେଲେ ସାଲିସ୍ କରି ନାହିଁ ତା'ର ଜୀବନଦର୍ଶନ ସାଙ୍ଗରେ । ତାହାହିଁ ତା'ର ବ୍ୟକ୍ତିତ୍ୱର ବଡ଼ପଣ, ଦାଉ ଦାଉ ହୋଇ ଜଳୁଥିବା ମଶାଲ । ତା'ରି ଆଲୁଅରେ ବାନ୍ଧି ହୋଇଯାଇଛନ୍ତି ଯେତେକ କୀଟପତଙ୍ଗ, ତଥାକଥିତ ମିଷ୍ଟିସିଜିମ୍‌ର ଭକ୍ତ । ଏବଂ ସବୁଠାରୁ ବଡ଼ ଭକ୍ତ ହେଉଛି ସେଇ କାଳୀ କବୟିତ୍ରୀ, ଯାହାକୁ ମୁଁ ମାଟିରୁ ମଣିଷ କରିଛି, ପ୍ରେରଣା ଯୋଗେଇଛି ତଥା 'ଗଂଗୋତ୍ରୀ', ଏବଂ ଏଇକ୍ଷଣି ଓଟାରି ଆଣିଛି ତା'ର ବୁଢ଼ା ଆଙ୍ଗୁଠି ଖଣ୍ଡିକ, ତା'ର ଗୋପନ ସତୀତ୍ୱ, ତା'ର ଅହଲ୍ୟା — ଯାହାକି ମୋର ଯଥାର୍ଥ ପାଉଣା । ଏଥର ଦେଖିଯାଅ, କ'ଣ ହେଉଛି ।

କିନ୍ତୁ ତିନିମାସ ତ ପୂରିଗଲାଣି କେବେଠୁଁ, କୁଆଡ଼େ ଗଲା ତା' ଅହଲ୍ୟା ? ଚିଠି ଖଣ୍ଡେ ବି' ଦେଇ ନାହିଁ କେମିତି ଯେ ଏଇଥିପାଇଁ ଡେରି ହେଉଛି ? ... ରାମହରିବାବୁ ଚିନ୍ତିତ ହୁଅନ୍ତି, ହେଲେ ଭାବନ୍ତି ଯେ ଚିନ୍ତାର କାରଣ ନାହିଁ ।

ଚାରିମାସ ପୂରି ପାଞ୍ଚମାସ ଅଧାଅଧି ହେଲାଣି, ଏହି ସମୟରେ ବିଦ୍ୟାର୍ଥୀ ସଂଜୀବ ପରିଡ଼ା ହଠାତ୍ ଦିନେ ଗୋଟାଏ ପ୍ରଶ୍ନ ପଚାରିଲା ତାଙ୍କୁ, ଉତ୍ସୁକ ହୋଇ, ତାଙ୍କ ଘରେ ପହୁଞ୍ଚୁ ନ ପହୁଞ୍ଚୁଣୁ —

"ସାର୍, ଆପଣଙ୍କର ଯେଉଁ କାବ୍ୟ ବାହାରିବ ବୋଲି କହୁଥିଲେ ଯା' ଭିତରେ, କ'ଣ ହେଲା ସେ କଥା ?"

"ବାହାରିବ । କାହିଁକି ?"

"କିଛି ନାହିଁ ଯେ, ମୁଁ ଆଜି ଗୋଟାଏ ନୂଆ ଚକଚକିଆ କାବ୍ୟପୁସ୍ତକ ଦେଖିଆସିଲି 'ଗ୍ରନ୍ଥଭଣ୍ଡାର'ରେ । ଆପଣଙ୍କୁ ଉତ୍ସର୍ଗ କରାହୋଇଛି..."

"ଆଚ୍ଛା ? କିଏ ତା'କୁ ଲେଖିଛି ?"

"ଶୈଳଜା ପଣ୍ଡା ।"

"ଆଚ୍ଛା ? ?" ରାମହରିବାବୁଙ୍କ ଚକ୍ଷୁ ବିସ୍ଫାରିତ ହୋଇଉଠିଲା । "କ'ଣ ତା' ନାଆଁ ?"

"ଅହଲ୍ୟା । ବିରାଟ ଗ୍ରନ୍ଥ, ଚାରିଶ ପୃଷ୍ଠାରୁ କମ୍ ହେବ ନାହିଁ..."

ସଂଜୀବ ବୁଝିପାରିଲା ନାହିଁ ସାର୍ କାହିଁକି ଏମିତି ଚାହିଁଛନ୍ତି ମାର୍ କି ନ ମାର୍ ହେଲାପରି ।

X X X ତନୁ ତା'ର ଅଙ୍କଲ୍‌ଙ୍କ ପାଖକୁ ଚିଠି ଦେଇ ଚାଲିଛି । ବାରମ୍ବାର କହିଚାଲିଛି ଯେ ଷଡ଼ଯନ୍ତ୍ର ସଫଳ ହେବାକୁ ଯାଉଛି । ସଫଳ ହୋଇଛି କହିଲେ ଚଳେ । କିନ୍ତୁ କେ-ବି-କେ ତା'ର ଖଣ୍ଡିଏ ବୋଲି ଉତ୍ତର ଦେଇ ନାହାନ୍ତି । କେବଳ ଏଇଥିପାଇଁ ନୁହେଁ ଯେ ସେ ସେଥିରେ ଜଡ଼ିତ ଅଛନ୍ତି । ତନୁ କ'ଣ ଏତେ ନିର୍ବୁଦ୍ଧିଆ ହୋଇଛି ଯେ 'ମାମୁ-ଭାଣିଜୀ' ପତ୍ରାଳାପକୁ ଗୋପନ ରଖିପାରିବ ନାହିଁ ? ନା, ଖାଲି ତା' ନୁହେଁ । ଗୋଟିଏ ନୂତନ ସମ୍ଭାବନା ତାଙ୍କ ଆଖି ଆଗରେ, ଯାହାକି ଅନ୍ୟାନ୍ୟ ସମସ୍ତ ଉଦ୍ୟମ ଓ ତା'ର ଫଳାଫଳକୁ ପଛରେ ପକେଇଦେଇଛି । ତୋରା ମାଆ ହେବାକୁ ଯାଉଛି !

ସତେକି ବର୍ତ୍ତମାନ ସେଇ ବହୁ-ଅପେକ୍ଷିତ ଭବିଷ୍ୟତକୁ ଆବାହନ କରିବା, ତା'କୁ ଆଗତୁରା ଆଉଁଶିଦେବା (ଯଦିଓ ତୋରାକୁ ବିଶେଷ ଭଲ ଲାଗେ ନାହିଁ ତାଙ୍କର ଏଇ ଦୈନନ୍ଦିନ ଉପଚାର) ଏବଂ ତା'ର ଚମକପ୍ରଦ ଆବିର୍ଭାବକୁ ଜଗିବସିବା ହିଁ ତାଙ୍କର କର୍ତ୍ତବ୍ୟ । ତେଣୁ ଅତୀତର କୋଉ କାମ କି ଅକାମର ଗତିବିଧିକୁ ନେଇ ମୁଣ୍ଡ ଖେଳେଇବା ଅପ୍ରାସଙ୍ଗିକ । ହୁଏତ ହାନିକାରକ ।

କିନ୍ତୁ 'ଅହଲ୍ୟା' ନାମକ ଗୋଟାଏ ମୋଟା ଓ ଚକଚକିଆ ବଂଧେଇ ବହି ଯେତେବେଳେ ପହୁଞ୍ଚିଲା ତାଙ୍କ ପାଖରେ, ଯାହାର ରଚୟିତା ଶୈଳଜା ପଣ୍ଡା, ସେ ତାଙ୍କ ଆନନ୍ଦକୁ ରୋକିପାରିଲେ ନାହିଁ ଏବଂ ତାଙ୍କ ପାଟିରୁ ବାହାରିଲା — 'ୱାଣ୍ଡରଫୁଲ୍ !' ଡୋରା ପାଖରେ ଥିଲା, ତେଣୁ ସହଜେ ସେ ପଚାରିଲା,

''କ'ଣ କି ଡାର୍ଲିଂ ?''

ସହଜ ସାଧାରଣ ପ୍ରଶ୍ନ । କିନ୍ତୁ ସେଇଥିରେ କେ-ବି-କେ ବିଚଳିତ ହୋଇପଡ଼ିଲେ । କାରଣ ଉତ୍ତରଟା ଏତେ ସହଜ ନୁହେଁ । ବହିର ନାଆଁଗାଆଁ ଅବଶ୍ୟ ସିଧାସଳଖ ଜଣେଇଦେଇ ହେବ । କିନ୍ତୁ କେମିତି କହିବି ଯେ ଏଇଥିପାଇଁ ତା'କୁ ପାଇଲାରୁ ମୁଁ ନାଚିଉଠିଲି ଗଡ଼ ଜିତିଲାପରି ? ଡୋରା ଭୁଲ୍ ବୁଝିପାରେ ଏବଂ 'ଭବିଷ୍ୟତ'ରେ ଯତ୍ସାମାନ୍ୟ ଆଞ୍ଚ ଲାଗିବା ମଧ୍ୟ ଅସମ୍ଭବ ନୁହେଁ । ଅତଏବ ଗୋଟାଏ ଅର୍ଦ୍ଧ-ସତ୍ୟ କହିଦେଲେ ଚଳିବ । ଏଇଆ ଭାବି କେ-ବି-କେ ଉତ୍ତର ଦେଲେ, ଟିକିଏ ରହିଯାଇ,

''ଗୋଟିଏ ଓଡ଼ିଆ ବହି ଆସିଛି ଇଣ୍ଡିଆରୁ । ଦେଖିଲ, ତା'ର ଚେହେରାଟା ପ୍ରକୃତରେ ୱାଣ୍ଡରଫୁଲ୍ ହୋଇ ନାହିଁ ?''

ଏମିତି କଥାଟା ଛିଣ୍ଡିଗଲା ଏବଂ କେ-ବି-କେଙ୍କ ଭବିଷ୍ୟତ ପ୍ରତି କୌଣସି ହାନି ପହୁଞ୍ଚିବାର ଅବକାଶ ରହିଲା ନାହିଁ ।

X X X କଲିକତାରେ 'ଅହଲ୍ୟା'ର ପାଞ୍ଚଟି କପି ଯେଉଁଦିନ ପହୁଞ୍ଚିଲା ଶୈଳଜା ପାଖରେ, ସେଦିନ ସେ ଅପେକ୍ଷାକୃତ ଅଧିକ କ୍ଳାନ୍ତ ଓ ବିବ୍ରତ ମନେ ହେଉଥିଲା । ଆଜି ସକାଳୁ ସକାଳୁ ତିନିଟା ବସ୍ତି ଓ ଯୋଡ଼ାଏ ଡାକ୍ତରଖାନାର ପରିକ୍ରମା କରିବାକୁ ପଡ଼ିଛି, କେବଳ ତା'ନୁହେଁ । ଅଦୃଷ୍ଟର ପିଆଦା ତା'କୁ ପୁଣି ଚେତାଇଦେଇଛି ତା' ଆଖିରେ ଆଙ୍ଗୁଳି ଗେଞ୍ଜି, ଯେ ବଡ଼ଦିଦି ସତସତିକା କୋଉ ଶକ୍ତିମୟୀ ଦେବୀ ନୁହେଁ ଯେ ତା'ର ହାତ ଆଉଁଶା ବଞ୍ଚେଇଦେବ ହତଭାଗା ମାନିକ୍, କି ହତଭାଗିନୀ ମଞ୍ଜୁକୁ । ଜଣେ ମରିଗଲା ଏବଂ ଆଉ ଜଣକ ଅବଶ୍ୟ ମରିବ । ଏଣେ କର୍ପୋରେସନ୍‌ବାଲା ତା'ର କୌଣସି କଥା ଶୁଣିବାକୁ ନାହାନ୍ତି, ଅଥଚ ମେୟର୍ ମହୋଦୟ ତା'କୁ ଅନୁରୋଧ କରିଛନ୍ତି ପୁଣି କେଉଁ ସମାରୋହରେ ମୁଖ୍ୟ ଅତିଥି ହେବାଲାଗି । ଯେଉଁଥିରୁ ବୁଝିବାକୁ ପଡ଼ିବ ଯେ ବଡ଼ଦିଦି ପ୍ରକୃତରେ ଇଉସ୍‌ଲେସ୍, ଯଦିଓ ସେମାନେ ତା'କୁ ଇଉଜ୍ କରିବାକୁ ଚାହାନ୍ତି, ତା' ଭାବମୂର୍ତ୍ତିରେ ଫାଇଦା ନେବାକୁ ଚାହାନ୍ତି ।

କ୍ଳାନ୍ତିମିଶା ଗୁଳୁଗୁଳିର ଝାଳକୁ ପୋଛୁ ପୋଛୁ ଶୈଳ ସେହି ପ୍ୟାକେଟ୍‌ଟାକୁ ଖୋଲିଲା । ବହି ହୋଇଥିବ ନିଶ୍ଚୟ, କୋଉ ପ୍ରକାଶକ ପାଖରୁ ଆସିଛି ।

ଅନୁରାଧା ପବ୍ଲିସର୍ସ, ବେଶ୍ ନାମଜାଦା ସଂସ୍ଥା । କିନ୍ତୁ କେବେ ତମେ ସବୁ ବୁଝିବ ଯେ ମୁଁ ଆଉ ନାହିଁ ସେଇ ରାଜ୍ୟରେ ? ଖାଲି ଗୋଟିଏ ଗଣ୍ଠିଧନକୁ ଲୁଚେଇ କରି ରଖିଥିଲି, କିନ୍ତୁ ସେ ବି' ଗଲା ଯାହାହେଉ । ଗୋଟାଏ ତୁଚ୍ଛା ଅହମିକା, ହାସ୍ୟାସ୍ପଦ...

କିନ୍ତୁ ପ୍ୟାକେଟ୍‌କୁ ଖୋଲିଲା କ୍ଷଣି ଯେଉଁ ବସ୍ତୁଟି ଉଭା ହେଲା ତା' ଆଗରେ, ସେ ତତ୍‌କ୍ଷଣାତ୍ ଶୁଣାଇଲା ତା'ର ଦୃପ୍ତ, ହେଲେ ସହାସ୍ୟ ଘୋଷଣା — ହେଇ ଦେଖ୍, ମୁଁ ଆସିଛି ତୋ ପାଖକୁ । ଅହଲ୍ୟା ! କେମିତି ଦିଶୁଛି କହିଲୁ ?

ଉତ୍ତରରେ ଶୈଳ ଉପର କପିଟିକୁ ଉଠେଇ ଆଣିଲା ଓ ତା' ଦେହରେ ହାତ ବୁଲେଇଲା । ସେଇଠୁଁ କୋହ ଉଠିଲା ପରି ହଠାତ୍ ତା'କୁ ତା' ଛାତିରେ ଚାପି ଧରିଲା । — ହଁ, ତୁ ଆସିଛୁ । ମୋରି ଧନ, ମୋରି ସୁନା, ଫେରିଆସିଛୁ ତୋ ଗୋପପୁରକୁ...

ସେଇଠୁଁ ଯାଇଁ ତା' ଆଖିରେ ପଡ଼ିଲା ରଚୟିତାର ନାଆଁ, ଯାହାକୁ ସେ ଦେଖି ମଧ ଦେଖି ନ ଥିଲା । ଶୈଳଜା ପଣ୍ଡା । ଆରେ, ମୋରି ନାଆଁ ତ ! ତା' କେମିତି ହେବ ମ ? ତା' ମାନେ...

ତା'ମାନେ ସାର୍ ମୋତେ ବିଡୁଥିଲେ । ଦେଖୁଥିଲେ ମୁଁ ଗୁରୁଦକ୍ଷିଣା ଦେଇପାରୁଛି କି ନାହିଁ । କିନ୍ତୁ ବହିଟିକୁ ପାଇଲା କ୍ଷଣି ସେ ତା'କୁ ଛପେଇଦେଇଛନ୍ତି ମୋ ନାଆଁରେ । ଧନ୍ୟ ସାର୍ ! ଧନ୍ୟ ଆପଣଙ୍କ ସ୍ନେହ ! ନୀରବ, ନିବିଡ଼, ଯାହା କେବେହେଲେ ଆପଣଙ୍କ ମୁହଁରୁ ବାହାରେ ନାହିଁ, କାଳେ ପିଲାଟା ବିଗିଡ଼ିଯିବ । ନ ହେଲେ କି ଏକ ଅଦ୍ଭୁତ ମିଷ୍ଟିକ୍ କବି ବୋଲି ନାଆଁ ପଡୁଛି ? ଦୁନିଆଁ ପାଇଁ ଦୁର୍ବୋଧ, କିନ୍ତୁ ଯିଏ ବୁଝିଛି ପାଇଛି ସେ ଅମୃତର ସ୍ୱାଦ...

ଶୈଳ ପୃଷ୍ଠା ଓଲଟାଇବାକୁ ଲାଗିଲା । ପ୍ରଥମେ ଉତ୍ସର୍ଗପତ୍ର—''ମୋର କାବ୍ୟଗୁରୁ ଡକ୍ଟର ରାମହରି ଦାସଙ୍କୁ ଗଭୀର ଶ୍ରଦ୍ଧା ଓ ଭକ୍ତିର ସହ  ଶୈଳ ।'' ...ଏଁ ? ଏ ଲାଇନ୍‌ଟା କେଉଁଠୁ ଆସିଲା ? ଅବଶ୍ୟ ମୁଁ ପ୍ରଥମେ ଠିକ୍ କରିଥିଲି ଯେ ତାଙ୍କୁଇଁ ବହିଟିକୁ ଉତ୍ସର୍ଗ କରିବି, ଯଦି ସେ ତା'କୁ ପସନ୍ଦ କରିବେ, ଓ ମୁଁ ଛପେଇବି ତା'କୁ ଏବଂ ସେଥିରେ କହିବି ଅନେକ କଥା । କିନ୍ତୁ ଧାଡ଼ିଟିଏ ବି' ଲେଖି ନ ଥିଲି କିଛି, କାରଣ ତା'ର ସମୟ ଆସି ନ ଥିଲା । ତା'ଛଡ଼ା ଶୈଳଜା ପଣ୍ଡା କେବେହେଲେ ଏମିତି ଲେଖିବ ନାହିଁ, ତା'ର ଭାବକୁ ରୋକ୍‌ଠୋକ୍ ଦି'ଟା ଶବ୍ଦରେ ଫୋପାଡ଼ିଦେଲା ପରି । ମୁଁ ତା'କୁ କେତେ ଲଘେଇଥାଆନ୍ତି, ଫୁଲଫଳରେ ଲଦେଇଦେଇ ଥାଆନ୍ତି ।

ତା'ହେଲେ କ'ଣ ସାର୍ ନିଜେ ଯୋଡ଼ିଦେଇଛନ୍ତି ଏଇ ଧାଡ଼ିଟିକୁ ? ମୋ ମନକଥା ବୁଝି ନେଇଛନ୍ତି, ଆଉ ଧରି ନେଇଛନ୍ତି ଯେ ମୁଁ ଅବଶ୍ୟ ଏଇଆ ଚାହୁଁଥିବି ? ଅସମ୍ଭବ ନୁହେଁ...

କିନ୍ତୁ କଥାଟା ଅଖାଡୁଆ ମନେହେଲା ଶୈଳକୁ । ସାର୍ ରହସ୍ୟମୟ ହୋଇପାରନ୍ତି, କିନ୍ତୁ ଏଭଳି ରସିକତା ତାଙ୍କ ମନକୁ ଆସିପାରେ ବୋଲି ବିଶ୍ୱାସ ହେଲା ନାହିଁ । ତେଣୁ କ୍ରମଶଃ ତା' ହୃଦୟର ଆନ୍ଦୋଳନ ଭିନ୍ନ ରୂପ ଧାରଣ କଲା । ତା'କୁ ଛଟପଟ ଲାଗିଲା । ମନେହେଲା କେଉଁଠି କ'ଣ ରହସ୍ୟ ରହିଯାଉଛି, ଯାହା ତା'ର ଜାଣିବା ଦରକାର । ନ ହେଲେ ସେ 'ଅହଲ୍ୟା'କୁ ତା' ନିଜର କରିପାରିବ ନାହିଁ ।

ସନାତନବାବୁ ଘରକୁ ଫେରିଲେ ଲଞ୍ଚ୍ ବେଳକୁ । ଆଜିକାଲି ସେ ପ୍ରାୟ ସବୁଦିନେ ଘରକୁ ଆସୁଛନ୍ତି ଲଞ୍ଚ୍ ପାଇଁ, ଶୈଳ ଘରେ ଥାଉ ବା ନ ଥାଉ । ଆଜି ଶୈଳକୁ ଦେଖି ତାଙ୍କ ମୁହଁ ଆପେ ଆପେ ହସହସ ଓ ସଜୀବ ହୋଇଉଠିଲା, ଯଦିଓ ଶୈଳର ଚିନ୍ତିତ ଚେହେରାକୁ ଦେଖି ତାଙ୍କୁ ତତ୍କ୍ଷଣାତ୍ ତାଙ୍କର ସ୍ୱାଭାବିକ ନିସ୍ତରଙ୍ଗ ଓ ସଦାପ୍ରସନ୍ନ ମୁଖାଟାକୁ ପିନ୍ଧିନେବାକୁ ପଡ଼ିଲା ।

କିନ୍ତୁ ସେଇ ତରଙ୍ଗାୟିତ ମୁହୂର୍ତ୍ତଟି ଶୈଳର ଦୃଷ୍ଟିକୁ ଏଡ଼ାଇପାରି ନ ଥିଲା ଏବଂ ତା'ର ମନ ହେଲା ସେ ଧାଇଁଯିବ ତାଙ୍କ ପାଖକୁ ଏବଂ ପଚାରିବ ଯେ ତା' ଆନନ୍ଦରେ ଏଇ ଯତ୍ସାମାନ୍ୟ ଦ୍ୱନ୍ଦ୍ୱ ଆସୁଛି କେଉଁଠୁ । କାହିଁକି ଏଇ ଅପୂରଣ ଭାବ । ...ଧ୍ୟାତ୍, ସେ କ'ଣ ବୁଝିବେ ଏଇ ସବୁ କଥା ? ମୋ ସାହିତ୍ୟକୁ ସେ କେବେହେଲେ ବାଧା ଦେଇ ନାହାନ୍ତି, ତା'ର ବାଟ ଓଗାଳି ନାହାନ୍ତି, ହେଲେ ସେ କ'ଣ କେବେହେଲେ ବୁଝିଛନ୍ତି ତା' ଭାଷା, ମାନେ ପ୍ରକୃତ ଶୈଳର ଭାଷା ? ନା ତା'କୁ ବୁଝିବାକୁ ଚେଷ୍ଟା କରିଛନ୍ତି ?

କିନ୍ତୁ କାହିଁକି ବୁଝିବେ ନାହିଁ ? ଏଇ ଯେଉଁ ଚଢ଼େଇଟା ବୁଡ଼ିଯାଉଛି ଆଷାଢ଼ର ବଉଦ ଭିତରେ, ଆଉ କ୍ଷଣକରେ ପଳେଇ ଆସୁଛି ତା' ଭିତରୁ, ସେ କ'ଣଟା କଥାଭାଷା ହେଲା ତା' ସାଙ୍ଗରେ ? କିଏ ବୁଝିଲା କାହାର ବର୍ଣ୍ଣମାଳା ? ହେଲେ ଦେଖ ସେ କେତେ ଫୂର୍ତ୍ତିରେ ଫୁର୍‌ଫୁର୍‌କିନି ଉଡୁଛି, ଚକ୍କର୍ କାଟୁଛି, ତା'କୁ କିଛି ମିଳିଗଲାପରି ! ତା' ହେଲେ ଏମିତି କାହିଁକି ହେଉ ନାହିଁ, ହେବ ନାହିଁ, ଆମ ଦି'ଜଣଙ୍କ ଭିତରେ ?

କେହି ହେଲେ ତ ଥିବା ଦରକାର ମୋ ଜୀବନରେ, ଏମିତି ଗୋଟିଏ ଡୁବ ଦେବାପାଇଁ, ଯେଉଁଥିରେ ମୋର କହି-ନ-ହେଲା ଭଳି ବୁଝି-ନ-ହେଲା ଭଳି ଅସନ୍ତୋଷଟା ଉଭେଇଯାଆନ୍ତା ?...

ଶୈଳର ଚେତା ପଶିଲା, ସେ ଅନେଇଛନ୍ତି ଅହଲ୍ୟାକୁ । ଯାହା ବିଷୟରେ ସେ ତାଙ୍କୁ କିଛି କହି ନାହିଁ ଆଜିଯାଏଁ । ଜାଣିଶୁଣି ଲୁଚେଇ ରଖିଛି ତାଙ୍କଠୁଁ, ତଥା ପୃଥିବୀଠୁଁ । ବେଶ୍, ଦେଖନ୍ତୁ ଏଥର ତା'କୁ, ଦେଖନ୍ତୁ । ସରପ୍ରାଇଜ୍, ସରପ୍ରାଇଜ୍ !

ଏହି ସମୟରେ ଫୋନ୍ ବାଜିଉଠିଲା ଏବଂ ଶୈଳ ଉଠିଗଲା ତା'କୁ ଧରିବାପାଇଁ । ହେଲେ ଆଖି କୋଣରେ ସେ ଦେଖିଲା ଓ ଦେଖି ଖୁସି ହେଲା ଯେ ସେ ପାଖେଇ ଆସୁଛନ୍ତି 'ଅହଲ୍ୟା' ପାଖକୁ । ପୁଣି ତା'କୁ ହାତରେ ଧରୁଛନ୍ତି ସନ୍ତର୍ପଣରେ । କେଉଁ ଦେବଭୋଗ୍ୟ ବସ୍ତୁଟିକୁ ଚମ ହାତରେ ଧରିଲାପରି । ବିଚରା !

ଦିଲ୍ଲୀରୁ ଫୋନ୍ ଆସିଛି । "ହ୍ୟାଲୋ, କିଏ, ତନୁ ? କ'ଣ ଖବର ?"

"ଫାଇନ୍ । ବୋଉ, ତୁ ବହି ପାଇଲୁଣି ?"

"କୋଉ ବହି ?"

"ଅହଲ୍ୟା, ତୋର ଅହଲ୍ୟା ! ଅନୁରାଧା ପବ୍ଲିସର୍ସ୍ ମୋତେ କଥା ଦେଇଥିଲେ ଯେ ପାଞ୍ଚଖଣ୍ଡ କମ୍ପ୍ଲିମେଣ୍ଟାରୀ କପି ପଠେଇବେ ତୋ ପାଖକୁ ।"

"ହଁ । କିନ୍ତୁ...କିନ୍ତୁ...ତୁ ଜାଣିଲୁ କେମିତି ? ଆଉ ଶୁଣ୍ ତନୁ, ସେ ମୋ ବହି ନୁହେଁ, ମୁଁ ତା'କୁ ଲେଖିଛି ସିନା—"

"ନାଇଁ ବୋଉ, ସେ ତୋରି ବହି । ତୋରି । ମୁଁ ଆଜି ଇଭିନିଙ୍ଗ୍ ଫ୍ଲାଇଟ୍‌ରେ ଯାଉଛି କଲିକତା । ଆଉ ତୋତେ କହିବି ସବୁ କଥା । ପ୍ଲିଜ୍ ୱେଟ୍ ଫର୍ ମି..."

ଏଣେ ସନାତନବାବୁ ତାଙ୍କର ଅଭିନନ୍ଦନ ଜଣାଇଲେ,

"ଆରେ, ଇଏ ତମର ନୂଆ ବହି ? ବାଃ, ଭାରି ସୁନ୍ଦର ହୋଇଛି ତ ? କଙ୍ଗ୍ରାଚୁଲେସନ୍ସ !"

କିନ୍ତୁ ଶୈଳ ତା'କୁ ଗ୍ରହଣ କରିବାର ଅବସ୍ଥାରେ ନ ଥିଲା । କାରଣ ସେ ଅନୁମାନ କରି ନେଇଥିଲା ଘଟଣାଟା କ'ଣ ହୋଇଥିବ ବୋଲି ଏବଂ ସ୍ଥିର କରିଥିଲା ଯେ ତା' ଯଦି ହୋଇଥାଏ, ସେ ତନୁକୁ କଦାପି କ୍ଷମା କରିବ ନାହିଁ । ମ୍ରିୟମାଣ କଣ୍ଠରେ ସେ କେବଳ କହିଲା, ଫୋନ୍ ରଖିଦେଇ ସାରିଲା ପରେ, "ଥ୍ୟାଙ୍କ୍ସ୍... ତନୁ ଆଜି ଇଭିନିଙ୍ଗ୍ ପ୍ଲେନ୍‌ରେ ଆସୁଛି ।"

ସନାତନବାବୁ ତନୁକୁ ପାଛୋଟି ଆଣିବାକୁ ଗଲେ ବିମାନବନ୍ଦରକୁ । ଶୈଳ କହିଲା, "ମୋ ମୁଣ୍ଡ ବଥଉଛି, ମୁଁ ଯାଇପାରିବି ନାହିଁ ।"

ଘରେ ପହୁଞ୍ଚି ତନୁ ତା' ବୋଉକୁ କୁଣ୍ଢେଇ ପକାଇଲା, ସେଆଡୁ କ'ଣ ମିଳିବ ବୋଲି ଅପେକ୍ଷା ନ କରି । ସକାଳଠୁଁ ଟେବୁଲ୍ ଉପରେ ଖୋଲା ହୋଇ ପଡ଼ିଥିବା ବହିକୁ ଦେଖି ତା' ଦେହରେ ହାତ ବୁଲେଇଲା । କହିଲା, "ଦ୍ୟାଟ୍ସ୍ ରାଇଟ୍ ! ଭଲ ହୋଇଛି କାମଟା । ହେବ ନାହିଁ ? କାହା ବରାଦରେ କରାଯାଇଛି (ବୋଉ ଆଡ଼କୁ ଅନେଇ) ଏଇ ସ୍ପେଶାଲ୍ କାମ ? କିନ୍ତୁ ଶୈଳର ହାବଭାବରେ କୌଣସି ପ୍ରତିକ୍ରିୟା ଦେଖିବାକୁ ମିଳିଲା ନାହିଁ । ସତେକି ତନୁର ଆଲିଙ୍ଗନ କିମ୍ବା ଉଚ୍ଛଳ ଆନନ୍ଦ ସହିତ ତା'ର କୌଣସି ସମ୍ପର୍କ ନାହିଁ ଏଇକ୍ଷଣି । ତା'କୁ ପ୍ରଥମେ ବୁଝିବାକୁ ପଡ଼ିବ ତନୁର 'ସବୁ କଥା', ଫୋନ୍‌ରେ ଦେଇଥିବା ତା'ର ଆଶ୍ୱାସନା ତଥା ପ୍ରତିଶ୍ରୁତି ଅନୁଯାୟୀ ।

କିନ୍ତୁ ପ୍ରାୟ ସାରାଦିନଟା କଟିଯାଇଥିଲା ତା' ପରଦିନ । ହେଲେ 'ସବୁ କଥା' ସୁରୁ ହେଲା ନାହିଁ । ଶୈଳ ନିଜ ଆଡୁ ବି' କିଛି ପଚାରିଲା ନାହିଁ ସେ ବିଷୟରେ । ...ସେଇ କଥା ଦେଇଛି ମୋତେ, ସେଇ ଆଗେ କହୁ । ମୁଁ କାହିଁକି ଦୋଷୀ ହେବି ଯେ ଝିଅର ଏଇ ତେଜ, ଆନନ୍ଦ ଆଉ ଉଚ୍ଛୁଳାପଣକୁ ଭାଙ୍ଗିଦେଲି ବୋଲି ? କିନ୍ତୁ ସେ କହିବାକୁ ବାଧ୍ୟ । ଇଏ କ'ଣ ପିଲାଖେଳ ହୋଇଛି ? ...ଏହି ଭାବରେ ଶୈଳ ଅପେକ୍ଷା କରି ରହିଲା ତନୁର ବକ୍ତବ୍ୟ ଶୁଣିବ ବୋଲି । ହେଲେ ତନୁର ହୋଲେ ନା ଡୋଲେ ! ଶୈଳ ବୁଝିପାରିଲା ନାହିଁ ଯେ ତନୁର ଉଚ୍ଛ୍ୱସିତ ବକର ବକର ଭିତରେ ଯତ୍‌ସାମାନ୍ୟ ଦ୍ୱିଧା ଓ ଭୟ ଛପି ରହିଥିଲା ଯେ ସେ କେମିତି କେଉଁଆଡୁ ଆରମ୍ଭ କରିବ କଥାଟାକୁ । ଯଦିଓ ଏଇ ନୂଆ ବହି କଥା ପଡ଼ିଥିଲା ମଝିରେ ମଝିରେ, ଯେଉଁଥିରେ ତା'ର ନୂଆ ଚାକିରି, ନୂଆ ଜର୍ମାନ୍ ସହକର୍ମୀ, ପୁରୁଣା ବଏ ଫ୍ରେଣ୍ଡ ଏବଂ ବୋଉର 'ଖୁକୀ' ମଧ୍ୟ ସାମିଲ୍ ଥିଲା । ଯଥା:

—କାର୍ଲକୁ ବି' ଏଇ ବହି ଦେଖେଇଥିଲି । ଏମିତି ମୁଗ୍ଧ ହୋଇଗଲା ତା'କୁ ଦେଖି ଯେ କହିଲା ସେ ଯଥାଶୀଘ୍ର ଓଡ଼ିଆ ଶିଖିବ ମୋଠୁଁ ।

—ଆଶିଷ୍ ଗୋଟାଏ ଭୁସ୍‌ପଣ୍ଡିତ । ମାର୍କାମରା ସ୍କଲାର୍ । ବହିର ପ୍ରଶଂସା କରୁ କରୁ ଗୋଟାଏ ବିରାଟ ଫର୍ଦ୍ଦ ବାଢ଼ିଦେଲା ମୋ ଆଗରେ ଯେ ଏଇମାନେ ଅହଲ୍ୟା ଉପରେ ଲେଖିଛନ୍ତି ବଙ୍ଗଳା ଭାଷାରେ । ନାନାଦି କାବ୍ୟ, କବିତା, ଗଳ୍ପ, ଉପନ୍ୟାସ...

—ଜାଣିଛୁ ବୋଉ ? ମୁଁ ବହିର ବଙ୍ଗଳା ଅନୁବାଦ ବି' କରଉଛି । ଏଇ ମାସକ ଭିତରେ ସରିଯିବ ବୋଲି ଆଶା କରୁଛି । ଆଉ ଛପା ହେଲା ପରେ

ତା'ର କପିଟିଏ ନିଜେ ବଢ଼େଇଦେବି ଜଣକ ହାତକୁ । କହିବି ସେ କିଏ ? ଖୁକୀ ! ତୋ'ର ଝିଅ ନମ୍ବର ଦୁଇ...

କିନ୍ତୁ ବେଳ ସରିଆସୁଛି । ତନୁ କାଲି ସକାଳେ ଦିଲ୍ଲୀ ଫେରିଯିବ ବୋଲି କହୁଥିଲା । ତେଣୁ ସଞ୍ଜବେଳକୁ, ଯେତେବେଳେ କାଉମାନେ ଭୀଷଣ ଗୋଳମାଳ ଲଗେଇଥିଲେ ସାମ୍ନା ଗଛରେ, ରାହା ଧରି କାନ୍ଦୁଥିଲା ବସ୍ତିର କି ରାସ୍ତାର କେଉଁ ଗୋଟାଏ ପିଲା ଏବଂ ଶୈଳର ମନେ ହେଉଥିଲା ଯେ ସେ ପ୍ରକୃତରେ ଗୋଟାଏ ଉତ୍ତର ଲୋଡୁ ନାହିଁ, ସେ କେବଳ ତା'ର ଏଇ ମରଣାନ୍ତକ ଅସ୍ୱସ୍ତିରୁ ମୁକ୍ତି ପାଇବାକୁ ଚାହୁଁଛି, ସେ ତନୁକୁ ପଚାରିଲା, ମାଆଝିଅ ବାଲ୍‌କନିରେ ଏକୁଟିଆ ବସିଥିଲାବେଳେ —

"ତନୁ, କ'ଣ ସବୁକଥା କହୁଥିଲୁ ପରା ? କେତେବେଳେ କହିବୁ ?

ତନୁ ବୋଉ ଆଡ଼କୁ ଅନେଇଲା ବଲବଲ ହୋଇ । ଦୋଷୀଙ୍କ ପରି । ତୁ କ'ଣ ତଥାପି ମୋତେ ମାଡ଼ ଦେବାକୁ ଚାହୁଁଛୁ ? — ଏଇ ଭାବରେ । କହିଲା,

"ତୁ କ'ଣ ବୁଝି ନାହୁଁ ସବୁ କଥା ବୋଉ ? ମୁଁ ସେଇ ଚିଠିଟାକୁ ପଢ଼ିଲି, ଯାହା ଉପରେ ରାମହରି ଦାସଙ୍କ ଠିକଣା ଥିଲା । ସେଇଠୁଁ ମୁଁ କଲି ମୋ ଦେଖିଲା କାମ । ମୋତେ ମାରିବୁ ଯଦି ମାର୍‌..."

ଶୈଳର ଚାହାଣି କଠୋର ହେବାକୁ ଚେଷ୍ଟା କଲା । ସତେକି ଇଏ ଗୋଟାଏ କାରସାଦି ପିଲାମାନଙ୍କର, ଶାସ୍ତିରୁ ରକ୍ଷା ପାଇବାପାଇଁ । କହିଲା,

"କିନ୍ତୁ କାହିଁକି ? କାହିଁକି?? କେମିତି ତୁ କଲୁ ଏତେ ବଡ଼ ପାପ ? ଆଉ ମୋ ଗୁରୁଦକ୍ଷିଣାକୁ ଭ୍ରଷ୍ଟ କରିଦେଲୁ ?"

"କାହିଁକିନା ମୁଁ ତୋତେ କାନ୍ଦିବାର ଦେଖିଥିଲି ତା' ପୂର୍ବଦିନ । ଅଧରାତିରେ ।"

"କ'ଣ ହେଲା ? ତୋ ମୁଣ୍ଡ ଖରାପ ?"

"ନା, ବୋଉ । ମୁଁ ସତ କହୁଛି । ତୋ ଆଖିରେ ଲୁହ ନ ଥିଲା, କିନ୍ତୁ ତୁ କାନ୍ଦୁଥିଲୁ । କାରଣ ତୁ ଖାଲି ତୋ ବୁଢ଼ାଆଙ୍ଗୁଠି କାଟିକରି ଦେଇଦେଉ ନ ଥିଲୁ ତା'କୁ, ଆଉ ମିନ୍ ରାମହରିବାବୁଙ୍କୁ । ତୁ ତୋ' ନିଜକୁ, ନିଜସ୍ୱକୁ, ତୋ ତନୁଠାରୁ ବଳି ନିଜର, ଆହୁରି ଅନ୍ତରଙ୍ଗ ସତ୍ତାଟିକୁ ଧରେଇଦେଇଥିଲୁ ତାଙ୍କ ହାତରେ । ନିଅ, ନିଅ, ନେଇଯାଅ, ଯାହା ତୁମ ଇଚ୍ଛା, ମୋ ଶେଷ ସମ୍ବଳଟିକ ନେଇଯାଅ— ଏଇ ଭାବରେ..."

ଶୈଳ ପ୍ରତିବାଦ କରିବା ପୂର୍ବରୁ ତନୁ ତା'କୁ ବାରଣ କଲା ହାତ ଉଠେଇ ।

"ବୋଉ, ପ୍ଲିଜ୍, ଆଗେ ଶୁଣିଯା' ତୋ ପାପିନୀ ଝିଅ ଯାହା କରିବାକୁ ଚାହେଁ । 'ଅହଲ୍ୟା' ତୋର ଅନ୍ୟତମ କାବ୍ୟ-କବିତା ନୁହେଁ । ସିଏ ଥିଲା ତୋର ଶେଷକଥା, ଶେଷ ବ୍ୟଥାର ଏକ୍ସପ୍ରେସନ୍, ଆଇ ମିନ୍ ଅଭିବ୍ୟକ୍ତି..."

ବିସ୍ମୟରେ ଝଲିଉଠିଲା ଶୈଳର ଚାହାଣି । ଯେଉଁଥିରେ ଅଳ୍ପବହୁତ ଗର୍ବ ମଧ ଥିଲା ତା'ର ଏଇ ସହାନୁଭବୀ ଝିଅଟା ପାଇଁ । — ମେଞ୍ଚଡ଼ ଟୋକୀ, ତୁ କେମିତି ଜାଣିଲୁ ସେ କଥା ? କ'ଣ ଏମିତି ଦେଖିଲୁ ସେଦିନ ମୋ ଶୁଖିଲା ଚାହାଣିରେ ? ନା କ'ଣ ବୁଝିଲୁ ସେଇ ଦି'ଧାଡ଼ିଆ ଚିଠିରୁ, ଯାହା ମୁଁ ଲେଖିଥିଲି ତାଙ୍କ ପାଖକୁ ? ତୁ କ'ଣ ମୋ ମାଆ ?

"କିନ୍ତୁ ସିଏ ତୋର ହୋଇ ରହିଲା ନାହିଁ, କାହିଁକିନା ଦ୍ରୋଣାଚାର୍ଯ୍ୟ କହିଲେ ଇଏ ମୋର । ଗୁରୁଦକ୍ଷିଣା । ତୋର ଆଉ ରହିଲା କ'ଣ ? ୟା'ପରେ ତୁ ତ ଆଉ ଲେଖି ନ ଥାଆନ୍ତୁ । ମୁଁ ଜାଣିଛି ସେ କଥା, ଅହଲ୍ୟାର ଶେଷ ପଦକ ପଢ଼ିଲା ପୂର୍ବରୁ । ତା'ହେଲେ ମୁଁ କେମିତି ଫେରିପାଇବି ମୋ ବୋଉକୁ, ତା'କୁ ମୁଁ ଯେମିତି ଦେଖିଆସୁଛି ମୋ ପିଲାଦିନୁ ? ଯିଏ ତକିଆଟାକୁ ପେଟରେ ମାଡ଼ି ରାମ୍ପି ଚାଲିଥାଏ, ତା'ର ଗେହ୍ଲା, ତା'ର ରାଗ, ତା'ର ଯେତେକ ଅପୂରଣକୁ ପୂରା କରିବାଲାଗି ? ଆଉ ଭୁଲିଯାଇଥାଏ ଯେ ତା'ର ଗୋଟିଏ ଝିଅ ଅଛି, ଝିଅର ବାପା ଅଛି..."

"ମିଛ । ୟୁ ଆର୍ ରଙ୍ଗ୍ !"

"ହୋଇଥିବ । କିନ୍ତୁ ମୁଁ ସେଇ ବୋଉକୁ ଜାଣିଛି ପିଲାଦିନୁଁ । ମୁଁ ତା'କୁଇ ଚିହ୍ନିଛି, ଭଲପାଇଛି । ମୁଁ ତା'କୁ ହରାଇପାରି ନ ଥାଆନ୍ତି ।

"ଶୁଣ୍ ହୁଣ୍ଡୀ, ଏଇକ୍ଷଣି ମୋର ଏତେ ତନୁ, ଏତେ ଭାଇଭଉଣୀ, ଏତେ ବଡ଼ ପରିବାର ଅଛି ପରା ! ସେଇଥିରେ ମୋର କେତେ ଆନନ୍ଦ ଦେଖିପାରୁନୁ ? ତେଣୁ କିଏ କାହାକୁ ହରାଇବାର ପ୍ରଶ୍ନ ଉଠୁଛି କେଉଁଠୁ ?"

"ମୁଁ ଜାଣିଛି । ମିଛୁଟାରେ ମୁଁ 'ଅହଲ୍ୟା'ର ବଙ୍ଗଳା ଅନୁବାଦ କରଉ ନାହିଁ । କରୁଛି ଖାସ୍ ତୋ ଖୁକୀପାଇଁ । ତା'ବୋଲି ତୁ କ'ଣ ଭାବିଥିଲୁ ଯେ ତୁ ତୋର ସେଇ ମାଆକୁ ଛାଡ଼ିଦେବୁ ? ଯାହାକୁ ତୁ ବରିନେଇଛୁ ପିଲାଟିଦିନୁଁ, କହିବାକୁ ଗଲେ ତୋର ଆତ୍ମାକୁ ସଁପିଦେଇଛୁ ଯାହା ପାଖରେ, ଆଉ ତଥାପି ହସିପାରିବୁ ହସିଲା ପରି, କାନ୍ଦିପାରିବୁ କାନ୍ଦିଲା ପରି ? ନା ବୋଉ, ତା'

ହୋଇପାରି ନ ଥାଆନ୍ତା । ତୁ ମରିଯାଇଥାଆନ୍ତୁ । ମୋ ବୋଉ ମରିଯାଇଥାଆନ୍ତା । ଆଉ ମୁଁ କେମିତି ତା' ହେବାକୁ ଦେଇଥାଆନ୍ତି କହିଲୁ ?''

ଶୈଳର ଚାହାଣି ଓଦା ହୋଇ ଆସୁଥିଲା ବୋଲି କହିଲେ ସେ ତା'କୁ କଦାପି ମାନନ୍ତା ନାହିଁ । କିନ୍ତୁ ସେ ଅନ୍ତତଃ ଏତିକି ସ୍ୱୀକାର କରିବାକୁ ବାଧ ହୁଅନ୍ତା ଯେ ତା' ଚାହାଣିର ଚେଷ୍ଟିତ କଠୋରପଣ ପୂରାପୂରି ମିଳେଇଯାଇଥିଲା । ତନୁ କହି ଚାଲିଥିଲା,

''ବୋଉ, ତୋର କିଛି ଦୋଷ ନାହିଁ । ପାପ ନାହିଁ । ସବୁତକ ମୋର । ଆଉ ମୁଁ ନେବି ତା'ର ଶାସ୍ତି, ତୋଠୁଁ କି ଆଉ ଯାହାଠୁଁ । କିନ୍ତୁ ମୁଁ ତୋତେ ମରିବାକୁ ଦେଇ ନ ଥାଆନ୍ତି...''

ସେଇଠୁଁ ସେ ଗୋଟାଏ ଅଦ୍ଭୁତ କଥା କହିଲା, ତା' ବୋଉକୁ କାବା କରିଦେଇ,

''ବୋଉ, ମୁଁ ଆଜି ରାତିରେ ତୋ ପାଖରେ ଶୋଇବି । ତୋର କିଛି ଆପତ୍ତି ନାହିଁ ତ ?''

ସେଦିନ କୋଳାକୋଳି ହୋଇ ଶୋଇଥିବା ଦୁଇଟି ନାରୀଙ୍କ ଭିତରେ କାହାର ଲୁହ କାହାକୁ ଆଗେ ଭିଜାଇଦେଲା ବୁଝି ହୋଇ ନ ଥାଆନ୍ତା, ରାତିର ଅନ୍ଧାର ଭିତରେ । କିନ୍ତୁ ପରଦିନ ସକାଳେ ଦିହିଁଙ୍କି ଦିହେଁ ପ୍ରାୟ ସମାନ ଭାବରେ ସତେଜ ଦେଖାଯାଉଥିଲେ । ଶୁଭ୍ର-ଶ୍ୟାମ ଯୋଡ଼ିଏ ସଜଫୁଲ ପରି ଏବଂ ସନାତନବାବୁଙ୍କର ଇଚ୍ଛା ହେଉଥିଲା, ସେ ଦି'ଜଣଙ୍କୁ ଏକାଠି କୁଣ୍ଢେଇ ଧରି ଗେହ୍ଲା କରନ୍ତେ ।

## ଅଠର

''ବୋଉ, ତୋତେ ଆଉ ଗୋଟାଏ ଶକିଙ୍ଗ୍ ନିଉଜ୍ ଦେବାକୁ ଯାଉଛି, ପ୍ରସ୍ତୁତ ଥା'', ତନୁ ହସି ହସି କହିଲା, ଏଆର୍ ପୋର୍ଟକୁ ବାହାରିବା ପୂର୍ବରୁ । ସତେକି ତା'କୁ ମଜା ଲାଗେ ବୋଉକୁ ଚମକେଇବାପାଇଁ, ଯେତେକ ଅଲୌକିକ ଘଟଣାର ସମ୍ବାଦ ଶୁଣେଇ । ''ତୋ ନାଆଁ ବି' ବିଚାରାଧୀନ ଅଛି 'ବାଣୀସଂତାନ' ସମ୍ମାନର ତାଲିକାରେ ।''

''ତନୁ ! ବୋଉପାଇଁ ଯାହା କଲୁ ତ' କଲୁ, କିନ୍ତୁ ମୋତେ ଏମିତି ଥଟ୍ଟା କରିବାକୁ କେମିତି ମନ ହେଉଛି ତୋର ?'' ଶୈଳ କହିଲା ଈଷତ୍ ବିରକ୍ତ ହେଲାପରି ।

"ମୁଁ ସତ କହୁଛି ବୋଉ, ମୋତେ ବିଶ୍ୱାସ କର । ମୁଁ ଯାହାଙ୍କଠାରୁ ଶୁଣିଛି ସେ ମୋତେ ମିଛ କହିବେ ନାହିଁ କିମ୍ବା ସେ ପାଗଳ ନୁହନ୍ତି ଏବଂ ସେ ନିଜେ ଜୁରିରେ ନ ଥିଲେ ମଧ୍ୟ..."

ଏଥର ଶୈଳ ଅନୁମାନ କରିପାରିଲା ଲୋକଟି କିଏ ହୋଇଥିବ ଯେ ତନୁକୁ ଏଭଳି ଗୋଟାଏ ଅଦ୍ଭୁତ ଖବର ଶୁଣାଇଥିବ । ରୋମୀ ସେନ୍ । କିନ୍ତୁ ଅସୁବିଧା ହେଉଛି ଯେ ସେ ମୋତେ ଭଲପାଆନ୍ତି । ଦିଦିଙ୍କ କୃପାରୁ ଯେଉଁମାନେ ମୋତେ ଭଲପାଆନ୍ତି; ସେ କେବଳ ତାଙ୍କରି ଭିତରୁ ଜଣେ ନୁହନ୍ତି । ଅଗ୍ରଣୀ କହିଲେ ଚଳେ । ତେଣୁ ତାଙ୍କ ପକ୍ଷରେ ମୋପାଇଁ ଗୋଟାଏ ଉଦ୍ଭଟ ସ୍ୱପ୍ନ ଦେଖିବା, ପବନରେ ପ୍ରାସାଦ ଗଢ଼ିବସିବା ବିଚିତ୍ର ନୁହେଁ । ହୁଏତ ଗୋଟାଏ କ୍ଷୀଣତମ ବାସ୍ନା ପାଇଥିବେ, ଆଉ ସେଇଆକୁ ନେଇ...

"ଆବ୍‌ସର୍ଡ୍ !"

"ମୁଁ କଅଣ କହୁଛି ଆବ୍‌ସର୍ଡ୍ ନୁହେଁ ? କିନ୍ତୁ ଦାର୍ଶନିକ କାମ୍ୟୁ କହିନାହାନ୍ତି କି, ଯେ ମଣିଷ ଯେତିକି ମହାନ୍ ହେବାକୁ ଚାହିଁବ, ସେ ସେତିକି ଆବ୍‌ସର୍ଡ୍ ହେବାକୁ ବାଧ୍ୟ । ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଆମ ମାଆଝିଅଙ୍କ ଭିତରେ କିଏ ବେଶି ଆବ୍‌ସର୍ଡ୍... ।" ଚପଳ ଛନ୍ଦା, ଅର୍ଥାତ୍ ଫାଜିଲ୍ ଝିଅ ଏଇ ରହସ୍ୟଟିକ ଛାଡ଼ିଦେଇ ଗଲା ଶୈଳପାଇଁ, ଯାହାକୁ ନେଇ ଆଉ ତର୍କ କରିବା ସମ୍ଭବ ନୁହେଁ । ତେଣୁ ଶୈଳ କେବଳ ଦାନ୍ତ ଗିଜିଡ଼ି କହିପାରିଲା ଯେ ତୋତେ ପାରି ହେବ ନାହିଁ ।

କିନ୍ତୁ ତନୁଠାରୁ ବିଦାୟ ନେଇଆସିଲା ପରେ ସେ ରାଗିଲା ଏଇ ସଂସାର ଉପରେ । କାହିଁକି ସେମାନେ ତା'କୁ ଏମିତି ହଇରାଣ କରନ୍ତି ? ପ୍ରଥମେ ଦିବ୍ୟଜ୍ୟୋତି, ତା'ପରେ ଗଂଗୋତ୍ରୀ, ତା'ପରେ ଏଇ ଗୋଟାଏ ଆବ୍‌ସର୍ଡ୍ ବାସ୍ନା, ମୋତେ ଲୋଭେଇଲା ପରି । ମୁଁ କୌଣସିଟିକୁ ଲୋଡ଼ି ନ ଥିଲି । ଏଇକ୍ଷଣି ବି' କିଛି ଲୋଡୁ ନାହିଁ, ବିଶେଷତଃ ଏଇକ୍ଷଣି, ଯେତେବେଳେ ମୁଁ ଭିନ୍ନ ରାଜ୍ୟରେ ଅଛି । ଯଦିଓ ମୋ ଝିଅ ଏମିତି ଗୋଟାଏ କାଣ୍ଡ କଲା, ଆଉ ମୋତେ ବାଧ୍ୟ କରୁଛି ପୁଣି କଲମ ଧରିବାପାଇଁ । କିନ୍ତୁ ମୁଁ ତା' କଥା ମାନିବି ବୋଲି କିଏ କହିଲା ? ଅହଲ୍ୟା ଛପା ହୋଇଗଲା ବୋଲି କ'ଣ ମୋର ପ୍ରାୟଶ୍ଚିତ୍ତ ସରିଗଲା ? ମୁଇଁ ଠିକ୍ କରିବି ସେ ବିଷୟରେ, ଆଉ କାହାରି ବତେଇବା ଦରକାର ନାହିଁ ମୋତେ, ସେ ଝିଅ ହେଉ କି ଆଉ କିଏ ।

ବାଣୀସଂତାନ ! ଶୈଳଜା ପଣ୍ଡା ହେବ ଭାରତର ନୂତନତମ ବାଣୀସଂତାନ । ଯା'ଠାରୁ ବଳି ହାସ୍ୟାସ୍ପଦ କଥା କିଛି ଥାଇପାରେ ଆଉ ? ଯେଉଁ ଜ୍ୟୋତିଷ୍କମଣ୍ଡଳରେ

ଅଛନ୍ତି ଡଃ ରଞ୍ଜନ ଶ୍ରୀବାସ୍ତବ, ପଣ୍ଡିତ ଜଗନ୍ମୟ କର୍ମକାର, ବିଦୁଷୀ ସତ୍ୟବତୀ ଖନ୍ନା, ଦ୍ରାବିଡ଼ରତ୍ନ ଗୋପାଳ ନାରାୟଣ ସ୍ୱାମୀ ଆଦି ମହା ମହା ବ୍ୟକ୍ତିତ୍ୱ, ତାଙ୍କରି ପଙ୍ଗତରେ ବସିବ ପାଲିଙ୍କିପୁରର କାଳୀକାନୀ, ସିଙ୍ଘାଣିନାକୀ... !

...ହଉ, ସେତିକି ଥାଉ । ହସୁଥା' ଯେତେ ହସିବୁ, ଏଇ ଆବ୍‌ସର୍ଡ୍ ସମ୍ଭାବନାକୁ ନେଇ । ପୁରସ୍କାରକୁ ମାର୍ ଗୋଲି, କିନ୍ତୁ କାଳୀକାନୀ ବାଣୀଙ୍କର ସନ୍ତାନ ନୁହେଁ ତ ଆଉ କାହାର ? ତୁ କ'ଣ ସତରେ ତାଙ୍କୁ ମାଆ ବୋଲି ବରି ନେଇ ନାହୁଁ ତୋ ପିଲାଟି ଦିନୁ ? ଆଉ ସେ ବି' କ'ଣ ଦୂର୍‌ଦୂର୍ କରିଛନ୍ତି ତୋତେ ? ଦିବ୍ୟଜ୍ୟୋତି ହେଉ କି ଗଂଗୋତ୍ରୀ କ'ଣ ପ୍ରକୃତରେ ତାଙ୍କରି ଦାନ ନୁହେଁ ? ବରଂ ତୁଇ ତାଙ୍କୁ ଦୂରେଇ ଦେଇଛୁ ଅଯଥାରେ, ଏଇ ମୋ ଅହଲ୍ୟା, ନିଅ ଯା'କୁ ଆଉ ମୋତେ ଖଲାସ୍ କର ବୋଲି କହୁଥିଲୁ, ପୁଣି ସେଇ ଭୋଗଥାଳି ବି ଟେକିଦେଉଥିଲୁ ଆଉ କେଉଁ ଲୋକ ହାତକୁ, ସେ ଯେତେ ବଡ଼ ହୁଅନ୍ତୁ ପଛେ—

ହଁ, ତୁ ତାଙ୍କ ସନ୍ତାନ । କିନ୍ତୁ ଅଯୋଗ୍ୟ ସନ୍ତାନ ।

ଛାଡ଼, ଅହଲ୍ୟା ପରେ ଆଉ ଗୋଟାଏ କାବ୍ୟ ଲେଖିବାକୁ ପଡ଼ିବ ତୋତେ । ଆହୁରି ନିବିଡ଼, ଆହୁରି ସୁନ୍ଦର । ତା'ହେଲେ ଯାଇଁ ମାଆ ଖୁସି ହେବେ, ଆଉ ତୋତେ କ୍ଷମା କରିଦେବେ । ଏଣୁତେଣୁ ଦି'ଧାଡ଼ି ଲେଖିଦେଇ ତାଙ୍କୁ ଭଣ୍ଡେଇଲେ ଚଳିବ ନାହିଁ । ବୁଝିଲୁ ?...

X X X ଓଡ଼ିଶାର କ୍ୟାପିଟାଲ୍‌ରେ ଥିବା ଉପରୋକ୍ତ କନକମଂଜରୀ ଲାଇବ୍ରେରୀର ସାନ ରିଡ଼ିଙ୍ଗ୍ ରୁମ୍‌ରେ ଯେଉଁପ୍ରକାର ଆଳାପ-ଆଲୋଚନା ହୁଏ, ଯାହାକୁ ଅନେକେ ସାହିତ୍ୟିକ ଗସିପ୍ ବୋଲି ମାନିନିଅନ୍ତି, ସେଥିରେ ମଧ୍ୟ 'ବାଣୀସଂତାନ'ର ହାଉଆ ଲାଗିଗଲା । କାରଣ ଯଦିଓ ଏଇ ପୁରସ୍କାରଟି କେବେହେଲେ ପଡ଼ି ନାହିଁ କେଉଁ ଓଡ଼ିଆର ଭାଗ୍ୟରେ, ତିରିଶବର୍ଷ ତଳେ ପୁରସ୍କାର ଅନୁଷ୍ଠିତ ହେବା ଦିନଠୁଁ, ଏ ବର୍ଷ ଗୋଟାଏ ହପ୍‌ପା ଉଠିଛି ଯେ ଏଇ ଦଶମ ପୁରସ୍କାରଟି ଧରାଦେବ ଆମ ହାତରେ । କାହିଁକି ବୋଲି ପଚାରିଲେ ଗାଳ୍ପିକ ଯୁଗଳ ମହାନ୍ତି । ଉତ୍ତରରେ ପ୍ରବୀଣ ସାମ୍ବାଦିକ ଓ ତଥାକଥିତ ଲେଖକ ଜଗନ୍ନାଥ ଅଧିକାରୀ ତାଙ୍କର ପ୍ରଶ୍ନଟାକୁ ହିଁ ବାତିଲ୍ କରିଦେଲେ । କହିଲେ— ''ଧ୍ୟାତ୍, ଏବର୍ଷ କିଛି ନୂଆ ନୁହେଁ । ସବୁଥର, ମାନେ ପ୍ରତି ତିନିବର୍ଷରେ ଏଇ ହପ୍‌ପା ଉଠେ, କାରଣ ଓଡ଼ିଆର ଆଶା, ଓଡ଼ିଆର ଲୋଭ, ଊଣା ନୁହେଁ ଆଉ କାହାଠାରୁ । କିନ୍ତୁ ଯଥାଶୀଘ୍ର

ମିଳେଇଯାଏ । କାରଣ କେହି ଚେଷ୍ଟାଚରିତ୍ର କରନ୍ତି ନାହିଁ ସେ ଦିଗରେ । କିଓ, ଯାଉ ନା' ଲବ୍‌ବି ଜମେଇବ ଦିଲ୍ଲୀରେ, ପଦଲେହନ ବି' କରିବ ଦରକାର ହେଲେ ? ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ..."

"କିନ୍ତୁ ଏଇ 'ବାଣୀସଂତାନ'ର ବିଚାର କୁଆଡ଼େ ଅତି ଗୋପନୀୟ ବ୍ୟାପାର ? ବିଭିନ୍ନ ଆଡୁ ନାନା ପରାମର୍ଶ ଆସେ ରାଷ୍ଟ୍ରପତିଙ୍କ ପାଖକୁ, କିନ୍ତୁ ସେ ବାଛନ୍ତି ଜଣକୁ, ତାଙ୍କ ଇଚ୍ଛା ଅନୁଯାୟୀ ?" ଜଣେ ମୂଢ଼ମତି ପଚାରିଲା ।

"ରବିଶ୍ ! ପରାମର୍ଶ ଭିତରେ ପରାମର୍ଶ ନାହିଁ ? ଜଗନ୍ନାଥ ଅଧିକାରୀର ପରାମର୍ଶ, ଆଉ ଜଣେ ବାଣୀସଂତାନର ପରାମର୍ଶ କ'ଣ ଏକା କଥା ? କୋଉ ରାଷ୍ଟ୍ରପତି ଏତେ ଅଗୁଆଁର ହୋଇଛି ଯେ ବାଣୀସଂତାନ ଜଗନ୍ମୟ କର୍ମକାର କି ଗୋପାଳ ନାରାୟଣ ସ୍ୱାମୀଙ୍କ ଦି'ଧାଡ଼ିଆ ସୁପାରିଶକୁ ଛାଡ଼ି ଶୁଣିବ ଜଗା ଅଧିକାରୀର ସୁଚିନ୍ତିତ ସନ୍ଦର୍ଭ ? ହୋଃ-ହୋଃ—ଅତଏବ ଅନ୍ତତଃ ଧର ସେଇ କେଇଟାଙ୍କୁ, ସାହିତ୍ୟର ବଡ଼ବଡ଼ିଆଙ୍କୁ, ତାଙ୍କୁ ତେଲମାଲିସ୍ କର, ତାଙ୍କ ଝିଅ ସାଙ୍ଗରେ ପ୍ରେମ କର କିମ୍ବା ଆଉ ଯେଉଁ ଉପାୟ ଜଣା ଅଛି ତମକୁ..."

"କିନ୍ତୁ ଯୋଗ୍ୟତା ? ବାଣୀସଂତାନ ହେବାପାଇଁ ଯେଉଁ ଯୋଗ୍ୟତା ଦରକାର, ସେତିକ ଥିଲେ ତ ?" ପଚାରିଲା ଜଣେ ଛାତ୍ରବିଶେଷ ।

"କ'ଣ ହେଲା ? ଯୋଗ୍ୟତା ନାହିଁ ଆମର ?" ବିଚରାକୁ ଏକା ସାଙ୍ଗରେ ମାଡ଼ିବସିଲେ, ଏକାଧିକ ସଭାସଦ୍‌ଗଣ । 'ତମେ କୋଉ ଯୁଗରେ ଅଛ ?' 'ତମ ମୁଣ୍ଡ ଖରାପ ?' 'ତମରିମାନଙ୍କ ହୀନମ୍ମନ୍ୟତା ହିଁ ଆଜି ଆମକୁ ଏଇ ଅବସ୍ଥାରେ ପକେଇଛି', ଇତ୍ୟାଦି ନାନା କଟୁ ମନ୍ତବ୍ୟର ବୃଷ୍ଟି ହେଲା ତା' ଉପରେ ।

ଏବଂ ସେହି କ୍ରମରେ ଜଣେ ଦାବୀ କରି ବସିଲା, "ନାହାନ୍ତି ଆମର, ନାହାଁନ୍ତି ? ନ ଥିଲେ କି ଗୋପବନ୍ଧୁ, ବୈକୁଣ୍ଠନାଥ, କାଳିନ୍ଦୀଚରଣ ଏବଂ ଆଜି ମଧ ନାହାନ୍ତି କି ରୁଦ୍ର ବଳିୟାର ସିଂହ, ବିରଞ୍ଚି ବେହେରା, ରାମହରି ଦାସ, ଶୈଳଜା ପଣ୍ଡା ଓଗେର ?"

ଜଣେ କିଏ ଖିଲିଖିଲି ହୋଇ ହସିଉଠିଲା, ଆଉ କହିଲା, "ମଧ ଶୈଳଜା ପଣ୍ଡା ? ବଢ଼ିଆ !"

କିନ୍ତୁ ତା'ର ବିଦ୍ରୂପକୁ ଦବେଇଦେଲେ ଜଣେ । ପୂର୍ବବର୍ଣ୍ଣିତ ଅଧ୍ୟାପକ ଶଶଧର ମହାନ୍ତି, ଯେ କେବେଠୁଁ ବରିଷ୍ଠ ବୋଲି ଗଣା ହେଲେଣି ଏବଂ ଅନେକ ଲେଖା

ଲେଖିଲେଣି, କିନ୍ତୁ ଗୋଟିଏ ହେଲେ ରାଜ୍ୟସ୍ତରୀୟ କିମ୍ବା ସର୍ବଭାରତୀୟ ପୁରସ୍କାର ମିଳି ନାହିଁ ତାଙ୍କୁ । ସେଇ କହିଲେ ଗମ୍ଭୀର କଣ୍ଠରେ,

"ହଁ, ଶୈଳଜା ପଣ୍ଡା । 'ମଧ' ଶୈଳଜା ନୁହେଁ, ଯୁଗେ ଯୁଗେ ଶୈଳଜା । କେବଳ ସେହି ଜଣକ ବାଣୀସଂତାନ ହେବାର ଯୋଗ୍ୟ ଆମ ଭିତରୁ, ଯଦି ଓଡ଼ିଶାର ଭାଗ୍ୟ ଖୋଲେ ଏ ବର୍ଷ ।"

ଶ୍ରୋତାମାନେ ଠିକ୍ କରିପାରିଲେ ନାହିଁ କ'ଣ କହିବେ ବୋଲି । କାରଣ ସେମାନେ ବୁଝିପାରିଲେ ନାହିଁ ପ୍ରଫେସର୍ ମହାନ୍ତି କଥାଟାକୁ ସିରିୟସ୍ ହୋଇ କହୁଛନ୍ତି, ନା ଇଏ ବିଦ୍ରୂପର ଅନ୍ୟତମ କାଇଦା ।

"ଶୁଣନ୍ତୁ", ଶଶଧରବାବୁ ଆରମ୍ଭ କଲେ, "ପ୍ରଥମତଃ, ସେହି ଏକମାତ୍ର ଗଂଗୋତ୍ରୀ ପୁରସ୍କାର ବିଜେତା ଯେ ଅଦ୍ୟାବଧି ଆମ ଗହଣରେ ଅଛନ୍ତି । ବାକୀ ଦି'ଜଣଙ୍କ ମଧ୍ୟରୁ ଜଣେ ମୃତ ଏବଂ ଅନ୍ୟ ଜଣକ ଜୀବନ୍ମୃତ । ସେ କିଛି ଲେଖୁ ନାହାନ୍ତି, କହୁ ନାହାନ୍ତି, କି ମୁହଁ ଦେଖାଉ ନାହାନ୍ତି ଆଜିକୁ ଅନେକ ଦିନ ହେଲା । ଶୈଳଜାଙ୍କୁ ନେଇ ମଧ୍ୟ ସେହି ଭଳି ଭୟ ହେଉଥିଲା । ମନେ ହେଉଥିଲା ଯେ ସେ ଲେଖାଲେଖି ଛାଡ଼ିଦେଇ ଅନ୍ୟ ବାଟେ ନାଆଁ କମେଇବାକୁ ବସିଛନ୍ତି । କିନ୍ତୁ ସେ ଭୟ ମଧ୍ୟ ଦୂର ହୋଇଗଲାଣି । କାରଣ ତାଙ୍କର ଗୋଟିଏ ବିରାଟ କାବ୍ୟ ଛପା ହୋଇଛି ଏବେ । 'ଅହଲ୍ୟା' । ଏବଂ ତା' ଉପରେ ଯେଉଁ ସବୁ ଲମ୍ବାଚଉଡ଼ା ସମୀକ୍ଷା ବାହାରୁଛି, ତା'କୁ ପଢ଼ିବା କଥା ।".

"ତା'ର ଇଂରେଜୀ ଅନୁବାଦ ବି' ହୋଇଗଲାଣି ସାର୍ । ମୁଁ ତା'ର ରିଭିଉ ପଢୁଥିଲି ହିନ୍ଦୁସ୍ତାନ ଟାଇମ୍ସ୍‌ରେ । କିଏ କେଜାଣି, ବେଶ୍ ଟେକିକରି ଲେଖିଛି ଆମ ଶୈଳଅପାଙ୍କ ବିଷୟରେ ।"

"ଜାଣିଛି । ଯଥାକ୍ରମେ ଅନ୍ୟାନ୍ୟ ଭାଷାରେ ବି' ତା'ର ଅନୁବାଦ ହେବ । ଅନୁବାଦ ଦିଗରେ ଯେଉଁ ପହୁଞ୍ଚ ଅଛି ତମ ଶୈଳଅପାଙ୍କର, ତା' ବୋଧହୁଏ ଆଉ କାହାର ନାହିଁ ।"

"କିନ୍ତୁ ସାର୍, ଆପଣ ଯଦି ପଢ଼ିଥିବେ ବହିଟିକୁ, ସେଥିରେ ଏମିତି କ'ଣ ଅଛି କହିଲେ ? ସରଳ ଭାବ, ଭାବପ୍ରବଣତା, ରୋମାଣ୍ଟିକ୍ ନାରୀପଣରେ ଜୁଡୁବୁଡୁ..."

"ବନ୍ଦ କର !" ଶଶଧରବାବୁ ହାତ ଉଠେଇଲେ ମାଷ୍ଟରଙ୍କ ପରି । "ତମେ କିଏ କହିବାକୁ ସେ କଥା ? ଯେ ଗଂଗୋତ୍ରୀ ପୁରସ୍କାର ପାଇଛି, ତା' ପୂର୍ବରୁ ଗୋଟାଏ ଦିବ୍ୟଜ୍ୟୋତି ବି' ହାସଲ କରିନେଇଛି, ତା'ର ଭାଷା କିମ୍ବା ଭାବକୁ

ତମେ କଦାପି ସେମିତି କହିପାରିବ ନାହିଁ । ଯାହା ତୁଚ୍ଛା ରୋମାଣ୍ଟିକ୍ ବୋଲି ମନେ ହେଉଥିବ ଦିନେ, ତା'ର କେତେ ନୂତନ ଅର୍ଥ ବାହାର କରିବେ ପଣ୍ଡିତମାନେ, କେତେ ଗହୀର ଅନୁଭବ, କେତେ ଗୂଢ଼ ଅବବୋଧ ଇତ୍ୟାଦି । ନଥିଙ୍ଗ୍ ସକ୍‌ସିଡ୍‌ସ୍ ଲାଇକ୍ ସକ୍‌ସେସ୍ । ସଫଳତାହିଁ ଡାକି ଆଣେ ସଫଳତାକୁ । ତା'ର ହିସାବ ଭିନ୍ନ । ଯାହାକି ବୁଡ୍‌ବକ୍ ନୀରବ ସାଧକମାନଙ୍କ ମୁଣ୍ଡରେ ପଶିବ ନାହିଁ ।

ଭାଇ ଓ ଭଉଣୀମାନେ, ଜାଣିରଖ ଯେ 'ଅହଲ୍ୟା' ଏକ ମହାନ୍ କାବ୍ୟ ଏବଂ ଶୈଳଜା ପଣ୍ଡା ଏକ ସଫଳ ଲେଖିକା । ଯାହାକି ଏକ ପ୍ରମାଣିତ ଏବଂ ପରୀକ୍ଷିତ ସତ୍ୟ । ଅତଏବ ସେ 'ବାଣୀସଂତାନ' ହେବାର ଯୋଗ୍ୟ । ...ତା'ଛଡ଼ା ଆଉ ଗୋଟାଏ କଥା ଅଛି, ଯାହାର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ବିଶେଷତଃ 'ବାଣୀସଂତାନ' କ୍ଷେତ୍ରରେ । ତା' ହେଉଛି ପ୍ରେମ ।''

''ପ୍ରେମ ? ମାନେ ଲଭ୍ ?''

''ୟେସ୍, ମାଇଁ ଫ୍ରେଣ୍ଡ୍ । ଶୈଳଜାଙ୍କୁ ସମସ୍ତେ ଭଲ ପାଆନ୍ତି ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସିଥାନ୍ତି । ମୋର ଅବଶ୍ୟ ସେଇ ସୌଭାଗ୍ୟ ହୋଇ ନାହିଁ, କିନ୍ତୁ ମୁଁ ଶୁଣିଛି ଅନେକଙ୍କଠାରୁ ଯେ ତାଙ୍କ ଅଳି ଉପରୋଧକୁ କେହି ଟାଳିଦେଇପାରନ୍ତି ନାହିଁ । ସେ କିଛି ମୁହଁରେ ନ କହିଲେ ବି' । ଏଭଳି ପ୍ରେମାସ୍ପଦାଙ୍କୁ ଯଥାଯୋଗ୍ୟ ସମ୍ମାନ ଦେବା କଥା, ଅନ୍ତତଃ ପୁରୁଷାର୍ଥ ଦୃଷ୍ଟିରୁ । ଅତଏବ ଶୈଳଜା ପଣ୍ଡା, ଆମ ଶୈଳଅପା ତଥା କଲିକତାର 'ବଡ଼ଦି', ଭଗବାନ୍ ତାଙ୍କର ମଙ୍ଗଳ କରନ୍ତୁ । ତାଙ୍କୁହିଁ ମିଳିବା ଉଚିତ ଏ ବର୍ଷର ବାଣୀସଂତାନ ସମ୍ମାନ । ମିଳିଯାଉ ଭଲା, ମିଳିଯାଉ ଏବଂ ଓଡ଼ିଆ ଜାତିର ମାନ ରହୁ ।'' ଏହା କହି ଶଶଧରବାବୁ ଗୋଟାଏ ନମସ୍କାର ପକାଇଲେ, ଭଗବାନଙ୍କୁ ପ୍ରାର୍ଥନା କଲାପରି । କିନ୍ତୁ ସଭାସଦ୍‌ଗଣ ତଥାପି ସନ୍ଦେହରେ ବୁଡି ରହିଲେ ଯେ ଅବହେଳିତ ଗାଳ୍ପିକ ସାର୍ ପ୍ରକୃତରେ ସେଇଆ ଚାହାନ୍ତି, ନା ଇଏ ଏକ ଅନବଦ୍ୟ ତିକ୍ତତାର ଶ୍ଳେଷ ।

କିନ୍ତୁ ସାମ୍ବାଦିକ ଜଗନ୍ନାଥବାବୁ ହଟିଲାବାଲା ନୁହନ୍ତି । ତାଙ୍କ ମୁହଁରେ ବାଡ଼ବତା ନ ଥାଏ । କହିଲେ,

''ଆଜ୍ଞା, ଆପଣ ତାଙ୍କ ସଂସ୍ପର୍ଶରେ ନ ଆସିଥିଲେ ମଧ୍ୟ ମନେହେଉଛି ଆପଣ ତାଙ୍କୁ ଗଭୀର ଭାବରେ ପ୍ରେମ କରନ୍ତି ଅଥବା ଘୃଣା କରନ୍ତି । ସେଇ ଏକା କଥା ।'' ସମବେତ ହାସ୍ୟରୋଳ ।

ଏଇପରି ଭାବରେ ଗୋଟିଏ ବିଶିଷ୍ଟ ସାହିତ୍ୟିକ ଆସରରେ ମଧ୍ୟ ସେମାନେ ସ୍ୱୀକାର କଲେ ଯେ ଶୈଳଜା ପଣ୍ଡାଙ୍କୁ 'ବାଣୀସଂତାନ' ପଦବୀରେ ଅଳଙ୍କୃତ କରିବାର ପ୍ରସ୍ତାବକୁ ଆବ୍‌ସର୍ଡ୍ ବୋଲି କୁହାଯାଇ ନ ପାରେ ।

X X X ଶୈଳଜାର ଅନୁମାନ ଭୁଲ୍ ନ ଥିଲା । ତନୁଶ୍ରୀ ଏହି ସମ୍ବାଦର ବାସ୍ନା ପାଇଥିଲା ରୋମୀ ସେନ୍‌ଙ୍କଠାରୁ । ଯେ ବିଚାରକ ମଣ୍ଡଳୀରେ ନାହାନ୍ତି, କିନ୍ତୁ ଜଣେ ବିଶିଷ୍ଟ ବିଚାରକଙ୍କ ଅନ୍ତରଙ୍ଗ ବାନ୍ଧବୀ ଏବଂ ସେହି ବ୍ୟକ୍ତିବିଶେଷ ତାଙ୍କୁ ଜଣାଇଥିଲେ ହାଲୁକାରେ, "ଶୁଣିଛି ତମ ଓଡ଼ିଆଣୀ ବନ୍ଧୁ ଜଣକ ମଧ୍ୟ ଅଛନ୍ତି 'ବାଣୀସଂତାନ' ତାଲିକାରେ ?"

"ରିଏଲି ? ଗୁଡ୍ ନିଉଜ୍, ଭେରୀ ଗୁଡ୍ ନିଉଜ୍ । କିନ୍ତୁ ତମେ ଯେମିତି ଭାବରେ କହୁଛ, ସେଥିରୁ ମନେହେଉଛି ଯେ ତମପାଇଁ ଇଏ ଗୋଟାଏ ଶୁଣା କଥା । ହେଲେ ତମେ ତାଙ୍କୁ ଭୋଟ୍ ଦେବ ନାହିଁ । ଇଜ୍ ଦ୍ୟାଟ୍ ସୋ ?"

"ହୋଇଥିବ । ମାନେ ମୁଁ କହୁ ନାହିଁ ଯେ ସେ ଯୋଗ୍ୟ ନୁହନ୍ତି । କିନ୍ତୁ ମୋ ମତରେ ତାଙ୍କଠାରୁ ଅନେକ ଅଧିକ ଉପଯୁକ୍ତ ବ୍ୟକ୍ତି ଅଛନ୍ତି ଆମ ଦେଶରେ, ଯେଉଁମାନଙ୍କୁ ଏହି ସମ୍ମାନ ମିଳିବା ଉଚିତ ।"

"ଯଥା ? ତମ ଉତ୍କଳୀୟ ବନ୍ଧୁ ରାମହରି ଦାସ ?"

ଡକ୍ଟର ଶ୍ରୀବାସ୍ତବ ନୀରବ ରହିଲେ । ଖାଲି ହସିଦେଲେ ଟିକିଏ । ଅର୍ଥାତ୍ ରୋମୀ ବୁଝୁ ଯେ ତା' ବି' ହୋଇପାରେ । ରାମହରି ଦାସଙ୍କୁ ନ ମିଳିବାର କାରଣ ନାହିଁ, ଯଦିଓ ସେ ଭୁରୁଙ୍ଗାମୁହାଁ (ହୁଏତ ମୋଠୁଁ ଟିକିଏ ବେଶୀ) ଏବଂ ସେ ତା'ର ଦର୍ଶନକୁ ଜାଣିଶୁଣି କ୍ଲିଷ୍ଟ କରିଦେଲା ପରି ମନେହୁଏ । ସତେକି ପାଠକପାଠିକାମାନଙ୍କୁ ଚିଡ଼େଇବା କି ଭୂଆଁ ବୁଲେଇବାହିଁ ତା'ର ମୁଖ୍ୟ ଉଦ୍ଦେଶ୍ୟ । କିନ୍ତୁ ଲୋକଟା କିଛି ଲେଖୁ ନାହଁ କାହିଁକି ଆଜିକାଲି ?

ସେ ଗୋଟାଏ କଥା କହି ନ ଥିଲେ ରୋମୀକୁ, ଯେ ରାମହରି ଦାସଙ୍କଠାରୁ ଖଣ୍ଡେ ଚିଠି ଆସିଛି ତାଙ୍କ ପାଖକୁ । ବରିଷ୍ଠ କବି ପ୍ରକାରାନ୍ତରେ ଜଣାଇଦେଇଛନ୍ତି ଯେ 'ଗଂଗୋତ୍ରୀ' କଥା ଭିନ୍ନ ଥିଲା, କିନ୍ତୁ 'ବାଣୀସଂତାନ'ପାଇଁ ତାଙ୍କ ଆପତ୍ତି ନାହିଁ । ପୁଅର୍ ଡେଭିଲ୍ ! ବୋଧହୁଏ ପସ୍ତେଇ ହଉଛି ଏଇକ୍ଷଣି ଯେ ସେ ଆରଟାକୁ କାହିଁକି ମନା କରିଦେଲା । ନା, କୌଣସି କାରଣ ନାହିଁ ମୁଁ ବୁଢ଼ାର ନାଆଁକୁ ଯୋଡ଼ିବି ନାହିଁ ମୋର ସୁପାରିଶରେ । ଭଗବାନ୍ ଜାଣନ୍ତି ରୋମୀ କାହିଁକି ଏମିତି ଖଡ୍ଗହସ୍ତ ତା' ଉପରେ । ତା' ବୋଲି ମୁଁ ମୋର କର୍ତ୍ତବ୍ୟକୁ ଛୁଡ଼ିବି ନାହିଁ । ଡକ୍ଟର ଶ୍ରୀବାସ୍ତବ ଗୋଟାଏ ଆତ୍ମଗ୍ଲାନିକୁ ସ୍ୱୀକାର କରୁ ନ ଥିଲେ, ହେଲେ ତାହା ଫୁଟି ଉଠୁଥିଲା ମଝିରେ ମଝିରେ ଯେ ଯଦିଓ ସେ ଉଚିତ ବିଚାର କରିଥିଲେ ଶୈଳଜା ପଣ୍ଡାକୁ 'ଗଂଗୋତ୍ରୀ' ଦିଆଇଲାବେଳେ, ସେଥିରେ ଯତ୍‌ସାମାନ୍ୟ ରୋମୀପ୍ରୀତି ନ ଥିଲା ବୋଲି କହି ହେବ ନାହିଁ । କିନ୍ତୁ ଏଥର ହେବ ନାହିଁ ସେ କଥା । ରୋକ୍‌ଠୋକ୍ ତିନିଟା ନାଆଁ ପଠେଇଦେବି

ରାଷ୍ଟ୍ରପତିଙ୍କ ଦପ୍ତରକୁ, ମୋର ବୁଦ୍ଧିବିବେକ ଅନୁଯାୟୀ । ସେଣିକି ସେ କରନ୍ତୁ ଯାହା କରିବେ ।

'ଅହଲ୍ୟା'ର ପ୍ରକାଶନ ଏବଂ ବାଣୀସଂତାନର ସମ୍ମାନ ମଧ୍ୟରେ ପ୍ରାୟ ନଅମାସର ବ୍ୟବଧାନ । ଇଂରେଜୀ 'ଅହଲ୍ୟା, ଦି' ଷ୍ଟୋନ୍ ଓମାନ୍' ବାହାରିଲା ଓଡ଼ିଆ ସଂସ୍କରଣର ତିନିମାସ ପରେ । ଉଭୟର ଉଚ୍ଛ୍ୱସିତ ପ୍ରଶଂସା ଦେଖିବାକୁ ମିଳିଲା ନାନା ଓଡ଼ିଆ ଏବଂ ଇଂରାଜୀ ପତ୍ରପତ୍ରିକାରେ । ସେଥିଯୋଗୁଁ କ'ଣ ଶୈଳଜା ପଣ୍ଡାର ଭାଉ ଏତେ ବଢ଼ିଗଲା ଯେ ସମ୍ମାନ ପ୍ରଦାନର ଅବ୍ୟବହିତ ପୂର୍ବରୁ ତା' ନାଆଁ ବଡ଼ ତାଲିକାରୁ ଛୋଟ ତାଲିକାକୁ ଆସିଗଲା, ରାଷ୍ଟ୍ରପତିଙ୍କ ନିଜସ୍ୱ ନିର୍ବାଚନପାଇଁ ? ଏବଂ ତଥାକଥିତ ଆବ୍‌ସର୍ଡ଼୍ ପ୍ରସ୍ତାବ ଏକ ଗ୍ରହଣଯୋଗ୍ୟ ପ୍ରସ୍ତାବରେ ପରିଣତ ହେଲା ? ତା'ଛଡ଼ା ବହିଟିର ପ୍ରଶଂସାମୂଳକ ସମୀକ୍ଷା, ରିଭିଉ, ଇତ୍ୟାଦିର କୋଳାହଳ ପଛରେ ତନୁ ଓ ତା' ଅଙ୍କଲ୍‌ଙ୍କ ଭୂମିକା କ'ଣ ଯଥେଷ୍ଟ କାର୍ଯ୍ୟକାରୀ ହୋଇ ନ ଥିଲା ? ଏଭଳି ପ୍ରଶ୍ନର ଉତ୍ତର ଦେବା ସମ୍ଭବ ନୁହେଁ । ପାଲଟା ପ୍ରଶ୍ନ ମଧ୍ୟ ଉଠିପାରେ ଯେ ଶୈଳଜା ପଣ୍ଡାର 'ଅହଲ୍ୟା' ତଥା ତାହାର ସମସ୍ତ କାବ୍ୟକୃତିରେ କ'ଣ ଏଭଳି କିଛି ବୈଶିଷ୍ଟ୍ୟ ନ ଥିଲା, ଯାହା ତା'କୁ ତା' ନିଜ ଗୋଡ଼ରେ ଠିଆ କରେଇ ପାରିଥାଆନ୍ତା ଏବଂ ହାତ ଧରି ନେଇ ଯାଇଥାଆନ୍ତା 'ବାଣୀସଂତାନ'ର ଉତ୍ତୁଙ୍ଗ ଶିଖରୀ ଆଡ଼କୁ ? କିଏ ତା'ର ଭାଗମାପ କରିପାରିବ ? ତେବେ ଆଶା କରାଯାଏ ଯେ ଇତିହାସ ଶୈଳ-ସାହିତ୍ୟର ଯଥାର୍ଥ ମୂଲ୍ୟାୟନ କରିପାରିବ । ଶତାବ୍ଦୀ ପରେ ଶତାବ୍ଦୀ ଗଡ଼ିଗଲା ପରେ, ଯେତେବେଳେ ପୁରସ୍କାରର ମହକ ଉଡ଼ିଯାଇଥାଏ, କିନ୍ତୁ ଶବ୍ଦର ସମ୍ଭାର ଅଧିକରୁ ଅଧିକ ପାକଳ ହୋଇ ସାରିଥାଏ, ଅଧିକରୁ ଅଧିକ ବୁଦ୍ଧିମାନ ପାଠକର ସ୍ୱାଦପାଇଁ । ତା'ର ରସାଳ ପରିପକ୍ୱତାକୁ ସେ ଉପଭୋଗ କରୁ ଅଥବା ବର୍ଜନ କରୁ ।

ତେବେ ସେଇ ଛଅଜଣିଆ ଛୋଟ ତାଲିକାରେ ଶୈଳଜା ପଣ୍ଡାର ନାଆଁ ମଧ୍ୟ ଥିଲା ଏବଂ ରାମହରି ଦାସଙ୍କର ନାଆଁ ନ ଥିଲା । ଡକ୍ଟର ଶ୍ରୀବାସ୍ତବଙ୍କ କୃପାରୁ ତାଙ୍କର ନାଆଁ ଅବଶ୍ୟ ଥିଲା ପ୍ରାଥମିକ ତାଲିକାରେ । କିନ୍ତୁ ରାଷ୍ଟ୍ରପତିଙ୍କ ବିଶିଷ୍ଟ ବିଚାରକମଣ୍ଡଳୀ, ଯେଉଁଥିରେ ବଛାବଛା କେତେଜଣ ସାହିତ୍ୟିକଙ୍କ ଛଡ଼ା କେତେକ ଉଚ୍ଚମାନର ନାଗରିକ ମଧ୍ୟ ଥାଆନ୍ତି, ସେମାନେ ତାଙ୍କୁ ଛୋଟ ତାଲିକାର ଯୋଗ୍ୟ ବୋଲି ମନେ କଲେ ନାହିଁ । ହୁଏତ ତାଙ୍କ ବଳିଷ୍ଠ ସାହିତ୍ୟ ଓ ବ୍ୟକ୍ତିତ୍ୱକୁ କଳିପାରିଲେ ନାହିଁ । ଅସାଧାରଣକୁ ଉଦ୍ଭଟ ଅଥବା ଅନାବନା ବୋଲି ଭାବିଲେ !

କିନ୍ତୁ ଏଇ ଛଅଜଣଙ୍କ ଭିତରୁ ମାତ୍ର ଜଣକୁ ବାଛିବା କଥା । ପ୍ରତ୍ୟେକଙ୍କ ପ୍ରାର୍ଥିତ୍ୱର ସୁପାରିଶ ସାଙ୍ଗକୁ ତିନିପୃଷ୍ଠାବ୍ୟାପୀ ସାହିତ୍ୟ-ବ୍ୟକ୍ତିତ୍ୱର ଇସ୍ତାହାର ଯେପରିକି ରାଷ୍ଟ୍ରପତିଙ୍କର ବିଶେଷ ଅସୁବିଧା ହେବ ନାହିଁ ଭାବିଚିନ୍ତି ଉପଯୁକ୍ତ ଲୋକଟିକୁ ବାଛିବାପାଇଁ, ଯାହାକୁ ଏହି ସମ୍ମାନ ପ୍ରଦାନ କରି ଜାତି ଗୌରବାନ୍ୱିତ ହେବ ଏବଂ ଅପର ପୃଥିବୀକୁ ଗର୍ବର ସହିତ ଜଣାଇଦେଇ ହେବ — ଦେଖ ଆମର ଏଇ ଉଜ୍ଜ୍ୱଳ ରତ୍ନଟିକୁ । ଆମର ନିଜସ୍ୱ ସଂସ୍କୃତିର ପ୍ରତୀକ, ମହାମହିମାନ୍ୱିତା ବାଣୀଦେବୀଙ୍କର ଅନ୍ୟତମ ସଂତାନ । ତା'କୁ କେଉଁ ଗୁଣରେ ଊଣା ବୋଲି ମଣିବ, ତୁମମାନଙ୍କର ଯାବତୀୟ ଗୁଣୀଜ୍ଞାନୀ ନାଗରିକମାନଙ୍କଠାରୁ ?

ରାଷ୍ଟ୍ରପତି କେବଳ ଜଣେ ରାଜନୈତିକ ନେତା ନୁହନ୍ତି, ସେ ମଧ୍ୟ ଜଣେ ସାହିତ୍ୟପ୍ରେମୀ । ଇଂରାଜୀ ଅନର୍ସ ନେଇ ବି.ଏ. ପାସ୍ କରିଛନ୍ତି । ସଂସ୍କୃତ ପଢ଼ିଛନ୍ତି, ପାର୍ସୀ ଜାଣିଛନ୍ତି ଏବଂ ଠିକଣାବେଳେ ପଦେ ଅଧେ ଉର୍ଦ୍ଦୁ ଶାୟରୀ ମଧ୍ୟ ଛାଡ଼ିଦେବାରେ ଧୁରନ୍ଧର । ମଧ୍ୟ ସେ ସମାଜସେବୀମାନଙ୍କୁ ବିଶେଷ ଶ୍ରଦ୍ଧା କରନ୍ତି । ଲୋକେ ଦେଖିଛନ୍ତି ଅତୀତରେ ସେ କେମିତି ମଦର୍ ଟେରେସାଙ୍କର ପାଦ ଛୁଇଁ ପ୍ରଣାମ କରିଥିଲେ, ସେ ତାଙ୍କୁ ବାରଣ କରିବା ପୂର୍ବରୁ । ଏହି ବିଦ୍ୱାନ୍ ମହାନୁଭବ ରାଷ୍ଟ୍ରପତି ମହୋଦୟ କ'ଣ ଛଅଜଣଙ୍କ ଭିତରୁ ଜଣକୁ ବାଛିପାରିବେ ନାହିଁ, ଯାହାକୁ ବାଣୀଦେବୀ ସ୍ୱଚ୍ଛନ୍ଦରେ ସ୍ୱୀକାର କରିପାରିବେ ତାଙ୍କର ସଂତାନ ବୋଲି ଏବଂ ଭାରତବାସୀମାନେ ସ୍ୱତଃ ତାଙ୍କୁ ନମସ୍କାର ଜଣାଇବେ, ରାଷ୍ଟ୍ରପତିଙ୍କୁ ଧନ୍ୟବାଦ ଦେବା ସହ ?

ଅବଶ୍ୟ ପାରିବେ । ନିଜେ ରାଷ୍ଟ୍ରପତି ମଧ୍ୟ ଭାବି ନ ଥିଲେ ଯେ ତାଙ୍କୁ ବିଶେଷ କଷ୍ଟ କରିବାକୁ ପଡ଼ିବ ଏଇ ସାମାନ୍ୟ ପ୍ରକ୍ରିୟାକୁ ନେଇ । କିନ୍ତୁ ଛଅଟିଯାକ ସୁପାରିଶପତ୍ରକୁ ମନ ଦେଇ ପଢୁ ପଢୁ ତାଙ୍କର ମନେହେଲା ଯେ ଏକରୁ ଆନ ବଳୀୟାନ, ଏଇ ଛଅ ଜଣଯାକ । ତାଙ୍କ ଭିତରୁ ଚାରିଜଣ ଗଂଗୋତ୍ରୀ ପୁରସ୍କାର ବିଜେତା ଏବଂ ଦି'ଜଣଙ୍କର ବ୍ୟକ୍ତିତ୍ୱ ଓ ସାହିତ୍ୟ ଏତେ ମହାନ୍ ଯେ ତାଙ୍କୁ ଗଂଗୋତ୍ରୀ ଭୁଲ୍‌ବଶତଃ ଛାଡ଼ିଯାଇଛି ବୋଲି ମନେହେବ । ରାଷ୍ଟ୍ରପତିଙ୍କୁ ଅନେକ ସମୟଯାଏଁ ପଦଚାରଣ କରିବାକୁ ପଡ଼ିଥିଲା ତାଙ୍କ ପ୍ରକୋଷ୍ଠରେ । ଏକୁଟିଆରେ, ଅଧାରାତିଯାଏଁ ।

ଶେଷକୁ ସେ ଜଣକୁ ବାଛିଲେ । କାହିଁକି ବାଛିଲେ, କେମିତି ବାଛିଲେ, ସେ ବିଷୟରେ ଅବଶ୍ୟ ତାଙ୍କୁ କେହି ପ୍ରଶ୍ନ କରିବେ ନାହିଁ । କିନ୍ତୁ ପଚାରିଲେ ମଧ୍ୟ ସେ କ'ଣ କହିପାରନ୍ତେ କେଉଁ ଅନୁଭବର ସଞ୍ଚାର ହଠାତ୍ ତାଙ୍କ ମନକୁ

ଆସିଲା ଏବଂ ସେ ସ୍ଥିର କଲେ ଯେ ଏଇ ଲୋକଟି ହେବ, ହେବା ଉଚିତ, ବାଣୀଦେବୀଙ୍କର ନୂତନତମ ସଂତାନ ?

ବି.ଏ. ପଢ଼ିଲାବେଳେ ତରୁଣ କବି ଗୋଲ୍ଡଷ୍ଟିନ୍‌ଙ୍କର କବିତା ତାଙ୍କୁ ଚମତ୍କୃତ କରିଥିଲା ସତ ଏବଂ ସେ ଯେତେବେଳେ ନୋବେଲ୍ ପ୍ରାଇଜ୍ ପାଇଲେ, ଯୁବନେତା ତାଙ୍କ ସାଙ୍ଗସାଥୀଙ୍କୁ କହିବୁଲିଲେ ଯେ ତାଙ୍କ ନିଜ କବିଟିଏ ପାଇଛି ପୃଥିବୀର ଏହି ସର୍ବଶ୍ରେଷ୍ଠ ପୁରସ୍କାର । ତା'ବୋଲି କ'ଣ କହିହେବ ଯେ ଗୋଲ୍ଡଷ୍ଟିନ୍ ଯେଉଁ ଭଲ ଭଲ କଥା କହିଛନ୍ତି ଜଣକର କବିତା ଉପରେ ଏବଂ ତାହା ଉଦ୍ଧୃତ ହୋଇଛି ଗୋଟିଏ ସୁପାରିଶ ପତ୍ରରେ, ତା'ରି ପ୍ରଭାବ ପଡ଼ିଥିଲା ତାଙ୍କ ଉପରେ ନିଜ ଅଜାଣତରେ ? ନା ପରମପୂଜ୍ୟା ମଦର୍ ଟେରେସା 'ବଡ଼୍‌ଦି' ନାମକ ସ୍ୱେଚ୍ଛାସେବିକାର ଯେଉଁ ଭୂୟସୀ ପ୍ରଶଂସା କରିଛନ୍ତି, ସେଇ ପ୍ରଶଂସାର ଉଲ୍ଲେଖ ତାଙ୍କ ମନକୁ ବିଶେଷ ଭାବରେ ଛୁଇଁଥିଲା ? ନା ସୁପାରିଶ ପତ୍ରରେ ସଂଲଗ୍ନ ହୋଇଥିବା ଫଟୋଗୁଡ଼ିକ ଦେଖୁ ଦେଖୁ କେଉଁ ଏକ କୃଷ୍ଣ ହରିଣୀର ଆଖି ଯୋଡ଼ିଏ ତାଙ୍କୁ କିଛି ନୂଆ କଥା କହିଲା, ଯାହାକୁ ଫେରାଇଦେଇ ହେଲା ନାହିଁ ?

ନିଃସନ୍ଦେହରେ ସେ ତାଙ୍କ ଲିଖିତ ଫଇସଲା ଶୁଣାଇଲେ ତା' ପରଦିନ ସକାଳେ । କଲିକତାରେ ବସବାସ କରୁଥିବା ଓଡ଼ିଆ କବି ଶୈଳଜା ପଣ୍ଡାଙ୍କୁ ମିଳିବ ଏ ବର୍ଷର ବାଣୀସଂତାନ ସମ୍ମାନ । ରାଷ୍ଟ୍ରପତିଙ୍କ ଆନ୍ତରିକ ଅଭିନନ୍ଦନ ତାଙ୍କୁ ଶୁଣାଇ ଦିଆଯାଉ, ଚିରାଚରିତ ପ୍ରଥା ଅନୁଯାୟୀ । ଜୟ ହିନ୍ଦ୍ ।

X X X ସେଦିନ ସକାଳର ଦୁଇଟି ସଜଫୁଲ ଏତେ ସଜୀବ ଦିଶୁଥିଲେ ଯେ ସେଥିରୁ ଗୋଟିଏ ମଉଳିଯିବ କିଛିଦିନ ପରେ, ସେଭଳି ଆଶଙ୍କାର କୌଣସି କାରଣ ନ ଥିଲା । ମଧ୍ୟ କହିବା ଅନୁଚିତ ହେବ ଯେ ଶୈଳର ଆନନ୍ଦ ଫିକା ପଡ଼ିଆସୁଥିଲା । ସେ ନିଜକୁ ବାରମ୍ବାର କହୁଥିଲା ଯେ ତା'ର ଆନନ୍ଦ ଯଥାର୍ଥ, କାରଣ ସେ ବାଣୀଦେବୀଙ୍କୁ ହତାଦର କରିବାକୁ ଯାଉଥିଲା ଏବଂ ମୋ ଝିଅଟା ମୋତେ ବାଟକୁ ଫେରାଇ ଆଣିଛି । ମୋ ଝିଅଟା ଦୋଷ କରି ଥାଇପାରେ, କିନ୍ତୁ ତା'କୁ ଧରିବାର ନୁହେଁ । ତଥାପି ତା'ର ବେଳେବେଳେ ମନେ ହେଉଥିଲା ଯେ ତା' ଆନନ୍ଦକୁ ଟିକିଏ ଲାଜ ଲାଗିବା କଥା । ଯେହେତୁ ସେଥିରେ ଗୋଟାଏ ବିଶ୍ୱାସଘାତକତା ରହିଛି, ସେଥିପାଇଁ ଯିଏ ଦାୟୀ ହେଉ ପଛକେ । ସେଇ ଦୋଷୀଭାବକୁ ପୋଛିଦେଇ ହେଉ ନାହିଁ ଏବଂ ଯେତେ ଚେଷ୍ଟା କଲେ ବି' ନୂଆ ଦି' ଧାଡ଼ି ଲେଖି ହେଉନି । ନୂଆ କାବ୍ୟର ପ୍ରଥମ ଦି' ଧାଡ଼ି । ସତେକି

ତା' ହାତକୁ କିଏ ଅଟକେଇଦେଉଛି । କହୁଛି—ରହିଥା', ଆଗେ କିଛି ଗୋଟାଏ ଶାସ୍ତି, କ୍ଷମା କିମ୍ବା ଆଉ ଯାହା ମିଳିଯାଉ ତୋତେ...

ଓଃ ! ସାର୍ ନିଜେ ଖଣ୍ଡେ ଚିଠି ଲେଖନ୍ତେ ନାହିଁ ମୋ ପାଖକୁ ? ସହଜେ ରାଗିମାଗି ଲେଖିବେ, କିନ୍ତୁ ସେତିକି ମୋର ଲୋଡ଼ା । ତା'ହେଲେ ମୁଁ ତାଙ୍କଠୁଁ କ୍ଷମା ମାଗି ନିଅନ୍ତି । କୁହନ୍ତି ଯେ ମୁଁ ଜାଣିଶୁଣି କିଛି ଦୋଷକରି ନାହିଁ । ମୋ ଝିଅର ମୁଣ୍ଡରେ କ'ଣ ପଶିଲା କେଜାଣି, ସେଇ ଗୋଟାଏ କାଣ୍ଡ କଲା ଏମିତି । କିନ୍ତୁ ସାର୍, ଜିନିଷଟା କ'ଣ ଭଲ ହୋଇଥାଆନ୍ତା, ଆପଣ ଯାହା ଚାହୁଁଥିଲେ ? ଆପଣଙ୍କ ଭଳି ଲୋକ ପକ୍ଷରେ କ'ଣ ମୋ ଲେଖାକୁ ଛଡ଼େଇ ନେଇ ନିଜର ବୋଲି କହିବାଟା ଠିକ୍ ହୋଇଥାଆନ୍ତା ? ଆପଣଙ୍କ ଶିଷ୍ୟା ହୋଇ ମୁଁ କେମିତି ଆପଣଙ୍କୁ ଏଇ ପାପରେ ପକେଇଥାଆନ୍ତି ?

ନା ଆପଣ କ'ଣ ସତରେ ବିଗୁଡ଼ିଥିଲେ ମୋତେ ? ତା'ହେଲେ ଅବଶ୍ୟ କିଛି ଅଘଟଣ ହୋଇ ନାହିଁ । ହୁଏତ ତା'ର ବାଗ ବିଗିଡ଼ିଗଲା, ମାନେ ଆପଣଙ୍କ ସ୍ୱକୀୟ ଯୋଜନା ମାଡ଼ ଖାଇଗଲା । ସେଇଥିରେ କ'ଣ ଆପଣ ଏତେ ଗୁମାନ କରି ରହିବେ ଯେ ଚିଠିଖଣ୍ଡେ ଦେବେ ନାହଁ ? ଆପଣଙ୍କ ପ୍ରିୟ ଶିଷ୍ୟାକୁ ଗାଳିମନ୍ଦ ବି' କରିବେ ନାହିଁ, ତିଆରିବେ ନାହିଁ ?

ସାର୍, ଯେତେହେଲେ ମୋର ଅତି ଆଦରର ଅହଲ୍ୟାଟି ଆପଣଙ୍କୁ ଉତ୍ସର୍ଗ କରାହୋଇଛି ପରା ? ମୁଁ ତା'କୁ ଆପଣଙ୍କୁ ସଁପିଦେଇଛି, ଯାହା ଚାହିଁଥିଲି ଓ କହିଥିଲି ମଧ ଆପଣଙ୍କୁ । ତଥାପି ଏତେ ରୋଷ ଆପଣଙ୍କର ? ହଉ, ଆପଣଙ୍କ ଇଚ୍ଛା । ଦୀର୍ଘନିଃଶ୍ୱାସଟିଏ ପକେଇ ଶୈଳ ଲୋଟିଯାଏ ତା' ବିଛଣାରେ । ନୂଆ କାବ୍ୟପାଇଁ ନୂଆ କିଣା ହୋଇଥିବା ଖାତାରେ ଗାରଟିଏ ପଡ଼େ ନାହିଁ ।

...ଆର ରୁମ୍‌ରେ ସିଏ ଖୁସୁରୁ ଖୁସୁରୁ ହେଉଛନ୍ତି । ବିଚରା, କେତେ ଶୁଖିଗଲେଣି ସତରେ ! ଆରେ, ତାଙ୍କ ହାତରେ ସେଇ ବହିଟି କ'ଣ ମ ? ଅହଲ୍ୟା ! ମୋରି ବହି । କେବେଠୁଁ ଏଭଳି ଆଗ୍ରହ ହେଲାଣି ବାବୁଙ୍କର ସାହିତ୍ୟ ପ୍ରତି ? ନା ଖାଲି ଶୈଳର ସାହିତ୍ୟ ପ୍ରତି ମ ? ଶୈଳକୁ ନ ପାଇ ତା'ର ଏଇ ପ୍ରତିମାଟିକୁ ନେଇଗଲ ବିଛଣାକୁ, ନା କଅଣ ମତଲବ ତମର ? ଶୈଳ କେତେ ସମୟଯାଏଁ ଚାହିଁରହେ ସେ ଆଡ଼କୁ ଏବଂ ଗୋଟାଏ ପାସୋରା ଆବେଗକୁ ଅନୁଭବ କରେ । ଯଥାକ୍ରମେ ଆଲୁଅ ଲିଭେଇଦିଏ । ହେଲେ ଯାଏ ନାହିଁ ଆର କମରାକୁ ।

ମଧୁରିଆ ଶୀତଋତୁ ଆସି ପହୁଞ୍ଚିଗଲାଣି କଲିକତାରେ । ଶୈଳର ବି' ମନ ହେଉଛି ସୁନେଲି ଖରାରେ ଟିକିଏ ଆରାମ କରିବ ମଝିରେ ମଝିରେ, ନିଜ

ଘରର ବାଲ୍‌କନିରେ । ଯେତେବେଳେ ସେ ବସିଥିବେ ପାଖ ଚଉକିରେ ଏବଂ ଅଳସେଇ ହେଉଥିବେ ଅଫିସ୍‌କୁ ଫେରିଯିବା ପୂର୍ବରୁ ଏବଂ ହାଲୁକାରେ କଥାଭାଷା ହେଉଥିବେ ଦୁନିଆଁ ବିଷୟରେ ।

ଏଇଭଳି ଏକ ଅପରାହ୍ନରେ ନିଜକୁ ହୁଗୁଳେଇ ଦେଇଥିଲାବେଳେ ଡାକବାଲାଠାରୁ ଖଣ୍ଡେ ଚିଠି ଆସି ପହଞ୍ଚିଲା ଶୈଳର ଠିକଣାରେ । ରେଜିଷ୍ଟାର୍ଡ୍ ଚିଠି । ସରକାରୀ ଚିଠି ପରି ମନେହେଉଛି । ରାଷ୍ଟ୍ରପତି ଭବନରୁ ? କଥା କଅଣ ? ଗୋଟାଏ କିଛି ଅପ୍ରତ୍ୟାଶିତ ଦାନ ମିଳିଛି କି ଆମର କୋଉ ସଂସ୍ଥାକୁ ? ଶୈଳ ଖୁସି ହୋଇଉଠିଥିଲା, ଚିଠିଟିକୁ ଖୋଲିବା ପୂର୍ବରୁ ।

କିନ୍ତୁ ଚିଠିଟିକୁ ଖୋଲି ପଢ଼ିଲା ପରେ ସେ ସ୍ତବ୍ଧ ହୋଇଗଲା । ତା'ର ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ସତ ନା ମିଛ ? ଏଇଆକୁ କ'ଣ ଆବ୍‌ସର୍ଡ୍ କୁହନ୍ତି ? ନା ଇଏ ମନସ୍ୱିନୀ ମାଆର କୃପା, ଛାର ସଂସାର ଯାହା କହୁ ପଛକେ ?

ଶୈଳର ବିମୂଢ଼ ବିମୋହିତ ଭାବକୁ କିଏ ଭଲା ଏଡ଼ାଇଦେଇ ପାରିଥାଆନ୍ତା ? ସନାତନବାବୁ ପାରିଲେ ନାହିଁ । ଏବଂ ଶୈଳ ନୀରବରେ ଚିଠିଟିକୁ ବଢ଼େଇଦେଲା ତାଙ୍କ ହାତକୁ ।

ଶାନ୍ତଶିଷ୍ଟ, ଭଦ୍ର ଏବଂ ସଂଯତ ସ୍ୱାମୀ ଜଣକ ଏମିତି ପାଗଳ ହୋଇଉଠିବେ ବୋଲି କିଏ ଭାବିଥିଲା ? ଅତୀତର ଯେତେକ ପରାଭବ ଏହିପ୍ରକାର ମୁହୂର୍ତ୍ତକୁ ନେଇ, ସେ ସବୁ ଭୁଲି ହୋଇଗଲା । ସନାତନବାବୁ ଚଉକିରୁ ଉଠିପଡ଼ିଲେ ଓ ଶୈଳକୁ ଉଠେଇ ନେଲେ । ଏବଂ ଶୈଳକୁ ଭିଡ଼ି ଧରିଲେ । ଏଭଳି ନିବିଡ଼ ଆଲିଙ୍ଗନ ଯେ ଶୈଳ 'ଆରେ ଛାଡ଼, ମୋତେ କାଟୁଛି' ବୋଲି ପାଟିକରି ଉଠିଲା । କିନ୍ତୁ ବାହୁବନ୍ଧନ ଟିକିଏ କୋହଳ ହୋଇଗଲା ପରେ ସେ ଆଉଜିଗଲା ସେଇ ଚଉଡ଼ା ଛାତିରେ । ମୁକୁଳି ଆସିବାର ନାଆଁ ଧରିଲା ନାହିଁ । ଆଜି ଏତେଦିନକେ...

କିନ୍ତୁ ସେଦିନ ରାତିରେ ମଧ୍ୟ ସେ ଯାଇ ନ ଥିଲା ଆର କମରାକୁ ଏବଂ ସନାତନବାବୁଙ୍କୁ ଇଙ୍ଗିତରେ ଜଣାଇଦେଇଥିଲା ଯେ ଦୟାକରି ମୋତେ ବଳାଅ ନାହିଁ ସେ ଦିଗରେ ।

X X X ଦୁଇମାସ ପରେ ଶୈଳକୁ 'ବାଣୀସଂତାନ'ର ମାନପତ୍ର ପ୍ରଦାନ କଲେ ରାଷ୍ଟ୍ରପତିଙ୍କର ବିଶିଷ୍ଟ ଅତିଥି ଏବଂ ଜାପାନର ପ୍ରଖ୍ୟାତ ସାହିତ୍ୟିକ-ଦାର୍ଶନିକ ୟାମାତୋ ଶୋଗୁରା । ରାଷ୍ଟ୍ରପତିଙ୍କର ଅଧ୍ୟକ୍ଷତାରେ ଅନୁଷ୍ଠିତ ଏବଂ ଦିଲ୍ଲୀର ସିରି

ଫୋର୍ଟ ଅଡ଼ିଟୋରିୟମ୍‌ରେ ଆୟୋଜିତ ଏକ ବିରାଟ ସଭାରେ । ଫ୍ଲାଶ୍ ବଲ୍‌ବ୍‌ର ଉଚ୍ଛନ୍ନ ଆଲୁଅ ଏବଂ ଶ୍ରୋତାମଣ୍ଡଳୀଙ୍କ ଉଚ୍ଛ୍ୱସିତ କରତାଳି ସହ । ତା'ପରେ ଶୈଳକୁ ଗୋଟିଏ ଛୋଟିଆ ଧନ୍ୟବାଦସୂଚକ ଭାଷଣ ଦେବାକୁ ପଡ଼ିଥିଲା । ଏବଂ ସେ ଯାହା କହୁ ପଛେ, ସେଥିରେ ଶଙ୍କା ନ ଥିଲା, ଦ୍ୱିଧା ନ ଥିଲା ଏବଂ ତା'ର ବିନୟ ଏକାଧାରରେ ଆର୍ଦ୍ର ଓ ଆନ୍ତରିକ ବୋଲି ମନେ ହୋଇଥିଲା ।

ସ୍ୱଭାବତଃ ତା'କୁ ଅନେକ ଅଭିନନ୍ଦନପତ୍ର ମିଳିଥିଲା ଏଇ ଦୁଇମାସ ଭିତରେ । ଅଳ୍ପ କେତୋଟିରେ ବିଦ୍ରୂପ-ବିସ୍ମୟ ମଧ ଉଙ୍କି ମାରୁଥିଲା, କିନ୍ତୁ ଶୈଳ ସେଥିରେ ବିଚଳିତ ହୋଇ ନ ଥିଲା । ଅପରନ୍ତୁ ଯୋଡ଼ିଏ ଚିଠି ତା'କୁ ବିଶେଷ ଆନନ୍ଦ ଆଣିଦେଇଥିଲା । ଗୋଟିକରେ ତୀକ୍ଷ୍ଣ ଆମୋଦର ଅନୁଭବ ଏବଂ ଅନ୍ୟଟିରେ ବିଷାଦମଖା ପରମ ସନ୍ତୋଷ ।

ଗୋଟିଏ ହେଲା ପ୍ରେରକର ନାଆଁ ନ ଥିବା ଧାଡ଼ିକିଆ ଚିଠି । ହେଲେ ହସ୍ତାକ୍ଷରରୁ ବୁଝି ହେଉଥିଲା କିଏ ତା'କୁ ଲେଖିଛି ।—

''ୟୁ ବିଚ୍ !  ୟୁ ଡିଜର୍ଭ୍‌ଡ୍ ଇଟ୍ !''

ହଉ, ସାର୍ । ଅନେକ ଧନ୍ୟବାଦ । ମୋତେ ବିଚ୍ କୁହନ୍ତୁ କି ଆଉ ଯାହା, ତା'ର ଓଡ଼ିଆ ରୂପାନ୍ତର ବୋଧହୁଏ ଆହୁରି ଅଶ୍ଳୀଳ ବୋଲି ମନେ ହୋଇଥାଆନ୍ତା, କିନ୍ତୁ ଆପଣ ବି' ତ କହିଲେ ମୁଁ ଏଇ ପୁରସ୍କାରର ଯୋଗ୍ୟ ବୋଲି ? ମୋର ଆଉ କ'ଣ ଦରକାର ?

ଦ୍ୱିତୀୟଟି ଆସିଥିଲା ଲଣ୍ଡନ୍‌ରୁ । କେ-ବି-କେଙ୍କ ଅଭିନନ୍ଦନ । ଅଭିନନ୍ଦନର ଭାଷାରେ କି ଭାବରେ ଏମିତି କିଛି ନ ଥିଲା ଯାହା ଶୈଳ ଆଶା କରି ନ ଥିଲା କୁଳଭାଇନାଙ୍କଠୁଁ । କିନ୍ତୁ ମଜା କଥା ହେଉଛି ଯେ ସେ ଅସଲ ଖବରଟିକୁ 'ପୁନଶ୍ଚ' ତଳେ ଲେଖିଛନ୍ତି—''ଶୁଣି ଖୁସି ହେବୁ ତୋର ଗୋଟିଏ ଝିଅାରୀ ହୋଇଛି, ଗତ ଗୁରୁବାର ତିରିଶ ତାରିଖ ସନ୍ଧ୍ୟାରେ...''

ଖୁସି ହେବା ସଙ୍ଗେ ସଙ୍ଗେ ଶୈଳ ଭାବାକୁଳ ହୋଇ ଉଠିଥିଲା । ...କୁଳଭାଇନାଙ୍କ ଝିଅ । ଆରେ, ଦିଦି ନାହାନ୍ତି ବୋଲି ସେ କ'ଣ ତାଙ୍କ ଝିଅ ନୁହେଁ ? ହଁ, ଯେଉଁ ସନ୍ତାନଟିଏ ଆସିଥିଲେ ତାଙ୍କ ଜୀବନ ପରିପୂର୍ଣ୍ଣ ହୋଇଥାଆନ୍ତା, ଇଏ ସେଇ । ତାଙ୍କରି, ଆଉ ମୋରି । ମୋରି । ନିଜ ଗର୍ଭରେ ଧରିଥିବା ପ୍ରାଣୀଟିକୁ କ'ଣ ଖାଲି ସନ୍ତାନ କୁହାଯାଏ ?

ଚେକ୍ଟେ ପାଇବ ଏଥର କୁଳଭାଇନା ! ଆଜିକାଲିକାର ଝିଅଙ୍କୁ କ'ଣ କମ୍ ପାଇଛ କି ? ଦେଖିବ ସେ କେମିତି ସିଧା କରିଦେବ ତମକୁ... ଶୈଳକୁ ବେଶ୍ କିଛି ସମୟ ଲାଗିଥିଲା ଚିଠିଟିକୁ ବନ୍ଦ କରି ଯଥାସ୍ଥାନରେ ରଖିଦେବାପାଇଁ ।

ଭାଷଣର ଯେଉଁ ଅଂଶଟିକୁ ଶୁଣିଲାବେଳେ ଏକାଧିକ ଶ୍ରୋତା ପୁରସ୍କାର ବିଜେତା କ'ଣ କହୁଛନ୍ତି, ସେଥିପ୍ରତି ଧ୍ୟାନ ନ ଦେଇ ଶୈଳର ମୁହଁକୁ ଚାହିଁ ରହିଥିଲେ, ତା' ଓଠର କମ୍ପନ, କପୋଳର ସ୍ୱେଦବିନ୍ଦୁ ଓ ଆଖିପତାର ନର୍ତ୍ତନରୁ ତା' ହୃଦୟର ଭାବକୁ କଳିଲାପରି, ତା' ହେଉଛି ଏଇ—

"ମୁଁ ଯୋଗ୍ୟ ନୁହେଁ ଏଇ ସମ୍ମାନର ଅଥବା ଅନ୍ୟାନ୍ୟ ପୁରସ୍କାର ଓ ସମ୍ମାନର, ଯାହା ମୁଁ ଅଯାଚିତ ଭାବରେ ପାଇଛି ମୋ ଜୀବନରେ । କିନ୍ତୁ ମୁଁ କ'ଣ କେବେହେଲେ ମୋରି ମାଆର ଅଯୋଗ୍ୟ ହୋଇପାରିବି ? ସେମିତି ଭାବିବାହିଁ ପାପ । ସେ ଯଦି ସତରେ କିଛି ପାତରଅନ୍ତର କରିଥାଏ, ତା' ପିଲାଙ୍କ ଭିତରେ, ତା'ହେଲେ ସେଇ ଜାଣିଥିବ ତା'ର କାରଣ କଅଣ । ମୁଁ କିଏ ସେ ବିଷୟରେ ପ୍ରଶ୍ନ କରିବାକୁ ?

କିନ୍ତୁ ଏଇ ସାନ କଥାଟିକୁ ବୁଝିବାପାଇଁ ଅନେକ ସମୟ ଲାଗିଲା ମୋତେ । ଆଉ ମୁଁ ବୁଝିଲି କାହାଠୁଁ ନା ମୋର ଗୋଟିଏ ଟିକି ମାଆଠାରୁ, ଯେ ବସିଛି ଏଇଠି କୋଉଠି ଆପଣମାନଙ୍କ ଗହଣରେ । ଅବଶ୍ୟ ସେ ଆଉ ଟିକିଟିଏ ନୁହେଁ, ଏଇକ୍ଷଣି...

(ତନୁର ଯେଉଁ ଭାବାନ୍ତର ଆସିଥିଲା ଏଇ ପଦକ ଶୁଣିଲା ପରେ, ତା'କୁ ବିଚାରୀ ପ୍ରକାଶ କରିପାରିଲା ନାହିଁ, କାରଣ ସେମାନେ ଚାରିଆଡ଼କୁ ଅନଉଥିଲେ ଏଇ ଟିକି ମାଆଟି କିଏ ବୋଲି ଜାଣିବାପାଇଁ । କିନ୍ତୁ କିଏ ଜାଣେ, ଜଣେ କିଏ ହୁଏତ ଥିବ ଯେ ତା'ର ଉଦ୍‌ଗତ ଅଶ୍ରୁବିନ୍ଦୁକୁ ଲକ୍ଷ୍ୟ କରିଥିବ, ଯାହାକୁ ସେ ରୁମାଲ୍‌ରେ ପୋଛିପାରିଲା ନାହିଁ ।)

ଆଜି ମୁଁ କେବଳ ଏଇ ଶୁଭେଚ୍ଛା ମାଗୁଛି ଆପଣମାନଙ୍କଠାରୁ ଯେ ମୁଁ ସେଭଳି ଭୁଲ୍, ଭୁଲ୍ ନୁହେଁ, ପାପ ଆଉ ଯେମିତି ନ କରେ ବଞ୍ଚିଥିବାଯାଏଁ..."

ଝିଅର ଦିଲ୍ଲୀସ୍ଥିତ ଫ୍ଲାଟ୍‌ରେ ଶୋଇବାକୁ ଯିବା ପୂର୍ବରୁ ଶୈଳ ଲକ୍ଷ୍ୟ କରିଥିଲା ସନାତନବାବୁଙ୍କ ଚାହାଣି ଏବଂ ବୁଝିଥିଲା ତା'ର ଅର୍ଥ କଅଣ ଏବଂ ତା'ର ପ୍ରତିଦାନ ଦେଲାବେଳେ ଯେଉଁ ନୀରବ ଭାଷା ଶୁଣେଇଥିଲା ତାଙ୍କୁ, ତା' ବୋଧହୁଏ

ଏହିଭଳି କିଛି — ମଲା ? ମୁଁ ବି' କ'ଣ ସେତିକି ଆତୁର ହେଉ ନାହିଁ, ତୁମପାଇଁ ? ହୁଏତ ତୁମଠୁଁ ବେଶୀ । କିନ୍ତୁ ମୋର ଉପାୟ ନ ଥିଲା । ହଉ, ଅପେକ୍ଷା ସରିଯିବ ଆଜି ରାତିରେ । କାହିଁକିନା ଆଜି ଯେମିତି ହେଲେ ମୁଁ ମୋ ନୂଆ କାବ୍ୟର ପ୍ରଥମ ଦି' ଧାଡ଼ି ଲେଖିବି । ପ୍ରଥମେ ମାଆର କ୍ଷମା ଆଉ ଆଶୀର୍ବାଦଟିକ ନ ପାଇଲେ, ମୁଁ କୋଉ ମୁହଁରେ ତୁମ ପାଖକୁ ଯାଇଥାଆନ୍ତି କହୁନ' ? କିନ୍ତୁ ଆଜି ଲେଖିବି, ଆଉ ତା' ପରେ ଯିବି ଆମ ଯୋଡ଼ି ବିଛଣାକୁ....

ତୁମ ଝିଅଖଣ୍ଡକ ବି' କେଡ଼େ ଦୁଷ୍ଟ ହୋଇଛି, ଦେଖୁଛ ? ଜାଣିଶୁଣି ଯୋଡ଼ି ବିଛଣାଟିଏ ପାରିଛି ତା' ବାପାବୋଉଙ୍କପାଇଁ । ହେଲେ ପିଲାଟା କ'ଣ କରିବ, ଏଡ଼ିକି ଟିକିଏ ଫ୍ଲାଟ୍‌ରେ ତା'ର ଆଉ ଉପାୟ କ'ଣ ଥିଲା ?

---